# ଜୀବନସ୍ମୃତି

ଲେଖକ :

**ଗିରିଜା ଭୂଷଣ ପଟ୍ଟନାୟକ**

ପ୍ରକାଶକ :
କାଉନସିଲ ଅଫ୍ କଲଚରାଲ ଗ୍ରୋଥ ଏଣ୍ଡ କଲଚରାଲ ରିଲେସନସ୍
ମୈତ୍ରୀ ସରଣୀ, କଟକ - ୭୫୩ ୦୦୧

ମୁଦ୍ରଣ :
ଦି' ପ୍ରିଣ୍ଟୋଭର୍ସ, କଟକ - ୧
ପ୍ରଥମ ପ୍ରକାଶନ :
ମଇ ପହିଲା, ୨୦୦୮
ପ୍ରଚ୍ଛଦ ପରିକଳ୍ପନା :
ବ୍ୟୋମକେଶ ମହାନ୍ତି
ବି.କେ. କଳା ମହାବିଦ୍ୟାଳୟ
ଭୁବନେଶ୍ୱର
ମୂଲ୍ୟ- ୧୯୦.୦୦

# JEEVANA SMRUTI

Writer :

**Girija Bhusan Patnaik**

Publisher :
Council of Cultural Growth and Cultural Relations
Maitree Sarani, Cuttack - 753 001

Printer :
The Printoverse, Cuttack - 1
Year of Publication :
1st May, 2008
Cover Concept :
Byomakesh Mohanty
B.K. College of Art
Bhubaneswar.
Price - 190.00



୰ ଗୋକୁଳ ମୋହନ ରାୟଚୂଡାମଣି

(୧୬.୦୬.୧୯୧୧-୦୧.୧୦.୨୦୦୭)



୰ ବୈଦ୍ୟନାଥ ରଥ

(୧୨.୦୫.୧୯୧୧-୦୨.୦୩.୨୦୦୭)



୰ ବନମାଳୀ ଦାସ

(୨୯. ୦୮.୧୯୧୮-୨୪.୦୨.୨୦୦୭)



୰ ଗଂଗାଧର ରଥ

(୦୨.୦୯. ୧୯୨୨-୧୪.୦୩.୨୦୦୮)

ସାମ୍ୟବାଦୀ
ଚିନ୍ତନର
ଚାରି
ମହାରଥୀଙ୍କ
ସ୍ମୃତିରେ
ନିବେଦିତ

# ସୂଚୀପତ୍ର

# ମୁଖବନ୍ଧ

ଏହି ବହି 'ଜୀବନସ୍ମୃତି'ର ମୁଖବନ୍ଧ ଲେଖିବାର ଆବଶ୍ୟକତା ନଥିଲା । କାରଣ ବହିରେ ନିବେଦିତ ବ୍ୟକ୍ତିମାନେ ହିଁ କଥା କହିବେ ।

ଆଗରୁ 'ଶ୍ରଦ୍ଧାଞ୍ଜଳି' ନାମରେ ଛଅଖଣ୍ଡ ବହି ପ୍ରକାଶ ପାଇଛି । ତାହାର ଦ୍ୱିତୀୟ ଖଣ୍ଡ ସରିଯାଇଛି । ସେ ବହିର ପୁନଃ ପ୍ରକାଶ କରିବା ଆବଶ୍ୟକ ପଡ଼ିଲା । ଏତେବେଳକୁ ଅନେକ ଲୋକ ଏହା ଭିତରେ ବାହୁଡି ସାରିଲେଣି । ସେମାନଙ୍କ ମଧ୍ୟରୁ ଅନେକଙ୍କ ପାଇଁ ଜୀବନସ୍ମୃତି ଲେଖା ହୋଇ ରହି ସାରିଲାଣି । ଅସୁସ୍ଥତା ହେତୁ କିଛି ବ୍ୟକ୍ତିଙ୍କ ପାଇଁ ସ୍ମୃତିଚାରଣ ସଂପୂର୍ଣ୍ଣ ହୋଇନାଇଁ । କିଛି ବ୍ୟକ୍ତିଙ୍କ ଜୀବନସ୍ମୃତି ଲେଖା ହୋଇଥିଲା; କିନ୍ତୁ ବର୍ତ୍ତମାନ ଖୋଜି ପାଉନି । ଯେତିକି ପାଇଲି ସେ ସବୁକୁ ଏକାଠି କରି ଛାପିବାକୁ ବଂଧୁମାନେ କହିଲେ । ପରେ ଯେଉଁମାନଙ୍କର ମିଳିବ ସେ ସବୁକୁ ଏକାଠି କରି ଆଉ ଗୋଟାଏ ବହି ଛପା ଯାଇପାରେ । ଯେହେତୁ ବହୁ ନୂତନ ବ୍ୟକ୍ତିଙ୍କର ଜୀବନସ୍ମୃତି ଜଡ଼ିତ ଏଇ ନୂତନ ପୁସ୍ତକରେ ତେଣୁ ଏହାର ନୂତନ ଶିରୋନାମା 'ଜୀବନସ୍ମୃତି' ରଖିବା ପାଇଁ ବନ୍ଧୁମାନଙ୍କର ଅନୁରୋଧ । ଏଡ଼ାଇବା ସମ୍ଭବ ନୁହେଁ । ପାଖଆଖରେ ବହୁ ବ୍ୟକ୍ତି ଗଲେଣି ଭାରି, ମୁଁ ଯିବା ବାଟରେ ଅଟକି ଯାଇଛି । କ'ଣ ସେମାନଙ୍କର ଜୀବନସ୍ମୃତିକୁ ପ୍ରକାଶ ନକରି ଛୁଟି ମିଳିବ ନାହିଁ ନା କ'ଣ ?

ତେଣୁ ନୂତନ ବହି ଆକାରରେ 'ଜୀବନସ୍ମୃତି' ପ୍ରକାଶିତ ହେଉଛି, ଦି'ୟୁନିଭର୍ସ ଦ୍ୱାରା । ଏଥିପାଇଁ ସର୍ବାଗ୍ରେ ଉମେଶ ଚନ୍ଦ୍ର ନାୟକ, କିଶୋର ତ୍ରିପାଠୀ, ମମତା ନାୟକ ଏବଂ ସୌମ୍ୟରଂଜନ ବେହେରା (ଟୁନା) ଧନ୍ୟବାଦର ପାତ୍ର । ଡି.ଟି.ପି. ଅପରେଟର ଗୁରୁଚରଣ ସାହୁ, ୟୁନିଭର୍ସ ପ୍ରେସ ପିଣ୍ଟୋଭର୍ସର ଧୀର ଏବଂ ଅଜୟ ମଧ୍ୟ ଧନ୍ୟବାଦର ପାତ୍ର ।

ବ୍ୟୋମକେଶ ମହାନ୍ତି କେବଳ ପ୍ରତିଷ୍ଠିତ ଶିଳ୍ପୀ ନୁହନ୍ତି, ସେ ୟୁନିଭର୍ସ ପରିବାରର ସଭ୍ୟ । କହିଲାକ୍ଷଣି ସେ ଆଣି ଦେଇଗଲେ ପ୍ରଚ୍ଛଦପଟର ଚିତ୍ର । ବରାଦ ମଧ୍ୟ କରିଗଲେ କିମିତି ହେବ, କିମିତି ଛପାହେବ କଭର୍‌ପେଜ୍ । ଯେମିତି ଛପା

ଯାଇଛି ବଂଧୁ ଦେବଦାସ ଛୋଟରାୟଙ୍କ ବହି ଇଂଲଣ୍ଡରେ । ସେ ବହି ମୁଁ ଦେଖିନାହିଁ । ସେ କହିଚାଲିଛନ୍ତି ଆପଣାର ବରାଦ, କିଶୋର, ମୁଁ, ପୁଅ ବ୍ୟାପ୍ତି ଶୁଣୁଛୁ । ଦେଖାଯାଉ ।

ବହି ମଇ ୨୫,୨୦୦୮ରେ ଉନ୍ମୋଚିତ ହେବ । ଭାବିଛି ସାମ୍ୟବାଦୀ ଆନ୍ଦୋଳନରେ, ସମାଜବାଦର ସ୍ୱପ୍ନରେ ଘାରିଥିବା ବଂଧୁମାନଙ୍କୁ ଡାକିବି । ସେମାନେ ସମସ୍ତେ ଆଜି ବିଭିନ୍ନ ଶିବିରରେ । କିନ୍ତୁ ଏକାଠି ହେବା ଏବଂ ପୁରୁଣା ଦିନକୁ ଉଖୁରାଇବାରେ ଯେଉଁ ଆନନ୍ଦ ଅଛି, ସେମାନେ କ'ଣ ସେଥିରେ ଅଂଶ ଗ୍ରହଣ କରିବାକୁ ନାରାଜ ହେବେ ? ବୋଧହୁଏ ଅରାଜି ହେବେ ନାହିଁ ।

ବହିଟି ଚାରିଜଣ ସାମ୍ୟବାଦୀ ବ୍ୟକ୍ତିଙ୍କୁ ନିବେଦିତ ହୋଇଛି । ତାହା ଆମେ ପୁରୁଣା ସାଥୀମାନଙ୍କ ପାଇଁ ଅନ୍ୟତମ ଆକର୍ଷଣ ।

ବହି ଲେଖି ତ ଦେଲି । କିମିତି ଲାଗିଲା ପାଠକମାନେ କହିବେ । ସେମାନେ ଚୂଡ଼ାନ୍ତ ବିଚାରକ ।

ଇତିହାସ କଥା କହୁଚି । ଜୀବନସ୍ମୃତି ।

ଦି' ୟୁନିଭର୍ସ
ମୈତ୍ରୀ ସରଣୀ, କଟକ

ମଇ ପହିଲା , ୨୦୦୮

# ବାଲିଘରରେ

## ଧରଣୀର କୃଷ୍ଣସାର ଓ ଝଡର ଇଗଲ

*(ୱ ଅଖିଳ ମୋହନ ପଟ୍ଟନାୟକ)*

ଅନେକ ସମୟରେ ସ୍ମୃତି ପଖାଳିବାକୁ ଗଲାବେଳେ କଲମ ଓ ଭାବନା ଉଭୟେ ରୁନ୍ଧି ହୋଇଯାଏ । ଗାଳ୍ପିକ ଅଖିଳ ମୋହନ ଗଲା କାଲି ଆଖି ବୁଜିଦେଲେ ଅପରେସନ ଟେବୁଲ ଉପରେ । ସମ୍ପ୍ରତି ପ୍ରଖ୍ୟାତ ଲେଖକ, ଗାଳ୍ପିକ ସୁରେନ୍ଦ୍ର ମହାନ୍ତି କହୁଥିଲେ ଜ୍ଞାନଦା ଦେବୀଙ୍କୁ । ମୋ ଭଳି ତାଙ୍କର ମଧ୍ୟ ଆଲ୍‌କହଲିକ ହାର୍ଟ । ସେ ସଂଜ୍ଞାହୀନ ଅବସ୍ଥାରେ ହିଁ ଆଖି ବୁଜିଦେଲେ । ନିଶା ଦିଆଯାଇଥିଲା ଅପରେସନ ପାଇଁ । ସେ ଆଉ ଚେତା ଫେରି ପାଇଲେ ନାହିଁ । ଜ୍ଞାନଦା ଦେବୀ ପତି ହରାଇଲେ, ପୁତ୍ର କନ୍ୟାମାନେ ପିତାଙ୍କୁ ହରାଇଲେ, ଓଡିଶା ହରାଇଲା ଏକ ଅନନ୍ୟସାଧାରଣ, ସୃଜନଶୀଳ ପ୍ରତିଭା ଯାହାଙ୍କର କଲମ ମୂନରୁ ଆହୁରି ଅନେକ ସୃଷ୍ଟିକୁ ପାଠକକୁଳ ଅପେକ୍ଷା କରିଥିଲେ । ଓଡିଶାର ସାହିତ୍ୟ ଜଗତ ହଠାତ୍ ଦରିଦ୍ର ହୋଇଗଲା ।

ଗାଳ୍ପିକ ଅଖିଳ ମୋହନ ପ୍ରତିଭାଶାଳୀ ଥିଲେ । ଜଣେ ବିଚକ୍ଷଣ ବକ୍ତା ବା ଡିବେଟର୍ ଥିଲେ, ଜଣେ ନାମଜାଦା ଓକିଲ ଥିଲେ । ସର୍ବହରାର ଦର୍ଶନକୁ ଗ୍ରହଣ କରିବା ସତ୍ତ୍ୱେ ସୋସାଇଟିର ଇଲାଇଟ୍‌ମାନଙ୍କ ଗହଣରେ ଜୀବନ କଟାଉଥିଲେ । କିନ୍ତୁ ସେ ବଞ୍ଚିରହିବେ ଜଣେ ଗାଳ୍ପିକ ଭାବରେ । ଆଉ ସବୁ ହଜିଯିବ ସମୟର ବାଲିରେ ।

ଘରଟିଏ କରିଥିଲେ । ସେଇଯୋଗୁଁ ବୋଧହୁଏ ନାମକରଣ କରିଥିଲେ 'ବାଲିଘର' । ଘରର ନାଁ ଯେପରି ସାର୍ଥକ ହୋଇଗଲା । ସବୁ ବାଲିଘର ପରି ହଜିଯିବ ମହାକାଳର ଗର୍ଭରେ । ଗାଳ୍ପିକ ଅଖିଳ ମୋହନଙ୍କର ଆଉ ଯାହା ହେଉନା କାହିଁକି ଛଳନା ନଥିଲା ନିଜର ଜୀବନ ସମ୍ପର୍କରେ । ବନ୍ଧୁ ବିଶ୍ୱମ୍ଭର ସାମନ୍ତ ପଣ୍ଡିଚେରୀ ଅରବିନ୍ଦ ଆଶ୍ରମରେ ଅନ୍ତେବାସୀ । ଲେଖିଥିଲେ ଚିଠି । କ'ଣ କରୁଛନ୍ତି ଆପଣ ଏଇନା ? ନୂଆ ଗଳ୍ପ କିଛି ଲେଖି ନାହାନ୍ତି ? ଉତ୍ତର ଦେଇଥିଲେ ଗାଳ୍ପିକ ଅଖିଳ ମୋହନ- ସୁରା ଓ ସାକୀ ଭିତରେ ଜୀବନକୁ ଭୁଲିଯିବାକୁ ଚେଷ୍ଟା କରୁଚି ।

ଜୀବନକୁ ଭୁଲିଯିବା କ'ଣ ଏତେ ସହଜ ? ପୁଣି ଅଖିଳ ମୋହନଙ୍କ ଜୀବନ ତ ଏକ ସାଧାରଣ, ରୁଟିନ୍‌ବନ୍ଧା ଜୀବନ ନୁହେଁ । '' ଦ୍ୱିତୀୟା'' ର ଲେଖକ ତ 'ପୂର୍ଣ୍ଣମୀ' ରେ ପହଞ୍ଚ୍ ନାହାନ୍ତି । ଅମାବାସ୍ୟା ହଠାତ୍ ଘୋଟିଗଲା କାହିଁକି ? ଅଖିଳ ମୋହନଙ୍କ ଜୀବନ ଏକ ଦୂରନ୍ତ ପ୍ରବାହ । ଫ୍ଲାମ୍‌ବୋୟାଣ୍ଟ, ଭଲପଚୁଅସ୍ ଏବଂ କିଛି ପରିମାଣରେ ବୋହେମିଆନ । ଆଖିଳ ମୋହନ ମଧ୍ୟ ଏକ ପାରାଡକ୍ସ । ଶ୍ରମିକ ବସ୍ତିରେ କୁଲିମାନଙ୍କୁ ବକ୍ତୃତା ଦେବାରେ ସେ ଯେମିତି ଅନୁଭବ କରନ୍ତି, ଇଲାଇଟ୍‌ମାନଙ୍କ ଗହଣରେ ଦୁଇ ପେଗ୍ ହୁଇସ୍କି ସହିତ ଡିନର୍ ଟକ୍ ଦେବାରେ ସେଇପରି ହୋମ୍‌ଲି ଅନୁଭବ କରନ୍ତି । ଏଇଭଳି ଏକ ମଣିଷର ହଠାତ୍ କ'ଣ ହୋଇଗଲା ?

ଏଇ ହଠାତ୍‌ର ସଠିକ୍ ଉତ୍ତର ମିଳି ନାହିଁ । ଏହା ଆକସ୍ମିକ ନା ନିର୍ଦ୍ଧାରିତ ତା' ଉପରେ ବହୁ ବିତର୍କ । ତଥାପି ମଣିଷ ଖୋଜୁଛି ତା'ର ଉତ୍ତର ।

ଅଖିଳ ମୋହନଙ୍କ ପାଇଁ ଏଇ ଜୀବନ ହେଉଛି ଶ୍ରେଷ୍ଠ, ଏଇ ଜୀବନ ହେଉଛି ମହନୀୟ । ସେ ରେସନାଲିଷ୍ଟ ଥିଲେ । ମାର୍କ୍ସ ଏବଂ ଚାର୍ବାକ୍‌ଙ୍କର ମଝିରେ । ଏ ଜୀବନ ଆଉ ଥରେ ମିଳିବ ନାହିଁ । ଅଯଥା ଅହେତୁକର ସନ୍ଧାନ କରି ଜୀବନକୁ ନଷ୍ଟ କର ନାହିଁ । ତେଣୁ ଯେତେଦିନ ଅଛ ଆନନ୍ଦରେ ରୁହ, ଜୀବନକୁ ଉପଭୋଗ କର । କାମନାର ତୃପ୍ତିରେ ହିଁ ଜୀବନ, କାମନାର ବିନାଶରେ ନୁହେଁ । ଅଖିଳ ମୋହନ କହନ୍ତି ତାଙ୍କ ବାପା ପ୍ରଖ୍ୟାତ ହେଡମାଷ୍ଟର ଓ ଲେଖକ ବାଙ୍କନିଧି ପଟ୍ଟନାୟକଙ୍କର ଜୀବନ ତାଙ୍କ ଉପରେ ପ୍ରଥମ ପ୍ରଭାବ ବିସ୍ତାର କରିଥିଲା । ଅଖିଳ ମୋହନ ସୁନ୍ଦର ଇଂରାଜୀ କହନ୍ତି । ଷ୍ଟେଟସ୍‌ମ୍ୟାନ୍ କାଗଜର କୁଇଜ୍ ପୂରଣ କରିବା ତାଙ୍କର ଏକ ପ୍ରଚଣ୍ଡ ହବି । ସେ ସ୍ୱପ୍ନ ଦେଖନ୍ତି ଇଂରାଜୀରେ ଏବଂ ବାଉଳି ହୁଅନ୍ତି ମଧ୍ୟ ଇଂରାଜୀରେ । ଥିଙ୍କିଙ୍ଗଟା ଇଂରାଜୀରେ । ଏହା ହେଉଛି ତାଙ୍କର ବାପାଙ୍କର ଅବଦାନ । ଅଖିଳ ମୋହନଙ୍କ ଜନ୍ମ ଖୋର୍ଦ୍ଧାରେ । ବାପା ଥିଲେ ସେଇଠି ହେଡମାଷ୍ଟର । ରକ୍ଷଣଶୀଳ, ପ୍ରଚଣ୍ଡ ଶୃଙ୍ଖଳା । ଏହା ସତ୍ତ୍ୱେ ଅଖିଳ ମୋହନ ପିଲାଦିନରୁ ଡିସିପ୍ଲିନ୍ ବା ଶୃଙ୍ଖଳା ନାମକ ବସ୍ତୁର ପାଖ ମଧ୍ୟ ମାଡି ନଥିଲେ । ଛାତ୍ର ଭାବରେ, ସଂକ୍ଷିପ୍ତ ରାଜନୈତିକ ଜୀବନ ଭିତରେ, ଓକିଲାତି ଜୀବନରେ କୌଣସିଥିରେ ସେ ବାନ୍ଧିହୋଇ ରହିବାକୁ ପ୍ରସ୍ତୁତ ନଥିଲେ । ଶୃଙ୍ଖଳା ତାଙ୍କ ପାଇଁ ଥିଲା ଶୃଙ୍ଖଳ । ସେଥିପାଇଁ ସେ ଜୀବନର ବିଭିନ୍ନ କ୍ଷେତ୍ରରେ ଶୀର୍ଷକୁ ଉଠିପାରି ନାହାନ୍ତି । ଯଦିଓ ତାଙ୍କର ଯୋଗ୍ୟତା ଥିଲା ପ୍ରଚୁର, ପ୍ରତିଭା ଥିଲା; କିନ୍ତୁ ସେଥିପାଇଁ ସେ ବ୍ୟସ୍ତ ହୋଇ ନାହାନ୍ତି ବା ସେଥିପାଇଁ ଆକୁଳତା ପ୍ରକାଶ କରି ନାହାନ୍ତି । 'ଟେକ୍ ଲାଇଫ ଇଜିଲି' ।

ବନାରସ ସହର ସେଇଯୋଗୁ ତାଙ୍କ ପାଇଁ ଯେପରି ଲକ୍ଷ ତୀର୍ଥଯାତ୍ରୀର ପଦରେଣୁରେ ପବିତ୍ର ହୋଇଥିବା ତୀର୍ଥ, ଠିକ୍ ସେଇପରି ଡାଲ୍‌ବଣ୍ଡିର ସଂକୀର୍ଣ୍ଣ ଗଳି ଭିତରେ ଭୀରୁ ଆଖିର ନିମନ୍ତ୍ରଣରେ ନଇଁ ଆସୁଥିବା ସନ୍ଧ୍ୟାପରି ସଭ୍ୟତାର ଡଷ୍ଟବିନ୍ । ପ୍ରତ୍ୟେକ କଥାର ଦୁଇଟି ଦିଗ ଅଛି । ସେଇ ସତ୍ୟକୁ ଗ୍ରହଣ କର । ଆଖିଳ ମୋହନଙ୍କ ଜୀବନୀ ହିଁ ତାହାର ଚାକ୍ଷୁସ ପ୍ରମାଣ ।

ଖୋର୍ଦ୍ଧାରେ ହାଇସ୍କୁଲ୍ ଶିକ୍ଷା ସମାପ୍ତ ପରେ ଅଖିଳ ମୋହନ ଆସନ୍ତି ପୁରୀ କଲେଜକୁ । ଖୋର୍ଦ୍ଧା ସେତେବେଳେ ବାମପନ୍ଥୀମାନଙ୍କର କର୍ମପୀଠ ଥିଲା । ଅଖିଳ ମୋହନ ଛାତ୍ରଜୀବନରୁ ହିଁ ଆସିଥିଲେ ବାମପନ୍ଥୀ ଚିନ୍ତାଧାରା ଭିତରକୁ । ବିପ୍ଲବୀମାନେ ଥିଲେ ସମାଜରେ ଏକ ବ୍ୟତିକ୍ରମ । ଅଖିଳ ମୋହନଙ୍କ ଜୀବନ ବ୍ୟତିକ୍ରମରେ ଗଢ଼ାହେବାକୁ ଆରମ୍ଭ କରିଥିଲା । ତେଣୁ ପ୍ରଚଳିତ ସମାଜର ସବୁ ନିୟମକୁ ଭାଙ୍ଗିଦେବାର ଦୁରନ୍ତ ଆହ୍ୱାନ ତାଙ୍କୁ ଆକୃଷ୍ଟ କରିଥିଲା । କାରଣ ଏହା ତାଙ୍କର ଜୀବନକୁ ସୁହାଇଥିଲା ।

ପୁରୀରେ ଛାତ୍ରଆନ୍ଦୋଳନ ସହିତ ପାଠପଢ଼ା । ସହପାଠୀ ବ୍ରଜବନ୍ଧୁ ମିଶ୍ର ତାଙ୍କର ସହଯୋଦ୍ଧା ଏବଂ ଅଖିଳ ମୋହନଙ୍କୁ ସେଇ ଟାଣିଆଣନ୍ତି ବାମପନ୍ଥୀ ଚିନ୍ତାଧାରା ଭିତରକୁ ବହୁଳ ଭାବରେ । ପୁରୀରୁ କଟକ । ଆଇନ ପଢ଼ିବା ପାଇଁ । ସେତିକିବେଳେ ସଂକ୍ଷିପ୍ତ କାରାବାସ । କାରାବାସ ପରେ ତାଙ୍କର ଜୀବନର ଘୂର୍ଣ୍ଣିରୁ ଦ୍ୱିତୀୟା ଗଳ୍ପର ସୃଷ୍ଟି । ଅଖିଳ ମୋହନ ଛାତ୍ରନେତା । ଯାଇଥିଲେ ବାଲେଶ୍ୱର କଲେଜର ଛାତ୍ର ଧର୍ମଘଟରେ ନେତୃତ୍ୱ ନେଇ । ଭେଟ ହେଲା ପ୍ରିନ୍ସିପାଲ ଘନଶ୍ୟାମ ଦାସଙ୍କ ସଙ୍ଗରେ । ଗୁରୁଗମ୍ଭୀର କଣ୍ଠରୁ ବଜ୍ରପରି ନିର୍ଘୋଷିତ ହେଲା ଅଧ୍ୟାପକ ଘନଶ୍ୟାମ ଦାସଙ୍କ ବାଣୀ । ଚାର୍ଟର ଅଫ୍ ଡିମାଣ୍ଡ୍ । ସେଇଟା କ'ଣ । ଯାଅ ପଚାର ଯାଇ ତୁମର ପିତା ମୋର ଘନିଷ୍ଠ ବନ୍ଧୁ ପ୍ରଖ୍ୟାତ ହେଡମାଷ୍ଟର ବାଙ୍କନିଧି ପଟ୍ଟନାୟକଙ୍କୁ । ଯଦି ମୋର ପୁତ୍ର ଯାଇ ତାଙ୍କୁ ଏଇପରି ଚାର୍ଟର ଦିଏ ତାହେଲେ.... ବାକ୍ୟ ନ ସରୁଣୁ ଅଖିଳ ମୋହନଙ୍କ ଉତ୍ତର ସାର୍, ପୁତ୍ରର ବିଜୟ ତ ପିତାର ବିଜୟ । ପିତାର ଆଉ ସ୍ୱତନ୍ତ୍ର ବିଜୟ କେଉଁଠି ? ଦାବୀ ପୂରଣ ହୋଇଗଲା । ପିତାର ହୃଦୟ ତରଳିଗଲା ।

ଅଖିଳ ମୋହନ ଥିଲେ ଉଚ୍ଛୃଙ୍ଖଳ, ବ୍ୟତିକ୍ରମ । ଜ୍ଞାନଦା ଦେବୀ ବିବାହ ପୂର୍ବରୁ ଥିଲେ ବେଶଭୂଷା, ଠାଣି, ଚାଲିଚଳଣି ସବୁଥିରେ ଅତ୍ୟାଧୁନିକା । ମହମହ ବାସୁଥିଲେ ଚାଲିଗଲାବେଳେ । ଅଖିଳ ମୋହନ ତାଙ୍କୁ ବିବାହ କରି ଏକ ଫର୍ଦ୍ଦିଶୋଢ଼ୀ ପିନ୍ଧା ଘରଣୀରେ ରୂପାନ୍ତରିତ କରିଦେଲେ । ଜ୍ଞାନଦା ଦେବୀଙ୍କୁ ଦେଖିଲେ ସେଇକଥା ହେତୁ ହୁଏ । ଅଖିଳବାବୁ ଏକ ଦୁରନ୍ତ ଅଶ୍ୱ । ତାଙ୍କୁ ଲଗାମରେ ବାନ୍ଧି ରଖିବା ଭାରି କଠିନ । କାରାଗାର ଭିତରେ ବନ୍ଦୀ ଅଖିଳ ମୋହନ । ଅନଶନ ଚାଲିଛି । ବନମାଳୀ ଦାସ, ବୈଷ୍ଣବ ପଟ୍ଟନାୟକ, ବ୍ରଜ

ପଟ୍ଟନାୟକ ପ୍ରଭୃତି ଦୁର୍ଦ୍ଧର୍ଷ ଯୋଦ୍ଧା ତାଙ୍କର ସହଯୋଦ୍ଧା । ଅଖିଳ ମୋହନ ସବୁ ମାନନ୍ତି କିନ୍ତୁ ସକାଳୁ ଉଠି ସମବେତ ସଙ୍ଗୀତରେ ଯୋଗଦେବା ତାଙ୍କ ପାଇଁ କଠିନ । ଠିକ୍ ସେଇପରି ରୁଟିନ୍ ବନ୍ଧା ଜୀବନ ତାଙ୍କ ପାଇଁ ଅସହ୍ୟ । ୧୯୫୧ ମସିହା । ଛାତ୍ର ଧର୍ମଘଟ । ପ୍ରବଳ ପୋଲିସ୍ ଆକ୍ରମଣ । ଅଖିଳ ମୋହନ କାଉନ୍‌ସିଲ ଅଫ୍ ଆକ୍‌ସନର ନେତା । କିନ୍ତୁ ଟେବୁଲ ଟେନିସ ଖେଳ ଚାଲିଛି ପୂର୍ବ ଛାତ୍ରାବାସରେ । ମୁଣ୍ଡ ଉପରେ ପୁଲିସର ଗିରଫଦାରୀ ପରବାନା । କ'ଣ ହେଲା ସେଇଠୁ ? ଖେଳ ଦି' ବାଜି ହୋଇଯାଉ । ଛାତ୍ର ଧର୍ମଘଟ । ଟେବୁଲ୍ ଟେନିସ୍ ଖେଳ ଯେମିତି, ଜ୍ଞାନଦା ଦେବୀଙ୍କୁ ନେଇ ମହାନଦୀ କୂଳରେ ଭ୍ରମଣ ବି ସେମିତି । କି ଅଖାଡୁଆ ମଣିଷ ! ଜୀବନ ତାଙ୍କ ପାଇଁ ଉପଭୋଗର ବସ୍ତୁ । ତେଣୁ ସବୁ ଚାଲିବ ଏକାସାଙ୍ଗରେ । କମାଣ ଓ ପ୍ରିୟତମାର ଚିବୁକ, ଲାଠି ଓ ଟେନିସ୍ ଏକାସାଙ୍ଗରେ ଚାଲିପାରିବ । ଅଖିଳ ମୋହନଙ୍କୁ କୌଣସି ଗୋଟିଏ ଛାଞ୍ଚରେ ପକାଯାଇ ପାରିବ ନାହିଁ କି କୌଣସି କଥାକୁ ସିରିଏସ୍‌ଲି ଗ୍ରହଣ କରିବାକୁ ମନାଯାଇ ପାରିବ ନାହିଁ । 'ରୁଲ୍‌ସ, ଡିସିପ୍ଲିନ୍ ! ଡାମ ଇଟ୍ । ଲାଇଫ୍ ଇଜ୍ ମୋର ଇମ୍ପଟାଣ୍ଟ୍ ଦାନ୍ ଏନିଥିଙ୍ଗ' ।

ୟୁନିଭର୍ସ ଆସିଥିଲେ କହିବା ପାଇଁ । ''ମୋ ଲେଖା, ମୋ ଜୀବନ'' ସମ୍ପର୍କରେ କହିବା ପାଇଁ । ଯାହା କହିବି, ସତ କହିବି, ମିଛ କହିବି ନାହିଁ । କିନ୍ତୁ ପୂରା ସତ କହିବି ନାହିଁ । କାରଣ ପୂରା ସତ କହିପାରିବି ନାହିଁ । ବାପା, ସ୍କାଉଟ୍ ଆନ୍ଦୋଳନ, କମ୍ୟୁନିଷ୍ଟ ପାର୍ଟି ତିନୋଟି ମୋତେ ପ୍ରଭାବିତ କରିଛନ୍ତି । କିନ୍ତୁ ମୁଁ କ'ଣ ସମସ୍ତଙ୍କର ପ୍ରଭାବକୁ ମାନିପାରିଛି ? ମୋତେ ସାହିତ୍ୟ ଏକାଡେମୀର ପୁରସ୍କାର ମିଳିଛି । ବନ୍ଧୁ ମନୋଜ ଦାସଙ୍କର 'ଓଟ' ଗଳ୍ପର ଉଦାହରଣ ଦେଇ ସେ କହିଲେ ଯେ ଉକ୍ତ ଗଳ୍ପରେ ସ୍ୱାଧୀନତା ସଂଗ୍ରାମୀକୁ ଯେପରି ଦୂର ପର୍ବତର ବଙ୍କିମଶୃଙ୍ଗକୁ ଓଟର କୁଜ ବୋଲି ଭୁଲାଇ ଦିଆଗଲା ଏବଂ ଏଣେ ମନ୍ତ୍ରୀ ହୋଇଥିବା ପୁଅ ପ୍ରାଇମେରୀ ଶିକ୍ଷକମାନଙ୍କର ରାଲିକୁ ଲାଠିମାଡ଼ରେ ଉଡ଼ାଇଦେଲେ, ଠିକ୍ ସେଇପରି ମୋତେ ସାହିତ୍ୟ ଏକାଡେମୀର ଆୱାର୍ଡ ଦିଆଯାଇଛି ।

ଜୀବନର ବହୁତ କୁନି କୁନି ଘଟଣା ହାବୁକା ମାରେ । ମନକୁ ରୁନ୍ଧିଦିଏ, ଆଖିରେ ଲୁହ ଜମି ଆସେ । ଅଖିଳ ମୋହନ ଆଉ ନାହାନ୍ତି । କିନ୍ତୁ ସେ ସ୍ମୃତହୋଇ ରହିବେ ବହୁକାଳ ଧରି ତାଙ୍କର 'ରୂପ ନାରାୟଣ ଶାହା' ବା 'ଡିମିରିଫୁଲ' ପାଇଁ । ଏ ଜାତି ବର୍ତ୍ତମାନ ସୁଦ୍ଧା ଆପଣାର କର୍ତ୍ତବ୍ୟ ପାଳନ ପାଇଁ ଶିକ୍ଷକର ଚାବୁକ ଦରକାର କରୁଛି (ରୂପ ନାରାୟଣ ଶାହା), ଆମେ ସବୁ ବର୍ତ୍ତମାନ ମଧ୍ୟ ନିୟତିର ହାତରେ କଣ୍ଢେଇ ପରି ନାଚୁଛୁ (ଡିମିରିଫୁଲ) । ଅଖିଳ ମୋହନ ପଟ୍ଟନାୟକ ବଞ୍ଚି ରହିବେ ଅଗଣିତ ପାଠକମାନଙ୍କ ଭିତରେ ଚିରକାଳ ।

□□□

# ଗାନ୍ଧୀବାଦର ଅନ୍ୟତମ ଶେଷ ସନ୍ତକ

*(ଁ ଅଜୟ ମୁଖର୍ଜୀ)*

"ବୟସ ଯେତେବେଳେ କଞ୍ଚା ଥିଲା, ରକ୍ତରେ ଥିଲା ଅଗ୍ନି, ଚକ୍ଷୁରେ ଥିଲା ରଙ୍ଗ ଓ ସ୍ୱପ୍ନ, ସେତେବେଳେ ଗାନ୍ଧିଜୀଙ୍କ ଆଦର୍ଶରେ ଆସିଥିଲି । ଆଜି ଜୀବନର ସନ୍ଧ୍ୟା ଉପଗତ, ରାତ୍ରି ହେବା ପାଇଁ ଡେରି ନାହିଁ । ତେବେ ରାତ୍ରି ହେବା ଆଗରୁ ଗାନ୍ଧିଜୀଙ୍କର ଆଦର୍ଶ ଟିକିଏ ସାର୍ଥକ ହୋଇଥିବା ଦେଖିଲେ ମୁଁ ଜୀବନକୁ ସାର୍ଥକ ମଣିବି ।"

ଗମ୍ଭୀର କଣ୍ଠ । ଧ୍ୱନିତ ହେଉଛି ବାଣୀ ଏକ ଉଦାତ୍ତ କଣ୍ଠରୁ । ହଜାର ହଜାର ଦର୍ଶକ ସ୍ତମ୍ଭୀତ ହୋଇ ଶୁଣୁଛନ୍ତି ସେଇ ବାଣୀ । ଇତିହାସ ଯେପରି କଥା କହୁଛି । ଦୁଇଘଣ୍ଟା କାଳ ସମସ୍ତେ ସ୍ୱପ୍ନାବିଷ୍ଟ, ସ୍ଥିର । ବକ୍ତା ଅଜୟ ମୁଖର୍ଜୀ । ୧୯୪୨ ମସିହା ଭାରତ ଛାଡ ଆନ୍ଦୋଳନର ହିରୋ । ବଙ୍ଗଳାର ପୂର୍ବତନ ମୁଖ୍ୟମନ୍ତ୍ରୀ । ମେଦିନୀପୁରରେ ୧୯୪୨ ମସିହାରେ ସ୍ଥାପିତ ହୋଇଥିବା ସମାନ୍ତରାଳ ସରକାରର ପ୍ରିୟ ନେତା । ବଙ୍ଗଳା ପାଠ୍ୟପୁସ୍ତକର ନାରୀନେତ୍ରୀ, ଭାରତଛାଡ ଆନ୍ଦୋଳନର ନାରୀ ଶହୀଦ ମାତଙ୍ଗିନୀ ହାଜରାର ଗୁରୁ ।

ମେଦିନୀପୁରର ଏକ ସମ୍ଭ୍ରାନ୍ତ ପରିବାରରେ ଅଜୟ ମୁଖର୍ଜୀଙ୍କର ଜନ୍ମ । ପିଲାଦିନରୁ, ପାଠପଢ଼ିବା ଦିନରୁ, ଜାତୀୟବାଦୀ ପାଲଟି ଯାଇଥିଲେ । ୧୯୪୨ର ଭାରତଛାଡ ଆନ୍ଦୋଳନ ତାଙ୍କୁ ନେଇଯାଇଥିଲା ଜନପ୍ରିୟତାର ତୁଙ୍ଗ ଶିଖରକୁ । ବିବାହ କରି ନାହାନ୍ତି । ନିରାମିଷାଶୀ । ନିଜ ଲୁଗା ନିଜେ କାଟି ପିନ୍ଧନ୍ତି । ପରିବାର ପାତି ନାହାନ୍ତି । ସାନଭାଇ ବିଶ୍ୱନାଥ ଯଦିଓ କଂଗ୍ରେସ ଦଳରେ ଯୋଗ ଦେଇଥିଲା, ପରେ ଦୀକ୍ଷିତ ହୋଇଛି ମାର୍କସବାଦରେ । କମ୍ୟୁନିଷ୍ଟ ପାର୍ଟିର ନେତା । ରାଜନୈତିକ ମତଭେଦ ସତ୍ତ୍ୱେ ଅଜୟ ମୁଖର୍ଜୀ ଭାଇକୁ ପିତୃପ୍ରତିମ ସ୍ନେହ ଦେଇ ଆସିଛନ୍ତି, କାରଣ ବୟସରେ ବହୁତ ତାରତମ୍ୟ ।

ବଙ୍ଗଳାର ଚାଷୀ ଆନ୍ଦୋଳନର ନେତା ହେଉଛନ୍ତି ଅଜୟ ମୁଖର୍ଜୀ । ବଙ୍ଗଳାର ଗ୍ରାମାଞ୍ଚଳରେ ଅତୁଟ ପ୍ରଭାବ । ଲୋକେ ତାଙ୍କୁ ପୂଜା କରନ୍ତି । ସହରରେ କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ବାମପନ୍ଥୀମାନଙ୍କର ପ୍ରଭାବ ବଢ଼ିଛି ବହୁତ । ତେଭାଗା ଚାଷୀ ଆନ୍ଦୋଳନ ସତ୍ତ୍ୱେ

ଗ୍ରାମାଞ୍ଚଳରେ ପ୍ରଭାବ ବେଶି ବୃଦ୍ଧି ପାଇ ନାହିଁ । ଗ୍ରାମାଞ୍ଚଳରେ କଂଗ୍ରେସ ପ୍ରଭାବ ତଥାପି ଅତୁଟ । ଏହାର ଅନ୍ୟତମ ନେତା ହେଉଛନ୍ତି ଅଜୟ ମୁଖର୍ଜୀ । ଗାନ୍ଧିବାଦୀ – କଥାରେ ଏବଂ କାର୍ଯ୍ୟରେ, ଉଭୟରେ ।

ବଙ୍ଗଳାରେ ପ୍ରଖ୍ୟାତ ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନ ଚନ୍ଦ୍ର ରାୟ । ବିଶିଷ୍ଟ ଗାନ୍ଧିବାଦୀ ନେତା ପ୍ରଫୁଲ୍ଲ ଘୋଷଙ୍କୁ ବିଦାକରି ସେ ମୁଖ୍ୟମନ୍ତ୍ରୀ । ବଙ୍ଗଳା ତଥା ଭାରତରେ ତାଙ୍କର ଖ୍ୟାତି ପ୍ରଭୂତ । ଜବାହରଲାଲଙ୍କ ସହିତ ବନ୍ଧୁତା ଅତୁଟ । ଗାନ୍ଧିଜୀ, ରାଜେନ୍ଦ୍ର ପ୍ରସାଦ ପ୍ରଭୃତି ବହୁ ନେତାଙ୍କର ସେ ଡାକ୍ତର । କିନ୍ତୁ ସ୍ୱାଧୀନତା ଆନ୍ଦୋଳନରେ ବିଶେଷ ଭାଗ ନେଇ ନାହାନ୍ତି କି ଜେଲ ଯାଇ ନାହାନ୍ତି ।

ଗାନ୍ଧିବାଦୀ ଅଜୟ ମୁଖର୍ଜୀଙ୍କ ସହିତ ତାଙ୍କର ଭଲ ପଡ଼େ ନାହିଁ । ଏହା ସତ୍ତ୍ୱେ ଅଜୟ ମୁଖର୍ଜୀ ତାଙ୍କ ମନ୍ତ୍ରିମଣ୍ଡଳରେ ସଭ୍ୟ । ଉପାୟ ନାହିଁ । ବଙ୍ଗଳା ଗ୍ରାମାଞ୍ଚଳର ଅବିସମ୍ବାଦୀ ନେତା ଅଜୟ ମୁଖର୍ଜୀ ।

କିନ୍ତୁ ସବୁଦିନ ସମାନ ଯାଏ ନାହିଁ । ଅଜୟ ମୁଖର୍ଜୀ କଂଗ୍ରେସ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ବାଂଲା କଂଗ୍ରେସ ପ୍ରତିଷ୍ଠା କରନ୍ତି । ବଙ୍ଗଳାରେ ବାମପନ୍ଥୀମାନଙ୍କ ସହ ମେଣ୍ଟ କରି କଂଗ୍ରେସ ଶାସନର ଅବସାନ ଘଟାନ୍ତି । ଅଜୟ ମୁଖର୍ଜୀ ହୁଅନ୍ତି ମୁଖ୍ୟମନ୍ତ୍ରୀ ଏବଂ ଜ୍ୟୋତିବସୁ ଉପମୁଖ୍ୟମନ୍ତ୍ରୀ । ଜ୍ୟୋତିବାବୁ ସଫିଷ୍ଟିକେଟେଡ, ଭଦ୍ରଲୋକ ଏବଂ ବଙ୍ଗ ରାଜନୀତିର ଉତ୍ତମ କୁମାର । ପଲିସଡ୍, ଗମ୍ଭୀର ଏବଂ ତୀକ୍ଷ୍ଣ । ଅଜୟ ମୁଖର୍ଜୀ ଗାନ୍ଧିବାଦୀ । ଧୋତିଟିଏ, ପଞ୍ଜାବୀଟିଏ । ଜ୍ୟୋତିବାବୁଙ୍କ ସହିତ ତାଙ୍କର ପଡ଼େ ନାହିଁ । ବଙ୍ଗଳା ରାଜନୀତି ଆଉ ଏକ ମୋଡ଼ ନିଏ । କିନ୍ତୁ ବଙ୍ଗଭୂମିର ଗ୍ରାମାଞ୍ଚଳରେ ବାମପନ୍ଥୀମାନଙ୍କର ପ୍ରବେଶକୁ ଉନ୍ମୁକ୍ତ କରନ୍ତି ଅଜୟ ମୁଖର୍ଜୀ । ହରେକୃଷ୍ଣ କୋନାର, ବିନୟ ଚୌଧୁରୀ ଦକ୍ଷ ଏବଂ କୁଶଳୀ ନେତା । ଏହି ପ୍ରବେଶର ସଂପୂର୍ଣ୍ଣ ସଦୁପଯୋଗ ସେମାନେ କରନ୍ତି । ବାଂଲା କଂଗ୍ରେସ ଦ୍ୱିଧା ବିଭକ୍ତ ହୋଇଯାଏ ଏବଂ ବାଂଲା କଂଗ୍ରେସ ବ୍ୟତିରେକ ବାମପନ୍ଥୀମାନେ ଶାସନ କ୍ଷମତାକୁ ଆସନ୍ତି । ସେଇ ଶାସନ ଚାଲିଛି ଏ ପର୍ଯ୍ୟନ୍ତ ।

ଏଇପରି ଗ୍ୟାପ ସମୟରେ ଅଜୟ ମୁଖର୍ଜୀଙ୍କ ସହିତ ସାକ୍ଷାତ ହୁଏ । ରହୁଥାନ୍ତି ଆଲିପୁରରେ ତାଙ୍କ ଆଉ ଏକ ଭାଇର ପୁଅ ସହିତ । ସେ କେନ୍ଦ୍ର ସରକାରଙ୍କ କର୍ମଚାରୀ । ସାନଭାଇ ବିଶ୍ୱନାଥର ପିଲାପିଲି କେହି ନାହାନ୍ତି । ଗାନ୍ଧିଜୀଙ୍କ ଶତବାର୍ଷିକୀରେ କଟକରେ ଭାଷଣ ଦେବାକୁ ନିମନ୍ତ୍ରଣ କରିବା ପାଇଁ ଯାଇଥିଲି । ତାଙ୍କର ପାର୍ଟି ସେକ୍ରେଟେରୀ ସୁନୀଲବାବୁ ଭାରି କଡ଼ା ଲୋକ । ସିଧାସଳଖ ମନାକରିଦେଲେ । ଆଗରେ ନିର୍ବାଚନ ।

ତାଙ୍କର ପ୍ରତ୍ୟେକ ଦିନ ନୁହେଁ, ପ୍ରତ୍ୟେକ ବେଳାର କାର୍ଯ୍ୟ ସ୍ଥିର ହୋଇଯାଇଛି । ତଥାପି କ'ଣ ହେଉଛି ଦେଖାଯାଉ ଭାବି ଅଜୟ ବାବୁଙ୍କ ସହ ସାକ୍ଷାତ କଲି । କଟକକୁ ନିମନ୍ତ୍ରଣ କରିବା ପାଇଁ । ବୟସରେ ପୁଅଭଳି । ଅଜୟବାବୁ ମନା କରି ପାରୁନାହାନ୍ତି କି ହଁ ଭରି ପାରୁନାହାନ୍ତି । ଡକାଇ ପଠାଗଲା ସେକ୍ରେଟାରୀଙ୍କୁ । ଭୀମମୂର୍ତ୍ତି ଧାରଣ କରୁଥିବା ସେକ୍ରେଟେରୀ ଅଜୟବାବୁଙ୍କ ପାଖରେ ନୀରବରେ ଠିଆହେଲେ । ଯିବାକୁ ତ ହେବ । ଦେଖିଲେ କେଉଁଦିନ ଯାଇପାରିବି ? ନିଜର କାମ ପାଇଁ ଗୋଟିଏ ଦିନର ଉପରବେଳା ଖାଲି ଅଛି । ସେକ୍ରେଟାରୀ ଉତ୍ତର ଦେଲେ । ବାସ୍, ସେଇଦିନ ଯିବି । ମୋର ବ୍ୟକ୍ତିଗତ କାର୍ଯ୍ୟ ବାକି ରହିବ ପଛକୁ । ଉପରବେଳା ଯାଇ ତା'ପରଦିନ ସକାଳେ ଫେରି ଆସିବେ । ସମସ୍ତେ ନିରସ୍ତ ।

ଖାଇବା ମେନୁ ଡାକିଲେ ସେକ୍ରେଟେରୀ । ଅଜୟବାବୁ ବହୁମୂତ୍ର ରୋଗୀ । ଚାଉଳ ଖାଇବେ ନାହିଁ, ଚିନି ଖାଇବେ ନାହିଁ, ଆଳୁ..... ।

ଥାଉ, ଥାଉ, ସେତିକି ଥାଉ । ଏପରି ତାଲିକା ଦେବା ଅର୍ଥ ସେମାନଙ୍କୁ ମନା କରିବା ମୋତେ ଡାକିବା ପାଇଁ । ମୋତେ ଲକ୍ଷ୍ୟ କରି କହିଲେ ମୁଁ ବହୁମୂତ୍ର ରୋଗୀ । ମୋ ଖାଦ୍ୟ ସେଇ ଅନୁଯାୟୀ କରିବ ।

ଅଜୟ ମୁଖର୍ଜୀ ଜଣେ ପ୍ରସିଦ୍ଧ ବକ୍ତା ଭାବରେ ଖ୍ୟାତ । ତାଙ୍କ ଭାଷଣ ଶୁଣିବା ପାଇଁ ପ୍ରବଳ ଜନସମାଗମ । ଅଜୟ ମୁଖର୍ଜୀ କହୁଛନ୍ତି ।

''ଆଜିକାଲି ବଙ୍ଗଦେଶର ପାଠ୍ୟପୁସ୍ତକରେ ମାତଙ୍ଗିନୀ ହାଜରାର କଥା ପଢ଼ାଯାଏ । ମାତଙ୍ଗିନୀ ଥିଲା ବିଧବା, ଯୁବତୀ । ସେଦିନ । ଚନ୍ଦ୍ରାତପ ରାତ୍ରି । ଦୂରରେ ବ୍ରିଟିଶ ସୈନ୍ୟବାହିନୀର ଶିବିର ଚନ୍ଦ୍ରାଲୋକରେ ସ୍ପଷ୍ଟ ଦେଖାଯାଉଛି । ମାତଙ୍ଗିନୀ ଆସି ମୋତେ ନିବେଦନ କଲା । ଦାଦା, ମୋର ଗୋଟେ ଅନୁରୋଧ ରକ୍ଷା କରିବ । ରବୀନ୍ଦ୍ରନାଥଙ୍କର 'ଦେବତାର ଗ୍ରାସ' କବିତା ମନେପଡିଲା । ''ଦୁଖାନି କରୁଣ ଆଖି, ବିଧବା ଯୁବତୀ, ଅନୁରୋଧ ତାର ଏଡ଼ାନୋ କଠିନ ବଡ଼'' ବାଧ ହୋଇ ହଁ କଲି । ସେ କହିଲା, ଦାଦା, ମୁଁ କାଲି ପତାକା ନେଇ ଯିବି । ମୁଁ ଚମକି ପଡ଼ିଲି । ମାତଙ୍ଗିନୀ, ତୋତେ... ''ଅଜୟ ମୁଖର୍ଜୀଙ୍କର କଣ୍ଠ ବାଷ୍ପାକୁଳ ହୋଇ ଉଠୁଛି । ଗମ୍ଭୀର କଣ୍ଠରୁ ହୋସ୍ ପାଇପରୁ ପାଣି ବାହାରିଲା ପରି ଧ୍ୱନିତ ହେଉଛି ସ୍ୱର ।'' ମାତଙ୍ଗିନୀ ଯାଇଛି, ଆଉ ଫେରି ନାହିଁ । କିନ୍ତୁ ତା'ର ଚିତ୍ରପଟ ଆଜି ମଧ୍ୟ ମେଦିନୀପୁରର ଆକାଶରେ ଉଷାର ଆଲୋକ ଭଳି ଉଜ୍ଜଳି ଉଠୁଚି ।

ଦର୍ଶକମଣ୍ଡଳୀ ସ୍ତବ୍ଧ । ସମସ୍ତେ ଯେପରି ଏକ ସିନେମା ଦେଖୁଛନ୍ତି । ମାତଙ୍ଗିନୀର ଚିତ୍ରପଟ ଝଲସି ଯାଉଛି ଆକାଶର ପର୍ଦ୍ଦାରେ ।

ଅଜୟ ମୁଖର୍ଜୀଙ୍କ ସହିତ ବହୁବାର ନିର୍ବାଚନ ଯୁଦ୍ଧ ହୋଇଛି ସାନଭାଇ ବିଶ୍ୱନାଥ ମୁଖର୍ଜୀଙ୍କ ସହିତ । ସାନଭାଇ ହାରି ଯାଇଛନ୍ତି । କିନ୍ତୁ ସେ ହାରୁ ବା ଜିତୁ, ସେ ବିଶ୍ୱନାଥ, ଅଜୟଙ୍କର ସାନଭାଇ । ସାନଭାଇ ଶୋଇଚି ଖଟରେ । ଶୀତଦିନ ଚଦର ନାହିଁ । ନିର୍ବାଚନ ପ୍ରଚାରରୁ ଫେରି କ୍ଳାନ୍ତ ହୋଇ ଶୋଇଯାଇଛି ସେ । ଅଜୟ ନିଜର ଘୋଡ଼ିହେଲା ଚାଦରଟିକୁ ତା'ଉପରେ ଘୋଡ଼ାଇ ଦେଇ ଚାଲିଯାଇଛନ୍ତି ନିର୍ବାଚନ ପ୍ରଚାରରେ ।

ଅଜୟ ମୁଖର୍ଜୀ ଆଉ ନାହାନ୍ତି । ପରିଣତ ବୟସରେ ପରଲୋକ ହୋଇ ଯାଇଛି । ଉତ୍ତରପୀଢ଼ି ପାଇଁ ସେ ଛାଡ଼ିଯାଇଛନ୍ତି ଏକ ବଳିଷ୍ଠ ପରମ୍ପରା, ଐତିହ୍ୟ ।

❑❑❑

# ଅମଲ ଦା'

## (୰ ଅମଲ କୃଷ୍ଣ ରାୟ)

ତମେ ବାହୁଡ଼ିବା ଦୁଇବର୍ଷ ହୋଇଗଲାଣି ଏହା ଭିତରେ ବୋଲି ତମର ସ୍ମାରକୀ ସଭାର କାର୍ଡ଼ କହୁଛି । କିନ୍ତୁ ତମେ ଆମ ମଧ୍ୟରେ ରହିଛ ସେଇଭଳି ଜୀବନ୍ତ, ସବୁଜ, ହସହସ ।

କାହିଁକି ? ତମେ ଅଛ । ସୁନ୍ଦରଗଡ଼ର ହକି ଖେଳାଳିମାନେ ଆଜି ଭାରତର ଗୌରବ ଟିକା ବହନ କରିଛନ୍ତି । ତମର ମନେ ପଡ଼ୁଛି ? ତମେ ଆଉ ପ୍ରଭାତ ଯାଇଥିଲ ପ୍ରତିଭାର ସଂଧାନରେ ରାଜଗାଙ୍ଗପୁର, ସୁନ୍ଦରଗଡ଼ । କଟକରେ ଜାତୀୟ ହକି ପ୍ରତିଯୋଗିତା ମନେ ପଡ଼ୁଛି ? ପ୍ରଥମଥର ପାଇଁ ସେମାନେ ଆସିଥିଲେ ଜାତୀୟ ବଳୟ ଭିତରକୁ । ଆଉ ପଛକୁ ଅନେଇ ନାହାନ୍ତି ।

ଆଜି କାଶ୍ମୀରର ଝିଅ ସେହେନାଜ ପାଇଁ ତନାଘନା ଲାଗିଛି । ତମର ମନେ ପଡ଼ୁଛି କଲ୍ୟାଣ ମଜୁମଦାର କଥା ? ଆଜିକୁ ଛଅ ଦଶନ୍ଧି ତଳର କଥା । ନୁହେଁ ? ପ୍ରବଳ ପ୍ରତାପୀ ୰ ଡକ୍ଟର ବିଧାନ ଚନ୍ଦ୍ର ରାୟଙ୍କର ଚିଠି ନେଇ ସେମାନେ ଆସିଥିଲେ । କିନ୍ତୁ ତମର, ପ୍ରବୀର ଦାସ ବୁଦ୍ଧି ଆଗରେ ହାର ମାନିଥିଲେ ସେମାନେ । ଇତିହାସର ପୃଷ୍ଠାରେ କଲ୍ୟାଣ ଦା ଠାରୁ ଆଜି ସେହେନାଜ ପର୍ଯ୍ୟନ୍ତ, କେତେ ଯୁବକ ଯୁବତୀ । ତମେ ମନେପଡ଼ ।

ଭୁବନେଶ୍ୱରରେ ସେଦିନ, କଟକ ମେଡ଼ିକାଲରେ, ତା'ପରେ ଛାତ୍ରୀ ଆତ୍ମହତ୍ୟା କରିଛି ଶିକ୍ଷକର ଉତ୍ପୀଡ଼ନ ବିରୁଦ୍ଧରେ ଅଭିଯୋଗ କରି । ତମର ମନେ ପଡ଼ୁଛି ସାମନ୍ତ ଚନ୍ଦ୍ର ଶେଖର କଲେଜ, ପୁରୀ କଥା । କେତେ ଦଶନ୍ଧି ହେଲାଣି କହିଲ ? ଉତ୍ପୀଡ଼କ ଶିକ୍ଷକ ବିରୁଦ୍ଧରେ ତମର ଦୃପ୍ତ ଆବାଜ । ପ୍ରତିଧ୍ୱନି ଶୁଭୁଛି ।

ମନେ ପଡ଼ୁଛି । ଟିକର ପାଇଁ ଉତ୍ପୀଡ଼ିତ ମଣିଷର କଥା । ସମସ୍ତେ ଧନୀ ନୁହନ୍ତି । ଦୋକାନୀ, ଛୋଟ ଅଫିସର, କ୍ଷୁଦ୍ର ବ୍ୟବସାୟୀ, ମାଛ ବିକାଳି, ସେମାନେ ଖୋଜନ୍ତି ସାହାଯ୍ୟ । ଖାଲି ଓକିଲର ନୁହେଁ ଏକ ହାସ୍ୟ ଗୁଣର ମଣିଷର । ଯାହାର ବନ୍ଧୁ ପରି ହସ୍ତ

ସମ୍ପ୍ରସାରିତ ଛୋଟଠାରୁ ବଡ଼ ସବୁ ମଣିଷ ପାଇଁ । ତମେ ଆଉ ନାହଁ । ଏଇ କଥାଟିକୁ ହେଜୁଛି ସାଧାରଣ ମଣିଷ । ଆଉ ସେଇଥିରେ ତ ତମେ ବଞ୍ଚି ରହିଛ ।

କାଠଯୋଡ଼ି କୂଳ । କେତେ ଲୋକ ସାନ୍ଧ୍ୟ ଭ୍ରମଣରେ ଚାଲିଛନ୍ତି । ପ୍ରତ୍ୟେକ ଦିନ । ବଂଶୀଧର ଜେଠୀ ଗଲେଣି । ପୁରୁଣା ଖେଳାଳିମାନେ ପ୍ରାୟ ସମସ୍ତେ ବାହୁଡ଼ି ସାରିଛନ୍ତି । ତମର ସମସାମୟିକମାନେ, ଯେଉଁ କେତେ ଜଣ ହାତଗଣନ୍ତା ଅଛନ୍ତି ସେମାନେ ତୁମକୁ ଅପେକ୍ଷା କରିଛନ୍ତି । ତମେ ଆସିନାହଁ, ଏଇ ଆସିବ । ଯିବ ସେଇ ବାଟରେ । ଅପେକ୍ଷା ଖାଲି ଅପେକ୍ଷା ।

ରେଭେନ୍ସା କଲେଜ ପଡ଼ିଆରେ ଖେଳ ହେଉଛି । ତମର ମନେ ପଡୁଛି, ଫୁଟବଲ, ହକି ଖେଳ । ବଚନ, ଆଲାମ, ଗୋପାଳ ସମସ୍ତେ ଗଲେଣି । ସେମାନେ ସମସ୍ତେ ଇତିହାସ ଉତ୍ତର ପୀଢ଼ିପାଇଁ, ତମରି ଭଳି । ରେଭେନ୍ସା ବିଶ୍ୱବିଦ୍ୟାଳୟ ହୋଇଛି । ତମର ପଦଧ୍ୱନି ଶୁଭୁଚି । ପୂର୍ବ ପୁରୁଷର ପଦଧ୍ୱନି, ଉତ୍ତର ପୁରୁଷ ପାଇଁ ।

ଆଉ ସିମିତି ଖଟି ଅଛି କି ନାହିଁ ଜାଣେ ନାହିଁ । ତେବେ କଲେଜଛକର ବଡ଼ୁଭାଇ, ବାଲୁବଜାର, ଶାହେବଜାଦା ବଜାରର ଚାହା ଖଟି ମନେ ପଡୁଛି ? ତମେ ତ କିନ୍ତୁ ନାହଁ । ସେ ଖଟି, ପୁରୁଣା ଖଟି ସବୁ ଭାଙ୍ଗି ଗଲାଣି । ନୂଆ ଖଟି, ନୂଆ ଗରାଖ । ସେମାନଙ୍କ ଭିତରୁ କିଛି ପୁରୁଣା ଗରାଖଙ୍କୁ ମନେ ରଖିଛନ୍ତି । ସେମାନଙ୍କୁ ହେଜନ୍ତି । ଚାହା ଖଟିଟା ଆଉ ଜମୁ ନାହିଁ ।

ତମେ ଆଉ ନାହଁ । କିନ୍ତୁ ଅଛି ସବୁଜ, ହସ ହସ ଜୀବିତ ସେଇ ମାନଙ୍କ ଭିତରେ ଯେଉଁମାନେ ତୁମକୁ ଦେଖିଛନ୍ତି, ଜାଣିଛନ୍ତି । ପାଇଛନ୍ତି ସଖ୍ୟ, ସହଯୋଦ୍ଧୃତ୍ୱ । କେତେ କଥା ହାତୁକାମାରେ, ମନକୁ ଆଖିକୁ ରୁନ୍ଧିଦିଏ । ମନେପଡ଼େ କେତେ ଜନଆନ୍ଦୋଳନ କଥା । ଦରମା ବୃଦ୍ଧି ବିରୋଧୀ ଆନ୍ଦୋଳନଠାରୁ ସୀମା ଆନ୍ଦୋଳନ । ତମେ ମନେ ପଡ । ଇତିହାସ ମଥାପିଟେ ସମୟର ବେଦୀରେ ।

ତମେ ନାହଁ, କିନ୍ତୁ ତମେ ଅଛ । ତୁମକୁ ପ୍ରଣାମ ।

□□□

# ଅଭୟର ନିର୍ଭୟ ରାଜ୍ୟକୁ ଯାତ୍ରା

*(ଂ ଅଭୟ କୁମାର ପଟ୍ଟନାୟକ)*

ମୃତ୍ୟୁର ଜୟଧ୍ୱନି ଶୁଭି ଚାଲିଛି ଜୀବନ ଉପରେ । କନିଷ୍ଠ ସମସାମୟିକମାନେ ହଜି ଯାଉଛନ୍ତି ମହାକାଳ ଗର୍ଭରେ । ଅଭୟ କୁମାର ପଟ୍ଟନାୟକ ଆଖି ବୁଜିଦେଇଛନ୍ତି ମୃତ୍ୟୁ ସହିତ କଠୋର ସଂଗ୍ରାମ କରି ପନ୍ଦର ଦିନକାଳ କଳିଙ୍ଗ ହସ୍‌ପିଟାଲରେ ତିନ ଅଗଷ୍ଟ୍‌ ୨୦୦୬ ମସିହାରେ । ପାଖରେ ଘେରି ରହିଛନ୍ତି ସ୍ତ୍ରୀ ଅତସୀ, ଦୁଇ ପୁତ୍ର, କିଛି ଆତ୍ମୀୟ ସ୍ୱଜନ ଏବଂ ବନ୍ଧୁ ।

୧୯ ଅଗଷ୍ଟ, ୧୯୩୯ ମସିହା ଉଦୟନାଥ ପଟ୍ଟନାୟକଙ୍କ ତୃତୀୟ ପୁତ୍ର ଏବଂ ଷଷ୍ଠ ସନ୍ତାନଟିଏ ଜନ୍ମ ଗ୍ରହଣ କରେ ଭଂଜନଗରରେ (ତତ୍‌କାଳୀନ ରସେଲକୋଣ୍ଡା ସହର) ଦ୍ୱିତୀୟ ମହାଯୁଦ୍ଧର ଆରମ୍ଭ ସମୟ । ପିତା ଉଦୟନାଥ ଚାହିଁଥିଲେ ସାମରିକ ବାହିନୀରେ ଯୋଗଦେବା ପାଇଁ । ବାପାଙ୍କ ମାମୁଁ ଲକ୍ଷ୍ମୀନାରାୟଣ ଓ ମାମୁଁ ପୁଅ ସାନ ଭାଇ ବିଙ୍କୁ ପଟ୍ଟନାୟକ ତାଙ୍କୁ ଉତ୍ସାହିତ କରିଥିଲେ କିନ୍ତୁ ନବଜାତ ପୁତ୍ର ପରିବାରର ଉପସ୍ଥିତ ଦାୟିତ୍ୱ ତାଙ୍କୁ ସେଥିରୁ ନିବୃତ୍ତ କରିଥିଲା ।

କିନ୍ତୁ ସେଇ ପୁତ୍ର ଯେ ଦିନେ ସାମରିକ ବାହିନୀରେ ଯୋଗ ଦେଇ ଭାରତର ସୀମାନ୍ତ ରକ୍ଷାରେ ଆପଣାର ଦାୟିତ୍ୱ ତୁଲାଇବ ଏକଥା କିଏ ଜାଣିଥିଲା ?

ଅଭୟ କୁମାର ପାଠ ପଢ଼ନ୍ତି ଭଂଜନଗର ବୌଦ ଫୁଲବାଣୀ ଓ ଗୁଣୁପୁରରେ ମାଟ୍ରିକ ପାଶ କଲାପରେ ନାମ ଲେଖାନ୍ତି ବ୍ରହ୍ମପୁର ଇଂଜିନିଅରିଙ୍ଗ ସ୍କୁଲରେ । କିନ୍ତୁ ହରାଇ ବସନ୍ତି ଆପଣାର ପିତାଙ୍କୁ ହଠାତ୍ ।

ନୂଆ ଚାକିରିରେ ଯୋଗ ଦେଇଥିବା ଆପଣାର ବଡ଼ଭାଇଙ୍କୁ ବିଶାଳ ପରିବାରର ଦାୟିତ୍ୱ ମୁଣ୍ଡାଇବାରେ ସାହାଯ୍ୟ କରିବାପାଇଁ ପାଠ ପଢ଼ାରେ ଡୋର ବାନ୍ଧି ସାମରିକ ବାହିନୀରେ ଯୋଗ ଦିଅନ୍ତି । ଏଇ ଦାୟିତ୍ୱ ସମ୍ପନ୍ନ କରିବା ପାଇଁ ସେ ନିଜ ସାନଭଉଣୀର ବିବାହରେ ଆପଣାର ସଦ୍ୟ ବିବାହିତ ବଧୂର ସବୁ ଗହଣା ଓ ସାମଗ୍ରୀ ଅର୍ପଣ କରନ୍ତି ନିର୍ଲିପ୍ତ ଭାବରେ ।

ସାମରିକ ବାହିନୀର ବେତାର ବିଭାଗରେ ସେ କାମ କରନ୍ତି ବହୁବର୍ଷ ଦେଶର ସୀମାନ୍ତରେ ଏବଂ ଅବସର ନେଇ ରହନ୍ତି ଭୁବନେଶ୍ୱରରେ । ପ୍ରତିଷ୍ଠା କରନ୍ତି ଏକ ଫାର୍ମ ଖୋର୍ଦ୍ଧା ପାଖ ଜଂକିଆରେ । ଇଚ୍ଛା ଥିଲା ଦୁଇ ପୁତ୍ରଙ୍କୁ ଉପଯୁକ୍ତ ଶିକ୍ଷାଦେଇ ଏଇଠି କାଟିବେ ବାକିତକ ଜୀବନ, ଘରେ ସ୍ତ୍ରୀ ଅସୁସ୍ଥ । ଘରେ ବିଧବା ଶାଶୁ ଅସୁସ୍ଥ ।

ପୁଅ ଦୁହିଁଙ୍କୁ ଉଚ୍ଚ ଶିକ୍ଷା ଦେଇଛନ୍ତି ଅଷ୍ଟ୍ରେଲିଆରେ । ତାଙ୍କ ପାଇଁ ବାଜିଲଗାଇଛନ୍ତି ଆପଣାର ଭୂସମ୍ପତ୍ତି, ଘର ଖଣ୍ଡିଏ କରି ନାହାନ୍ତି ନିଜ ପାଇଁ । ତଥାପି ସଦା ହସହସ ବିନୟୀ ଏବଂ ବଂଧୁବତ୍ସଳ ।

ପୁଅ ଦୁହେଁ ପାରି ଉଠିଲେଣି; କିନ୍ତୁ ନିଜେ ଅସୁସ୍ଥ ହୋଇ ଉଠିଲେଣି । ତା'ପରେ ହଠାତ୍ ଷ୍ଟ୍ରୋକ୍ । ମସ୍ତିଷ୍କରେ ରକ୍ତସ୍ରାବ । ଆଉ ତା'ପରେ ସେ ଚାଲିଗଲେ ସେଇଠିକୁ, ଯେଉଁଠାରୁ କେହି କେବେ ଫେରି ନାହାନ୍ତି ।

ସ୍ୱର୍ଗ ଦ୍ୱାରରେ ଚିତା ଜଳୁଛି, ଲହ ଲହ ଶିଖା । ଖାଲି ଲୁହ ଏବଂ ଶୋକ । ଆହା, ଆହା ଭିତରେ ତାଙ୍କର ବିଦାୟ । ସେ ପାଲଟି ଯାଉଛନ୍ତି ପରମ୍ପରା, ଇତିହାସ ।

ooo

# ଶିକ୍ଷାଗୁରୁର ଶେଷଯାତ୍ରା

*(ସ୍ୱ ଆଚାର୍ଯ୍ୟ ହରିହର ଦାସ)*

ନିର୍ବାଚନର ହିଂସ୍ର ପ୍ରତିଯୋଗିତାର କୋଳାହଳ ଭିତରେ ଶୁଭିଲା 'ଭଲ ମଣିଷ'ର ପରଲୋକ ସମ୍ବାଦ । ସମସ୍ତେ ଥମକି ଠିଆହେଲେ । ନିର୍ବାଚନ ଯାହା ପାଇଁ ଅନାବଶ୍ୟକ, ସେଇଭଳି ଏକ ମଣିଷ ଛାଡ଼ି ଚାଲିଗଲା । ପ୍ରଣାମର ଉତ୍ତରରେ ସେ ସମସ୍ତଙ୍କୁ ଆଶୀର୍ବାଦ କରି କହୁଥିଲେ, ବାପା, ଭଲ ମଣିଷ ହୁଅ । ମଣିଷକୁ ସେ ଦେଖୁଥିଲେ ସମସ୍ତଙ୍କ ଉପରେ, ନିର୍ବାଚନ, କ୍ଷମତା, ସମ୍ପତ୍ତି, ପ୍ରତିଷ୍ଠା ସବୁର ଉପରେ । ସେଇ 'ଭଲ ମଣିଷ' ଆଚାର୍ଯ୍ୟ ହରିହରଙ୍କର ପରଲୋକ ହୋଇଯାଇଛି, ତାଙ୍କର ଶେଷ ଆଶ୍ରୟସ୍ଥଳ ଭୂଦାନ ଅଫିସରେ । ଏକ ବିଶାଳ, ମହାନ ଜୀବନର ଶେଷ ଯବନିକା ପଡିଛି । ତାଙ୍କର ପରଲୋକରେ ଆଜି ପତାକା ଅର୍ଦ୍ଧନମିତ ହେବ କି ନାହିଁ, ରାଷ୍ଟ୍ରୀୟ ସମ୍ମାନ ସହ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ ହେବ କି ନାହିଁ, ଖବରକାଗଜର ପ୍ରଥମ ପୃଷ୍ଠାରେ ତାଙ୍କର ପରଲୋକ ସମ୍ବାଦ ଛପାଯିବ କି ନାହିଁ ମୁଁ ଜାଣି ନାହିଁ । କାରଣ ପ୍ରୋଟୋକଲର ଧାରାରେ ସିଏ ପଡ଼ିବେ ନାହିଁ । ଜୀବନରେ ସବୁ ପ୍ରୋଟୋକଲକୁ ଯିଏ ଚିରଦିନ ଅସ୍ୱୀକାର କରି ଆସିଛି, ସେ ଆଜି ସେଇ ଧାରାରେ ନ ପଡିବା ତ ହିଁ ସ୍ୱାଭାବିକ । ଏହା ସତ୍ତ୍ୱେ ଆଜି ତାଙ୍କୁ ଜାଣିଥିବା ସବୁ ବ୍ୟକ୍ତି, ଦଳ, ମତ, ଗୋଷ୍ଠୀ ନିର୍ବିଶେଷରେ ସମସ୍ତେ ମଥା ଅବନତ କରି ତାଙ୍କୁ ସମ୍ମାନ ଜଣାଇ ଠିଆହେବେ । କାରଣ ଆଚାର୍ଯ୍ୟ ହରିହର ଆଉ ଜଣେ ବ୍ୟକ୍ତି-ବିଶେଷ ନଥିଲେ, ତ୍ୟାଗ, ମାନବିକତାର ସେ ଥିଲେ ପ୍ରତିଭୂ, ସନ୍ତକ ।

ଆଚାର୍ଯ୍ୟ ହରିହର ସତ୍ୟବାଦୀଯୁଗର ପଞ୍ଚସଖାଙ୍କ ଭିତରେ ଶେଷ ସଖା । ଏହା ପୂର୍ବରୁ ଗୋପବନ୍ଧୁ, କୃପାସିନ୍ଧୁ, ନୀଳକଣ୍ଠ ଏବଂ ଗୋଦାବରୀଶ ବାହୁଡ଼ି ସାରିଛନ୍ତି । ପଞ୍ଚସଖାଙ୍କ ମଧ୍ୟରୁ କୃପାସିନ୍ଧୁ ଅନେକ ଦିନ ଆଗରୁ ବାହୁଡ଼ି ଯାଇଛନ୍ତି । ଆଚାର୍ଯ୍ୟ ହରିହର ବୋଧହୁଏ ଏକମାତ୍ର ସଖା ଯେ ବିଧାନସଭା, ଲୋକସଭା ବା ଲେଜିସ୍‌ଲେଟିଭ କାଉନ୍‌ସିଲ୍ ପାଇଁ ପ୍ରାର୍ଥୀ ହୋଇନାହାନ୍ତି । ଚଳିତ ଶତାବ୍ଦୀର ତୃତୀୟ ଦଶକରେ ସେ ଜିଲ୍ଲାବୋର୍ଡ ପାଇଁ ଥରେ ନିର୍ବାଚନରେ ପ୍ରାର୍ଥୀ ହୋଇଥିଲେ । ତା'ପରେ ସେ ଫେରି ଯାଇଥିଲେ ଜନସେବାକୁ ।

ତାହା ହିଁ ତାଙ୍କୁ ମଣ୍ଡିଥିଲା । ସେଇଥିରେ ହିଁ ସେ ଶୋଭା ପାଉଥିଲେ । ତାଙ୍କ ନାଁ ପଛରେ ଏମ.ଏଲ୍. ଏ. ବା ଏମ୍. ପି. ଶବ୍ଦ ଅଖାଡୁଆ ଲାଗିଥାଆନ୍ତା । ସଂସାର ପାତିବା ପୂର୍ବରୁ ସଂସାର ତାଙ୍କୁ ପରିତ୍ୟାଗ କରିଥିଲା । ସେ ଆଉ ସଂସାର ପାତି ନାହାନ୍ତି । ସମଗ୍ର ମଣିଷ ସମାଜ ତାଙ୍କର ସଂସାର ପାଲଟିଗଲା । ସମସ୍ତେ ତାଙ୍କର ଭାଇ, ଭଉଣୀ, ପୁଅ, ଝିଅ, ନାତି, ନାତୁଣୀ । ସେ ଶିକ୍ଷକତାକୁ ଜୀବନର ଲକ୍ଷ୍ୟ କରିଗଲେ । ପାଠ ପଢ଼ାଇଲେ ସତ୍ୟବାଦୀରେ ଗୋଟିଏ ବଂଶଧର ପରେ ଆର ପୀଢ଼ିକୁ । ଦଦେଇ ପୁଲିସ ହାକିମ ଲକ୍ଷ୍ମଣ ମିଶ୍ର । ତାଙ୍କର ଯେପରି ଛାତ୍ର ପୁତୁରା, ଡକ୍ଟର ସଦାଶିବ ମିଶ୍ର ସେଇପରି ଛାତ୍ର । ସେ ଶିକ୍ଷା ଖାଲି ବହି ପୁସ୍ତକ ପଢ଼ାରେ ସୀମିତ ନଥିଲା; ସେ ଶିକ୍ଷା ଥିଲା ତାଙ୍କର ଦୀକ୍ଷା, ଜୀବନର ଦୀକ୍ଷା ।

ଆଚାର୍ଯ୍ୟ ହରିହର ଓଡ଼ିଶାର ବହୁ ବ୍ୟକ୍ତିଙ୍କର ଶିକ୍ଷକ । ଏପରି ଅନେକ ବ୍ୟକ୍ତି ଅଛନ୍ତି ଯେଉଁମାନେ ଆଚାର୍ଯ୍ୟଙ୍କର ଜୀବନାଦର୍ଶର ଧାର ଧାରନ୍ତି ନାହିଁ, କିନ୍ତୁ ସମ୍ମାନ ଜଣାନ୍ତି, ମୁଣ୍ଡ ନୁଆଁନ୍ତି । ତ୍ୟାଗର, ସାରଲ୍ୟର କୌଣସି ବିକଳ୍ପ ନାହିଁ । ତା'ଆଗରେ ସମସ୍ତେ ମୁଣ୍ଡ ନୁଆଁଇବାକୁ ବାଧ ।

ଆଚାର୍ଯ୍ୟ ଜଣେ କଂଗ୍ରେସ କର୍ମୀ ଭାବରେ ଜୀବନ ଆରମ୍ଭ କରିଥିଲେ । ସେ କଂଗ୍ରେସ ଥିଲା ତ୍ୟାଗର କଂଗ୍ରେସ । ଦେଶର ମୁକ୍ତିସଂଗ୍ରାମର ଅଗ୍ରଣୀ କଂଗ୍ରେସ । ଭୋଗର କଂଗ୍ରେସ ଆରମ୍ଭ ହୋଇନଥିଲା । କିନ୍ତୁ ଏଭଳି ଏକ ବିପଦର ସଙ୍କେତ ଯେଉଁମାନେ ଆଗରୁ ଦେଖି ପାରିଥିଲେ ସେମାନଙ୍କ ମଧ୍ୟରେ ଆଚାର୍ଯ୍ୟ ଅନ୍ୟତମ । ସ୍ୱାଧୀନତା ଆସିବ ସମସ୍ତଙ୍କ ପାଇଁ, ଗୋଟିଏ ଗୋଷ୍ଠୀ ପାଇଁ ନୁହେଁ । ଜମିର ମାଲିକାନା ଗୋଟିଏ ଗୋଷ୍ଠୀ ହାତରେ ରହିବ ନାହିଁ, ଜମିର ବଣ୍ଟନ ହେବ । ଆଚାର୍ଯ୍ୟ ମହାଶୟଙ୍କର ମତରେ ବୁଝାଇ ଶୁଝାଇ ଜମି ବଣ୍ଟନ କରିହେବ । ଆଚାର୍ଯ୍ୟ ବିନୋବା ଭାବେଙ୍କର ନେତୃତ୍ୱରେ ଆଚାର୍ଯ୍ୟ ହରିହର ଓଡ଼ିଶାରେ ସେଇ କାର୍ଯ୍ୟରେ ବ୍ୟାପୃତ ହେଲେ । ତାହା କେତେ ସଫଳ ହେଲା ସ୍ୱତନ୍ତ୍ର କଥା । କିନ୍ତୁ କରିବା ମଣିଷର ନିଷ୍ଠା ତଦ୍ୱାରା କ୍ଷୁର୍ଣ୍ଣ ହୁଏ ନାହିଁ । ଆଚାର୍ଯ୍ୟ ମହାଶୟ ଜମି ବଣ୍ଟନର ଆବଶ୍ୟକତା ପାଇଁ ପଥ ଉନ୍ମୁକ୍ତ କରିଦେଲେ । ଦେଶରେ ଦ୍ୱିତୀୟ ସ୍ୱାଧୀନତା ବିପ୍ଳବର ପଥ ଉନ୍ମୋଚନ କରିଗଲେ ।

ଏଇଭଳି ମଣିଷର ଆବଶ୍ୟକତା ଦେଶରେ ବହୁତ । କାରଣ ତ୍ୟାଗ, ମୂଲ୍ୟବୋଧର ଅବକ୍ଷୟ ଦେଶରେ ବ୍ୟାପକ ଭାବରେ ଦେଖାଦେଇଛି । ଠିକ୍ ଏତିକିବେଳେ ଆଚାର୍ଯ୍ୟଙ୍କର ବିଦାୟ । କ୍ଳାନ୍ତ, ଅବସନ୍ନ ମଣିଷ ତାଙ୍କୁ ଝୁରିବ ବହୁକାଳ ଧରି ।

□□□

# ମହାଯାତ୍ରୀର ମହାଯାତ୍ରା

## (୰ ଆର୍ତ୍ତବଲ୍ଲଭ ମହାନ୍ତି)

ସାରଳା ଦାସଙ୍କର ମହାଭାରତର ସମ୍ପାଦନା ସରିଆସିଲାଣି । ପାଣ୍ଡବମାନଙ୍କର ମହାଯାତ୍ରା ବର୍ତ୍ତମାନ ଚାଲିଛି । ଏହା ସରିବା ସହିତ ବୋଧହୁଏ ମୋର ମହାଯାତ୍ରା ହୋଇଯିବ । ମାମୁଁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ସେଦିନ ଭଣଜା ବିନୋଦ କାନୁନଗୋଙ୍କୁ କହିଲେ । ଆମେ ସବୁ ବସିଥିଲୁ ତାଙ୍କୁ ଘେରି ଚାରିପଟରେ ।

ସତକୁସତ ସେୟା ହେଲା । ଗଲା କାଲି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ପରଲୋକ ହୋଇଗଲା । ଏବଂ ତାହା ସହିତ ପ୍ରାଚୀନ ଓଡିଆ ସାହିତ୍ୟରେ ଗବେଷଣାର ଏକ ବିରାଟ ଅଧ୍ୟାୟର ପରିସମାପ୍ତି ଘଟିଲା ।

ଅଧ୍ୟାପକ ଆର୍ତ୍ତବଲ୍ଲଭ ଦିନେ ସୁଟ୍ ଟାଇ ପିନ୍ଧୁଥିଲେ । ଟେନିସ୍ ଖେଳୁଥିଲେ, ଫୁଟ୍‌ବଲ ଖେଳୁଥିଲେ । ଅଭିନୟ କରୁଥିଲେ ।

କିନ୍ତୁ ସେଦିନ ଗୋଟାଏ ମୁହୂର୍ତ୍ତ ହଠାତ୍ ଆସି ଉପସ୍ଥିତ ହେଲା । ଏଇ ମୁହୂର୍ତ୍ତରେ ହିଁ ଗୌତମ ପାଲଟିଥିଲେ ବୁଦ୍ଧ । ଜମିଦାର ଲାଲାବାବୁ ପାଲଟିଥିଲେ ସନ୍ନ୍ୟାସୀ । ଧନୀ ବୁଣାକାର କବିର ପାଲଟିଥିଲେ ସନ୍ଥ କବିର । ଏଇଭଳି ଅନେକ ଘଟଣା ପୃଥିବୀରେ ଘଟିଛି । ମଣିଷର ଗୁଣାତ୍ମକ ପରିବର୍ତ୍ତନ ଘଟିଛି ମାନବ ଜାତିର, କଳା, ସାହିତ୍ୟ, ସଂସ୍କୃତିର କଲ୍ୟାଣ ପାଇଁ ।

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ଜୀବନରେ ସେଇପରି ଏକ ମୁହୂର୍ତ୍ତ ପହଞ୍ଚିଥିଲା । ଦେଖାହେଲା ଜମିଦାର ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ରଙ୍କ ସହିତ । ମାହେନ୍ଦ୍ର ମୁହୂର୍ତ୍ତ । ଆଲୋଚନା ହେଲା ଓଡିଆ ପ୍ରାଚୀନ ସାହିତ୍ୟ ଉପରେ । ପ୍ରାଚୀନ ଓଡିଆ ସାହିତ୍ୟ ସମୃଦ୍ଧ । କିନ୍ତୁ ତା'ର ସମ୍ପାଦନା ଓ ଟୀକା ଏକାନ୍ତ ଆବଶ୍ୟକ ଚଳନ୍ତି ପୀଢ଼ି ପାଇଁ, ଓଡିଆ ସାହିତ୍ୟର ସମୃଦ୍ଧି ପାଇଁ । କିନ୍ତୁ ସେଥିପାଇଁ ସାହାଯ୍ୟ ଆବଶ୍ୟକ, ଲୋକ ମଧ୍ୟ ଆବଶ୍ୟକ । ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ର ଉତ୍ତର ଦେଲେ ମୁଁ ସାହାଯ୍ୟ ଦେବା ପାଇଁ ପ୍ରସ୍ତୁତ । କିନ୍ତୁ କରିବ କିଏ ?

କିଏ କରିବ ? ଏଇ ବିରାଟ ଦାୟିତ୍ୱ ବହନ କରିବ କିଏ ? ଏ ପ୍ରଶ୍ନ ଆଜି ମଧ୍ୟ ଉଠେ ବିଭିନ୍ନ କାର୍ଯ୍ୟ ପାଇଁ । କାର୍ଯ୍ୟ ବହୁତ, କିନ୍ତୁ କର୍ମୀ କମ୍ । ଗୋଟିଏ ଦାୟିତ୍ୱ ନେଲେ ସେଥିପାଇଁ କିଛି ତ୍ୟାଗ କରିବାକୁ ପଡେ । ସାମୂହିକ କଲ୍ୟାଣ ପାଇଁ ତ ତ୍ୟାଗର ପରିମାଣ ବେଶି । ତେଣୁ କରିବ କିଏ ?

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର କଣ୍ଠରୁ ନିର୍ଗତ ହେଲା ବାଣୀ ଗୁରୁଗମ୍ଭୀର ସ୍ୱରରେ । ମୁଁ, ମୁଁ ଏ ଦାୟିତ୍ୱ ନେବାକୁ ପ୍ରସ୍ତୁତ । ସମସ୍ତେ ଅନେଇଲେ । ପରିଧାନ ବିଲାତୀ ସୁଟ୍, ହାତରେ ଟେନିସ୍ ର୍‌ୟାକେଟ୍, କହିବାରେ ଅଭିନୟର ଭଙ୍ଗୀ । ସେ କ'ଣ ଦାୟିତ୍ୱ ନେଇପାରିବେ ?

ସବୁ ବଦଳିଗଲା । ସୁଟ୍ ଟାଇ ପରିବର୍ତ୍ତରେ ଧୋତି ଗଳାବନ୍ଦ କୋଟ୍, ଟେନିସ୍ ର୍‌ୟାକେଟ୍ ପରିବର୍ତ୍ତରେ କଲମ, ଲେଖନୀ, ଟେବୁଲ ଚୌକି ପରିବର୍ତ୍ତରେ ସପ ଓ ତକିଆ । ପ୍ରାଚୀ ପ୍ରକାଶନୀର ଜନ୍ମ ହେଲା । ଆରମ୍ଭ ହେଲା ସମ୍ପାଦନା ଓ ଟୀକା । ବିଦଗ୍ଧ ଚିନ୍ତାମଣି, ମଥୁରା ମଙ୍ଗଳ, ରସକଲ୍ଲୋଳ । ସମୟ ଅତିକ୍ରାନ୍ତ ହେବାକୁ ଲାଗିଲା । ସପ ଉପରେ ଶୋଇ ପେଟରେ ତକିଆ ଦେଇ ସାଧନାରେ ବ୍ରତୀ ହେଲେ ଅଧ୍ୟାପକ ଆର୍ତ୍ତବଲ୍ଲଭ । ଓଡ଼ିଆ ସାହିତ୍ୟରେ ନୂତନ ଯୁଗର ଆରମ୍ଭ ହେଲା । ଜମିଲେ ତରୁଣ ଗବେଷକ ଦଳ । କିନ୍ତୁ ତେଣେ ଆର୍ତ୍ତବଲ୍ଲଭଙ୍କର ପେଟମରା ଆରମ୍ଭ ହେଲା । ପେଟମରା ଯନ୍ତ୍ରଣାରେ ଅସ୍ଥିର ଆର୍ତ୍ତବଲ୍ଲଭ ଔଷଧ ଖାଇ, ପେଟକୁ ତକିଆରେ ଚିପି କାମ କରି ଚାଲିଲେ । ମନ୍ତ୍ର ବା ସାଧୟେତ୍, ଶରୀରଂ ବା ପାତୟେତ୍ ।

ଚରୈବେତି, ଚରୈବେତି, ଚରୈବେତି । ଆର୍ତ୍ତବଲ୍ଲଭ ହେଲେ ପ୍ରାଚୀନ ଓଡ଼ିଆ ସାହିତ୍ୟର ଗବେଷଣାରେ ମଉଡମଣି ।

ଆସିଥିଲେ ପ୍ରସିଦ୍ଧ ଶିକ୍ଷାବିତ୍ ପାଟନା ବିଶ୍ୱବିଦ୍ୟାଳୟର କୁଳପତି ଡଃ ସଚ୍ଚିଦାନନ୍ଦ ସିହ୍ନା କଟକକୁ । ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ପରିଚୟ କରାଇ ଦେଉଥିଲେ ଅଧ୍ୟାପକମାନଙ୍କୁ ତାଙ୍କ ସହିତ । ଏ ହେଉଛନ୍ତି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ସଂସ୍କୃତ ଓ ଓଡିଆ ସାହିତ୍ୟର ମୁଖ୍ୟ ଅଧ୍ୟାପକ ନୁହେଁ, ଓଡିଆ ସାହିତ୍ୟର ଅଥରିଟି ମଧ୍ୟ । ସଚ୍ଚିଦାନନ୍ଦ ସିହ୍ନା ଉତ୍ତର ଦେଲେ ଆପଣଙ୍କୁ କିଏ ନଜାଣେ ? ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ସାରା ଭାରତର ସଂସ୍କୃତି ଓ ସାହିତ୍ୟ ଜଗତରେ ପରିଚିତ ।

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ସରକାରୀ ଚାକିରିରୁ ଅବସର ନେଇ ଆପଣାର ଶେଖ୍ ବଜାର ଘରେ ରହିଲେ । କିନ୍ତୁ ଗବେଷଣା କାର୍ଯ୍ୟ ଚାଲୁ ରହିଲା ସେଇପରି । ତାଙ୍କ ଘର ବାଣୀତୀର୍ଥ ପାଲଟିଲା ।

ଆସିଲେ ବହୁ ଅଧ୍ୟାପକ, ଲେଖକ । ଆର୍ତ୍ତ ବାବୁଙ୍କର କାଉଁରୀ ସ୍ପର୍ଶରେ ସେମାନଙ୍କର ନୂତନ ଜୀବନ୍ୟାସ ହେଲା ।

ମାରୱାଡ଼ୀ ହାଇସ୍କୁଲର ପରିଚାଳନା କମିଟିର ସଭାପତି ଅଧ୍ୟାପକ ଆର୍ତ୍ତବଲ୍ଲଭ । ଛାତ୍ରମାନଙ୍କର ଧର୍ମଘଟ ଆରମ୍ଭ ହେଲା । କ'ଣ ସବୁ ଦାବୀ ପୂରଣ ହେଲା ନାହିଁ ବୋଲି । ମନୋଜ ଦାସ (ସେତେବେଳେ ଛାତ୍ରସଂଘର ସଂପାଦକ ଓ ବର୍ତ୍ତମାନ ପଣ୍ଡିଚେରୀ ଆଶ୍ରମର ସାଧକ ପ୍ରଖ୍ୟାତ ସାହିତ୍ୟିକ ମନୋଜ ଦାସ) ଓ ମୁଁ ଯାଇ ପହଞ୍ଚିଲୁ ଆଲୋଚନା ପାଇଁ । କ୍ରୁଦ୍ଧ, ଉତ୍‌କ୍ଷିପ୍ତ ଅଧ୍ୟାପକ ଆର୍ତ୍ତବଲ୍ଲଭ ଦ୍ରୁତଗତିରେ ପଦଚାରଣା କରୁଥାନ୍ତି ମାରୱାଡ଼ୀ ହାଇସ୍କୁଲ ବାରଣ୍ଡାରେ । ଆମେ ଦୁଇଜଣ ଯାଇ ତାଙ୍କୁ ଭୂମିଷ୍ଠ ପ୍ରଣାମ କଲୁ । ଏଇ ମୋର ଠିକ୍ ଛାତ୍ର । ଆମ ଦୁଇଜଣଙ୍କୁ କୁଣ୍ଢାଇ ଧରିଲେ ଆର୍ତ୍ତବଲ୍ଲଭ, ଆଖିରୁ ଲୁହ ଗଡୁଛି ଧାର ଧାର ହୋଇ । ସେ ତନ୍ମୟ ହୋଇ ଯାଇଛନ୍ତି । ସବୁ ଦାବୀ ପୂରଣ ହୋଇଗଲା ଗୋଟାଏ ମିନିଟ୍‌ରେ । ଆର୍ତ୍ତବଲ୍ଲଭ ସମ୍ବେଦନଶୀଳ, କୋମଳ ।

ବାତ୍ୟା ଓ ବନ୍ୟା ଓଡ଼ିଶାର ସହଚର । ପୁଣିଥରେ ପ୍ରକୃତି ଉନ୍ମତ୍ତ ହୋଇଛି । ହଜାର ହଜାର ଲୋକ ଭିଟାହରା । ସେମାନଙ୍କ ପାଇଁ ଚାନ୍ଦା ଆଦାୟ କରିବାକୁ ହେବ । ଶୋଭାଯାତ୍ରାରେ ଦେଖାଗଲା ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ଓ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କୁ ।

ସମୟ ହୋଇଯାଉଚି । ସାରଳା ମହାଭାରତକୁ ଧରିଲେ ଆର୍ତ୍ତବଲ୍ଲଭ । ସଂପାଦନା ଓ ଟୀକା ଆରମ୍ଭ ହେଲା । ରୋଗ ବଢ଼ି ଚାଲିଲା । ସଂପାଦନା, ଟୀକା ଓ ଜୀବନ ଏକସମୟରେ ଶେଷ ହୋଇଗଲା । ସତେ ଯେପରି ସେ ଆସିଥିଲେ ଅଭିପ୍ରେତ ହୋଇ ଏଇ କାର୍ଯ୍ୟର ସଂପାଦନା ପାଇଁ ।

ଆର୍ତ୍ତବଲ୍ଲଭ ଏ ଜାତିର ପରମ୍ପରା ଓ ଇତିହାସ । ସେ ଆଉ ନାହାନ୍ତି ।

□□□

# ପାରିବାରିକ ବାଲ୍ୟବନ୍ଧୁର ବିଦାୟ

*(ଂ ଇଳା ପଣ୍ଡା)*

ଇଳା ପଣ୍ଡାଙ୍କର ହଠାତ୍ ପରଲୋକ ସମ୍ବାଦ ମୋତେ ଚକିତ କରିଦେଲା । ସେ ଅସୁସ୍ଥ ତ ନଥିଲେ । ଗଲାବର୍ଷ ତାଙ୍କ ସାଙ୍ଗରେ ଦେଖା ହୋଇଥିଲା ଏକ ସାମାଜିକ ଉତ୍ସବରେ ସେଇ ହସ, ସେଇ ସମ୍ଭାଷଣ, ସଂକ୍ଷିପ୍ତ କିନ୍ତୁ ପ୍ରାଣଛୁଆଁ । ସେ ମୋର ସମସାମୟିକ, ସେ ମୋର ସହପାଠୀ ବଂଶୀଧରଙ୍କ ପତ୍ନୀ ।

କିନ୍ତୁ ସେତିକିରେ ତ ଏଇ ପରିଚୟ ସୀମିତ ନୁହେଁ । ସେ ଏକ ବିରାଟ ପରମ୍ପରାର ଦାୟାଦ । ପିତା ହେଉଛନ୍ତି ଇତିହାସ ଅଧ୍ୟାପନା, ଗବେଷଣାର ପ୍ରବାଦ ପୁରୁଷ ଅଧ୍ୟାପକ ଘନଶ୍ୟାମ ଦାସ । ଆମର ଗୁରୁ, କେବଳ ଶିକ୍ଷକ ନୁହନ୍ତି-ଇଳା ଆମର ଗୁରୁଭଗ୍ନୀ । ତାଙ୍କର ଅନ୍ୟତମ ଭାଇ ସଚ୍ଚିଦାନନ୍ଦ ଦାସ ବନ ବିଭାଗର ଅବସରପ୍ରାପ୍ତ ମୁଖ୍ୟ । ଯେହେତୁ ସେ ଓ ମୋ ସ୍ତ୍ରୀଙ୍କ ପରିବାରର ଅନେକ ବ୍ୟକ୍ତି ବନ ବିଭାଗରେ କାମ କରୁଥିଲେ (ଉଭୟଙ୍କ ପିତାଙ୍କ ସମେତ) ସେଇ ହେତୁ ପାରିବାରିକ ବନ୍ଧୁତା ଥିଲା ପିଲାଦିନରୁ ।

ଇଳା ଜଣେ ଶିଳ୍ପୀ । ଶାନ୍ତି ନିକେତନରେ ପାଠ ପଢ଼ିବା ସମୟରେ ରବୀନ୍ଦ୍ର ଯୁଗର ଅନ୍ୟତମ ପ୍ରତିଭାଶାଳୀ କ୍ଲାସିକାଲ ଆର୍ଟିଷ୍ଟ ନନ୍ଦ ଲାଲ ବସୁଙ୍କର ସେ ଥିଲେ ପ୍ରିୟଛାତ୍ରୀ । ପରେ ସେ ଯାଆନ୍ତି ଲଣ୍ଡନ ସ୍କୁଲ ଅଫ୍ ଆର୍ଟସରେ ପଢ଼ିବା ପାଇଁ । ମୋର ଯାହା ମନେ ପଡୁଛି ସେଇଠି ବୋଧହୁଏ ତାଙ୍କର ଭେଟ ହୁଏ ବଂଶୀଧର ପଣ୍ଡାଙ୍କ ସହିତ ।

ଇଳା ବେଶ ସେନସିଟିଭ । ସେତେବେଳେ କଟକ ସହରରେ ହୋଟେଲ ନଥିଲା ବିଦେଶରୁ ଆସୁଥିବା ଅତିଥିମାନଙ୍କ ପାଇଁ । ସେମାନଙ୍କ ଭିତରୁ ଅଧିକାଂଶ ରହୁଥିଲେ ଜଷ୍ଟିସ୍ ହରିହର ମହାପାତ୍ରଙ୍କ ଘରେ । ତାଙ୍କ ଘର ଥିଲା କଟକର ସବୁଠାରୁ ବଡ଼ ହୋଟେଲ ଏବଂ ସେମାନଙ୍କୁ ଯେଉଁମାନଙ୍କ ଘରେ ରାତ୍ରି ବା ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରାଯାଉଥିଲା ସେମାନଙ୍କ ଭିତରେ ଅଧ୍ୟାପକ ଘନଶ୍ୟାମ ଦାସ ଥିଲେ ଅନ୍ୟତମ । କଟକରେ ଥିଲେ ଇଳାଙ୍କ ଉପରେ ଦାୟିତ୍ୱ ପଡୁଥିଲା । ସେ ତ ଅତୀତର ସ୍ମୃତି, ଆଜି ସେ ସ୍ମୃତି ହାବୁକା ମାରୁଛି ।

କେବଳ ସେତିକି ନୁହେଁ, ଇଳା ଥିଲେ ମଧ୍ୟ ଗଭୀର ଦେଶପ୍ରେମୀ । ଅଧ୍ୟାପକ ଘନଶ୍ୟାମ ଦାସଙ୍କର ପ୍ରିୟ ଛାତ୍ର ୰ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କୁ ପୋଲିସ୍ କବଳରୁ ରକ୍ଷା କରିଛନ୍ତି ଇଳା ଦେବୀ । ମୋର ମନେ ପଡୁଛି । ହରିଶ୍ଚନ୍ଦ୍ର ବକ୍ସିପାତ୍ର ଶିକ୍ଷ ମନ୍ତ୍ରୀ ଥାଆନ୍ତି । କୌଣସି ଏକ ବନ୍ଧୁମିଳନରେ ଆମେ ତିନିହେଁ ଭେଟାଭେଟି ହୋଇଗଲୁ । ଇଳା ପଚାରିଲେ – 'କ'ଣ ବକ୍ସି (ହରିଶ୍ଚନ୍ଦ୍ର ବକ୍ସିପାତ୍ର) ମନେ ଅଛି ତ ।' ବକ୍ସି ହସି ହସି କହିଲେ – କିମିତି ଭୁଲିବି ?

ଇଳା ଦେବୀ ଶିକ୍ଷପତି, ପାର୍ଲାମେଣ୍ଟ ସଦସ୍ୟ । ଇମିତି କେତେ ଶିକ୍ଷପତି ଆସିବେ ଯିବେ, କେତେ ପାର୍ଲାମେଣ୍ଟ ସଭ୍ୟ ଆସିବେ ଯିବେ । କିଏ କେତେ ପ୍ରକାରେ ଚର୍ଚ୍ଚିତ ହେବେ– ଇତିହାସ କେତେ ମନେରଖିବ ସେମାନଙ୍କୁ ? କିନ୍ତୁ କେତେଜଣ ସାରଳା ପୁରସ୍କାରର ବନ୍ଦୋବସ୍ତ କରିଛନ୍ତି ସାହିତ୍ୟ ଓ କଳାର ବିକାଶ ପାଇଁ ? ଓଡିଆ ସାହିତ୍ୟ ଥିବା ପର୍ଯ୍ୟନ୍ତ ସାରଳା ପୁରସ୍କାର ଏବଂ ତାର ପ୍ରତିଷ୍ଠାତାଙ୍କୁ କ'ଣ କିଏ ଭୁଲି ପାରିବ ? ଯେପରି ପୃଥିବୀରେ ନୋବେଲ ପୁରସ୍କାର, ଭାରତରେ ଜ୍ଞାନପୀଠ ପୁରସ୍କାର ସେମାନଙ୍କର ସ୍ରଷ୍ଟାଙ୍କୁ ଚିରଞ୍ଜୀବୀ କରି ରଖିଛି ଠିକ୍ ସେହିପରି ଇଳାଦେବୀ ରହିବେ ଚିର ଭାସ୍ୱର ହୋଇ ଏ ଜାତିର ଇତିହାସରେ । ତାଙ୍କ ହୃଦୟର ସାହିତ୍ୟପ୍ରାଣତା ଓଡିଆ ସାହିତ୍ୟ ଥିଲାଯାଏ ତାଙ୍କୁ ମନେ ରଖିଥିବ ।

ଯିବାକୁ ତ ହେବ ସମସ୍ତଙ୍କୁ ଦିନେ । 'ଜାତସ୍ୟହି ଧ୍ରୁବ ମୃତ୍ୟୁ ।' କିନ୍ତୁ ଯେଉଁମାନେ ସମୟର ବାଲିରେ ଏପରି ପଦଚିହ୍ନ ରଖିଯାଆନ୍ତି, ଯାହାକୁ ମହାକାଳ ପୋଛି ପାରେନାହିଁ, ଯାହାକୁ ମହାତରଙ୍ଗ ଧୋଇ ପାରେ ନାହିଁ, ସେଇମାନେ ହିଁ ଜୀବନକୁ ସାର୍ଥକ କରିଯାଆନ୍ତି, ଇଳା ସେମାନଙ୍କ ମଧ୍ୟରେ ଅନ୍ୟତମ । ପାରିବାରିକ ବନ୍ଧୁ ବୟସରେ ସମସାମୟିକ ଗୁରୁକନ୍ୟା (ଭଗ୍ନୀ) ହୋଇଥିବା ଯୋଗୁଁ ସେ ମୋତେ ବାବୁ ବା ଭାଇ ବୋଲି ଯେପରି ଡାକି ନାହାନ୍ତି, ମୁଁ ବି ସେଇଭଳି ଲୌକିକତା ପ୍ରଦର୍ଶନ କରି ନାହିଁ କେବେ ।

ଦି'ୟୁନିଭର୍ସ ପରିସରରେ କଟକ ସହର ସହସ୍ର ବାର୍ଷିକୀ ଉପଲକ୍ଷେ ଏକ 'ମିଲେନିୟମ ହାଉସ' ବା 'ସହସ୍ରାବ୍ଦ ସ୍ମାରକୀ' କରିବାର ପରିକଳ୍ପନା ଥିଲା ତାଙ୍କର ।

ମୃତ୍ୟୁ ଆସିଛି । କିନ୍ତୁ ଇମିତି ମୃତ୍ୟୁ ପାଇଁ ତ ଈର୍ଷା ହୁଏ । କି ରାଜକୀୟ ମୃତ୍ୟୁ ! ଇଚ୍ଛା ହେଉଛି, ଏମିତି ମୃତ୍ୟୁ ଆସନ୍ତା କି ! ପଛରେ ରହିଗଲେ ସମସ୍ତେ । ସବୁ କୁହ ସବୁ ଆହା । ଆଉ ସେ , ନୀରବ ମହାଯାତ୍ରାରେ ।

❑❑❑

## ପ୍ରତିରକ୍ଷାର ରକ୍ଷକ

*(ଂ ଉମାଚରଣ ପଟ୍ଟନାୟକ)*

ସେତେବେଳେ ଭାରତର ପାର୍ଲ୍ୟାମେଣ୍ଟରେ ବହୁ ଦନ୍ତାବକ୍କ । ଉଭୟ ସରକାରୀ ଦଳ ଏବଂ ବିରୋଧୀ ଦଳରେ । ବହୁ ମହାରଥୀ, ବିତର୍କ ମଧ୍ୟ ବହୁ ଉଚ୍ଚକୋଟିର । ଜବାହରଲାଲ ନେହେରୁ ପ୍ରଧାନମନ୍ତ୍ରୀ । କ୍ରିଷ୍ଣମେନନ ପ୍ରତିରକ୍ଷା ମନ୍ତ୍ରୀ । ପ୍ରତିରକ୍ଷା ଉପରେ ବିତର୍କ ଚାଲିଛି । ଜଣେ ପାର୍ଲ୍ୟାମେଣ୍ଟ ସଭ୍ୟ ପ୍ରତିରକ୍ଷା ଉତ୍ପାଦନ ଉପରେ ତୀବ୍ର ଆକ୍ରମଣ କଲେ । ତାଙ୍କର ବିତର୍କ ବହୁ ଡାଟା ଏବଂ ଷ୍ଟାଟିଷ୍ଟିକ୍ସରେ ଭରପୂର । ଭି. କେ. କ୍ରିଷ୍ଣମେନନ ଜଣେ କୋପୀ ମଣିଷ । ବିଜ୍ଞ; କିନ୍ତୁ ଭାବନ୍ତି ଯେ ତାଙ୍କ ଭଳି ବିଜ୍ଞ ମଣିଷ କମ୍ । ସେମାନଙ୍କ ଭିତରେ ଜବାହରଲାଲଙ୍କୁ ହିଁ ସେ ସମ୍ମାନ ଦିଅନ୍ତି । ଅନ୍ୟମାନଙ୍କୁ ନୁହେଁ । ପାର୍ଲ୍ୟାମେଣ୍ଟ ସଭ୍ୟଙ୍କ ବିତର୍କରେ ମନେହେଲା ଯେ ସରକାରୀ ଦଳ ଡିଫେନ୍ସିଭ । ପ୍ରତିରକ୍ଷା ବିଭାଗ ବର୍ତ୍ତମାନ ନିଜର ପ୍ରତିରକ୍ଷା କରିବାକୁ ପଡିବ । କ୍ରିଷ୍ଣମେନନ ଉତ୍ତର ଦେବାକୁ ଠିଆହେଲେ । ପ୍ରଥମେ ସେ ଉକ୍ତ ପାର୍ଲ୍ୟାମେଣ୍ଟ ସଭ୍ୟଙ୍କର ଜ୍ଞାନ ପ୍ରତି ତାଚ୍ଛଲ୍ୟ ପ୍ରକାଶ କରି କହିଲେ ଯେ ସଭ୍ୟ ମହାଶୟ ରାଇଫଲ ଏବଂ ବନ୍ଧୁକ ଭିତରେ ଫରକ ଜାଣନ୍ତି ନାହିଁ ଏବଂ ସେ କ'ଣ ଭାରତର ପ୍ରତିରକ୍ଷା ଉପରେ ଭାଷଣ ଦେବାକୁ ବସିଛନ୍ତି । କିନ୍ତୁ ମାନ୍ୟବର ସଭ୍ୟ ଛାଡ଼ିବାର କି ଡରିବାର ବ୍ୟକ୍ତି ନୁହନ୍ତି । ଆପଣାର କୈଫିୟତ ଦେବାର ଅଧିକାର ପ୍ରତ୍ୟେକ ସଭ୍ୟଙ୍କର ରହିଛି । ମାନ୍ୟବର ସଭ୍ୟ ଉଠି ଠିଆହେଲେ । ହଠାତ୍ ଦେଖାଗଲା ଯେ ପ୍ରଧାନମନ୍ତ୍ରୀ ନିଜେ ହସ୍ତକ୍ଷେପ କରିବା ପାଇଁ ଠିଆ ହୋଇଛନ୍ତି । ସେ ଆଗ ଅଧିକାର ପାଇବାର କଥା । ଜବାହରଲାଲ କହିଲେ ମାନ୍ୟବର ସଭ୍ୟଙ୍କର ପ୍ରାଥମିକ ଜ୍ଞାନ ଉପରେ ଯେଉଁ ମନ୍ତବ୍ୟ ପ୍ରତିରକ୍ଷାମନ୍ତ୍ରୀ ଦେଇଛନ୍ତି ତାହା ଅଶୋଭନୀୟ । ଏପରି ମନ୍ତବ୍ୟ ପ୍ରତିରକ୍ଷାମନ୍ତ୍ରୀଙ୍କ ପକ୍ଷରେ ଉଚିତ ହୋଇ ନାହିଁ । ପ୍ରତିରକ୍ଷା ଏବଂ ବିଶେଷତଃ ପ୍ରତିରକ୍ଷା ଉତ୍ପାଦନ ଉପରେ ମାନ୍ୟବର ସଭ୍ୟ ଜଣେ ବିଶେଷଜ୍ଞ ଭାବରେ ବିଦିତ । ଜଣେ ପୁରୁଖା ବିଶେଷଜ୍ଞ ସଭ୍ୟଙ୍କର ଉକ୍ତିକୁ ମାନ୍ୟବର ପ୍ରତିରକ୍ଷା ମନ୍ତ୍ରୀ ଧ୍ୟାନର ସହିତ ଶୁଣିବା ଉଚିତ ।

ଏହାପରେ ମାନ୍ୟବର ସଭ୍ୟଙ୍କର କିଛି କହିବାର ନଥିଲା । ସେ ସଭ୍ୟ ଜଣକ ହେଉଛନ୍ତି ବିଶିଷ୍ଟ ଓଡିଆ ପାର୍ଲ୍ୟାମେଣ୍ଟ ସଦସ୍ୟ ଉମାଚରଣ ପଟ୍ଟନାୟକ ।

ଉମାଚରଣ ପଟ୍ଟନାୟକଙ୍କର ଘର ଗଞ୍ଜାମରେ । ଜଣେ ଆଡ୍‌ଭୋକେଟ ଭାବରେ ମଧ୍ୟ ତାଙ୍କର ଖ୍ୟାତି ଥିଲା । ସ୍ୱାଧୀନତା ଆନ୍ଦୋଳନରେ ସେ ଭାଗ ନେଇଥିଲେ । ଓଡିଶା ପ୍ରଦେଶ ଗଠନ ପାଇଁ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଜଣେ ଓଡ଼ିଆ ବୋଲି ସେ ଆପଣାକୁ ଗର୍ବିତ ମନେ କରୁଥିଲେ ।

କଂଗ୍ରେସ ଭିତରେ ଗୋଷ୍ଠୀ କନ୍ଦଳ ସେତେବେଳେ ମଧ୍ୟ କିଛି କିଛି ଥିଲା । ଗଞ୍ଜାମ ଜିଲ୍ଲାରେ ଜାତିଆଣ ମନୋଭାବ ମଧ୍ୟ ନେତୃବୃନ୍ଦର ଗୋଟାଏ ଗୋଷ୍ଠୀକୁ ଘାରିଥିଲା । କଂଗ୍ରେସ ଉପରୁ ମଧ୍ୟ ଅନେକ ସୁଭାଷ ବୋଷଙ୍କର କଂଗ୍ରେସ ପରିତ୍ୟାଗ ପରେ ଆସ୍ଥା ହରାଇଥିଲେ । ସେମାନଙ୍କ ମଧ୍ୟରେ ଉମାଚରଣ ପଟ୍ଟନାୟକ ମଧ୍ୟ ଅନ୍ୟତମ । ପାର୍ଲ୍ୟାମେଣ୍ଟକୁ ସେ କଂଗ୍ରେସ ସଭ୍ୟ ଭାବରେ ଏବଂ ପରେ ବିରୋଧୀଦଳମାନଙ୍କଦ୍ୱାରା ସମର୍ଥିତ ସ୍ୱାଧୀନ ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇଛନ୍ତି । ଶେଷ ଦେଖାହୁଏ ତାଙ୍କ ଘରେ ବ୍ରହ୍ମପୁରରେ । ପଣ୍ଡିତ ନେହେରୁଙ୍କର ଅଖଣ୍ଡ ପ୍ରଭାବ କ୍ଷୁର୍ଣ୍ଣ ହେବାକୁ ଲାଗିଛି । ଜବାହରଲାଲ ନେହେରୁ ମାର୍ତ୍ତଣ୍ଡ ପରି ତାଙ୍କର ଦୁଇଶହ ମାଇଲ ଦୂରରେ ଥିବା ସମସ୍ତଙ୍କୁ ନିଷ୍ପ୍ରଭ କରିଦେଇଛନ୍ତି । ତାଙ୍କୁ ଭରସି କେହି କିଛି କହିପାରୁ ନାହାନ୍ତି । ସମକକ୍ଷ ଲୋକସବୁ ହଜି ଗଲେଣି । ସରଦାର ପଟେଲ, ମୌଲାନା ଆଜାଦ, ରଫି ଅହମ୍ମଦ କିଦୱାଇ, ବି.ଜି. ଖେର ସବୁ ଗଲେଣି । ଅନ୍ୟମାନେ ବିରୋଧୀ ଦଳରେ । ଉମାଚରଣ ବାବୁ ପଚାରିଲେ ଯେ ତମେ ହେଉଛ ଆମର ଆଗାମୀ ପୀଢ଼ିର ପ୍ରତୀକ । ତମେ କୁହ ଯେ ଭାରତବର୍ଷ ବର୍ତ୍ତମାନ ଏକ ''ଲେସର୍ ପ୍ରାଇମିନିଷ୍ଟର'' (ଅଳ୍ପ ଶକ୍ତି ସମ୍ପନ୍ନ) ଦରକାର କରୁଛି ନା ନାହିଁ ? ସେଇ ଉକ୍ତିରୁ ମନେହେଲା ଯେ ଉମାଚରଣବାବୁ ଚଳନ୍ତି କଂଗ୍ରେସ ନେତୃତ୍ୱ ଉପରୁ ଆସ୍ଥା ହରାଇ ବସିଛନ୍ତି । ବିଶେଷତଃ ପଣ୍ଡିତ ନେହେରୁଙ୍କ ଉପରୁ ତାଙ୍କର ଭରସା ତୁଟିଯାଇଛି ।

ସେ ବଞ୍ଚିଥିଲେ ତାଙ୍କର ଭୂମିକା କ'ଣ ହୋଇଥାନ୍ତା କହିବା କଠିନ । କିନ୍ତୁ ତାଙ୍କର ପରଲୋକରେ ଓଡିଶା ଏକ ପ୍ରତିଭାଶାଳୀ ପାର୍ଲ୍ୟାମେଣ୍ଟାରିଆନ୍‌କୁ ହରାଇ ବସିଛି । ଆଗାମୀ ଦିନମାନଙ୍କରେ ପାର୍ଲ୍ୟାମେଣ୍ଟରେ ଓଡିଶାର ପ୍ରତିନିଧିତ୍ୱ କେତେ ସଫଳ ହେବ ତାହା ଇତିହାସ ହିଁ କହିବ । ପାର୍ଲ୍ୟାମେଣ୍ଟ ବାହାରେ ଦଳ ମତ ଗୋଷ୍ଠୀର ଊର୍ଦ୍ଧ୍ୱରେ ଓଡ଼ିଶା ପାଇଁ କିଛି କରିବାର ଭୂମିକା ପ୍ରତ୍ୟେକ ପାର୍ଲ୍ୟାମେଣ୍ଟ ସଭ୍ୟଙ୍କର ରହିଛି । ପାର୍ଲ୍ୟାମେଣ୍ଟ

ଭିତରେ ବିଚକ୍ଷଣତା ଯେପରି ଆବଶ୍ୟକ ପାର୍ଲ୍ୟାମେଣ୍ଟ ବାହାରେ ଓଡ଼ିଶା ପାଇଁ ଲବି ମଧ୍ୟ ଏକାନ୍ତ ଆବଶ୍ୟକ ।

କାରଣ ଓଡ଼ିଶା କେବଳ ଅର୍ଥନୈତିକ ଦୃଷ୍ଟିରୁ ନୁହେଁ ରାଜନୈତିକ ଦୃଷ୍ଟିରୁ ମଧ୍ୟ ପଶ୍ଚାତ୍‌ପଦ । ଯଦିଓ ଓଡ଼ିଶାର ଅନେକ କୃତୀ ସନ୍ତାନ ଭାରତବର୍ଷର ରାଜନୀତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବା ପାଇଁ ସୁଯୋଗ ପାଇଛନ୍ତି ବା ପାଇବେ; କିନ୍ତୁ ଏକ ଟିମ୍ ନଥିଲେ ସେମାନଙ୍କର ପୂର୍ଣ୍ଣ ବିନିଯୋଗ ହୋଇପାରିବ ନାହିଁ । ଓଡ଼ିଶାର ଏହା ଏକ ଜାତୀୟ ଆବଶ୍ୟକତା ଏବଂ ଓଡିଶାର ରାଜନୈତିକ ଦଳମାନେ ତଥା ଓଡ଼ିଶାବାସୀ ଏହାର ବିଚାର କରିବା ଉଚିତ ।

ସ୍ୱାଧୀନ ପାର୍ଲ୍ୟାମେଣ୍ଟ ସଭ୍ୟ ଉମାଚରଣ ପଟ୍ଟନାୟକ ଓଡ଼ିଆ ଜାତିକୁ ଏହି ମହାଶିକ୍ଷା ଗ୍ରହଣ କରିବା ପାଇଁ ଚେତାବନୀ ଦେଇ ଯାଇଛନ୍ତି ।

❑❑❑

# ଆମରି ଝିଅ

(✓ କଳ୍ପନା ଯୋଶୀ)

ଖବରକାଗଜର ପୃଷ୍ଠାରେ ଛୋଟିଆ ସମ୍ବାଦଟିଏ । ପ୍ରଖ୍ୟାତ ବିପ୍ଳବୀ, ସ୍ୱାଧୀନତା ସଂଗ୍ରାମୀ, ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନର ଅନ୍ୟତମ ନାୟିକା କଳ୍ପନା ଯୋଶୀଙ୍କର ପରଲୋକ ହୋଇଯାଇଛି କଲିକତାରେ । ଓଡିଆ ଖବରକାଗଜମାନଙ୍କରେ ସେ ମୃତ୍ୟୁ ସମ୍ବାଦ ବୋଧହୁଏ ଗୁରୁତ୍ୱପୂର୍ଣ୍ଣ ମନେହେଲା ନାହିଁ ବା ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ତଥା ଏହାର ପ୍ରଖ୍ୟାତ ନାୟିକା 'କଳ୍ପନା' ଆଉ ଜନସ୍ମୃତିରେ ନାହାନ୍ତି । ସମୟ ଅତିକ୍ରାନ୍ତ ହୋଇଛି, ତାହା ସହିତ କଳ୍ପନାଙ୍କର ବୟସ । ସ୍ୱାଧୀନତା ସଂଗ୍ରାମର ତ୍ୟାଗ ବା ସାହସ ଆଉ ଜନମାନସକୁ ବିହ୍ୱଳିତ କରୁନାହିଁ । ତେଣୁ କଳ୍ପନା ଯୋଶୀଙ୍କର ମୃତ୍ୟୁ ସମ୍ବାଦ ଆଉ ଆଲୋଡ଼ନ ସୃଷ୍ଟି କରିବାର ଅବକାଶ ନାହିଁ ।

ଭାରତବର୍ଷର ମୁକ୍ତି ସଂଗ୍ରାମର ଇତିହାସରେ ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ଏକ ତ୍ୟାଗୋଦୀପ୍ତ ଘଟଣା । ଚଳିତ ଶତାବ୍ଦୀର ତୃତୀୟ ଦଶନ୍ଧିର କଥା । ସାରା ଭାରତରେ ଯୁବକମାନଙ୍କ ଭିତରେ ପ୍ରଚଣ୍ଡ ଉଦ୍‌ବେଳନ । ଗାନ୍ଧିଜୀଙ୍କର ପ୍ରଭାବ ଭାରତବର୍ଷରେ ସେ ପର୍ଯ୍ୟନ୍ତ ବ୍ୟାପକ ହୋଇନାହିଁ । ବ୍ରିଟିଶ ସରକାରର ଅତ୍ୟାଚାର ଏବଂ ଲୁଣ୍ଠନ ନୀତି ପରାସ୍ତ ହୋଇପାରିବ କେବଳ ଗଣଶକ୍ତିର ଦୁର୍ବାର ଆଘାତରେ । ବଙ୍ଗଭଙ୍ଗ ପରାଜିତ ହୋଇଛି ଏହି ଶକ୍ତିଦ୍ୱାରା । ନୀଳ ଚାଷୀମାନଙ୍କ ଉପରେ ଅତ୍ୟାଚାର ଭୟାନକ । ବହୁ ବିଶିଷ୍ଟ ଔପନ୍ୟାସିକ ଆପଣାର ଉପନ୍ୟାସ, କାବ୍ୟ କବିତାରେ ଏହି ଚାଷୀର କାହାଣୀ ଶୁଣାଇଛନ୍ତି ।

୧୯୩୦ ମସିହା । ଚଟ୍ଟଗ୍ରାମ ସହର । ବର୍ତ୍ତମାନ ଚଟ୍ଟଗ୍ରାମ ବା ଚିଟାଗଙ୍ଗ ବାଂଲାଦେଶରେ । କିନ୍ତୁ ସେତେବେଳେ ଚଟ୍ଟଗ୍ରାମ ବଙ୍ଗ ପ୍ରଦେଶର । ସେଇଠି ଥିଲା ବ୍ରିଟିଶ ସରକାରଙ୍କର ଅସ୍ତ୍ରାଗାର । ହଠାତ୍ ସେଦିନ ଏହି ସହରଟି ଛିଟିକି ଆସିଲା ସାରା ବିଶ୍ୱର ଦରବାରକୁ । ସାରା ଭାରତବର୍ଷରେ ତୀବ୍ର ସ୍ପନ୍ଦନ । ବ୍ରିଟିଶ ସରକାରର ହୃତ୍‌କମ୍ପ । ଦଳେ ଯୁବକ ଲୁଣ୍ଠନ କରି ନେଇଛନ୍ତି ଅସ୍ତ୍ରାଗାରକୁ ଏବଂ ସେମାନଙ୍କ ମଧ୍ୟରେ ଅଛନ୍ତି ଅନ୍ତତଃ

ଦୁଇଜଣ ନାରୀ । ସୈନ୍ୟବାହିନୀ ସହିତ ସଂଘର୍ଷରେ ନିହତ ହୋଇଛନ୍ତି କେତେକ ଏବଂ ବୀରା ପ୍ରୀତି ଓ୍ୱାଦେଦାର ସୈନ୍ୟବାହିନୀ ହାତରେ ଧରାପଡ଼ିବା ଅବଶ୍ୟମ୍ଭାବୀ ଜାଣି ଆତ୍ମହତ୍ୟା କରିଛନ୍ତି ରଣକ୍ଷେତ୍ରରେ । ବିଦେଶୀ ସୈନ୍ୟବାହିନୀ ତାଙ୍କୁ ଜୀବିତ ଅବସ୍ଥାରେ ଧରି ପାରିବେ ନାହିଁ ଏଇ ଶପଥ ନେଇଥିଲେ ପ୍ରୀତି ଏବଂ ତାହା ସେ ପାଳନ କରିଛନ୍ତି ।

ଯେଉଁମାନେ ଗିରଫ ହୋଇଛନ୍ତି ସେମାନଙ୍କ ଭିତରେ ଅଛନ୍ତି ମାଷ୍ଟର ଦା, ଛଦ୍ମ ନାମରେ ସୂର୍ଯ୍ୟ ସେନ, ଆମାଦେର ମେୟେ ନାମରେ ପରିଚିତ କଳ୍ପନା ଦତ୍ତ, ଅନନ୍ତ ସିଂ, ଗଣେଶ ଘୋଷ, ଅମ୍ବିକା ଚକ୍ରବର୍ତ୍ତୀ, ପ୍ରଭାତ ଚକ୍ରବର୍ତ୍ତୀ, ଆନନ୍ଦ ଗୁପ୍ତ ପ୍ରଭୃତି । ବ୍ରିଟିଶ ସରକାରର ଅସ୍ତ୍ରାଗାର ଲୁଣ୍ଠନ କରିନେବେ ଏଇ ଦଳେ ଯୁବକ ! ଏ ଆସ୍ପର୍ଦ୍ଧା ପ୍ରବଳ ପ୍ରତାପୀ ବ୍ରିଟିଶ ସରକାର ସହ୍ୟ କରିବାକୁ ପ୍ରସ୍ତୁତ ନୁହେଁ । କାରଣ ଏହା ତା'ର ଶକ୍ତି ଉପରେ ଆଣିଛି ଆଘାତ । ସାରା ଭାରତବର୍ଷରେ ଏଇ ସମ୍ବାଦ ପ୍ରଚାରିତ ହୋଇଛି । ସାରା ଭାରତବର୍ଷର ଯୁବ ସମାଜ ଉଦ୍‌ବେଳିତ ଏବଂ ବିକ୍ଷୁବ୍‌ଧ ହୋଇଛି ପ୍ରଚଣ୍ଡ ଝଡରେ ସାଗରବକ୍ଷ ପରି । ସବୁଆଡ଼େ ଯୁବକ ଯୁବତୀମାନେ 'ମାଷ୍ଟର ଦା' ଏବଂ 'ଆମାଦେର ମେୟେ' ପ୍ରତି ଐକ୍ୟ ପ୍ରଦର୍ଶନ କରି ବିକ୍ଷୋଭ ପ୍ରଦର୍ଶନ କରୁଛନ୍ତି । କେତେ ଯାଗାରେ ତୀବ୍ର ସଂଘର୍ଷ ମଧ ହୋଇଯାଇଛି ।

ବିଚାର ଆରମ୍ଭ ହେଲା । ସାରା ଭାରତବର୍ଷ ଆନ୍ଦୋଳନରେ ଦୁଲୁକି ଉଠିଲା ।

ଆତଙ୍କିତ ହୋଇ ଉଠିଲା ବ୍ରିଟିଶ ସାମ୍ରାଜ୍ୟବାଦ । ଅନନ୍ତ ସିଂ, ଗଣେଶ ଘୋଷ, ଅମ୍ବିକା ଚକ୍ରବର୍ତ୍ତୀ, ଆନନ୍ଦ ଗୁପ୍ତ ପ୍ରଭୃତିଙ୍କ ସହିତ ଆଜୀବନ କାରାଦଣ୍ଡ ପାଇ କଳ୍ପନା ଦତ୍ତ ମଧ ନିର୍ବାସିତ ହେଲେ ଆଣ୍ଡାମାନର ସେଲୁଲିଆର ଜେଲକୁ । ପୁଣି ଉଦ୍‌ବେଳନ। ପରିଶେଷରେ ଗୁରୁଦେବ ରବୀନ୍ଦ୍ରନାଥ ଠାକୁର ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନଙ୍କର ହସ୍ତକ୍ଷେପ ପର୍ଯ୍ୟନ୍ତ ଗଲା । 'ଆମାଦେର ମେୟେ' କଳ୍ପନା ଦତ୍ତଙ୍କୁ ଆଣ୍ଡାମାନ ପଠାଇବା ବର୍ବୋରୋଚିତ ହେବ । ସମଗ୍ର ପୂର୍ବ ବଙ୍ଗ ସଭା, ଶୋଭାଯାତ୍ରାରେ ପ୍ରକମ୍ପିତ ହେଲା । ଦେଶର ବହୁ ବୁଦ୍ଧିଜୀବୀ, ଲେଖକ କଳାକାର, ସଙ୍ଗୀତଜ୍ଞ, ଛାତ୍ର, ଯୁବପ୍ରତିନିଧି ଦାବୀ କଲେ ଯେ କଳ୍ପନା ହେଉଛି ଆମରି ଝିଅ । ତାଙ୍କୁ ଆଣ୍ଡାମାନ ନିଆ ନଯାଉ । ପରିଶେଷରେ କଳ୍ପନା ଭାରତୀୟ ଜେଲରେ ହିଁ ରହିଲେ । କାରାଗାର ଭିତରେ ସେ ଅଧୟନ କଲେ ବିପ୍ଳବର ତତ୍ତ୍ୱ । ଫରାସୀ ବିପ୍ଳବ, ଆଇରିଶ ବିପ୍ଳବ, ଆମେରିକାର ସଂଗ୍ରାମ, ପରିଶେଷରେ ରୁଷ ବିପ୍ଳବର ତତ୍ତ୍ୱ । ସନ୍ତ୍ରାସବାଦୀ କାର୍ଯ୍ୟ ନୁହେଁ, ଗଣବିପ୍ଳବ ହିଁ ମୁକ୍ତିର ଏକମାତ୍ର ପନ୍ଥା । କଳ୍ପନାଙ୍କର ହୃଦ୍‌ବୋଧ ହେଲା ସମାଜବାଦ ହିଁ ଉନ୍ମୁକ୍ତ କରିବ ଭାରତୀୟ ଜନଗଣଙ୍କ ପାଇଁ ନୂତନ ଦିଗନ୍ତ, କଳ୍ପନାଙ୍କର ବିଶ୍ୱାସ ହେଲା । ସେ ସାମ୍ୟବାଦର ମହାମନ୍ତ୍ରରେ ଦୀକ୍ଷିତ

ହେଲେ । ବହୁ ହସ୍ତକ୍ଷେପ ଏବଂ ଦାବୀ ଫଳରେ ଏକ ଭଗ୍ନ ସ୍ୱାସ୍ଥ୍ୟ ନେଇ ସେ ମୁକ୍ତିଲାଭ କଲେ କାରାଗାରରୁ । ବଙ୍ଗଳା, ଆପଣାର ପ୍ରିୟ ବଙ୍ଗଭୂମିରେ ଦୁର୍ଭିକ୍ଷର କରାଳ ପଦଧ୍ୱନି । ମଣିଷ ଟଳି ପଡୁଛି ହଜାର ହଜାର ସଂଖ୍ୟାରେ । ମନ୍ୱନ୍ତର । କଳ୍ପନା ଝାସଦେଲେ ଦୁର୍ଭିକ୍ଷରୁ ଲୋକଙ୍କୁ ରକ୍ଷା କରିବାପାଇଁ ରିଲିଫ କାର୍ଯ୍ୟରେ । ସମଗ୍ର ବଙ୍ଗରାଜ୍ୟରେ ଐତିହାସିକ ତେଭାଗା ଆନ୍ଦୋଳନ । ଜମି ଚାଷ କରୁଥିବା ଶସ୍ୟ ଉପୁଜାଉଥିବା ଚାଷୀର ସ୍ୱତ୍ୱ ପାଇଁ ଆନ୍ଦୋଳନ । ଏହାକୁ ସାମ୍ପ୍ରଦାୟିକ ରୂପଦେବା ପାଇଁ ବ୍ରିଟିଶ ସରକାରର ଆପ୍ରାଣ ଉଦ୍ୟମ । କଳ୍ପନା ଝାସଦେଲେ ତେଭାଗା ଆନ୍ଦୋଳନରେ ।

ଏହି ଆନ୍ଦୋଳନ ଭିତରେ ତାଙ୍କର ଭେଟହୁଏ କମ୍ୟୁନିଷ୍ଟ ପାର୍ଟିର ଲିଜେଣ୍ଡ୍ରି ନେତା ପୂରଣ ଚନ୍ଦ୍ର ଯୋଶୀଙ୍କ ସହିତ । କଳ୍ପନା ଦତ୍ତ ତାଙ୍କୁ ବିବାହ କରନ୍ତି ଏବଂ ପରେ ତାଙ୍କର କର୍ମପୀଠ ବମ୍ବେ ଏବଂ ତାପରେ ଦିଲ୍ଲୀକୁ ସ୍ଥାନାନ୍ତରିତ ହୁଏ । ମହିଳା ଆତ୍ମରକ୍ଷା ସମିତି, ପିପୁଲସ୍ ରିଲିଫ କମିଟି, ଭାରତୀୟ ଗଣନାଟ୍ୟ ସଂଘ, ପ୍ରଗତିଶୀଳ ଲେଖକ ସଂଘ ଗଢ଼ି ଉଠେ ପି.ସି. ଯୋଶୀଙ୍କର ନେତୃତ୍ୱରେ ଏବଂ କଳ୍ପନା ଦତ୍ତ (ବର୍ତ୍ତମାନ ଯୋଶୀ)ଙ୍କର ସହଯୋଦ୍ଧୃତ୍ୱରେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ସମୟ । ସମଗ୍ର ପୃଥିବୀ ପାଇଁ ନଇଁ ଆସୁଛି ଗାଢ଼, ତିକ୍ତ ଅନ୍ଧକାର । ମନେ ହେଉଛି ସାରା ମାନବୀୟ ସଭ୍ୟତା, ସଂସ୍କୃତି ବୁଡ଼ିଯିବ ଅନ୍ତତଃ କିଛିକାଳ ପାଇଁ ଫାସିବାଦ, ନାଜୀବାଦର କ୍ରୁର ଆଘାତରେ । ସାରା ଇଉରୋପ ଆଫ୍ରିକା, ଏସିଆ ମହାଦେଶର ଏକ ବିରାଟ ଭୂଖଣ୍ଡ ପଦାନତ ନାଜୀବାଦର ପଦତଳେ । ଏହାରି ବିରୁଦ୍ଧରେ ଯୁଦ୍ଧ କେବଳ ନିଜ ପବିତ୍ର ପିତୃଭୂମି ପାଇଁ ନୁହେଁ, ସମଗ୍ର ବିଶ୍ୱର ମଣିଷ ଜାତି ପାଇଁ କଠୋର ସଂଗ୍ରାମ, ବଳିଦାନ ସୋଭିଏଟ୍ ରୁଷର ଜନସାଧାରଣଙ୍କର । ଐତିହାସିକ ଷ୍ଟାଲିନ୍‌ଗ୍ରାଡ୍ ଯୁଦ୍ଧ-ଏଇଠୁ ନାଜୀ ବାହିନୀକୁ ଫେରିବାକୁ ପଡିବ । ମଣିଷ ଜାତିକୁ ରକ୍ଷା କରିବା ପାଇଁ । ସେଥିପାଇଁ ଯେତେ ବଳିଦାନ ଆବଶ୍ୟକ ଯୋଗାଇବାକୁ ହେବ । ସମଗ୍ର ପୃଥିବୀ ସ୍ତବ୍ଧ ହୋଇ ଅନେଇଛି । ଚିନ୍ତିତ ଜବାହରଲାଲ ପଚାରୁଛନ୍ତି ପି.ସି ଯୋଶୀଙ୍କୁ । କଣ ହେବ ଯଦି ନାଜୀ ବାହିନୀ ନ ଫେରନ୍ତି ? ଗୁରୁଦେବ ରବୀନ୍ଦ୍ରନାଥ ମୃତ୍ୟୁର ଉପକଣ୍ଠରେ ପଚାରୁଛନ୍ତି, ରାଣୀ ମହାଲନବିସଙ୍କୁ, ଯୁଦ୍ଧର ଖବର କ'ଣ ? ନାଜୀ ବାହିନୀ ହଟିବାକୁ ଆରମ୍ଭ କରିଛନ୍ତି ଜାଣି ସେ କହୁଛନ୍ତି, ସେମାନେ ଜିତିବେ । ମୁଁ ଦେଖି ଆସିଛି ନୂତନ ମଣିଷର ଜନ୍ମ ।

ଜାତି, ଧର୍ମ, ବର୍ଣ୍ଣ ଓ ଦଳ ନିର୍ବିଶେଷରେ ଗଢ଼ିଉଠେ 'ଫ୍ରେଣ୍ଡସ୍ ଅଫ୍ ଦି ସୋଭିଏଟ୍ ୟୁନିଅନ୍' ନାମକ ସଂସ୍ଥା, ସାରା ଦେଶରେ ଫାସିବାଦ ବିରୁଦ୍ଧରେ ଜନମତ ସୃଷ୍ଟି ପାଇଁ । କଳ୍ପନା ସେଇ କାର୍ଯ୍ୟରେ ମଧ୍ୟ ମନୋନିବେଶ କରନ୍ତି ।

୧୯୪୮ ମସିହା କମ୍ୟୁନିଷ୍ଟ ପାର୍ଟିର ଦ୍ୱିତୀୟ କଂଗ୍ରେସ । ପି.ସି. ଯୋଶୀଙ୍କୁ ନେତୃତ୍ୱରୁ ବହିଷ୍କାର କରାଯାଏ, ତାଙ୍କର ତଥାକଥିତ ସଂସ୍କାରବାଦୀ ନୀତି ପାଇଁ ଏବଂ ଆରମ୍ଭ ହୁଏ କମ୍ୟୁନିଷ୍ଟ ପାର୍ଟିର ଆଡଭେଞ୍ଚରିଷ୍ଟ ବା ଦୁଃସାହସବାଦୀ ନୀତି ବି.ଟି.ରଣଦିଭେଙ୍କ ନେତୃତ୍ୱରେ । କଳ୍ପନା ଯୋଶୀ ବର୍ତ୍ତମାନ ମନୋନିବେଶ କରନ୍ତି ଭାରତ-ସୋଭିଏଟ୍ ମୈତ୍ରୀ ସମିତି ଏବଂ ମହିଳା ମାନଙ୍କର ଅନୁଷ୍ଠାନ ଗଢ଼ିବାରେ । ପି.ସି. ଯୋଶୀଙ୍କୁ ସାହାଯ୍ୟ କରନ୍ତି ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ ସମାଜବାଦୀ ଆନ୍ଦୋଳନର ଇତିହାସ ରଚନା କରିବାରେ । ପି.ସି. ଯୋଶୀଙ୍କ ପରଲୋକପରେ ମଧ୍ୟ ତାଙ୍କର କାର୍ଯ୍ୟ ଅବ୍ୟାହତ ରହେ ।

ସମୟ ଅତିକ୍ରାନ୍ତ ହୋଇଛି । ବୟସ ବଢ଼ିଛି । ଦୁଇଟି ପୁଅ । କିନ୍ତୁ ସେମାନଙ୍କ କଥା ନିଆରା । ବହୁ ବଡ଼ ଲୋକମାନଙ୍କର ପୁତ୍ର କନ୍ୟାମାନଙ୍କର କକ୍ଷଚ୍ୟୁତ ଅବସ୍ଥା (ମହାତ୍ମା ଗାନ୍ଧୀଙ୍କ ପୁତ୍ର ସମେତ) ପରି ସେମାନଙ୍କର ଅବସ୍ଥା । ମାଆ ସହିତ ସମ୍ପର୍କ କଟି କଟି ଯାଏ । ସେମାନେ ଭାରତ ବାହାରେ ରହିଯାଆନ୍ତି ।

କଳ୍ପନା ଫେରନ୍ତି କଲିକତାକୁ । ନିଜର କୌଣସି ଆତ୍ମୀୟଙ୍କ ଘରେ ଶେଷ ଜୀବନ କଟାଇବା ପାଇଁ ଏବଂ ଗବେଷଣା କରିବା ପାଇଁ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହିଷ୍ଟୋରିକାଲ ଷ୍ଟଡିଜରେ । ସେଇଠି ଦେଖା ହୋଇଥିଲା ଶେଷଥର ପାଇଁ । ସେଇ ସ୍ନେହବୋଳା କଥା । ଯେତେ ପରିଚିତ ବ୍ୟକ୍ତି ସମସ୍ତଙ୍କର କୁଶଳ ଜିଜ୍ଞାସା । ମନେ ହୋଇନାହିଁ ଏଇ ନାରୀ ଦିନେ ବ୍ରିଟିଶ ସାମ୍ରାଜ୍ୟ ପାଇଁ ଆତଙ୍କ ସୃଷ୍ଟି କରିଥିଲା ।

କଳ୍ପନା ଆଉ ନାହାନ୍ତି । କିନ୍ତୁ ଉତ୍ତର ପୀଢ଼ି ପୁଣି ଖୋଜିବ ଏଇ 'କଳ୍ପନା'କୁ । କଳ୍ପନା କରିବ ଏଇ 'କଳ୍ପନା'କୁ । ଯେତେବେଳେ ପୁଣି କେବେ ଅନ୍ଧକାର ଆସିବ, ଦେଶ ପାଇଁ ଜାତି ପାଇଁ ପରୀକ୍ଷାର ବେଳ ଆସିବ ସେତେବେଳେ କଳ୍ପନା ପୁଣି ରୂପ ପାଇବେ ଜନମାନସରେ ।

❑❑❑

# କୁମ୍ଭାର ଚକର ଶେଷ ଘୂର୍ଣ୍ଣନ

*(୰ କାଳୀଚରଣ ପଟ୍ଟନାୟକ)*

ସକାଳୁ ଭବାନୀ ପଣ୍ଡିତ ଫୋନ କଲେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଆଉ ନାହାନ୍ତି । ଗଲା କେତେ ଦିନ ହେଲା ସେ ରୋଗାକ୍ରାନ୍ତ ହୋଇ ଡାକ୍ତରଖାନାରେ ଭର୍ତ୍ତି ହୋଇଥିଲେ । ସେଇଠି ଅଚେତ ଅବସ୍ଥାରେ ହିଁ ତାଙ୍କର ପରଲୋକ ହୋଇଗଲା ।

'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ ଏବଂ ମୁଁ ଯାଇ ଡାକ୍ତରଖାନାରେ ପହଞ୍ଚିଲୁ । କବିଚନ୍ଦ୍ର, ଓଡିଆ ନାଟକର ମଉଡ଼ମଣି, ଓଡିଶୀ ନୃତ୍ୟ ଶାସ୍ତ୍ରୀୟ ନୃତ୍ୟ ଭାବରେ ସ୍ୱୀକୃତି ପାଇବା ପାଇଁ ନିରବଚ୍ଛିନ୍ନ ସଂଗ୍ରାମର ଅନ୍ୟତମ ସେନାପତି ଶୋଇଛନ୍ତି ସାଧାରଣ ୱାର୍ଡର ଏକ ଖଟ ଉପରେ । ପାଖରେ କେହି ନାହାନ୍ତି । ଶୁଶ୍ରୂଷାକାରୀ ଯାଇଛନ୍ତି ଫୋନ କରିବା ପାଇଁ । ଆଖିରେ ଲୁହ ଜକେଇ ଆସିଲା । କବି, ଲେଖକ, କଳାକାର ପାଇଁ ଏ ଜାତିର କି ସମ୍ମାନ ! ରାଧାନାଥବାବୁ କବିଚନ୍ଦ୍ରଙ୍କର ମରଦେହକୁ ଜଗନ୍ନାଥବଲ୍ଲଭ ଘରକୁ ଆଣିବାର ବନ୍ଦୋବସ୍ତ କଲେ ।

କବିଚନ୍ଦ୍ର କାଳୀଚରଣ ବାଙ୍କୀର ଲୋକ । କିନ୍ତୁ କଟକ ସହର ତାଙ୍କର କର୍ମଭୂମି । କାଳୀଚରଣ ପଟ୍ଟନାୟକ ମୋ ଦାଦାଙ୍କର ସଢୁ । କିନ୍ତୁ ସ୍ତ୍ରୀଙ୍କ ସହିତ ତାଙ୍କର ସମ୍ପର୍କ ଯୌବନରୁ ହିଁ ଛିନ୍ନ ହୋଇଯାଇଛି । କବିପତ୍ନୀ ଠାକୁରଙ୍କ ପାଖରେ ପୂଜା କରି କରି ଚାଲି ଯାଇଛନ୍ତି । କବି ଆଉ ବିବାହ କରି ନାହାନ୍ତି । ଭୁଲ୍ କହିଲି । ସେ ବିବାହ କରିଛନ୍ତି ନାଟକ, ଅଭିନୟ, ସଙ୍ଗୀତକୁ । ସଂସାର ଠିକ୍ ପାତି ନାହାନ୍ତି । ତାଙ୍କ ପାଖରେ ରହିଛି ଅସଂଖ୍ୟ ବହି, ତାଳପତ୍ର ପୋଥି ଏବଂ ନିଜ ଲେଖାର ପାଣ୍ଡୁଲିପି । ଏଇନା ତ ପାଖରେ କେହି ନାହାନ୍ତି । ଏଇ ସୁଯୋଗରେ ସବୁ ଚାଲି ଯାଇପାରେ । ଏଇପରି ଭାଗ୍ୟ ଘଟିଛି ଅନେକ ବ୍ୟକ୍ତିଙ୍କର । ଜିଲ୍ଲାପାଳ ବିନୋଦ ଝା କଥାଟା ବୁଝିଗଲେ କର୍ମପନ୍ଥା ନେବା ପାଇଁ ସମୟ ଲାଗେ ନାହିଁ । ସେ ସାହାଯ୍ୟ କଲେ । କବିଚନ୍ଦ୍ରଙ୍କର ଶ୍ରାଦ୍ଧ ଇତ୍ୟାଦି ପାଇଁ ଗୋଟିଏ କୋଠରୀ ଛାଡ଼ିଦେଇ ବାକି ସବୁ ସିଲ୍‌କରି ଦିଆଯିବ । ପରେ ଦେଖାଯାଉ କ'ଣ ହେଉଛି । ତଥାପି ଏଇ କାର୍ଯ୍ୟ ହେଉ ହେଉ ଯେତିକି ସ୍ୱଳ୍ପ ସମୟ ଲାଗିଗଲା ସେତିକିରେ ଭବାନୀ ପଣ୍ଡିତଙ୍କୁ

କିଛି ବହି ଉଦ୍ଧାର କରିବାକୁ ହେଲା କିଛି ବିଶିଷ୍ଟ ବ୍ୟକ୍ତିଙ୍କଠାରୁ । ଏଇପରି କାମ ବିଶିଷ୍ଟ ବ୍ୟକ୍ତିମାନେ ହିଁ କରନ୍ତି । ନିଜର ପ୍ରତିଷ୍ଠା ତାଙ୍କୁ ଏଥିପାଇଁ ବର୍ମ୍ମ ଭଳି ସାହାଯ୍ୟ କରେ । ରେଭେନ୍‌ସା କଲେଜର ପ୍ରସିଦ୍ଧ କନିକା ଲାଇବ୍ରେରୀରୁ ବହି ନେଇ ଫେରାଇ ନାହାନ୍ତି ଅଧ୍ୟାପକ, ପ୍ରିନ୍ସିପାଲ, ଡି.ପି.ଆଇ., ପବ୍ଲିକ୍ ସର୍ଭିସ୍ କମିଶନର ସଭ୍ୟ ଏବଂ ସର୍ବୋପରି ସିନେଟ୍ ଏବଂ ସିଣ୍ଡିକେଟର ସଭ୍ୟମାନେ । କବିଚନ୍ଦ୍ରଙ୍କର ସେଇ ଭାଗ୍ୟ ହୋଇଥାନ୍ତା । ସେଗୁଡିକୁ ଯଥା ସମୟରେ ସିଲ କରିଦେବାଦ୍ୱାରା ଏଇ ଅମୂଲ୍ୟ ସଂପଦ ସୁରକ୍ଷିତ ହୋଇ ପାରିଲା ।

ମନ ପହଁରି ଗଲା ଅତୀତକୁ । ଡାକ୍ତରଖାନାର ଏକ ସାଧାରଣ ଖଟିଆରେ ଶୋଇ ରହିଥିଲେ କବିଚନ୍ଦ୍ର । ବିରାଟ ଅବୟବ କିମିତି କେଜାଣି ସଙ୍କୁଚିତ ହୋଇ ଯାଇଥିଲା ବେଶ୍ । ହଙ୍ଗେରୀର ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଗବେଷକ ଅସିଥିଲେ ଓଡ଼ିଶା । ଚାହିଁଥିଲେ ଓଡିଶୀ ନାଚ, ଗୀତ ସମ୍ପର୍କରେ ଜାଣିବା ପାଇଁ । କବିଚନ୍ଦ୍ର ସମୟ ଦେଇଥିଲେ । ଦିନ ଦଶଟାରେ ଆମେ ଜଗନ୍ନାଥ ବଲ୍ଲଭ ଘରେ ପହଞ୍ଚିଲୁ । କବିଚନ୍ଦ୍ର ପ୍ରାୟ ଅଚଳ ହୋଇ ଗଲେଣି ସେତେବେଳକୁ; କିନ୍ତୁ ମସ୍ତିଷ୍କ କାମ କରୁଛି ଠିକ୍ । ପାଟି ମଧ । ସ୍ୱାଗତ ସମ୍ଭାଷଣ ପରେ ଆଲୋଚନା ଆରମ୍ଭ ହେଲା ଏବଂ ଶେଷ ହେଲା ଅପରାହ୍ନ ପାଞ୍ଚଟାରେ । କବିଚନ୍ଦ୍ର ଦେଖିଲେ ସେ ଏକ ଉପଯୁକ୍ତ ଗ୍ରାହକ ପାଇଛନ୍ତି । ଏଇ ଗବେଷକଙ୍କର ଅଛି ଆନ୍ତର୍ଜାତିକ ସମ୍ପର୍କ । ଓଡ଼ିଶୀ ନୃତ୍ୟ, ଗୀତକୁ ସେ ପୃଥିବୀରେ ପରିଚିତ କରାଇପାରିବେ । ଆଜିକାଲି ତ ଓଡ଼ିଶୀ ନୃତ୍ୟର ସ୍କୁଲ ଅଛି ଆମେରିକା, ଇଂଲଣ୍ଡରେ । ଇନ୍ଦ୍ରାଣୀ, ସଂଯୁକ୍ତା, କୁମ୍‌କୁମ୍, ପ୍ରିୟମ୍ବଦା ପ୍ରଭୃତି କଳାକାରମାନେ ଆନ୍ତର୍ଜାତିକ କ୍ଷେତ୍ରରେ ପରିଚିତ କରାଉଛନ୍ତି ଓଡିଶୀ ନୃତ୍ୟକୁ । ବହୁ ଭାରତୀୟ କଳାକାର, ବହୁ ବୈଦେଶିକ କଳାକାର ତ ଓଡ଼ିଶୀ ନାଚରେ କେବଳ ପାରଦର୍ଶିତା ଲାଭ କରି ନାହାନ୍ତି ଓଡ଼ିଶୀ ନୃତ୍ୟକୁ ଏକ ସମ୍ମାନଜନକ ସ୍ଥାନକୁ ନେଇ ପାରିଛନ୍ତି । ସେଦିନ ଇମିତି ନଥିଲା । ଓଡ଼ିଶୀ ନୃତ୍ୟ ଏକ ସ୍ୱତନ୍ତ୍ର ଶାସ୍ତ୍ରୀୟ ନୃତ୍ୟ ନୁହେଁ ଏଇ ଥିଲା ତଥାକଥିତ ବିଶାରଦମାନଙ୍କ ମତ । ଓଡ଼ିଶୀ ନୃତ୍ୟକୁ ଓଡ଼ିଶା ବାହାରେ ପରିଚିତ କରେଇବା ପାଇଁ ଗୁରୁ କେଳୁଚରଣ, ଦେବପ୍ରସାଦ, ପଙ୍କଜ ପ୍ରଭୃତିଙ୍କର ଅବଦାନ ବିପୁଳ । ସେମାନେ ଦେଖାଇ ପାରିବେ ବା ନାଚି ପାରିବେ; କିନ୍ତୁ ତତ୍ତ୍ୱ ? କବିଚନ୍ଦ୍ର ବାହାର କରୁଛନ୍ତି ଗୋଟିକ ପରେ ଗୋଟିଏ ପୋଥି, ବହି ପରେ ବହି । ପୋଥି ଓ ବହି ଗଦା ହୋଇଗଲାଣି । ଚାକର ଆସି ବାରମ୍ବାର ତାଗିଦ କଲାଣି ଖାଇବା ପାଇଁ । ଆମକୁ ବି ଭୋକ ହେଲାଣି । କିନ୍ତୁ କବିଚନ୍ଦ୍ର କିଛି ମାନିବାକୁ ନାରାଜ ! ବହି ପୋଥି ସହିତ ସେ ଅଭିନୟ ଭଙ୍ଗୀ ସବୁ ଦେଖାଇବାକୁ ଆରମ୍ଭ କଲେଣି । ଐତିହାସିକ ସୁଧାକର ପଟ୍ଟନାୟକ ଏବଂ

ଜଣେ କିଏ ନର୍ତ୍ତକୀକୁ ଡାକିବାକୁ ଗଲେଣି ଲୋକ । କବିଚନ୍ଦ୍ର କହି ଚାଲିଛନ୍ତି । ମୁଗ୍ଧ ହୋଇ ଶୁଣୁଛନ୍ତି ଅଧ୍ୟାପକ, ସ୍କୁଲ ପିଲାଙ୍କ ପରି ନୋଟ କରି ଚାଲିଛନ୍ତି । ସଂଧ୍ୟାବେଳକୁ ଆସର ସରିଲା । ଐତିହାସିକ ବୟାନଦେଲେ ସୁଧାକର ପଟ୍ଟନାୟକ, ନର୍ତ୍ତକୀ ନୃତ୍ୟ କରି ଦେଖାଇଲେ ବିଭିନ୍ନ ମୁଦ୍ରା କବିଚନ୍ଦ୍ରଙ୍କ ନିର୍ଦ୍ଦେଶରେ ।

ସେଇଟା କେଉଁ ବର୍ଷ ମନେ ନାହିଁ । ଆମ ପରିବାର ଆସି ରହିଥାଉ ବାଙ୍କାବଜାର ଧର୍ମଶାଳାରେ । ସେତେବେଳେ କଟକରେ ହୋଟେଲ ନଥିଲା । କବିଚନ୍ଦ୍ରଙ୍କ ଓଡିଶା ଥିଏଟର୍ସ ସେଇ ପାଖରେ । ଖବର ପାଇ କବିଚନ୍ଦ୍ର ନିଜେ ଆସି ପହଞ୍ଚିଲେ ବାପାଙ୍କ ପାଖରେ । ନିମନ୍ତ୍ରଣ କରିଗଲେ 'ଭାତ' ଦେଖିବା ପାଇଁ । କି ଭିଡ । କି ଜନସମାଗମ । କବିଚନ୍ଦ୍ର କେତେ ଅଭିନେତା, ଅଭିନେତ୍ରୀକୁ ଉତାରି ନାହାନ୍ତି । ତା'ର ସଂଖ୍ୟା ଗଣିହେବ ନାହିଁ । ଓଡ଼ିଶାର ଯେତେ ନାମକରା ଅଭିନେତା, ଅଭିନେତ୍ରୀ ସମସ୍ତଙ୍କୁ ତାଲିମ ଦେଇଛନ୍ତି । ଥିଲେ ସଙ୍ଗଠକ, ତଥାପି କ'ଣ ଗୋଟାଏ ରହିଯାଉଥିଲା କିନ୍ତୁ ତାଙ୍କ ପାଖରେ । କୌଣସି ନା କୌଣସି କାରଣରୁ ସେମାନେ ଛାଡ଼ି ଯାଉଥିଲେ ତାଙ୍କୁ । ସମ୍ମାନ ଦେଉଥିଲେ,ମୁଣ୍ଡିଆ, ସାଷ୍ଟାଙ୍ଗ ପ୍ରଣିପାତ କରୁଥିଲେ, କିନ୍ତୁ ପାଖରେ ରହୁନଥିଲେ । କ'ଣ ବରଗଛ ଭଳି ନା କ'ଣ ? ମୂଳରେ କିଛି ଉଧାଏ ନାହିଁ ।

ମୋ ଖୁଡ଼ୀଙ୍କ ବଂଶରେ ଟିକିଏ ପାଗଳାମୀ ଦୋଷ ଥିଲା । ସବୁ ଭାଇ ଭଉଣୀଙ୍କ ଭିତରେ ସେହି ଛିଟିକା ରହି ଯାଇଥିଲା । ବିଭିନ୍ନ ପରିମାଣରେ । ସେଇ ଯୋଗୁଁ ବା ଅନ୍ୟ କେଉଁ କାରଣରୁ କବିଚନ୍ଦ୍ର କାଳୀଚରଣ ଆପଣା ସହଧର୍ମିଣୀଙ୍କଠାରୁ ବିଚ୍ଛିନ୍ନ ହୋଇ ଯାଇଥିଲେ ବହୁ କାଳରୁ । କବିଚନ୍ଦ୍ରଙ୍କର ଜୀବନ କଟିଗଲା କଟକରେ, ଯଦିଓ ତାଙ୍କ ଘର ବାଙ୍କୀ ଏବଂ ବିବାହ କରିଥିଲେ ଖୋର୍ଦ୍ଧା ଗୁରୁଜଙ୍ଗରେ । ଓଡିଶୀ ସଙ୍ଗୀତକୁ ଶାସ୍ତ୍ରୀୟ ରୂପେ ଗଣନା କରିବାପାଇଁ, ଓଡିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟ ଭାବରେ ପ୍ରତିପାଦିତ କରିବା ପାଇଁ କବିଚନ୍ଦ୍ର କାଳୀଚରଣଙ୍କର ଅବଦାନ ବିପୁଳ । ବହୁ ତରୁଣ ତରୁଣୀ ତାଙ୍କର ହସ୍ତର ସ୍ପର୍ଶରେ ନୂତନ ଜୀବନ୍ୟାସ ପାଇଛନ୍ତି, ଅଭିନେତା ଅଭିନେତ୍ରୀ ଭାବରେ ବା ଓଡିଶୀର ନର୍ତ୍ତକୀ ଭାବରେ । ଓଡିଶାରି ସମସାମୟିକ ଯେକୌଣସି ନର୍ତ୍ତକୀ, ଯେକୌଣସି ଅଭିନେତା-ଅଭିନେତ୍ରୀକୁ ପଚାର, କବିଚନ୍ଦ୍ର କାଳୀଚରଣଙ୍କ ହସ୍ତର ନିଖୁଣ ସ୍ପର୍ଶ ତାଙ୍କ ଦେହରେ ନିଶ୍ଚିତ ଭାବରେ ରୂପାୟିତ ହୋଇଛି ।

କବିଚନ୍ଦ୍ର କାଳୀଚରଣ ସ୍ୱାଭିମାନୀ ଥିଲେ । ଓଡିଆ ଜାତିର ଗର୍ବିତ ପ୍ରତିନିଧି । ଜୀବନର ଅପରାହ୍ନରେ ତାଙ୍କୁ ମିଳିଥିବା ସରକାରୀ ଉପାଧିକୁ ସେ ଗ୍ରହଣ କରିବା ପାଇଁ ସମ୍ମତ ହୋଇନଥିଲେ । ସୁରେନ୍ଦ୍ର ମହାନ୍ତି ଏବଂ କବିଚନ୍ଦ୍ର ଏଇ ଦୁଇଜଣ ଓଡିଆ ହିଁ ସରକାରୀ ଉପାଧି ପାଇବା ପାଇଁ ସମ୍ମତ ହୋଇନାହାନ୍ତି, ବଙ୍ଗଳାର ଋତ୍ୱିକ ଘଟକଙ୍କ ପରି ।

କବିଚନ୍ଦ୍ର କ୍ଲାସିକାଲ ପାଳଟି ଯାଇଥିଲେ ଧୀରେ ଧୀରେ । ଦେହ ଅଚଳ ହୋଇଯାଇଥିଲା । ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇଥିଲେ; କିନ୍ତୁ ଅଙ୍ଗଭଙ୍ଗୀ ପ୍ରଦର୍ଶନରେ ସେଇପରି ବିଚକ୍ଷଣ । ଶମ୍ଭୁ ମହାରାଜଙ୍କୁ ମୁଁ ଦେଖିଛି ସେଇପରି । ଦିଲ୍ଲୀରେ ଶୀତଦିନ । ପ୍ରଚଣ୍ଡ ଶୀତ । ଶୀତରେ ଥରି ଥରି ଆମେ ବସିଛୁ । ମୋ ପାଖରେ ନୃତ୍ୟଗୁରୁ ସ୍ୱର୍ଗତ ଦେବପ୍ରସାଦ । ରାତି ଦୁଇଟା । ଉଠିଲେ ଜଣେ କଳାକାର ନୃତ୍ୟ ପ୍ରଦର୍ଶନ ପାଇଁ । ତାଙ୍କର ବୟସ, ଚେହେରା, ପେଟ ଦେଖି ମୁଁ ଉଠିବାକୁ ବସିଲି । ଇଏ କ'ଣ ନାଚିବେ ? ଗୁରୁ ଦେବପ୍ରସାଦ ମୋତେ ବସାଇ ଦେଇ କହିଲେ, ବସନ୍ତୁ ଏଇ ହେଉଛନ୍ତି ଶମ୍ଭୁ ମହାରାଜ । ଅପେକ୍ଷା କରନ୍ତୁ । ସତକୁ ସତ ତାଙ୍କ କଥା ସତ ହେଲା । ବୟସ ହେଲାଣି । ନିଜେ ନାଚିବେ ନାହିଁ । ଗିରିଜା ରାଜେନ୍ଦ୍ରନ ନିର୍ଦ୍ଦେଶନା ଦେବେ । କିନ୍ତୁ ନିର୍ଦ୍ଦେଶନା ଦେବା ସହିତ କୁଆଡେ ଗଲା ସେ ପେଟ, ବପୁ ! କବିଚନ୍ଦ୍ର କାଳୀଚରଣ ସେଇପରି । ମିନି-ପ୍ରିୟମ୍ବଦା ମହାନ୍ତି - (ହେଜମାଦୀ) କୁ ଶିକ୍ଷା ଦିଅନ୍ତି । କି ବିଚିତ୍ର ଅଙ୍ଗଭଙ୍ଗୀ ? ସେ ହେଉଛନ୍ତି କବିଚନ୍ଦ୍ର କାଳୀଚରଣ ।

ପ୍ରତ୍ୟେକ ପ୍ରତିଷ୍ଠିତ ବ୍ୟକ୍ତି ବିବାଦମୂଳକ (Controversial)ହେବାକୁ ବାଧ୍ୟ । ନିର୍ଦ୍ଦିଷ୍ଟ ମତ ଉପରେ ଜୋରଦେଲେ ବିରୋଧାଭାସ ମିଳିଥାଏ । ବାଇଗଣ ପରିବା ହେଲେ କୌଣସି ବିରୋଧ ହୁଏ ନାହିଁ । କବିଚନ୍ଦ୍ର କାଳୀଚରଣ କିନ୍ତୁ ଏକ ମନୁଆଁ, ଜିଦ୍‌ଖୋର ବ୍ୟକ୍ତି ଥିଲେ । ନିଜମତ ସହଜରେ ଛାଡ଼ିବାକୁ ନାରାଜ । ସହକର୍ମୀ ଚାଲିଯାଉ, ସହଯୋଦ୍ଧା ପରିତ୍ୟାଗ କରୁ, ପ୍ରତିଷ୍ଠିତମାନେ ଅସନ୍ତୁଷ୍ଟ ହୁଅନ୍ତୁ ସୃଜନଶୀଳ କଳାକାର ସେଥିପାଇଁ ଖାତିର କରେନା । ଅପମାନ ତାର ଭୂଷଣ ହୋଇଯାଏ ।

କାଳୀଚରଣ ଓଡିଆ କଳା, ସଂସ୍କୃତିର ପ୍ରତୀକ ଥିଲେ । ଆଜି ସେ ଶୋଇ ପଡ଼ିଥିଲେ ଡାକ୍ତରଖାନାର ଏକ ସାଧାରଣ ଖଟିଆରେ, ଶୋଇ ପଡିଛନ୍ତି ଅମାନିଆଁ କ୍ଲାନ୍ତ ଶିଶୁ ପରି ।

ଏକ ତାରକା ଅନ୍ତର୍ହିତ ହୋଇଛି । ଓଡିଆ ଜାତି, ତାର ସଂସ୍କୃତି ଦରିଦ୍ର ହୋଇ ଯାଇଛି ।

❑❑❑

# ମାନବ ସେବାର ଏକ ଅଧ୍ୟାୟ

*(৺ କମଳାକାନ୍ତ ମିଶ୍ର)*

ଅକ୍ଟୋବର ୧୧, ୧୯୯୫ ।
ସମୟ ସନ୍ଧ୍ୟା ୫ ଟା ।

ସନ୍ଧ୍ୟା ସାଢ଼େ ପାଞ୍ଚ ପରେ ସମସ୍ତଙ୍କୁ ଆସିବାକୁ ବରାଦ ଦିଆଯାଇଛି, କିଏ ଆସିଛି ଔଷଧ ପାଇଁ, କିଏ ଆସିଛି ସୁପାରିଶ ପାଇଁ, କିଏ ଆସିଛି ସାହାଯ୍ୟ ପାଇଁ; କିନ୍ତୁ ସେମାନେ ପହଞ୍ଚିଲା ବେଳକୁ ସେଇ ମଣିଷଟି ଆଉ ନାହିଁ । ଡାକ୍ତର କମଳାକାନ୍ତ ମିଶ୍ର ୮୨ ବର୍ଷ ବୟସର ପୂର୍ବଦିନ ହଠାତ୍ ଆଖି ବୁଜି ଦେଇଛନ୍ତି । ଛାତିରେ ଯନ୍ତ୍ରଣା । ଡାକ୍ତର ଜ୍ୱାଇଁ ଓ ସାନ ପୁଅକୁ ଡାକରା । ତା'ପରେ ସବୁ ଶେଷ, ଯନ୍ତ୍ରଣାର ପରିସମାପ୍ତି । ରାଜକୀୟ ମୃତ୍ୟୁ ! ମୃତ୍ୟୁ ଏହିଭଳି ଆସିବା ଉଚିତ । ରୋଗ ନାହିଁ । କାହାରି ସାହାଯ୍ୟ ଲୋଡ଼ି ନାହାନ୍ତି । ଶାରୀରିକ ଦୃଷ୍ଟିରୁ ନୁହେଁ କି ଆର୍ଥିକ ଦୃଷ୍ଟିରୁ ମଧ୍ୟ ନୁହେଁ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ରହିଛନ୍ତି କାର୍ଯ୍ୟକ୍ଷମ । ତା'ପରେ ମହାଯାତ୍ରା, ଯେଉଁଠୁ ଆଉ କିଏ କେବେ ଫେରି ନାହାନ୍ତି ।

କମଳାଳୟରେ ଲୋକଭିଡ଼ ଜମୁଛି, ବିଭିନ୍ନ ବୟସର ବିଭିନ୍ନ ଜୀବିକାର । ସମସ୍ତଙ୍କ ପାଟିରେ ଆହା ଶବ୍ଦ । ପ୍ରିୟଦର୍ଶିନୀ ମାର୍କେଟ, ଭୁବନେଶ୍ୱରର ବୃହତ୍ତମ ମାର୍କେଟ ବନ୍ଦ ହୋଇଯାଇଛି । ଚାରିଆଡ଼େ ନିସ୍ତବ୍ଧତା । ପତ୍ନୀ କାନ୍ଦୁଛନ୍ତି । ସେ ମଣିଷର ସେବା କରି ଚାଲିଗଲେ କେତେ ଆନନ୍ଦରେ ମୁଁ ଜୀବନବ୍ୟାପୀ ଦେବତାର ସେବା କରି କରି ରହିଗଲି ଦୁଃଖରେ । ମଣିଷ ସେବାର ଶ୍ରେଷ୍ଠ ପୁରସ୍କାର । ଯନ୍ତ୍ରଣାହୀନ ମୃତ୍ୟୁ ।

କଟକ ଜିଲ୍ଲା ସିଦ୍ଧେଶ୍ୱରପୁର ଗାଁରେ ୮୨ ବର୍ଷ ତଳେ ଜନ୍ମ ହୋଇଥିଲେ କମଳାକାନ୍ତ ମିଶ୍ର । ବଡ଼ଭାଇ ଡାକ୍ତର ରମାକାନ୍ତ ମିଶ୍ର, ସାନଭାଇ ବିଚାରପତି ବରଦାକାନ୍ତ ମିଶ୍ର ଆଗରୁ ବାହୁଡ଼ିଛନ୍ତି । ରହି ଯାଇଥିଲେ କମଳାକାନ୍ତ, କଠୋର ଦାରିଦ୍ର୍ୟରେ ବଢ଼ିଥିଲେ ସେମାନେ । ଦାରିଦ୍ର୍ୟ ବିରୁଦ୍ଧରେ ସଂଗ୍ରାମ କରି କରି ସେମାନେ ବିଜୟୀ ହୋଇଥିଲେ । ଦୁଇଜଣ ଥିଲେ ଡାକ୍ତର । ଜଣେ ବିଚାରପତି ।

ଦାରିଦ୍ର୍ୟକୁ କମଳାକାନ୍ତ ଭୁଲି ନଥିଲେ । ପିଲାଦିନୁ ଦେଖି ଆସିଛନ୍ତି ରୋଗୀଙ୍କ ଆର୍ତ୍ତନାଦ, ଅସହାୟ ଅବସ୍ଥା । ପେଟ ପୋଷିବା ପାଇଁ ଚାକିରି କରିଥିଲେ । କ୍ଲିନିକ ଖୋଲିଥିଲେ ଅବସର ପରେ । କିନ୍ତୁ କିଏ ଫିସ ଦେଲା କିଏ ନଦେଲା ସେଥିପାଇଁ ଅନଉ ନଥିଲେ । ବହୁ ସମାଜସେବୀ ସଂଗଠନ ସହିତ ସଂପୃକ୍ତ ଥିଲେ । ପିଲାଦିନର ସ୍ମୃତି ତାଙ୍କର ମନେଥିଲା । ଅମାୟିକ, ଭଦ୍ର କମଳାକାନ୍ତ ସ୍ଥିତଧୀ ଥିଲେ । ତାଙ୍କୁ କେହି ରାଗିବାର ଦେଖି ନାହାନ୍ତି ।

ତିନୋଟି ଖବରକାଗଜ ଟେବୁଲ ଉପରେ ଥୁଆ ହୋଇଛି— ସମାଜ, ପ୍ରଜାତନ୍ତ୍ର, ସମ୍ବାଦ । ଆପଣ ତିନୋଟି ଖବରକାଗଜ କାହିଁକି ମଗାନ୍ତି ? ପଚାରନ୍ତି କେହି କେହି । କମଳାକାନ୍ତଙ୍କ ମୁହଁରେ ମ୍ଲାନ ହସ ରେଖା, ' ଗୋପବନ୍ଧୁ ଦାସଙ୍କ ଖବରକାଗଜ ବୋଲି ସମାଜ, ମହତାବ ବାବୁଙ୍କ କାଗଜ ବୋଲି ପ୍ରଜାତନ୍ତ୍ର ଏବଂ ଆମ ପରିବାରର କାଗଜ ବୋଲି ସମ୍ବାଦ' ତାଙ୍କ ଉତ୍ତର । ପ୍ରିୟଦର୍ଶିନୀ ମାର୍କେଟର ଅଦୂରରେ ସମ୍ବାଦ କାର୍ଯ୍ୟାଳୟ ।

ସ୍ୱର୍ଗଦ୍ୱାରରେ ଚିତା ଜଳୁଛି । ଡାକ୍ତର କମଳାକାନ୍ତ ମିଶ୍ର ପାଲଟି ଯାଇଛନ୍ତି ଇତିହାସ ଉତ୍ତରପୀଢ଼ି ପାଇଁ ପ୍ରେରଣା ।

□□□

## କିଶାନ ଓ କିଶନ ଅମର ରହେ

*(ଙ୍ କିଶନ ପଟ୍ଟନାୟକ)*

ସମାଜବାଦୀ ଚିନ୍ତକ, ସଂଗ୍ରାମୀ ସେନାପତି କିଶନ ପଟ୍ଟନାୟକ ଆଉ ନାହାନ୍ତି । ତାଙ୍କର ପିତା ଚିନ୍ତାମଣି ପଟ୍ଟନାୟକ ଥିଲେ ରାଜପରିବାରର ଶିକ୍ଷକ । କିନ୍ତୁ ପୁତ୍ରମାନେ ପିଲାଦିନରୁ ବିଦ୍ରୋହୀ ପାଲଟିଥିଲେ । ସମାଜବାଦୀ ଚିନ୍ତାଧାରା ମଧ୍ୟ ସେମାନଙ୍କୁ ଆକୃଷ୍ଟ କରିଥିଲା ।

ସାଥୀ କିଶନ ମୋର ସମସାମୟିକ, ବୟସରେ । ୧୯୩୦ ମସିହା ମଇ ମାସ ୩୦ତାରିଖରେ ସେ ଭବାନୀପାଟଣାରେ ଜନ୍ମଗ୍ରହଣ କରିଥିଲେ । ପ୍ରସିଦ୍ଧ କଂଗ୍ରେସ ନେତା ଜଗନ୍ନାଥ ପଟ୍ଟନାୟକ ତାଙ୍କର ସାନଭାଇ । ସେ ଜଣେ ମେଧାବୀ ଛାତ୍ର ଏବଂ ଉଭୟ ରାଜନୀତି ବିଜ୍ଞାନ ଏବଂ ପବ୍ଲିକ ଆଡମିନିଷ୍ଟ୍ରେସନରେ ଏମ୍.ଏ. ପାସ କରିଥିଲେ । ଓଡ଼ିଶା ବାହାରେ ପାଠ ପଢୁଥିବା ସମୟରେ ସେ ପ୍ରସିଦ୍ଧ ସମାଜବାଦୀ ନେତା ରାମ ମନୋହର ଲୋହିଆଙ୍କର ପ୍ରଭାବରେ ଆସିଥିଲେ ଏବଂ ସେ ଆଉ ପଛକୁ ଫେରି ଚାହିଁ ନାହାନ୍ତି । ବିହାର, ମଧ୍ୟପ୍ରଦେଶ ଏବଂ ଉତ୍ତରପ୍ରଦେଶର ସମାଜବାଦୀ ଶକ୍ତି ଭିତରେ ପରିଚିତ ଏବଂ ଜନପ୍ରିୟ କିଶନ ପଟ୍ଟନାୟକ । ଛୋଟ ଲୋହିଆ ନାମରେ ପରିଚିତ ସେ । କିଶନ ଇଂରାଜୀ, ହିନ୍ଦୀ ଓ ଓଡିଆ ଭାଷାରେ ଯେପରି ଭାଷଣ ଦେଇ ପାରନ୍ତି ଲେଖି ବି ପାରନ୍ତି ସେମିତି । ମ୍ୟାନକାଇଣ୍ଡ ପତ୍ରିକାରେ ସେ ପ୍ରଥମ ସଂପାଦକ ରାମ ମନୋହର ଲୋହିଆଙ୍କର ଥିଲେ ସହ ସଂପାଦକ । ତାଙ୍କ ଅନ୍ତେ ସେ ଥିଲେ ଏହାର ସଂପାଦକ, ଠିକ୍ ସେଇପରି ସେ ହିନ୍ଦୀ ମାସିକ ପତ୍ରିକା ସାମୟିକ ବାର୍ତ୍ତା ଏବଂ ବରଗଡ଼ରୁ ପ୍ରକାଶ ପାଉଥିବା ଓଡ଼ିଆ ମାସିକ ପତ୍ରିକା ବିକଳ୍ପ ବିଚାରର ସଂପାଦକ ଥିଲେ । ତାଙ୍କର ଦୁଇଟି ହିନ୍ଦୀ ଭାଷାରେ ରଚିତ ପୁସ୍ତକ 'ଭାରତ ଶୂଦ୍ରୋଁକା ହୋଗା' ଏବଂ 'ବିକଳ୍ପହୀନ ନେହିଁହେ ଦୁନିଆ' ପୁସ୍ତକ ଯେପରି ଆଲୋଡନ ସୃଷ୍ଟି କରିଥିଲା ଠିକ୍ ସେଇପରି ଚହଳ ସୃଷ୍ଟି କରିଥିଲା ।

କିଶନ ପଟ୍ଟନାୟକ ବରଗଡରୁ ପ୍ରଜାସୋସଲିଷ୍ଟ ପାର୍ଟି ଟିକେଟରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ ୧୯୬୨ ମସିହାରେ । ଲୋହିଆଙ୍କର ଜବାହାରଲାଲ ବିରୋଧୀ ଭୂମିକା ସମସ୍ତେ ଜାଣନ୍ତି । ଲୋହିଆ ଏବଂ କିଶନ୍ ଜବାହରଲାଲଙ୍କ ବିରୋଧରେ ପ୍ରଥମ ଅନାସ୍ଥା ପ୍ରସ୍ତାବ ଆଗତ କରିଥିଲେ । ସେମାନେ ଜାଣିଥିଲେ ତାଙ୍କ ପ୍ରସ୍ତାବର ଭାଗ୍ୟ କ'ଣ

ହେବ । ତଥାପି ସେମାନେ ସେମାନଙ୍କର ଜିଦ୍‌ରେ ଅଟଳ ଥିଲେ । ଜିଦ୍‌ଖୋର କିଶନ ନିଜର ଜିଦ୍, ନିଜର ବିଶ୍ୱାସରୁ କଦାପି ଓହରିଯାଇ ନାହାନ୍ତି । ସେ ୰ ନବକୃଷ୍ଣ ଚୌଧୁରୀଙ୍କର ଖୁବ୍ ପ୍ରିୟ ଥିଲେ । କିଶନ୍‌ଙ୍କର ବୌଦ୍ଧିକ ପରାକାଷ୍ଠା ନବବାବୁଙ୍କୁ ମୁଗ୍ଧ କରିଥିଲା । ମୋର ମନେପଡୁଚି ବିଜୁ ପଟ୍ଟନାୟକ କଳିଙ୍ଗ ପତ୍ରିକା ପ୍ରକାଶନ କଲାବେଳେ ନବବାବୁଙ୍କୁ ଅନୁରୋଧ କଲେ ଏହାର ସଂପାଦକ ପଦ ପାଇଁ ନାମ ପ୍ରସ୍ତାବ କରିବା ପାଇଁ । ସେ କିଶନଙ୍କ ନାମ ବାଛିଥିଲେ; କିନ୍ତୁ କିଶନ ତାହା ଗ୍ରହଣ କରିନଥିଲେ । ଏହା ମୋର ଚାକ୍ଷୁସ ଅଭିଜ୍ଞତା ।

ଦଳିତ ମଣିଷ ପାଇଁ, ଚାଷୀ ପାଇଁ ତାଙ୍କର ଅଙ୍ଗୀକାର ଥିଲା ପ୍ରଭୂତ । ସେ ୧୯୪୭ ମସିହାରେ ରାଜବିରୋଧୀ ପ୍ରଜାମଣ୍ଡଳ ଅନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ । ୧୯୫୧ ମସିହାରୁ ସେ ସୋସଲିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ଲୋହିଆ ଥିଲେ ତାଙ୍କର ଆଇକନ୍, ଆଦର୍ଶ, ସୋସଲିଷ୍ଟ ଅନ୍ଦୋଳନ ଦ୍ୱିଧା ବିଭକ୍ତ ହୋଇ ଲୋପ ପାଇଯାଇଛି, କିନ୍ତୁ କିଶନ ରହିଛନ୍ତି ସେଇପରି ଅନମନୀୟ, ଶାଣିତ ଏବଂ ଏକନିଷ୍ଠ । କେତେକ ତାଙ୍କୁ ଡଗମାଟିକ୍ ବୋଲି କହନ୍ତି, ତାହା ଶୁଣି ସେ ହସନ୍ତି ଯେ ତାହା କିଛିତ ନଥିବାରୁ ସମାଜବାଦୀ ଆନ୍ଦୋଳନର ଏଇ ଦୁର୍ଦ୍ଦଶା । ସେ ସମାଜବାଦୀ ଜନ ପରିଷଦର ଅଧ୍ୟକ୍ଷ ଥିଲେ ଏବଂ ତାର ଏକ ସଭାରେ ଯୋଗ ଦେବାକୁ ସେ ହାଇଦ୍ରାବାଦ ଯାଇଥିଲେ । ସେଇଠି ସେ ଅସୁସ୍ଥ ହୋଇ ଭୁବନେଶ୍ୱର ଫେରି ଆସିଲେ ।

କିଶନ୍ ନିଜ ମତରେ ଡଗମାଟିକ୍ ହୋଇପାରନ୍ତି; କିନ୍ତୁ ସେଥିରେ କିଛି ବ୍ୟକ୍ତିଗତ ନଥିଲା । ଗାନ୍ଧୀ ଏବଂ ଆଧୁନିକ ଯୁଗ ଉପରେ ଅନୁଷ୍ଠିତ ଆନ୍ତର୍ଜାତିକ ସେମିନାରର ଉଦ୍‌ଘାଟନ ଉତ୍ସବରେ ତାଙ୍କର ବିଜୁ ପଟ୍ଟନାୟକ ଏବଂ ସମାଜ ସଂପାଦକ ରାଧାନାଥ ରଥଙ୍କ ସହିତ ତୀବ୍ର ମତଭେଦ,ବାକ୍ୟ ବିନିମୟ ଏବଂ ତାଙ୍କର କକ୍ଷତ୍ୟାଗ ସହିତ ମାତ୍ର କେତେ ଘଣ୍ଟା ପରେ ସେମାନଙ୍କ ସହିତ ୟୁନିଭର୍ସରେ ମଧ୍ୟାହ୍ନ ଭୋଜନ, ଅନ୍ତରଙ୍ଗ ଅଳାପ ମୋର ଏବେ ବି ମନେ ରହିଛି ।

କିଶନ ଛାତ୍ରାବସ୍ଥାରୁ ହିଁ ଜାତୀୟ ସ୍ତରରେ ପରିଚିତ ହୋଇଯାଇଥିଲେ । ଜୟପ୍ରକାଶ, ଲୋହିଆ, ଅଚ୍ୟୁତ ପଟ୍ଟବର୍ଦ୍ଧନ ପରି ନେତାଙ୍କ ସହିତ ତାଙ୍କର ଥିଲା ଗଭୀର ଆତ୍ମୀୟତା । ଜୟ ପ୍ରକାଶଙ୍କ ସହିତ ମିଶି ସେ ଜରୋରୀ ପରିସ୍ଥିତିର ବିରୋଧ କରିଥିଲେ ଏବଂ ୧୯ ମାସ କାଳ କାରାରୁଦ୍ଧ ହୋଇଥିଲେ । ୧୯୮୦ ମସିହାରେ ସେ ସମତା ସଂଗଠନ ପ୍ରତିଷ୍ଠା କରି ସର୍ବଭାରତୀୟ ସ୍ତରରେ ଯୁବକମାନଙ୍କୁ ସମାଜବାଦୀ ଦର୍ଶନରେ ଦୀକ୍ଷିତ କରିବାକୁ ଉଦ୍ୟମ କରିଥିଲେ । ଯଦିଓ ସେତେବେଳକୁ ସାରା ଦେଶରେ ସମାଜବାଦୀ ଆନ୍ଦୋଳନ ବିପର୍ଯ୍ୟସ୍ତ ହୋଇ ଯାଇଥିଲା । ତାଙ୍କ ନେତୃତ୍ୱରେ ଗଠିତ ଓଡିଶା ରାଜ୍ୟ କୃଷକ ସଂଗଠନ ସମ୍ବଲପୁର ଅଞ୍ଚଳରେ ଚାଷୀମାନଙ୍କର ବିବିଧ ସମସ୍ୟାକୁ ନେଇ

ଆନ୍ଦୋଳନ କରିଛି । ବାଲୋକ ବିରୋଧୀ ଆନ୍ଦୋଳନ, କଳାହାଣ୍ଡିରେ ଶିଶୁ ବିକ୍ରୀ ସଂପର୍କରେ ସୁପ୍ରିମକୋର୍ଟରେ ମୋକଦ୍ଦମା ତାଙ୍କର ଖ୍ୟାତିକୁ ସର୍ବଭାରତୀୟ କରି ପାରିଥିଲା ।

ଲୋହିଆଙ୍କ ପରି ସେ ମଧ୍ୟ ଥିଲେ ବିବାହ ବିମୁଖ । ବିବାହ ସେମାନଙ୍କ ପାଇଁ ଗୋଟାଏ ଖୁବ୍ ବେଶି ସମ୍ମାନଜନକ ବସ୍ତୁ ନଥିଲା । ଅନେକ ଦିନ ପର୍ଯ୍ୟନ୍ତ ସେ ବିବାହ କରିନଥିଲେ । ବାଣୀ ଦେବୀଙ୍କ ବନ୍ଧନରେ ସେ କେବେ ବାନ୍ଧି ହୋଇଗଲେ ମୁଁ ନିଜେ ଜାଣି ପାରିନଥିଲି । ଗଲା କେତେବର୍ଷ ହେଲା କିଶନ୍ ଭୁବନେଶ୍ୱରରେ ରହୁଥିଲେ, ଶିକ୍ଷୟିତ୍ରୀ ପତ୍ନୀ ବାଣୀଙ୍କର କର୍ମସ୍ଥଳରେ । ଦେଖାହୁଏ ମଝିରେ ମଝିରେ । ମୋର ମନେପଡ଼େ ତାଙ୍କ ସହିତ ବହୁତ ବର୍ଷତଳେ ଝାରସୁଗୁଡା ରେଲବାଇ ଷ୍ଟେସନ ପ୍ଲାଟଫର୍ମରେ ସାକ୍ଷାତ । ସାରା ରାତି ସେଇ ପ୍ଲାଟର୍ଫମରେ କଟିଗଲା ଟ୍ରଟସ୍କିଙ୍କ ଉପରେ ଆଲୋଚନା ଯୁକ୍ତିତର୍କରେ । ସେ କଥା ହେଜିଛୁ ଆମେ ସବୁବେଳେ, ଯେତେବେଳେ ଭେଟ ହୋଇଛି । ଭୁବନେଶ୍ୱର ସି.ଆର.ପି. ଛକରୁ ଗପ ଲମ୍ବି ଯାଇଛି ତାଙ୍କ ଘରକୁ ।

କିଶନ ଥିଲେ କିଶାନର ମଣିଷ । କିଶାନ ଯେପରି ଜାତିର ମେରୁଦଣ୍ଡ, କିଶନ ସେଇପରି ଏ ଜାତିର ଏକ ବୌଦ୍ଧିକ ମେରୁଦଣ୍ଡ । ଝିଅ ସେଦିନ ଫୋନ କରି କହିଲା, ବାପା ତମେ କିଶନ ପଟ୍ଟନାୟକଙ୍କୁ ଚିହ୍ନିଛ । ତାଙ୍କୁ ମୁଁ ନୀଳାଚଳ ହସପିଟାଲର ଆଇସିୟୁରେ ଭର୍ତ୍ତି କରାଇବାରେ ସାହାଯ୍ୟ କରିଛି, କାରଣ ସେ କୋମାରେ । ପାଟିରୁ କଥା ପଇଟୁ ନାହିଁ । ଯାଇ ତ ପାରିବି ନାହିଁ । କାରଣ ମୁଁ ଅଚଳ । ତାର ଦୁଇଦିନ ପରେ ମୁଁ ତାକୁ ସଂବାଦ ଦେଲି ଯେ କିଶନ୍ ଆଉ ନାହାନ୍ତି । ତାର ବି ପାଟି ପଇଟିଲା ନାହିଁ । ଖାଲି କହିଲା, ଟିଟି ଭାଇନା କହୁଥିଲେ ସେ ଜଣେ ବଡ଼ ମଣିଷ ।

କିଶାନ୍ ରହିବ ଦେଶରେ, ସେଇପରି ରହିବ କିଶନ୍ । ବ୍ୟକ୍ତି ମରିଯାଇ ପାରେ କିନ୍ତୁ ସମାଜବାଦକୁ ରୋକିବ କିଏ ?

ପଣ୍ଡିତ ନେହେରୁ ଆପଣାର ଘୋର ବିରୋଧୀ ଲୋହିଆଙ୍କ ପାଖକୁ ଆସୁଥିଲେ ଜେଲକୁ । ଜରୋରୀ ପରିସ୍ଥିତିର ବିରୋଧୀ ଲୋହିଆଙ୍କୁ ଦେଖିବା ପାଇଁ ଇନ୍ଦିରା ଗାନ୍ଧୀ ଯାଇଥିଲେ ଡାକ୍ତରଖାନା । ତାଙ୍କୁ ଦେଖି ଉଠିବାକୁ ଚେଷ୍ଟାକରି ଲୋହିଆ ପାଟି କଲେ ଆରେ ତାକୁ ବସିବାକୁ ଦିଅ, ଖାଇବାକୁ କିଛି ଦିଅ । ଭାରତୀୟ ପରମ୍ପରାର ଏଇ ଆଦର୍ଶକୁ ରକ୍ଷା କରି ମୁଖ୍ୟମନ୍ତ୍ରୀ ନବୀନ କିଶନଙ୍କର ଚିକିତ୍ସାର ଦାୟିତ୍ୱ ସରକାର ବହନ କରିବେ ବୋଲି ଆଦେଶ ଦେଇଥିଲେ । ସେଥିପାଇଁ ସେ ଧନ୍ୟବାଦାର୍ହ ।

କିଶନ ନାହାନ୍ତି । କେହି ରହିବେ ନାହିଁ । କିନ୍ତୁ ସମୟର ବାଲିରେ ତାଙ୍କର ପାଦଚିହ୍ନ ଉଜ୍ଜଳି ରହିବ ବହୁକାଳ ।

□□□

# ବିଦ୍ରୋହୀ ରଣକ୍ଳାନ୍ତ

## (୰ କୁଳମଣି ମହାପାତ୍ର)

ବନ୍ଧୁ କୁଳମଣି ମହାପାତ୍ରଙ୍କର ପରଲୋକ ହୋଇଗଲା । ଗଲା କେତେ ସପ୍ତାହ ହେଲା ସବୁ ବନ୍ଧୁ, ପରିବାରର ଲୋକେ ଏଇ ଆଶଙ୍କା କରୁଥିଲେ । ମୃତ୍ୟୁ ସହିତ ସଂଗ୍ରାମ ଚାଲିଥିଲା । ପରିଶେଷରେ ମୃତ୍ୟୁର ବିଜୟ ହେଲା । ବନ୍ଧୁ ଯୁଧିଷ୍ଠିର ଦାସ ତାଙ୍କୁ ଦେଖିବାକୁ ଆସିଥିଲେ । କହିଲେ, ହସୁନ କୁଳମଣି; ହସ ମ ଟିକିଏ । ତମେ ତ କେତେ ସଂଗ୍ରାମ କରି ଆସିଛ । ତମର ସଂଗ୍ରାମ ତ ବନ୍ଧୁ ସାମ୍ମୁଖ୍ୟରେ । ସବୁଥିରେ କ'ଣ ଆମେ ଜିତି ପାରିଥାଇଁ ? କେବେ ନୁହେଁ । ତଥାପି ତ ଆମେ ହସିଛେ ଆମର ପରାଜୟରେ । ପରାଜୟ-ପର ସମୀକ୍ଷାରେ । ତେଣୁ ଆଜି ଭୟ କାହିଁକି ? ହସର ଏକ ମ୍ଳାନ ରେଖା କ'ଣ ସତରେ ଉକୁଟି ଗଲା କୁଳମଣିଙ୍କ ମୁହଁ ଉପରେ ନା ସେଇପରି ଏକ ଭ୍ରମ !

ସଂଗ୍ରାମ । ଜୀବନ ସାରା ଖାଲି ସଂଗ୍ରାମ କରି ଆସିଛି । କେତେ ଲଢ଼ିବ ? କେତେଦିନ ଲଢ଼ିବ ? କ'ଣ ସେ ମଣିଷ ନା ପଥର ? ବାପା ନୀଳକଣ୍ଠ ମହାପାତ୍ର ପ୍ରବଳ ପ୍ରତାପୀ ପୁଲିସ ଅଫିସର । ଏକମାତ୍ର ପୁତ୍ର କୁଳମଣି ପାଲଟିଲା ସ୍ୱାଧୀନତା ସଂଗ୍ରାମୀ, ପୁଣି ସୋସଲିଷ୍ଟ । ପିତା ଓ ପରିବାରର ସମସ୍ତ ବନ୍ଧନକୁ କାଟି କୁଳମଣି ମହାପାତ୍ର ଯୋଗ ଦେଲେ ସ୍ୱାଧୀନତା ସଂଗ୍ରାମରେ । ରେଭେନ୍‌ସା କଲେଜର ଛାତ୍ର । ଛାତ୍ରମାନଙ୍କର ନେତା । ଏଣେ ଘରେ ସଂଗ୍ରାମ, ତେଣେ ସାମ୍ରାଜ୍ୟବାଦୀମାନଙ୍କ ସହିତ । ସେ ଯୁଦ୍ଧ ଚାଲିଲା ଅନେକ ଦିନ ।

କୁଳମଣି ମହାପାତ୍ର ଶୋଇ ରହିଛନ୍ତି ଖଟ ଉପରେ । ବନ୍ଧୁମାନେ ଆସି ପହଞ୍ଚୁଛନ୍ତି । ଅନ୍ୟମାନେ ଫୋନ୍ କରୁଛନ୍ତି । ଆଗରୁ ପତ୍ନୀ ଶ୍ୟାମଳୀ ଲାହିଡୀ (ପରେ ମହାପାତ୍ର) ଯାଇଥିଲେ । ସ୍ୱାମୀ ସ୍ତ୍ରୀ ଦୁଇଜଣଙ୍କର ଇଚ୍ଛା ଥିଲା ଚକ୍ଷୁଦାନ କରିଯିବା ପାଇଁ । ପ୍ରତିଦିନ ଖବରକାଗଜରେ ଚକ୍ଷୁବ୍ୟାଙ୍କ ପାଇଁ, ଚକ୍ଷୁଦାନ ପାଇଁ ନିବେଦନ ଚାଲିଛି । କିନ୍ତୁ ଓଡ଼ିଶାର ସର୍ବବୃହତ୍ ଡାକ୍ତରଖାନା ଓ ମେଡିକାଲ କଲେଜରେ ତା'ର ବ୍ୟବସ୍ଥା ନାହିଁ, ସାଇନବୋର୍ଡ ଅଛି । ପୁଣି ମହାଯୋଦ୍ଧା, ଗୁରୁ ନାନକଙ୍କ ନାମରେ । ଆମେ ସବୁ ନାଁ ବିକିବାରେ

ପାରଙ୍ଗମ । ହୁଏତ ଅର୍ଥ ଆସିଥିବ ଏବଂ ତାହା ବିନିଯୋଗ ହୋଇଥିବ ଗାଡ଼ି କିଣିବାରେ । କୁଳମଣିବାବୁ ସେଦିନ ବ୍ୟସ୍ତ ହୋଇଥିଲେ ସ୍ତ୍ରୀଙ୍କର ଶେଷ ଇଚ୍ଛା ପୂରଣ କରିପାରିଲେ ନାହିଁ ବୋଲି । ଆଜି ମଧ ସେଇ ଅବସ୍ଥା । କୁଳମଣିବାବୁଙ୍କର ଶେଷ ଇଚ୍ଛା ପୂରଣ ହୋଇପାରୁ ନାହିଁ ।

କୁଳମଣିବାବୁଙ୍କର କେଉଁ ଇଚ୍ଛା ପୂରଣ ହୋଇଛି କି ? କେବଳ ବୋଧହୁଏ ଲଢ଼ିବାର ଇଚ୍ଛା ହିଁ ପୂରଣ ହୋଇଛି ।

କୁଳମଣିବାବୁ ବିବାହ କଲେ । ବିବାହ କଲେ ଭିନ୍ନ ଜାତିରେ, ଭିନ୍ନ ଭାଷାର କନ୍ୟା ସହିତ । ପିଲାଦିନୁ ତ ଜାତି ଧର୍ମ ଛାଡ଼ିଥିଲେ । ଯେ ଚଣ୍ଡାଳ ପାଲଟିଲା, ତା'ର ଜାତି କ'ଣ ? କୁଳମଣିବାବୁ ତ୍ୟାଜ୍ୟପୁତ୍ର ହେଲେ । କ୍ରୁଦ୍ଧ, ଆହତ ପିତା ତାଙ୍କୁ ଘରୁ ବହିଷ୍କାର କରିଦେଲେ । ସସ୍ତ୍ରୀକ କୁଳମଣିବାବୁ ରହୁଥିଲେ କଲେଜ ଛକ ପାଖରେ । ମେହେନ୍ତରମାନଙ୍କ ସହିତ କାମ କରିହେବ ଏବଂ କଲେଜରେ ପଢ଼ିହେବ । ଛାତ୍ର ଆନ୍ଦୋଳନ କଥା ବୁଝିହେବ ।

ଦାରୁଣ ଦୁର୍ବିପାକର ସମୟ । ଖାଇବାକୁ ପଇସା ନାହିଁ । ଘରଭଡା ଦିଆହୋଇ ପାରୁ ନାହିଁ । ବର୍ଷ ବର୍ଷ ଧରି ଏଇ ସମସ୍ୟା । କଠୋର ସଂଗ୍ରାମ । କୁଳମଣିବାବୁ ଲଢ଼ି ଚାଲିଲେ । ୧୯୪୬ର ୟୁନିୟନ ଜ୍ୟାକ ବିରୋଧୀ ଆନ୍ଦୋଳନରୁ ୧୯୫୧ର ଦରମାବୃଦ୍ଧି ବିରୋଧୀ ଆନ୍ଦୋଳନ । କୁଳମଣିବାବୁ ସଂଗ୍ରାମର ଆଗ ଧାଡ଼ିରେ । ୧୯୫୨ ନିର୍ବାଚନରେ ସେ ଲଢ଼ିଲେ ନିର୍ବାଚନରେ ତାଙ୍କର ପ୍ରିୟ ନେତା ନବକୃଷ୍ଣ ଚୌଧୁରୀଙ୍କ ସହିତ । ବ୍ୟକ୍ତିଗତ ସମ୍ପର୍କ ଖରାପ ହୋଇନାହିଁ । ମତାନ୍ତର ମନାନ୍ତରରେ ପରିଣତ ହୋଇ ନାହିଁ । ବହୁବର୍ଷ ପରେ ଯେତେବେଳେ ଏଇ ଲେଖକ ନବବାବୁ ବା ମାଳତୀ ଦେବୀଙ୍କୁ ଭେଟିଛି ଅନୁଗୋଳରେ ସେମାନେ ପଚାରିଛନ୍ତି କୁଳମଣି ମହାପାତ୍ରଙ୍କ କଥା । ଏଭଳି ଜିଜ୍ଞାସା ଲୋପ ପାଇଯାଉଛି ସମାଜରୁ ।

କୁଳମଣିବାବୁ ସୋସଲିଷ୍ଟ ପାର୍ଟିର ସକ୍ରିୟ ସଦସ୍ୟ; କିନ୍ତୁ ସୋସଲିଷ୍ଟ ଆନ୍ଦୋଳନ କ୍ରସ ରୋଡ୍‌ସରେ ବା ଛକ ଉପରେ । ବାଟ କେଉଁଟା ? କୁଳମଣିବାବୁ ଚାକିରି କଲେ । ଆଗରୁ ନୃତତ୍ତ୍ୱ ପ୍ରତି ତାଙ୍କର ଦରଦ ଥିଲା । ସେ ବିଷୟରେ ମଧ ଯୋଗ୍ୟତା ଅର୍ଜନ କରିଥିଲେ । ଚାକିରି ଆରମ୍ଭ ହେଲା । କିନ୍ତୁ ଆରମ୍ଭ ହେଲା ପୁଣି ଏକ ସଂଗ୍ରାମ । ଆଦିବାସୀମାନଙ୍କର ଉନ୍ନୟନ ପାଇଁ ଅନୁଦାନ ଆସେ । ଆସି ବାଟରେ ହରଣଚାଳ ହୋଇଯାଏ । ସେମାନଙ୍କ ଉପରେ ଗବେଷଣା ହୁଏ । ଗବେଷଣା ଅର୍ଥକରୀ । ସେମାନେ

ରହିଯାଆନ୍ତି ସେଇପରି ଉଲଗ୍ନ, ଅଶିକ୍ଷିତ ଏବଂ ସେମାନଙ୍କ ଉପରେ ଗବେଷଣା କରି ସେ ବାବଦରେ ବହି ବିକ୍ରି କରି ଦଳେ ହେଲେଣି ଧନାଢ୍ୟ । କୁଳମଣିବାବୁଙ୍କ ସଂଗ୍ରାମ ସେମାନଙ୍କ ସହିତ । ଚାଲିଲା ଏ ସଂଗ୍ରାମ ବହୁ ବର୍ଷ ଧରି ।

କୁଳମଣିବାବୁଙ୍କ ଜୀବନ ଅତିଷ୍ଠ ହୋଇ ଉଠିଲାଣି । କୌଣସି ମତେ ଚାକିରିରୁ ଅବସର ନେଇ ସେ ଫେରିବେ ପୁଣି ସକ୍ରିୟ ରାଜନୀତିକୁ; କିନ୍ତୁ ତେଣେ ରାଜନୀତିର ଗଙ୍ଗାରେ ଅନେକ ପାଣି ବୋହିଗଲାଣି । ଅନେକ ନୂଆ ମୁହଁ ଆସିଗଲେଣି ମଇଦାନ ଉପରକୁ । ମୂଲ୍ୟବୋଧ ବଦଳି ଗଲାଣି । ସମାଜବାଦୀ ବା ସୋସଲିଷ୍ଟମାନେ ସେ ଅବକ୍ଷୟରୁ ମୁକ୍ତ ନୁହନ୍ତି । ପୂର୍ବତନ ସୋସଲିଷ୍ଟମାନେ ବାତ୍ୟାରେ ଛିନ୍ନଛତ୍ର ହୋଇ କିଏ କୁଆଡ଼େ ଉଡ଼ିଗଲେଣି । ବିଭିନ୍ନ ଶିବିରରେ ଆଶ୍ରୟ ନେଲେଣି ସେମାନେ । କୁଳମଣିବାବୁ ତଥାପି ଲଢ଼ିବାକୁ ପ୍ରସ୍ତୁତ । 'ଲଢ଼ିବାକୁ ଯା'ର ସାହସ ନାଇଁ, ସେ କି ବୀର ଯଶ ପାଇ ?' କୁଳମଣିବାବୁ ଚିନ୍ତକମାନଙ୍କର, ସମାଜବାଦୀ ଚିନ୍ତାଧାରାର ବ୍ୟକ୍ତିମାନଙ୍କର ଫୋରମ ଗଢ଼ିଲେ । ଚିନ୍ତାର ଦିଆନିଆ ହେଉ ଆଗ, ପରେ ଦେଖିବା କ'ଣ ପଦକ୍ଷେପ ନିଆଯିବ ।

ବାପା ବାହୁଡିଲେଣି । ଘର ଦାୟିତ୍ୱ ମୁଣ୍ଡ ଉପରେ । ସ୍ତ୍ରୀ, ତିନି ଝିଅ । କୁଳମଣିବାବୁଙ୍କର ସଂଗ୍ରାମ ଚାଲିଲା, ସଂଗ୍ରାମ ଦାରିଦ୍ର୍ୟ ସହିତ, ସଂଗ୍ରାମ ଶ୍ରେଣୀ ଶତ୍ରୁ ସହିତ ।

କୁଳମଣିବାବୁ ସୋସଲିଷ୍ଟ । କୁଳମଣିବାବୁ ଗବେଷକ । ଆସନ୍ତି ୟୁନିଭର୍ସିର ସଭାକୁ । ସାଇକେଲରେ ଆସିବେ । ଗାଡ଼ିରେ ଛାଡିବାକୁ କହିଲେ ମଧ୍ୟ ମାନିବେ ନାହିଁ । ଟ୍ରାଉଜର, ପଞ୍ଜାବୀ ଏବଂ କାନ୍ଧରେ ଏକ ବ୍ୟାଗ । ବିପ୍ଳବର ଗୈରିକ ନିଶାଣ । ରକ୍ତଚାପ, ବହୁମୂତ୍ର ବଢ଼ିଛି । ଦେହର ଅବକ୍ଷୟ ଆରମ୍ଭ ହୋଇଛି । ସର୍ବୋଦୟ ଆନ୍ଦୋଳନ, ସର୍ବୋଦୟ ଚିନ୍ତାଧାରା ତାଙ୍କୁ ଆକୃଷ୍ଟ କରିଛି । ସେ ସର୍ବୋଦୟ ଆନ୍ଦୋଳନରେ ଯୋଗଦେଇଛନ୍ତି । ଖବରକାଗଜ, ମେଗାଜିନ ସମ୍ପାଦନା କରିଛନ୍ତି । ଏଇ ସମୟରେ ଲୋକସଂସ୍କୃତି ଉପରେ ଆନ୍ତର୍ଜାତିକ ସେମିନାର । କୁଳମଣିବାବୁ ପାଞ୍ଚଖଣ୍ଡ ବହିରୁ ଗୋଟିଏ ଖଣ୍ଡର ସମ୍ପାଦକ । କାମ କରନ୍ତି ଧାରାବାହିକ, ଶୃଙ୍ଖଳିତ । କୁଳମଣିବାବୁ ଅସୁସ୍ଥ ହୋଇପଡନ୍ତି । ସଙ୍କଟଜନକ ପରିସ୍ଥିତିରେ ତାଙ୍କୁ ମେଡିକାଲରେ ଭର୍ତ୍ତି କରାଯାଏ । ଯିବା, ଯିବା ଡାକ । ସ୍ତ୍ରୀଙ୍କର କଠୋର ସେବା ଫଳରେ ସେ ଫେରନ୍ତି ଘରକୁ ଜୀବିତ ଅବସ୍ଥାରେ । ନୂଆ ଜୀବନ ପାଇଲେ । କିନ୍ତୁ ହଠାତ୍ ସ୍ତ୍ରୀ ଅସୁସ୍ଥ ହେଲେ ଏବଂ ତାଙ୍କର ପରଲୋକ ହୋଇଗଲା । କୁଳମଣିବାବୁ ଏକାକୀ ହୋଇଗଲେ । ଜୀବନ ଲାଗିଲା ନିଃସଙ୍ଗ ।

ସେ ଅଧିକ କାର୍ଯ୍ୟରେ, ବହୁ ଅଧିକ କାର୍ଯ୍ୟରେ ନିଜକୁ ଲିପ୍ତ ରଖିଲେ, ସେ ଦୁଃଖକୁ ପାଶୋରିବା ପାଇଁ । କିନ୍ତୁ ଏଣେ କିଡନୀ, ଦୁଇଟିଯାକ କିଡନୀ ଖରାପ ହୋଇଗଲା । ବହୁମୂତ୍ର ରୋଗ ଆକ୍ରାନ୍ତ କଲା । ଘରୁ ତାଙ୍କୁ ଅଣାହେଲା ଡାକ୍ତରଖାନାକୁ । ଏବଂ ପରିଶେଷରେ ତାଙ୍କର ଜୀବନଦୀପ ନିର୍ବାପିତ ହୋଇଗଲା ।

ଫୋନ କରୁଚି ସମସ୍ତଙ୍କୁ । କିନ୍ତୁ ମନ ଫେରିଯାଉଛି ସେଇ ଅତୀତକୁ । ସୁଦର୍ଶନ, ଅଗ୍ନିଗର୍ଭା କୁଳମଣି ମହାପାତ୍ର । ସବୁ ସଂଗ୍ରାମର ଆଜି ଶେଷ ହୋଇଛି । ମୃତ୍ୟୁର ଦୃପ୍ତ ସଙ୍କେତ । କିନ୍ତୁ କୁଳମଣି କ'ଣ ମରିପାରେ ? ସେ ବଞ୍ଚି ରହିବ ବହୁକାଳ ଆପଣାର ଅଗଣିତ ବନ୍ଧୁମାନଙ୍କ ପାଖରେ, ପ୍ରତିଦ୍ୱନ୍ଦ୍ୱୀମାନଙ୍କ ପାଖରେ । ସେଇ ତ ତା'ର ଜୀବନର ସାର୍ଥକତା । କିଛି ବି ଲୋଡି ନଥିଲା, କିଛି ତ ହୋଇନଥିଲା । ତଥାପି ସାର୍ଥକତା ଆସିଛି ସେଇ ବିରାଟ ନାସ୍ତି ଭିତରେ । ସକଳ ନାହିଁର ମଧ୍ୟେ ସେଇ ଏତେ ଟିକେ ହଁ । ସେଇ ତ କୁଳମଣି ମହାପାତ୍ର ।

▢▢▢

# ପଖାଳା ସ୍ମୃତି

## (୰ କୁମାରୀ ଏସ୍‌ମ୍ୟାନ)

୧୯୭୭ ମସିହା ଏପ୍ରିଲ ମାସ ୪ତାରିଖ । ବହୁ ବର୍ଷ ବିତିଗଲାଣି । କିନ୍ତୁ ଆଜିବି ମନେ ପଡ଼ିଲେ ଆଖି ଜକେଇ ଆସେ । ସେଦିନ ହଠାତ୍ ସେଇ ସମ୍ବାଦ ପ୍ରସାରିତ ହୋଇଗଲା ଯାହା ବିଶ୍ୱାସ କରିବା ଏବେ ବି ସମ୍ଭବ ହୁଏନା । ଆଉ ସେଇ ସମ୍ବାଦର ପ୍ରତିକ୍ରିୟା ? ସମ୍ପୂର୍ଣ୍ଣ ଅବିଶ୍ୱାସ୍ୟ ! ଯୋରନ୍ଦା ମହିମା ଗାଦି । ସଂସାରର ସବୁ ସମ୍ପର୍କ ପରିତ୍ୟାଗ କରି ଯୋଗୀ ସେଠି ସାଧନାରତ । ମୁକ୍ତିପାଇଁ । ଆପଣାର ଏବଂ ସଂସାରର । ସେଇ ସମ୍ବାଦ ହଠାତ୍ ସେଇ ସ୍ଥିର, ଅବିଚଳ ସନ୍ନ୍ୟାସୀମାନଙ୍କୁ ଚଞ୍ଚଳ କରିଥିଲା । ସେମାନଙ୍କର ପଥୁରିଆ ଆଖିରେ ଜମି ଉଠିଥିଲା ଲୁହ । ସେଇ ସମ୍ବାଦ ପ୍ରସାରିତ ହୋଇଥିଲା ସୁଦୂର କୋରାପୁଟ ଫୁଲବାଣୀର ଆଦିବାସୀ ପଲ୍ଲୀକୁ, ଯେଉଁଠି ନିର୍ଭୟରେ ଆପଣାର ଘର ଭଳି ବୁଲୁଥିଲା ସେଇ ଝିଅଟି । ହଠାତ୍ ସେଇଦିନ ପରଲୋକ ହୋଇଗଲା କୁମାରୀ ଏସ୍‌ମାନଙ୍କର । ମାତ୍ର ୩୬ ବର୍ଷ ବୟସରେ ଏଇ ଗବେଷିକାଙ୍କର ଧରାପୃଷ୍ଠରେ ନାଟକର ଶେଷ ଯବନିକା ପଡ଼ିଲା । ଇତିହାସର ପୃଷ୍ଠା ଖୋଜୁ ଖୋଜୁ ସେ ନିଜେ ଇତିହାସ ପାଲଟିଗଲେ । ଗବେଷିକା ନିଜେ ଗବେଷଣାର ବସ୍ତୁ ପାଲଟିଲେ । ଏଇ ହେଉଛି ବିଗତ ଦଶନ୍ଧିର କାହାଣୀ ।

କୁମାରୀ ଏସମାନ ଆସିଥିଲେ ଜର୍ମାନୀରୁ । ବାପା ଭାରତବିତ୍ । ତେଣୁ ସ୍ୱାଭାବିକ ଭାବରେ ପିଲାଦିନୁ କୁମାରୀ ଏସ୍‌ମାନ ଭାରତବର୍ଷ ପ୍ରତି ଆକୃଷ୍ଟ ହୋଇଥିଲେ । ଜର୍ମାନୀରେ ଉଚ୍ଚ ଶିକ୍ଷାଲାଭ କରି ସାରିଲା ପରେ ଗବେଷଣା ପାଇଁ ସେ ଆସିଲେ ଭାରତବର୍ଷକୁ ଏବଂ ଓଡ଼ିଶାକୁ ତାଙ୍କର ଗବେଷଣାର କ୍ଷେତ୍ର ଭାବରେ ବାଛିନେଲେ । ଓଡ଼ିଶା ତୁମକୁ କାହିଁକି ଆକୃଷ୍ଟ କଲା ଏହି ପ୍ରଶ୍ନ ପଚାରିଲେ- ସେ କହୁଥିଲେ ଯେ ଜଗନ୍ନାଥ ଏବଂ ଭୀମା ଭୋଇଙ୍କର ମହିମାଧର୍ମ । ଜଗନ୍ନାଥ ତାଙ୍କର ଆରାଧ୍ୟ ଦେବତା ଥିଲେ କି ନାହିଁ ତାହା ହୁଏତ କହିହେବ ନାହିଁ । କିନ୍ତୁ ଜଗନ୍ନାଥ ସଂସ୍କୃତି ତାଙ୍କର ଶିରା ପ୍ରଶିରାରେ ଭେଦ କରିଯାଇଥିଲା ।

ଭୀମା ଭୋଇ ଥିଲେ ତାଙ୍କର ଆଦର୍ଶ । '' ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ''କୁ ସେ ସବୁବେଳେ ଗୁଣୁଗୁଣୁ କରି ଗାଉଥିଲେ ।

ସେ ଓଡିଆ ଲେଖୁଥିଲେ ଏବଂ କହିବାକୁ ଭଲ ପାଉଥିଲେ । ଲିପ୍‌ଷ୍ଟିକ୍, ବିଲାତି ଡ୍ରେସ, ବିଲାତି ହାବଭାବ କିଛି ତାଙ୍କର ନଥିଲା । ଶାଢ଼ୀ ଖଣ୍ଡିଏ ପିନ୍ଧି, ପାଦରେ ପାଉଞ୍ଜି ପିନ୍ଧି ସେ ଚାଲିଥିଲେ ଗାଁରୁ ଗାଁ, ସହରରୁ ସହର, ପଲ୍ଲୀରୁ ପଲ୍ଲୀ । ବଡ଼ମାନଙ୍କୁ ମୁଣ୍ଡ ନୁଆଁଇ ନମସ୍କାର କରୁଥିଲେ, ପାଦ ଛୁଇଁ ପ୍ରଣାମ କରୁଥିଲେ । ଚକାପକାଇ ବିଶ୍ୱନାଥ ବାବାଙ୍କଠାରୁ ମହିମା ଧର୍ମ ଶୁଣିବା ତାଙ୍କର ଏକ ନିତିଦିନିଆ ଅଭ୍ୟାସରେ ପରିଣତ ହୋଇ ସାରିଥିଲା ।

ବୌଦ୍ଧ ଓ ଜୈନ ଦର୍ଶନ ଉପରେ ଆନ୍ତର୍ଜାତିକ ସେମିନାରରେ ସେ କେବଳ ଯୋଗ ଦେଇ ନଥିଲେ; ଏହାର ଆୟୋଜନରେ ମଧ୍ୟ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଲୋକ ସଂସ୍କୃତି ଉପରେ ଆନ୍ତର୍ଜାତିକ ସେମିନାର ପାଇଁ ସେ ପ୍ରାରମ୍ଭିକ ଚିଠା ପ୍ରସ୍ତୁତ କରିଥିଲେ ।

ତା'ପରେ କୋରାପୁଟ ଓ ଫୁଲବାଣୀରେ ବୁଲିବା ସମୟରେ ସେ ହଠାତ୍ ମସ୍ତିଷ୍କ ଜ୍ୱରରେ ଆକ୍ରାନ୍ତ ହେଲେ । ପ୍ରଥମେ ସେ ତାକୁ ସାଧାରଣ ମାଲେରିଆ ଭାବି ବିଶେଷ ଜୋର ଦେଇ ନଥିଲେ । କିନ୍ତୁ ରୋଗ ବଢ଼ିଲା ପରେ ତାଙ୍କୁ ବାଧ୍ୟ କରି ଦିଲ୍ଲୀ ନିଆଗଲା । ସେଇଠାରେ ତାଙ୍କର ପରଲୋକ ହୋଇଗଲା ।

ମୃତ୍ୟୁ ଆସିବ । ମୃତ୍ୟୁ ଅନିବାର୍ଯ୍ୟ । ମୃତ୍ୟୁ କ'ଣ ଇମିତି ଆସେ ? କିନ୍ତୁ ମୃତ୍ୟୁ କେମିତି ଆସେ ତ ତାହା କହିହେବ ନାହିଁ । ତାହା ଚିର ରହସ୍ୟମୟ । କୁମାରୀ ଏସମାନଙ୍କର ପରଲୋକରେ ଯେଉଁ ଶୋକସଭା ହେଲା ସେଥିରେ 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ ଏକ ସ୍ମୃତି ପାଣ୍ଠି ଗଢ଼ିବା ପାଇଁ ପ୍ରସ୍ତାବ ଦେଲେ । ତାଙ୍କର ସହକର୍ମୀ ଅଧ୍ୟାପକ ହରମାନ କୁଲକେ ଏହାର ଜୀବନ୍ୟାସ ଦେଲେ । ପାଣ୍ଠି ସଂଗୃହୀତ ହେଲା ତାଙ୍କର ପରିବାରଠାରୁ । ତାଙ୍କର ବନ୍ଧୁମାନଙ୍କଠାରୁ । ତାଙ୍କର ଶୋକାର୍ତ୍ତ କିନ୍ତୁ ଗର୍ବିତ ପିତା କେବଳ ସାହାଯ୍ୟ ଦେଲେ ନାହିଁ, ସୃଜନଶୀଳ ଗବେଷଣା ପାଇଁ ପ୍ରତିବର୍ଷ ଜଣେ ଗବେଷକଙ୍କୁ ପଦକ ଦେବା ପାଇଁ ମଧ୍ୟ ସେ ଘୋଷଣା କଲେ ।

ଜର୍ମାନ ଦେଶର ଝିଅ ଓଡ଼ିଆ ଝିଅରେ ପରିଣତ ହେଲା । ଜର୍ମାନୀ ମୋର ପିତୃଭୂମି, କିନ୍ତୁ ଭାରତ ମୋର ମାତୃଭୂମି । ଏସ୍‌ମାନଙ୍କ କଣ୍ଠରେ ଗର୍ବିତ ଭାଷା । ବହୁ ଯାଗାରେ ତାର ସ୍ମୃତି ପ୍ରେରଣା ଦେଇଯିବ ଆମ ଗବେଷକମାନଙ୍କୁ ।

ooo

# ଆଗ୍ନେୟଗିରି ନିର୍ବାପିତ

## (୰ କୃଷ୍ଣ ମେନନ୍)

କୃଷ୍ଣମେନନ୍‌ଙ୍କର ଆଜି ପରଲୋକ ହୋଇଗଲା । କୃଷ୍ଣମେନନ୍‌ଙ୍କର ଘର କେରଳ । ସେ ଯାଇଥିଲେ ଇଂଲଣ୍ଡ ଛଅମାସ ପାଇଁ । ପାଦ୍ରୀ ହେବା ପାଇଁ ଟ୍ରେନିଂ ନେବାର କଥା । ଫେରି ପାଦ୍ରୀ ହୋଇଥାନ୍ତେ । କିନ୍ତୁ ବିଚିତ୍ର ମଣିଷର ଗତି । ଫେରିଲେ ଅର୍ଦ୍ଧଶତାବ୍ଦୀ ପରେ । ଇଂଲଣ୍ଡରେ ସେ ଯୋଗଦେଲେ ଭାରତୀୟ ମଜଲିସ୍‌ରେ । ଆସିଲେ ହାରୋଲ୍‌ଡ ଲାସ୍‌କି, ରଜନୀ ପାମି ଦତ୍ତ ପ୍ରଭୃତିଙ୍କର ସମ୍ପର୍କରେ । ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ବାବଦୂକ ସାଜିଲେ । ସବୁ ଭାରତୀୟ ପ୍ରତିନିଧି ଦଳର ଉପଦେଷ୍ଟା ହେଲେ । ସମଗ୍ର ଇଉରୋପ ବୁଲିଲେ । ଭାରତର ସ୍ୱାଧୀନତା ଉପରେ ସଭାସମିତି କଲେ । ସାମ୍ରାଜ୍ୟବାଦ ବିରୋଧୀ ଆନ୍ତର୍ଜାତିକିରେ ଯୋଗଦେଲେ । ସ୍ୱାଧୀନତା ପରେ ସେ ଇଂଲଣ୍ଡରେ ଆମର ହାଇକମିଶନର ହେଲେ । ପରେ ଭାରତର ପ୍ରତିରକ୍ଷା ମନ୍ତ୍ରୀ ହେଲେ । ବିବଦମାନ ପରିସ୍ଥିତିରେ ତାଙ୍କୁ ବିଦାୟ ନେବାକୁ ହେଲା । ପରେ ଶାନ୍ତି ଓ ମୈତ୍ରୀ ଆନ୍ଦୋଳନ, ନିରସ୍ତ୍ରୀକରଣ ଆନ୍ଦୋଳନରେ ବେଶି ସକ୍ରିୟ ହେଲେ, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ।

କୃଷ୍ଣମେନନ୍ ବିବଦମାନ ବ୍ୟକ୍ତି ଥିଲେ । ବିବାଦ ଯେପରି ତାଙ୍କୁ ଘେରି ରହିଥିଲା । କୌଣସି କାଳରେ ବିବାଦ ତାଙ୍କୁ ଛାଡ଼ି ନାହିଁ କି ସେ ବିବାଦକୁ ଛାଡ଼ି ନାହାନ୍ତି । ବିବାହ କରି ନାହାନ୍ତି । ବିବାହ କରି ସ୍ଥାୟୀ ସାଥୀଟିଏ ସହିତ ଜୀବନ କାଟିବା ତାଙ୍କ ପକ୍ଷରେ ସମ୍ଭବ ହୋଇପାରି ନଥିଲା । କେତେକ ନିନ୍ଦୁକ କହନ୍ତି ଯେ ସେ କୁଆଡ଼େ ନାରୀ ଗହଣରେ ତରଳି ଯାଆନ୍ତି । କିନ୍ତୁ କୌଣସି ନାରୀ ତାଙ୍କୁ ପ୍ରଭାବିତ କରି ରଖିବା କଥା କେହି କହିପାରନ୍ତି ନାହିଁ । କୃଷ୍ଣମେନନ୍‌ଙ୍କ ମୁହଁ ଖୁବ୍ ଖର ଏବଂ ସେ କ୍ଷଣକୋପୀ । ଅନେକ ସମୟରେ ଅନ୍ୟର ମତ ବା ବକ୍ତବ୍ୟ ଶୁଣିବା ପାଇଁ ତାଙ୍କର ଧୈର୍ଯ୍ୟର ଅଭାବ ଦେଖାଦିଏ ।

କୃଷ୍ଣମେନନ୍ ପଢ଼ନ୍ତି ବହୁତ ଏବଂ ଏତେ ଶୀଘ୍ର ପଢ଼ନ୍ତି ଯେ ପାଖରେ ଦେଖୁଥିବା ବ୍ୟକ୍ତିର ଧୈର୍ଯ୍ୟଚ୍ୟୁତି ଘଟେ । ସାନ୍ତାକ୍ରୁଜ ଏୟାରପୋର୍ଟରୁ ବମ୍ବେ ସହରରେ ପହଞ୍ଚିବା ଭିତରେ ପୂରା ବହିଟିଏ ପଢ଼ି ସାରିଦେବା ମୁଁ ଦେଖିଛି । କୃଷ୍ଣମେନନ୍ ଚା' ପିଅନ୍ତି । ତାଙ୍କ

ଚା' ରେ ଦୁଧ ବା ଚିନି ନଥାଏ । ଚା' ପିଅନ୍ତି ଦିନକୁ ଶହେ ଥର । କଥା କହୁଥିବେ । ହଠାତ୍ କଥା ମଝିରେ ହିଁ ଡାକିବେ ଫ୍ଲାସ୍କରୁ ଚାହା । ଚାହା ଅବାରିତ ଚାଲିଥିବ । ଏହାଫଳରେ କି କ'ଣ ତାଙ୍କର ଖାଇବା ପରିମାଣ ଖୁବ୍ କମ୍ । ଦି'ଟା ସାଣ୍ଡଉଇଚ୍ ତାଙ୍କର ଲଞ୍ଚ ବା ଡିନର୍ ହେବା ପାଇଁ ଯଥେଷ୍ଟ ।

କୃଷ୍ଣମେନନ୍‌ଙ୍କ ହାତରେ ସବୁବେଳେ ଗୋଟାଏ ବଙ୍କୁଲି ବାଡ଼ି । ଟିକିଏ ଛୋଟା । କିନ୍ତୁ ଏହା ସତ୍ତ୍ୱେ ସେ ଚାଲନ୍ତି ଖୁବ୍ ଦ୍ରୁତଗତିରେ । ତାଙ୍କ ସାଙ୍ଗରେ ଚାଲିବା ଭାରି କଷ୍ଟକର କଥା । କୃଷ୍ଣମେନନ୍ କ୍ଷଣକୋପୀ । ବୟସ ବଢ଼ିବା ସହିତ ତାଙ୍କର ଏଇ କ୍ଷଣକୋପୀ ଗୁଣଟା ବଢ଼ି ବଢ଼ି ଚାଲିଲା । ସେଇଯୋଗୁଁ ମଧ୍ୟ ସେ ଅନେକ ସମୟରେ ଭୁଲ୍ ବୁଝାମଣାର ଶିକାର ହୋଇଛନ୍ତି ।

କୃଷ୍ଣମେନନ୍ ତୀକ୍ଷ୍ଣ ଏବଂ ହାର୍ଡହିଟିଙ୍ଗ । ସେ କହିଲାବେଳେ ଅନେକ ସମୟରେ ଏପରି ଶବ୍ଦ ବ୍ୟବହାର କରନ୍ତି ଯାହା ପ୍ରତିପକ୍ଷକୁ ଉତ୍ତେଜିତ କରେ । ଯାହା ଅପ୍ରିୟ ତାହା ଅପ୍ରିୟ । ସେଥିପାଇଁ ମୁଲାଏମ ଭାଷା ସେ ଜାଣନ୍ତି ନାହିଁ । ଅନେକ ସମୟରେ ସେଇଯୋଗୁଁ ତାଙ୍କର ଅନେକ ଲୋକଙ୍କ ସହିତ ମନୋମାଳିନ୍ୟ ହୋଇଛି ।

ମିଳିତ ଜାତିସଂଘକୁ ଏକ ପ୍ରତିନିଧିଦଳ ଯାଇଥିଲେ ଭାରତବର୍ଷରୁ । ସେଥିରେ କୃଷ୍ଣମେନନ୍ ସଭ୍ୟ ଥିଲେ । ସଭ୍ୟ ମଧ୍ୟ ଥିଲେ କେ.ପି.ଏସ୍. ମେନନ୍ । କେପିଏସ୍ ଏକଦମ ଭଦ୍ରଲୋକ । ପଦେ ହେଲେ କଡା କଥା କୁହନ୍ତି ନାହିଁ । କୁହାଯାଏ ତାଙ୍କର ସବୁଠାରୁ କଡା କଥା ହେଲା "ଆପଣ ବୋଧହୁଏ ଠିକ୍ । କିନ୍ତୁ ମୁଁ ଆପଣଙ୍କ ସହିତ ଏକମତ ହୋଇପାରୁ ନାହିଁ ।" ଦୁଇ ମେନନ୍‌ଙ୍କ ଭିତରେ ଆଦୌ ପଡିଲା ନାହିଁ । କଥାଟା ଏତେଦୂର ଗଲା ଯେ ପ୍ରତିନିଧିଦଳ ଫେରିଲା ପରେ ଜବାହରଲାଲ ପ୍ରତିନିଧିଦଳଙ୍କ ସାମନାରେ କହିଲେ ଯେ ମୁଁ ଶୁଣିଲି ଯେ ଦୁଇ ମେନନ୍‌ଙ୍କ ଭିତରେ ଆଦୌ ପଡ଼ିଲା ନାହିଁ । ଏହାଠାରୁ ବେଶି କହିବା ହୁଏତ ଦରକାର ନଥିଲା ।

କୃଷ୍ଣମେନନ୍ ମେଡିଓକ୍ରିଟି ଆଦୌ ସହ୍ୟ କରିପାରନ୍ତି ନାହିଁ । ସେ କଂଗ୍ରେସ ଦଳର ସଭ୍ୟ, କଂଗ୍ରେସ ଦଳ ତରଫରୁ ପ୍ରତିରକ୍ଷା ମନ୍ତ୍ରୀ । କିନ୍ତୁ ଅନେକ କଂଗ୍ରେସବାଲାଙ୍କୁ ସେ ପାସଙ୍ଗରେ ପକାନ୍ତି ନାହିଁ । ଥରେ ତାଙ୍କ ସାଙ୍ଗରେ ବସି ତାଙ୍କ ଘରେ ଆମେସବୁ ଆଲୋଚନା କରୁଥିଲୁ । ହଠାତ୍ ସେ ଭିତରକୁ ପଶିଆସିଲେ କିଛି କଂଗ୍ରେସ କର୍ମୀ । କୃଷ୍ଣମେନନ୍ ଉତ୍କ୍ଷିପ୍ତ । ଦେଖ, ବିନା ଆପଏଣ୍ଟମେଣ୍ଟରେ ଏମାନେ କିମିତି ଚାଲିଆସିଛନ୍ତି ।

କୃଷ୍ଣମେନନ୍ ଗୁରୁ ଭାବରେ ମାନନ୍ତି କେବଳ ଜଣଙ୍କୁ । ସେ ହେଉଛନ୍ତି ଜବାହରଲାଲ ନେହେରୁ । ଅନ୍ୟମାନଙ୍କୁ ସେ ମେଡିଓକର୍ (mediocre)ବୋଲି ବିଚାର

କରନ୍ତି । ଥରେ ଜବାହରଲାଲଙ୍କର କୌଣସି ଏକ ବହିର ପାଣ୍ଡୁଲିପି ସେ ନେଇଥିଲେ ସମ୍ପାଦନା କରିବା ପାଇଁ । ଏକ କ୍ଳାନ୍ତ, ବିଷର୍ଣ୍ଣ ମେନନ୍ ସନ୍ଧ୍ୟାରେ ଆସି ଜବାହରଲାଲଙ୍କୁ କହିଲେ, କ'ଣ ଯେ ଆପଣ ଲେଖିଛନ୍ତି, ମୋତେ ମହଣ ମହଣ କମା, ପୂର୍ଣ୍ଣଛେଦ, ପ୍ରଶ୍ନବାଚକ ଚିହ୍ନ ଇତ୍ୟାଦି ଯୋଡ଼ିବାକୁ ହେଲା । ଜବାହରଲାଲ ହସି ଉତ୍ତର ଦେଲେ ତୁମକୁ ତ ଠିକ୍ ସେଇକାମ କରିବାକୁ ମୁଁ ଦେଇଥିଲି । ବିଷୟବସ୍ତୁ ମୋର, ବାକି ସବୁ ତୁମର । ମେନନ୍‌ଙ୍କର ଆଉ କିଛି କହିବାର ନଥିଲା ।

କୃଷ୍ଣମେନନ୍ ଭାରତବର୍ଷର ସ୍ୱାଧୀନତା ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସେତେବେଳେ ଇଉରୋପ ଏବଂ ଇଂଲଣ୍ଡର ଭାରତ ବିରୁଦ୍ଧରେ ବହୁତ ପ୍ରଚାର । ଭାରତ ଏକ ସାପୁଆ କେଳା ଏବଂ ସାଧୁମାନଙ୍କର ଦେଶ । ସେମାନେ ଶାସନ କରିବା ପାଇଁ ଯୋଗ୍ୟ ହୋଇନାହାନ୍ତି ଇତ୍ୟାଦି ଇତ୍ୟାଦି । ଇଂଲଣ୍ଡ ଓ ଇଉରୋପର ବହୁ ବୁଦ୍ଧିଜୀବୀ, ବହୁ ଜନନାୟକ ମଧ୍ୟ ଏଥିରେ ପ୍ରଭାବିତ ହୋଇଥିଲେ । ଇଂଲଣ୍ଡ ଓ ଇଉରୋପରେ ଭାରତବର୍ଷର ସ୍ୱାଧୀନତା ପାଇଁ ଜନମତ ସୃଷ୍ଟି କରିବାର ବିରାଟ ଦାୟିତ୍ୱ କୃଷ୍ଣମେନନ୍ ନିଜେ ଆଦରି ନେଇଥିଲେ । ବହୁ ଦୁଃଖ କଷ୍ଟ ଭିତରେ ସେ ଏଇ ବିରାଟ କାର୍ଯ୍ୟ ସମ୍ପାଦନ କରିଥିଲେ ଅର୍ଦ୍ଧଶତାବ୍ଦୀ ଧରି । ଏହା ଏକ ସହଜସାଧ୍ୟ କାର୍ଯ୍ୟ ନଥିଲା । ଇଂଲଣ୍ଡର ରକ୍ଷଣଶୀଳ ସମାଜରେ ଭାରତର ସ୍ୱାଧୀନତା ଲାଗି ପ୍ରଚାରର କଠୋର କାର୍ଯ୍ୟ କୃଷ୍ଣମେନନ୍ ସମ୍ପାଦନା କରିଥିଲେ ବହୁ ବର୍ଷ ଧରି ।

କେବଳ ସେତିକି ନୁହେଁ ।

ସେତେବେଳେ ଇଂଲଣ୍ଡ ପଢ଼ିବାକୁ ଯାଇଥିଲେ ବହୁ ଯୁବକ ଯୁବତୀ । ସେମାନେ ସମସ୍ତେ ଯାଇଥିଲେ ସମ୍ଭ୍ରାନ୍ତ, ଉଚ୍ଚ ପରିବାରରୁ । ଭାରତବର୍ଷରେ ଅଧିକାଂଶ ବିଲାତ ଯାଇଥିବା ଛାତ୍ରଛାତ୍ରୀମାନଙ୍କର ପିତାମାତା ଉଚ୍ଚ ପଦାଧିକାରୀ, ଜମିଦାର ଥିଲେ । ସେମାନେ ଯାଇଥିଲେ ଇଂଲଣ୍ଡ ଆସି ବ୍ରିଟିଶ ଶାସନର ସ୍ତମ୍ଭ ହେବା ପାଇଁ । ସେମାନେ ଇଂଲଣ୍ଡରେ ତିନୋଟି ଲୋକଙ୍କ ସମ୍ପର୍କରେ ଆସନ୍ତି । ହାରୋଲ୍‌ଡ ଲାସ୍‌କି ପ୍ରସିଦ୍ଧ ଅର୍ଥନୀତିଜ୍ଞ । ସେ ସେମାନଙ୍କୁ ଉଦାରବାଦୀ, ସମାଜବାଦୀ ହେବାପାଇଁ ଅନୁପ୍ରାଣିତ କରନ୍ତି । ସେମାନେ ଆସନ୍ତି ପ୍ରସିଦ୍ଧ ସାମ୍ୟବାଦୀ ନେତା ରଜନୀପାମି ଦତ୍ତଙ୍କ ସଂସ୍ପର୍ଶରେ । ସେ ସେମାନଙ୍କୁ କେବଳ ସାମ୍ୟବାଦର ତତ୍ତ୍ୱ ଶିକ୍ଷାଦିଅନ୍ତି ନାହିଁ, ସେମାନଙ୍କୁ ସକ୍ରିୟ ସାମ୍ୟବାଦୀ କର୍ମୀରେ ପରିଣତ କରନ୍ତି । ଏବଂ ସେମାନେ ଆସନ୍ତି କୃଷ୍ଣମେନନ୍‌ଙ୍କ ସଂସ୍ପର୍ଶରେ । ସେମାନଙ୍କୁ ନେଇ ସେ ସୃଷ୍ଟି କରନ୍ତି ଜନମତ ଭାରତବର୍ଷରେ ସ୍ୱାଧୀନତା ପାଇଁ । ଜବାହରଲାଲଙ୍କ ସହିତ ତାଙ୍କର ଦେଖାହୁଏ ଲଣ୍ଡନ ମଜଲିସ୍‌ରେ । ଏବଂ ଏଇ

ଭାରତୀୟ ଯୁବକର କାର୍ଯ୍ୟ ତାଙ୍କୁ ଅନୁପ୍ରାଣିତ କରେ । ଜବହରଲାଲଙ୍କ ସାଥୀରେ ସେ ଯୋଗ ଦିଅନ୍ତି ସାମ୍ରାଜ୍ୟବାଦ ବିରୋଧୀ ସମ୍ମିଳନୀରେ, ଯୋଗ ଦିଅନ୍ତି ସ୍ପେନର ପ୍ରସିଦ୍ଧ ଅନ୍ତର୍ଯୁଦ୍ଧରେ, ଯୋଗ ଦିଅନ୍ତି ଫାସିବାଦ ବିରୋଧୀ ସମାବେଶମାନଙ୍କରେ । ଜବାହରଲାଲଙ୍କର ତାଙ୍କ ପ୍ରତି ଅନୁରାଗ ରହିଯାଏ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । କୃଷ୍ଣମେନନ୍‌ଙ୍କର ଭୁଲ୍ ତ୍ରୁଟିକୁ ଉଦାର ଜବାହରଲାଲ ଗ୍ରହଣ କରି ନିଅନ୍ତି ଏବଂ ଅନେକ ସମୟରେ ତାହା ନିଜ ଉପରକୁ ନେଇ ଆସନ୍ତି ।

ପାର୍ଲ୍ୟାମେଣ୍ଟରେ ଏ ସମ୍ପର୍କରେ ବହୁ ବିତର୍କ ରହିଛି । ଆଚାର୍ଯ୍ୟ କ୍ରିପଲାନୀଙ୍କଠାରୁ ଆରମ୍ଭ କରି ମିନୁ ମାସାନୀ ପର୍ଯ୍ୟନ୍ତ ବହୁ ଦନ୍ତାବଳ କୃଷ୍ଣମେନନ୍‌ଙ୍କ ବିରୁଦ୍ଧରେ ଅଭିଯୋଗର ଫର୍ଦ୍ଦ ତାଲିକା ପେଶ୍ କରିଛନ୍ତି । ଜବାହରଲାଲ ସେସବୁ ନିଜ ମୁଣ୍ଡ ଉପରକୁ ନେଇଯାଇଛନ୍ତି । କୃଷ୍ଣମେନନ୍ ଯାଇଛନ୍ତି ମିଳିତ ଜାତିସଂଘକୁ ଭାରତୀୟ ଦଳର ନେତା ହୋଇ । ପାକିସ୍ଥାନୀ ଦଳର ନେତା ହେଉଛନ୍ତି ସାର୍ ଜାଫ୍ରୁଲା ଖାନ୍ । ଅହମ୍ମଦିଆ ସଂପ୍ରଦାୟର ହେଲେ ମଧ୍ୟ ସେ ହିଁ ଏକମାତ୍ର ଅହମ୍ମଦିଆ ଯେ ପାକିସ୍ଥାନର ନେତୃତ୍ୱକୁ ଯାଇ ପାରିଥିଲେ । ଜାଫ୍ରୁଲା ଜଣେ ପ୍ରସିଦ୍ଧ ବକ୍ତା । ସେ କାଶ୍ମୀର ସମସ୍ୟା ଉପରେ ଏଗାର ଘଣ୍ଟା ବକ୍ତୃତା ଦେଇ ପୃଥିବୀକୁ ତାଜୁବ୍ କରିଦେଲେ । ବର୍ତ୍ତମାନ କୃଷ୍ଣମେନନ୍‌ଙ୍କ ପାଳି । କୃଷ୍ଣମେନନ୍ ଭାରି ଏକଜିଦିଆ ଲୋକ । ଯାହା କରିବାକୁ ଚାହିଁବେ କରିବେ । ସେ ବାରଘଣ୍ଟା ବକ୍ତୃତା ଦେଲେ । ଏବଂ କେବଳ ଜାଫ୍ରୁଲାଙ୍କୁ ଟପିଗଲେ ନୁହେଁ, ମିଳିତ ଜାତିସଂଘରେ ଏକ ରେକର୍ଡ ସ୍ଥାପନ କଲେ । କୃଷ୍ଣମେନନ୍ ବ୍ଲଣ୍ଟ । ଅନେକ ସମୟରେ ଧୂର୍ତ୍ତ ସାମ୍ବାଦିକମାନଙ୍କର ଜାଲରେ ସେ ସେଇଯୋଗୁଁ ସହଜରେ ପଡ଼ନ୍ତି ନାହିଁ ।

ଜବାହରଲାଲଙ୍କର ଦୁର୍ବଳ ବିନ୍ଦୁ କୃଷ୍ଣମେନନ୍ । କୃଷ୍ଣମେନନ୍ ଭାରତର ପ୍ରତିରକ୍ଷା ମନ୍ତ୍ରୀ । ସେତିକିବେଳେ ଭାରତ-ଚୀନ ସୀମାସଂଘର୍ଷ । ଜବାହରଲାଲ ବା କୃଷ୍ଣମେନନ୍ ଚୀନ୍ ସହିତ ଏକ ସଂଘର୍ଷ ବା ଯୁଦ୍ଧ ହୋଇପାରେ ଏକଥା ଅନୁମାନ କରିପାରି ନଥିଲେ । ଚୀନ୍‌ର ଐତିହାସିକ ମୁକ୍ତିସଂଗ୍ରାମ ପ୍ରତି ସେମାନଙ୍କର ଦରଦ ଥିଲା ପ୍ରଭୂତ । ଜବାହରଲାଲ ଚୀନର ମୁକ୍ତିସଂଗ୍ରାମ ଦେଖିଛନ୍ତି ଆଖି ଆଗରେ । ଚୀନର ପ୍ରସିଦ୍ଧ ଅଷ୍ଟମ ରୁଟ୍‌ବାହିନୀ ସହିତ ଲକ୍ଷ୍ୟ କରିଛନ୍ତି ସଂଗ୍ରାମକୁ । ପଠାଇଛନ୍ତି ସେଥିପାଇଁ ଏକ ଡାକ୍ତରୀ ଦଳ ମଦନ ଅଟଳଙ୍କ ନେତୃତ୍ୱରେ । ଚୀନର ପ୍ରଧାନମନ୍ତ୍ରୀ ଚାଉଏନ୍ ଲାଇଙ୍କୁ ଜବାହରଲାଲ ପରିଚୟ କରାଇଛନ୍ତି ବିଶ୍ୱଦରବାରରେ, ବାନ୍ଦୁଙ୍ଗ ସମ୍ମିଳନୀରେ । କିନ୍ତୁ ଦଲାଇଲାମାଙ୍କୁ ଆଶ୍ରୟ ଦେଇ ସେ ଯେଉଁ କ୍ଷତ ଚୀନର ସ୍ୱାଭିମାନରେ ସୃଷ୍ଟି କରିଦେଲେ ତାହାର ଫଳ ଏପରି ହୋଇପାରେ ତାହା ତାଙ୍କର ବା କୃଷ୍ଣମେନନ୍‌ଙ୍କର ନଥିଲା । ଜବାହରଲାଲ ଏକାକୀ ହୋଇଗଲେ । ତାଙ୍କ

ନିଜ ଦଳ ଭିତରେ ପ୍ରଥମଥର ପାଇଁ ତାଙ୍କର ନେତୃତ୍ୱ ବିରୁଦ୍ଧରେ ସ୍ୱର ଉତ୍ତୋଳିତ ହେଲା । ଏଥିରେ ମୌଲାନା ଆଜାଦଙ୍କଠାରୁ ଆରମ୍ଭ କରି ରାଷ୍ଟ୍ରପତି ରାଧାକ୍ରିଷ୍ଣନଙ୍କ ପର୍ଯ୍ୟନ୍ତ ସମସ୍ତେ ଯୋଗଦେଲେ । କୃଷ୍ଣମେନନ୍‌ଙ୍କୁ ଭାରତର ପ୍ରତିରକ୍ଷା ମନ୍ତ୍ରୀ ପଦରୁ ବିଦାୟ ନେବାକୁ ହେଲା । ସେ ଆଉ ରାଜନୀତିର ସେଇ ତୁଙ୍ଗ ଶିଖରକୁ ଯାଇ ନାହାନ୍ତି ।

କିନ୍ତୁ କୃଷ୍ଣମେନନ୍‌ଙ୍କର ଭାରତର ପ୍ରତିରକ୍ଷା ପାଇଁ ଅବଦାନ ଜଣାପଡିଲା ଭାରତ-ପାକିସ୍ଥାନ ଯୁଦ୍ଧ ସମୟରେ । ପ୍ରତିରକ୍ଷାକୁ ସ୍ୱାବଲମ୍ବନଶୀଳ କରିବା ପାଇଁ କୃଷ୍ଣମେନନ୍‌ଙ୍କର ଅବଦାନ ଅବିସ୍ମରଣୀୟ ।

ବିଶ୍ୱଶାନ୍ତି ପ୍ରତିଷ୍ଠା ପାଇଁ, ନିରସ୍ତ୍ରୀକରଣ ପାଇଁ କୃଷ୍ଣମେନନ୍‌ଙ୍କର ଅବଦାନ ବିପୁଳ । ଇତିହାସ ପୃଷ୍ଠାରେ ସେ ସ୍ମୃତ ହୋଇ ରହିବେ ଭାରତର ପ୍ରତିରକ୍ଷାକୁ ସ୍ୱାବଲମ୍ବନଶୀଳ କରିବା ପାଇଁ ।

କୃଷ୍ଣମେନନ୍ ଥିଲେ ଏକ ଅଗ୍ନେୟଗିରି । ସେ ଆଗ୍ନେୟଗିରି ଆଜି ସୁପ୍ତ, ନିର୍ବାପିତ ।

□□□

# ବିପ୍ଲବୀ ଅଧ୍ୟାପକର ଜୀବାବସାନ

*(୵ କୃଷ୍ଣପ୍ରସାଦ ପଟ୍ଟନାୟକ)*

ଆଜି କଟକ ବଡ ଡାକ୍ତରଖାନାରେ ଅଧ୍ୟାପକ କୃଷ୍ଣପ୍ରସାଦ ପଟ୍ଟନାୟକଙ୍କର ପରଲୋକ ହୋଇଗଲା । ଅପରାହ୍ଣରେ ତାଙ୍କର ମରଦେହକୁ ଚିତାରେ ଶୁଆଇ ଫେରିଲୁ ବନ୍ଧୁମାନେ । ସତୀଚଉରା ପାଖରେ ସେ ଏକ ଗୋଟିକିଆ ବଖରା ଘର କରିଥିଲେ । ଇଂରାଜୀ ଅଧ୍ୟାପିକା ଉର୍ମିଳା ମହାନ୍ତିଙ୍କ ଘରକୁ ଲାଗିକରି । ଉର୍ମିଳା ଦେବୀ ଆମମାନଙ୍କ ପାଇଁ ଧ୍ୱନିଅପା । ତାଙ୍କର ବିବାହର ଏକ ଦୁଃଖଦାୟକ ବିଚ୍ଛେଦ ଆମ ସମସ୍ତଙ୍କୁ ତାଙ୍କର ନିକଟତର କରିଥିଲା । ହସହସ ମଣିଷ, ଦରଦ କଥା । ସେତେବେଳେ ସେ ରାସ୍ତା ନିର୍ଜନ ଥିଲା । କୃଷ୍ଣ ପଟ୍ଟନାୟକ କିଛି ବର୍ଷ ଅଧ୍ୟାପନା କରୁଥିଲେ । ତାଙ୍କୁ ସେଇଯୋଗୁଁ ସବୁ ସାନମାନେ ଡାକୁଥିଲେ ସାର୍, ଆଉ ବଡ଼ମାନେ ପ୍ରଫେସର୍ । ଗେହ୍ଲା ଡାକ ଦୁଇଟାଯାକ । ସାର୍, ଆପଣ ଏଇ ନିର୍ଜନ ରାସ୍ତାରେ ଘର କାହିଁକି କଲେ ? ତମମାନଙ୍କୁ ସୁବିଧା ହେବ ବୋଲି, ସାର୍‌ଙ୍କ ଉତ୍ତର । ମୋ ଶବକୁ ବେଶି ବାଟ ବୋହିବାର କଷ୍ଟ ତୁମମାନଙ୍କୁ ପଡ଼ିବ ନାହିଁ । ମରିବା ପୂର୍ବରୁ କହି ଯାଇଥିଲେ, ମୋର ଶବକୁ ଅନ୍ୟ କୁଆଡକୁ ନେବ ନାହିଁ । ଡାକ୍ତରଖାନାରୁ ଘରକୁ, ଘରୁ ସିଧା ଶ୍ମଶାନକୁ । ମୃତ୍ୟୁର ଉପକଣ୍ଠରେ ମଧ୍ୟ ତାଙ୍କର ସରୁ ଓଠ ଉପରେ ଆକର୍ଷଣୀୟ ହସର ଏକ ମ୍ଳାନ ରେଖା ।

ତାଙ୍କର ପୈତୃକ ଘର ହେଉଛି ବାଙ୍କୀ । ପିତା ନିମାଇଁ ଚରଣ ପଟ୍ଟନାୟକ ସରକାରୀ ଚାକିରି କରୁଥିଲେ । ତେଣୁ କୃଷ୍ଣବାବୁଙ୍କ ଶିକ୍ଷା ଦୀକ୍ଷା ସବୁ ବାହାରେ, ବାଙ୍କୀ ବାହାରେ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ତାଙ୍କର ମଉସା । ରେଭେନ୍ସା କଲେଜରେ ପାଠ ପଢ଼ନ୍ତି । ସହପାଠୀମାନଙ୍କ ମଧ୍ୟରେ ଅଧ୍ୟାପକ ବିଧୁଭୂଷଣ ଦାସ ଅନ୍ୟତମ । ସେ ଜଣେ ଭଲ ଖେଳାଳୀ ମଧ୍ୟ ଥିଲେ । ଭଲିବଲରେ ସେ ରେଭେନ୍‌ସା କଲେଜ, ଓଡିଶା ଏବଂ ପରେ ପାଟନା ବିଶ୍ୱବିଦ୍ୟାଳୟରେ ପଢ଼ିଲାବେଳେ ପାଟନା ବିଶ୍ୱବିଦ୍ୟାଳୟ ତଥା ବିହାରକୁ ପ୍ରତିନିଧିତ୍ୱ କରିଥିଲେ ।

ରେଭେନ୍ସା କଲେଜରୁ ପାଟନା ବିଶ୍ୱବିଦ୍ୟାଳୟ । ସେଠାରେ ପଢ଼ିଲାବେଳେ ଐତିହାସିକ ଭାରତଛାଡ ଆନ୍ଦୋଳନରେ ଯୋଗଦାନ । ପ୍ରସିଦ୍ଧ ପାଟନା ସେକ୍ରେଟେରିଏଟ୍ ଗୁଳିକାଣ୍ଡରେ ଅଂଶଗ୍ରହଣ । ସହଯୋଦ୍ଧା ମନସ୍ତତ୍ତ୍ୱବିଦ୍ ଅଧାପକ ରାଧାନାଥ ରଥ । ଓଡିଶା ଫେରନ୍ତି । ସରକାରୀ ଚାକିରି କରିବା ଇଚ୍ଛା ନଥାଏ । କିନ୍ତୁ ଭରଣ ପୋଷଣ ତ ଦରକାର । ପାଟନାରେ ପଢ଼ିଲାବେଳେ ସମାଜବାଦୀ ଦର୍ଶନ ପ୍ରତି ତାଙ୍କର ଅନୁରକ୍ତି ଏବଂ ବିଶ୍ୱାସ ଜନ୍ମିଥିଲା । ସେଥିପାଇଁ କୌଣସି ବନ୍ଧନରେ ସେ ପଡ଼ିବାକୁ ଚାହୁଁ ନଥିଲେ ।

ସେ ଖ୍ରୀଷ୍ଟ କଲେଜର ଇତିହାସ ଅଧାପକ ଭାବରେ ଯୋଗଦିଅନ୍ତି । ଏବଂ କମ୍ୟୁନିଷ୍ଟ ପାର୍ଟିର ତାତ୍ତ୍ୱିକ କ୍ଲାସ, ଶିକ୍ଷା ତଥା ପ୍ରକାଶନର ଦାୟିତ୍ୱ ଗ୍ରହଣ କରନ୍ତି । ଏଇଠାରୁ ଆରମ୍ଭ ହେଲା ସେଇ ପ୍ରତିଭାର ବିକାଶ ଯାହା ତାଙ୍କୁ ସ୍ମୃତ କରି ରଖିବ ବହୁକାଳ । ସେ ମାର୍କ୍ସବାଦୀ ଦର୍ଶନ ସହିତ ସମସାମୟିକ ଦର୍ଶନ, ସାହିତ୍ୟ ଅନୁବାଦ କରିବାକୁ ଆରମ୍ଭ କଲେ । କଲମ ଫିଟିଗଲା । ଅନୁବାଦ କରିବାରେ ବିଚକ୍ଷଣତା ଲାଭ କଲେ ଏବଂ ତାଙ୍କ ସମୟରେ ଶ୍ରେଷ୍ଠ ଅନୁବାଦକ ବୋଲି ଗଣ୍ୟ ହେଲେ । ତାଙ୍କର ଅନୁବାଦ ଏଭଳି ମୌଳିକ ଥିଲା ଯେ କେଉଁଟା ମୂଳ, କେଉଁଟା ଅନୁବାଦ ସେଥିରେ ଭ୍ରମ ଉପୁଜୁଥିଲା । କମ୍ୟୁନିଷ୍ଟ ପାର୍ଟିର କ୍ୟାଡରମାନଙ୍କୁ ସେ ଶିକ୍ଷା ଦେଉଥିଲେ, ବିଭିନ୍ନ ରାଜନୈତିକ କ୍ଲାସରେ । ଠିକ୍ ମାଷ୍ଟରଙ୍କ ଭଳି ଶିକ୍ଷା, କଲେଜ ରୁମ୍ ଭଳି ଲେକ୍‌ଚର୍ । ବହୁ କ୍ଲାସ ନେଇଛନ୍ତି, ବହୁ ବ୍ୟକ୍ତି ସେଥିରେ ଯୋଗ ଦେଇଛନ୍ତି । ଫଳରେ ସାର୍ ବା ପ୍ରଫେସର ଡାକଟା ଲାଖି ରହିଯାଇଛି ତାଙ୍କ ନାଁ ସହିତ ।

ଆସେ କମ୍ୟୁନିଷ୍ଟ ପାର୍ଟିରେ ବି.ଟି. ରଣଦିଭେଙ୍କ ନେତୃତ୍ୱରେ ସଶସ୍ତ୍ର ସଂଗ୍ରାମର ନୀତି । କୃଷ୍ଣ ପଟ୍ଟନାୟକ ଥିଲେ ଆମର ସହବନ୍ଦୀ । ସେଇଭଳି କ୍ଲାସ ନିଅନ୍ତି, ଭଲିବଲ ଖେଳିବା ଶିଖାନ୍ତି, ଗଳ୍ପ କରନ୍ତି । ଜେଲଖାନା ଭିତରେ ଆରମ୍ଭ ହୁଏ ୪୮ ଦିନ ଦୀର୍ଘ ଉପବାସ ଅନଶନ । ବ୍ୟାରିକେଡ ତିଆରି ହୁଏ ଯେତେବେଳେ ଅନଶନରତ ବନ୍ଦୀମାନଙ୍କୁ ସ୍ୱତନ୍ତ୍ର କରିଦେବାର ଉଦ୍ୟମ ହୁଏ । ଅବରୁଦ୍ଧ ପନ୍ଦର ନମ୍ବର ୱାର୍ଡ । ଯେ କୌଣସି ମୁହୂର୍ତ୍ତରେ ଗୁଳି ଚାଲିବାର ଆଶଙ୍କା । ଜେଲଖାନାକୁ ଅଣାଯାଏ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ପରିଦର୍ଶକ ଭାବରେ । ସେମାନେ ମଧ୍ୟ ସରକାରଙ୍କୁ ପୂରା ସମର୍ଥନ କରିପାରନ୍ତି ନାହିଁ । ସରକାର ବାଧ୍ୟ ହୋଇ ସିଗ୍ରିଗେସନ ବା ପୃଥକୀକରଣ ନୀତି ପରିହାର କରନ୍ତି । ଅନଶନ ଚାଲୁ ରହେ । କୃଷ୍ଣ ପଟ୍ଟନାୟକଙ୍କର ଅବସ୍ଥା ଗୁରୁତର ହୁଏ । ଏତିକିବେଳେ ବାହାରୁ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ନିର୍ଦ୍ଦେଶ ଦିଏ । ଯେ ପର୍ଯ୍ୟନ୍ତ ତମମାନଙ୍କ ମଧ୍ୟରୁ ଅଧିକାଂଶ ମୃତ୍ୟୁବରଣ କରି ନାହଁ ସେ ପର୍ଯ୍ୟନ୍ତ ଅନଶନ ଚାଲୁରଖ । ଶୃଙ୍ଖଳିତ ସୈନିକଭାବରେ ସେ ପାର୍ଟି

ନିର୍ଦ୍ଦେଶକୁ ମାନନ୍ତି କିନ୍ତୁ ଆପଣାର ମତଭେଦକୁ '' ଉପଦେଶ ଦେବା ବନ୍ଦ କର'' ନାମକ ଐତିହାସିକ ଦଲିଲରେ ଲିପିବଦ୍ଧ କରି ପଠାନ୍ତି ଗୁପ୍ତରେ । ବି.ଟି. ରଣଦିଭେଙ୍କ ନୀତି ବିରୋଧରେ ଆଦ୍ୟ ଦୁନ୍ଦୁଭି । ଜେଲଖାନାରୁ ଖଲାସ ହୋଇ କୃଷ୍ଣ ପଟ୍ଟନାୟକ ପଳାତକ ହୁଅନ୍ତି । ତାଙ୍କ ନାମରେ ଗିରଫଦାରୀ ପରବାନା ଜାରି ହୁଏ । ଗୁରୁଚରଣ ପଟ୍ଟନାୟକ ଏବଂ କୃଷ୍ଣ ପଟ୍ଟନାୟକ ବହୁକାଳ ଆତ୍ମଗୋପନ ପରେ ଏକ ସମ୍ମିଳନୀରେ ଆତ୍ମ-ପ୍ରକାଶ କରନ୍ତି ଏବଂ କମ୍ୟୁନିଷ୍ଟ ପାର୍ଟିର ନୂଆ ନୀତି ଘୋଷଣା କରନ୍ତି ।

ଅନଶନ ଏବଂ ଆତ୍ମ-ଗୋପନ ତାଙ୍କର ସ୍ୱାସ୍ଥ୍ୟହାନି କରିଦିଏ । ସେ 'ମାତୃଭୂମି'ର ସମ୍ପାଦନା ମଣ୍ଡଳୀରେ ଯୋଗ ଦିଅନ୍ତି । ସମୟାନୁବର୍ତ୍ତିତା ତାଙ୍କର ଅନ୍ୟତମ ଗୁଣ । ଘଣ୍ଟା ମିନିଟ୍ ସହିତ ତାଳ ମିଳାଇ ସେ କାମ କରନ୍ତି । ଆନ୍ତର୍ଜାତିକ ସମ୍ବାଦ ଲେଖିବାରେ ତାଙ୍କର ଯୋଗ୍ୟତା ଫୁଟିଉଠେ । କିନ୍ତୁ ଏଇ ସମୟରେ ତାଙ୍କୁ ଯକ୍ଷ୍ମାରୋଗ ଆକ୍ରମଣ କରେ । ବନ୍ଧୁମାନେ ସାହାଯ୍ୟ କରନ୍ତି ତାଙ୍କୁ ମଦନାପଲ୍ଲୀ ନେବା ପାଇଁ ଚିକିତ୍ସା ସକାଶେ । ଅଧ୍ୟାପିକା ଉର୍ମିଳା ମହାନ୍ତି ସେତେବେଳେ ସ୍ୱାମୀଙ୍କଠାରୁ ସ୍ୱତନ୍ତ୍ର ହୋଇ ରହୁଥାଆନ୍ତି । ତାଙ୍କର ଅକୁଣ୍ଠ ସାହାଯ୍ୟ ଓ ସେବା କୃଷ୍ଣ ପଟ୍ଟନାୟକଙ୍କୁ ରୋଗମୁକ୍ତ କରେ ।

ମାତୃଭୂମିରେ କିଛିକାଳ କାର୍ଯ୍ୟକଲା ପରେ ସେ ସେଥିରୁ ବିଦାୟ ନେଇ ସୋଭିଏଟ ସାହିତ୍ୟ, ପ୍ରବନ୍ଧ, ଓ ମାର୍କ୍ସବାଦୀ ସାହିତ୍ୟ, ପ୍ରବନ୍ଧର ଅନୁବାଦ ତଥା କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ରର ସମ୍ପାଦନାରେ ନିଜକୁ ବିନିଯୋଗ କରନ୍ତି । କିମିତି ଏକ ଉଇଥଡ୍ରନ ବା ଅଲଗା କରିନେବାର ମନୋଭାବ ତାଙ୍କ ଭିତରେ ଦେଖାଦିଏ । ବିଶେଷକରି କୌଣସି ସାମାଜିକ ଉତ୍ସବ, ବିବାହ ପ୍ରଭୃତିରେ ମଧ୍ୟ ଯୋଗ ଦିଅନ୍ତି ନାହିଁ । କିନ୍ତୁ ଦେଖାହେଲେ ବେଶ୍ ଗପ ଜମେ । ବୟସର ପ୍ରଭେଦ ଭାଜିପଡ଼େ । କୃଷ୍ଣ ପଟ୍ଟନାୟକ ବେଶ୍ ମଉଜିଆ ଲୋକ ଏବଂ ସରସ ଗଳ୍ପରେ ମଧ୍ୟ ଧୁରନ୍ଧର । ବେଳେବେଳେ ଗୁରୁଚରଣ ପଟ୍ଟନାୟକ, ଚାର୍ଟାର୍ଡ ଆକାଉଣ୍ଟାଣ୍ଟ ହୃଦାନନ୍ଦ ନାୟକଙ୍କ ସହିତ ସିନେମା ଦେଖନ୍ତି ।

ହଠାତ୍ ହୃଦ୍‌ରୋଗରେ ଆକ୍ରାନ୍ତ । ଆଗରୁ କୌଣସି ସୂଚନା ମଧ୍ୟ ନାହିଁ । ଡାକ୍ତରଖାନାରେ ସଂକ୍ଷିପ୍ତ ରହଣି ଏବଂ ତା'ପରେ ମହାଯାତ୍ରା ।

ଅଧ୍ୟାପକ, ସାମ୍ବାଦିକ, କ୍ରୀଡାବିତ୍ କୃଷ୍ଣ ପ୍ରସାଦ ପଟ୍ଟନାୟକଙ୍କର ପ୍ରତିଭାର ପୂର୍ଣ୍ଣ ବିନିଯୋଗ ହେବା ଆଗରୁ ସେ ବିଦାୟ ନେଇଗଲେ ସମସ୍ତଙ୍କଠାରୁ ।

□□□

# ଶ୍ରମଜୀବୀ ମଣିଷର ଦୁର୍ବାର ସାରଥୀ

*(ଁ କୃପାସିନ୍ଧୁ ଖୁଣ୍ଟିଆ)*

ଗଲା ସପ୍ତାହରେ କୃପାସିନ୍ଧୁ ଖୁଣ୍ଟିଆଙ୍କର ପରଲୋକ ହୋଇଯାଇଛି । ଖବରକାଗଜରେ ଏକ ସଂକ୍ଷିପ୍ତ ସମ୍ବାଦ ପ୍ରକାଶ ପାଇଛି ବିଳମ୍ବରେ । ସ୍ୱାଭାବିକ । କାରଣ ସେ ବର୍ତ୍ତମାନ ଏକ ବିସ୍ମୃତ ଚରିତ୍ର । ସନ ୧୯୩୦ ମସିହା । ପଣ୍ଡିତ ନେହେରୁଙ୍କର ସଭାରେ ଯୋଗ ଦେବାପାଇଁ ରେଭେନ୍ସା କଲେଜିଏଟର ତିନିଜଣ ଛାତ୍ର ପାଚେରୀ ଡେଇଁ ଯାଇଥିଲେ ଜୀବନର ପୋଥି ପଢ଼ିବାପାଇଁ । ବସ୍ତାନିର ପୋଥିରେ ଡୋରି ଲାଗିଥିଲା । ଏଇ ତ୍ରୟୀ ହେଲେ ବିନୋଦ କାନୁନ୍‌ଗୋ, ସୁରେନ୍ଦ୍ରନାଥ ପଟ୍ଟନାୟକ ଏବଂ ସୁରେନ୍ଦ୍ରନାଥ ଦ୍ୱିବେଦୀ । ଏମାନଙ୍କୁ ଓଡିଶାର ସଭିଏଁ ଜାଣନ୍ତି ।

ସେଇଦିନ ସୟଦ ସେମିନାରୀର ପାଚେରୀ ଡେଇଁ ଯାଇଥିଲା ଆଉ ଏକ ଛାତ୍ର । ସେଇ ଏକା କ୍ଲାସର ଛାତ୍ର । ନାଁ କୃପାସିନ୍ଧୁ ଖୁଣ୍ଟିଆ । ପ୍ରଥମ ତ୍ରୟୀ ରହିଗଲେ ଓଡିଶାରେ । କିନ୍ତୁ କୃପାସିନ୍ଧୁ କିଛି କାଳ ଏଭଳି ବାନରସେନା ଭାବରେ କାମକରି ଗଲେ କଲିକତା । ସେଇଠି ଆରମ୍ଭ ହେଲା ନୂତନ ଜୀବନ । କଲିକତାର ଚଟକଲ ଶ୍ରମିକମାନଙ୍କର ସେ ନେତା ହେଲେ । ଶ୍ରମଜୀବୀ ମଣିଷର ସାରଥୀ ହେଲେ କୃପାସିନ୍ଧୁ । କ୍ରମେ କଂଗ୍ରେସ ଦଳ ଛାଡି ସେ କମ୍ୟୁନିଷ୍ଟ ଦଳରେ ଯୋଗଦେଲେ । ସମାଜବାଦ ପ୍ରତି ତାଙ୍କର ଆସ୍ଥା ଜନ୍ମିଲା । ବଙ୍ଗଳାର ପ୍ରସିଦ୍ଧ ନେତାମାନଙ୍କ ସହିତ ସଂପର୍କ ପ୍ରତିଷ୍ଠିତ ହେଲା । ବେଆଇନ କମ୍ୟୁନିଷ୍ଟ ପାର୍ଟିରେ କାର୍ଯ୍ୟ ଆରମ୍ଭ କଲେ । କଲିକତାରେ ବହୁତ ଓଡ଼ିଆ । କୁହାଯାଏ ଯେ କଲିକତା ହେଉଛି ବୃହତ୍ତମ ଓଡ଼ିଆ ନଗରୀ । କୃପାସିନ୍ଧୁ ବଢ଼ିଲେ କଲିକତାରେ । ଶ୍ରମିକମାନଙ୍କ ଭିତରେ କାମ କରିବାରେ ସେ ଆନନ୍ଦ ପାଇଲେ, ଲାଭ କଲେ ଦକ୍ଷତା ।

ଓଡିଶାରେ କମ୍ୟୁନିଷ୍ଟ ପାର୍ଟି ଗଠିତ ହୁଏ । କୃପାସିନ୍ଧୁ ଫେରନ୍ତି ଓଡିଶାକୁ । ପ୍ରଥମେ ସେ ଆସନ୍ତି ପଟିଆ ଜିଲ୍ଲାକୁ । କମ୍ୟୁନିଷ୍ଟ ପାର୍ଟି ସଂଗଠିତ ହୁଏ । ପଟିଆ ବନ୍ଧ ତିଆରି ହେବାର ପୂର୍ବକାଳ । କିନ୍ତୁ କିଛି ଦିନ ପରେ ସେ ଫେରିଯାଆନ୍ତି କଲିକତା । ଚାଷୀମାନଙ୍କ ଭିତରେ କାମ କରିବା ତାଙ୍କୁ ସୁଖକର ହେଲା ନାହିଁ । ସେ ମଜଦୁରମାନଙ୍କର ନେତା, ସେଇମାନଙ୍କ ଭିତରେ ହିଁ ରହିବେ ।

ପୁଣି ଫେରି ଆସନ୍ତି ଓଡ଼ିଶା । ସେତେବେଳେ ଓଡିଶାରେ ଶିଳ୍ପସଂଖ୍ୟା ବହୁତ କମ୍ । ଚାଉଳକଳ, ବାରଙ୍ଗ କାଚ କାରଖାନା ଏବଂ ବ୍ରଜରାଜନଗରରେ ଓରିଏଣ୍ଟ ପେପର ମିଲ୍ । ତାଙ୍କର କର୍ମସ୍ଥଳ ହେଲା ବ୍ରଜରାଜନଗର କାଗଜ କଳ । ମାଲିକ ବିରଳା ପରିବାର । ବିରଳା ପରିବାର, ବିଶେଷତଃ ଘନଶ୍ୟାମ ଦାସ ବିରଳାଙ୍କର ରାଜନୈତିକ ପ୍ରଭାବ ଥିଲା ପ୍ରଭୂତ । ଅର୍ଥନୈତିକ ଶକ୍ତି ସହିତ ରାଜନୈତିକ ଶକ୍ତିର ପ୍ରଭାବ ମିଶିଲେ ଯାହା ହୁଏ । ଓରିଏଣ୍ଟ ପେପର ମିଲ୍‌ରେ ୟୁନିଅନ ଗଢ଼ିବାକୁ ଯାଇ ବହୁ ନେତା ମାଲିକର ଦାସ ବନିଛନ୍ତି । ବହୁ ନେତାଙ୍କୁ ସେ ସ୍ଥାନ ଛାଡ଼ି ଚାଲିଯିବାକୁ ପଡ଼ିଛି । କୃପାସିନ୍ଧୁ କିନ୍ତୁ ସେଇଠି ଆପଣାର ଡେରା ପକାଇଲେ । କୁଲି ବସ୍ତି ଭଙ୍ଗା ଟିଣ ଘରେ ତାଙ୍କର କାର୍ଯ୍ୟ ଆରମ୍ଭ ହେଲା । ସେ ଟ୍ରେଡ ୟୁନିଅନ ଗଠନ କାର୍ଯ୍ୟ ଆରମ୍ଭ କଲେ ।

କୃପାସିନ୍ଧୁ ଖୁଣ୍ଟିଆ ଶ୍ରମଜୀବୀ ମଣିଷର, ମେହନତୀ ମଣିଷର ନେତା ହେଲେ । ଜୁଟିଲେ ଦୁର୍ଗା କର, ହର ମୋହନ ପଟ୍ଟନାୟକ ପ୍ରଭୃତି । କାଗଜ କଳ ପାଖଦେଇ ବହି ଯାଉଛି ଇବ ନଦୀ । ଏଇ ନଦୀ ଜଳ ଦୂଷିତ ହେଉଛି କାରଖାନାରୁ ନିର୍ଗତ ମଇଳାଦ୍ୱାରା । ଇବ୍ ନଦୀର ପ୍ରଦୂଷଣ ବିରୁଦ୍ଧରେ ସ୍ୱର ଉଠିଛି ସମଗ୍ର ସମ୍ବଲପୁର ଜିଲ୍ଲାରେ । ରମ୍ପେଲା, କୁର୍ଲା, ମୁରା ପ୍ରଭୃତି ଗାଁରେ ବିଦ୍ରୋହ ମଥା ଟେକିଛି । ସେମାନଙ୍କ ଭିତରେ ଅଛନ୍ତି ଶିଳ୍ପୀ ପ୍ରସନ୍ନ କୁମାର ପଣ୍ଡା । ରସାୟନବିଦ୍ ହୃଷୀକେଶ ପୁଝାରୀ ପ୍ରମୁଖ । କୃପାସିନ୍ଧୁ ଖୁଣ୍ଟିଆଙ୍କ ନେତୃତ୍ୱରେ ବ୍ରଜରାଜ ନଗରର ଶ୍ରମିକ ୟୁନିଅନ ଏହା ବିରୁଦ୍ଧରେ ଆହ୍ୱାନ ଦେଉଛି ଜନ ଆନ୍ଦୋଳନ ପାଇଁ । ଶ୍ରମଜୀବୀ ମଣିଷ ହେଉଛି ଆଗଛାମୁଆ ବାହିନୀ, ଏହା ପ୍ରମାଣିତ ହୋଇଛି । କୃପାସିନ୍ଧୁ ଖୁଣ୍ଟିଆଙ୍କୁ ପ୍ରଲୋଭନ ଦେଖା ଯାଇଛି, ଧମକ ଦିଆଯାଇଛି, ମାରିଦେବା ପାଇଁ ଉଦ୍ୟମ ହୋଇଛି । କିନ୍ତୁ କୃପାସିନ୍ଧୁ ଖୁଣ୍ଟିଆ ଅନମନୀୟ, ସାଲିସହୀନ । ଯାହା କହନ୍ତି ତାକୁ କାର୍ଯ୍ୟକାରୀ କରନ୍ତି । କହନ୍ତି ରୋକ୍‌ଠୋକ୍ କଥା । କୃପାସିନ୍ଧୁ ଖୁଣ୍ଟିଆ ନଈକୁ ଗାଧୋଇ ଯାଉଛନ୍ତି ଏକ ପଥର ଖୋଲ ପାଖରେ ଛଳ ଛଳ ହୋଇ ବୋହି ଯାଉଥିବା ଝର ତାଙ୍କୁ ଭଲ ଲାଗେ । ନିକାଞ୍ଚନ ଯାଗା । ସେଇଠି ଦିନେ ସେ ଗାଧୋଉଛନ୍ତି । ହଠାତ୍ ତାଙ୍କ ଉପରେ ଗୁଣ୍ଡାମାନେ ଆକ୍ରମଣ କଲେ । ଠେଙ୍ଗା, ଭୁଜାଲି ଧରି । କୃପାସିନ୍ଧୁଙ୍କର ମୃତ୍ୟୁ ସୁନିଶ୍ଚିତ । ଗୋଟାଏ ପାହାରକୁ ସେ ଏଡିଦେଇ ଡେଇଁ ପଡିଲେ ପାଣି ଭିତରକୁ । ଏଇ ସମୟରେ ଦୂରରେ ଏକ ନାରୀ ଗାଧୋଇବା ଅବସ୍ଥାରେ ଦେଖିଲା ଏଇ ଦୃଶ୍ୟ । ସେ ଓଦାଲୁଗାକୁ ହାତରେ ଜାବୋଡ଼ି ଦୌଡିଲା । ବସ୍ତିକୁ ଏଇ ଖବର ଦେବା ପାଇଁ । ଶହ ଶହ ଶ୍ରମିକ ବାହାରି ଆସିଲେ ନଈ ପାଖକୁ । ଯିଏ ଯାହା ହାତରେ ଧରିଛି । ସ୍ତ୍ରୀ ଲୋକମାନେ ଯାଇ ଅବରୁଦ୍ଧ କଲେ କାରଖାନାର ଗେଟ୍ । କାରଖାନାରେ ବାଜି ଉଠିଲା ବିପଦ ସଙ୍କେତ ଦେଇ ସାଇରନ୍ । ସମ୍ବାଦ ଚାହୁଁ ଚାହୁଁ ବ୍ୟାପିଗଲା । ଉତ୍ତ୍ୟକ୍ତ ଜନତାକୁ ଶାନ୍ତ କରିବା

ପାଇଁ ପୁଲିସ ବାଧ୍ୟ ହୋଇ ଆହତ ଖୁଣ୍ଟିଆଙ୍କୁ ଆଣି ଉପସ୍ଥାପିତ କରିବାକୁ ପଡ଼ିଲା ଜନ ସମ୍ମୁଖରେ ।

୧୯୪୬ ମସିହା ନିର୍ବାଚନ । ଶ୍ରମିକମାନଙ୍କର ପ୍ରତିନିଧି ହେବା ପାଇଁ ନିର୍ବାଚନରେ ଠିଆ ହେଲେ ବୈଦ୍ୟନାଥ ରଥ ପ୍ରସିଦ୍ଧ କଂଗ୍ରେସ ନେତା ହନିଫଙ୍କ ବିରୁଦ୍ଧରେ । ବ୍ରଜରାଜନଗର କାଗଜ କଳ, କଟକର ପ୍ରେସ୍ ଶ୍ରମିକ ଏବଂ ବାରଙ୍ଗ କାଚ କାରଖାନାର ମଜଦୁରମାନେ ବୈଦ୍ୟନାଥଙ୍କୁ ଜୟଯୁକ୍ତ କରାଇଲେ । ଏଇଥିପାଇଁ କୃପାସିନ୍ଧୁ ଖୁଣ୍ଟିଆଙ୍କର ଦାନ ବିପୁଳ । କୃପାସିନ୍ଧୁ ଖୁଣ୍ଟିଆ ପ୍ରଚାରଧର୍ମୀ ନୁହନ୍ତି, ନୀରବ ସଙ୍ଗଠକ । ନିଖିଳ ଭାରତ ଟ୍ରେଡ ୟୁନିଅନ କଂଗ୍ରେସ ଓଡ଼ିଶା ଶାଖାର ସମ୍ପାଦକ ହୁଅନ୍ତି । ସେ ସାଲିସ ଜାଣି ନଥିଲେ । ଜାଣି ନଥିଲେ ରାଜନୈତିକ କୂଟଜାଲ । ଦିନେ ସେ ରାତିରେ ଆପଣା ପାର୍ଟିର କୌଣସି ନୀତି ବିରୁଦ୍ଧରେ ମତ ଦିଅନ୍ତି । ତା'ଆର ଦିନ ସକାଳେ କଂଗ୍ରେସ ନେତା ବୀରେନ୍ଦ୍ର ମିତ୍ର ଚାନ୍ଦିନିଚୌକ ବାଟଦେଇ ଗଲାବେଳେ କୃପାସିନ୍ଧୁ ଖୁଣ୍ଟିଆଙ୍କୁ ପଚାରନ୍ତି, ଖୁଣ୍ଟିଆଜୀ ଆପଣ କାହିଁକି ଆମ ଉପରେ ଏତେ ବିମୁଖ । ବୀରେନ୍ ମିତ୍ର ବ୍ୟକ୍ତିଗତ ବନ୍ଧୁ, କିନ୍ତୁ ରାଜନୀତିରେ ସେ ବିପରୀତ ଶିବିରରେ । ସେ କିପରି ଜାଣିଲେ ପାର୍ଟିର ଗୁପ୍ତ ଆଲୋଚନା । ପୁଣି ତାହା ଆଲୋଚିତ ହୋଇଛି ପାର୍ଟିର ସେକ୍ରେଟେରିଏଟରେ । ସେଥିରେ ମାତ୍ର ତିନି ଚାରି ଜଣ ସଭ୍ୟ । ତା'ହେଲେ କ'ଣ ? କୃପାସିନ୍ଧୁ ଖୁଣ୍ଟିଆ ଉଠିଲେ ପାର୍ଟି ଅଫିସକୁ । ବାନ୍ଧିଲେ ବିସ୍ତରା । ତା'ପରେ ସେ ଉତ୍ତାନ ହୋଇଗଲେ କୁଆଡ଼େ । ଦେଇ ଯାଇଥିଲେ ଇସ୍ତଫାପତ୍ର ସେକ୍ରେଟେରିଏଟ୍ ସଭ୍ୟ ପଦରୁ ।

ବେଶ୍ କିଛି କାଳ ଅଜଣା ରହିବା ପରେ ସେ ଆତ୍ମପ୍ରକାଶ କରନ୍ତି । କିଛି ଦିନ ଜୀବନବୀମା କମ୍ପାନୀର ଏଜେଣ୍ଟ ହୁଅନ୍ତି ଗୁଜରାଣ ମେଣ୍ଟାଇବା ପାଇଁ । ଫେରନ୍ତି କିଛି କିଛି ପୁରୁଣା କର୍ମକୁ । ଏକ ଦୁର୍ଘଟଣାର ସମ୍ମୁଖୀନ ହୁଅନ୍ତି । ସେଥିରୁ ବଞ୍ଚିଯାଆନ୍ତି । କିନ୍ତୁ ଜୀବନ ଦୀପ ଯେ ଲିଭି ଲିଭି ଆସୁଛି ତାହା ଜଣାପଡ଼େ ।

କୃପାସିନ୍ଧୁ ଖୁଣ୍ଟିଆ ବେଶ୍ ଉଷ୍ଣ । ବନ୍ଧୁମାନଙ୍କ ଗହଣରେ ବେଶ୍ ମୁଖର । କିନ୍ତୁ କର୍ମକ୍ଷେତ୍ରରେ ସେ କଠୋର । ନିଷ୍ପତ୍ତି ନିଅନ୍ତି ଗଣତାନ୍ତ୍ରିକ ଉପାୟରେ । କିନ୍ତୁ କାର୍ଯ୍ୟକାରୀ ହେଲାବେଳେ ସେ ପୂରା ଅଟୋକ୍ରାଟ । ଶ୍ରେଣୀ ଶତ୍ରୁ ପାଖରେ ସାଲିସ, ପାର୍ଟି ଶୃଙ୍ଖଳାଭଙ୍ଗ ତାଙ୍କ ପାଇଁ ଅସହ୍ୟ । ଦେଖାହୋଇଛି ମଝିରେ ମଝିରେ, ଖେଦ ପ୍ରକାଶ କରିଛନ୍ତି । ପାର୍ଟି ଭିତରେ ଯେଉଁ ଅବକ୍ଷୟର ସୂଚନା ମିଳିଛି ତାହା ଏକ ଭୟାନକ ବିପଦକୁ ଡାକିଆଣୁଚି । ଶତ୍ରୁ ସହିତ ସାଲିସ କରିବା ଏକ ଫଳପ୍ରଦ, ଲାଭଜନକ ନୀତିରେ ପରିଣତ ହୋଇଛି ।

କୃପାସିନ୍ଧୁ ଖୁଣ୍ଟିଆ ଆଉ ନାହାନ୍ତି । ଶ୍ରମଜୀବୀ ମଣିଷର ଗୋଟାଏ ବାହା ଖସି ପଡ଼ିଛି ।

□□□

# ଇତିହାସର ଗୋଟିଏ ପୃଷ୍ଠ

*(ଂ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ)*

ଇତିହାସର ଗୋଟାଏ ପୃଷ୍ଠା ଓଲଟି ପଡିଛି । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଆଉ ନାହାନ୍ତି । ଓଡ଼ିଶା ଇତିହାସର ଦୀର୍ଘ ଛଅଶହ ବର୍ଷ ରହିଯାଇଛି ଅନ୍ଧକାରରେ । ଏ ଜାତିର ଉଜ୍ଜ୍ୱଳ ଐତିହ୍ୟର ବହୁ ଅଧ୍ୟାୟ ରହି ଯାଇଛି ଲୋକଲୋଚନର ଅଗୋଚରରେ । କେଉଁଠି ରହିଛି କେଶରୀବେଢ଼ା, କେଉଁଠି ବୁଦ୍ଧଦେବଙ୍କର କେଶକୁ ଆଣି ତାଙ୍କର ପ୍ରଥମ ଦୁଇ ଶିଷ୍ୟ, କଳିଙ୍ଗର ବଣିକ ପୁତ୍ର ତାପସୁ ଏବଂ ଭଲ୍ଲିକ ରଖିଥିଲେ ? କେଉଁଠି ରହିଛି ପୁଷ୍ପଗିରି, ଯାହାର ବୌଦ୍ଧବିହାର ଆକର୍ଷିତ କରିଥିଲା ଦେଶ ବିଦେଶର ବହୁ ଗବେଷକଙ୍କୁ ? କେଉଁଟା ଦନ୍ତପୁର ଯେଉଁଠି ବୁଦ୍ଧଦେବଙ୍କର ଦନ୍ତ ସୁରକ୍ଷିତ ରହିଛି ? ଜଗନ୍ନାଥ ହିନ୍ଦୁ, ବୌଦ୍ଧ, ନା ଜୈନ ? ତାମ୍ରଲିପ୍ତି, ଚେଲିତୋଳ କେଉଁଠି ଯେଉଁଠାରୁ କଳିଙ୍ଗର ବଣିକ ପୁତ୍ରମାନେ ଯାଉଥିଲେ ବିଦେଶକୁ ? ବାରବାଟୀ ଦୁର୍ଗର ନବତଳ ପ୍ରାସାଦ, ନଅ ମହଲା ନା ନଅ ସାହାଲା ?

କେତେ ପ୍ରଶ୍ନ । କେତେ ପରିଶ୍ରମ ଲୋଡ଼ା ସେଥିପାଇଁ ? କେତେ ଗବେଷକ ଆବଶ୍ୟକ ଯେଉଁମାନେ ଜୀବନର ବାକି ସବୁ ସୁଖ ସମ୍ଭୋଗକୁ ପରିତ୍ୟାଗ କରି ଏଇଥିରେ ମନୋନିବେଶ କରିବେ ? ଇତିହାସ ହେଉଛି ଭବିତବ୍ୟର ଆଲୋକ ବର୍ତ୍ତିକା । ଇତିହାସ ନ ଜାଣିଲେ ଆଗକୁ ଯାଇହେବନାହିଁ । ସେ ଦୃଷ୍ଟିରୁ ଇତିହାସର ଗୁରୁତ୍ୱ ସ୍ୱତନ୍ତ୍ର ।

ଅଧ୍ୟାପକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସେଇମାନଙ୍କ ଭିତରୁ ଜଣେ ଯେଉଁମାନେ ଏଇ ଇତିହାସକୁ ବିସ୍ମୃତିର ଗର୍ଭରୁ ଖୋଳି ବାହାରକରିବା ପାଇଁ ସମଗ୍ର ଜୀବନକୁ ସମର୍ପି ଦେଇଗଲେ ।

ଅଧ୍ୟାପକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ହେଉଛନ୍ତି ଅନ୍ୟତମ ପାଇଓନିଅର । ପାଇଓନିଅରର ଦୁଃଖ ବହୁତ, ପ୍ରସିଦ୍ଧି ଆସେ କମ୍ ଲୋକ ଭାଗ୍ୟରେ । କିନ୍ତୁ ଗର୍ବ ମଧ୍ୟ ବହୁତ । କାରଣ ସେ ହିଁ ଉନ୍ମୁକ୍ତ କରେ ଇତିହାସର ନୂତନ ଅଧ୍ୟାୟ । ସେ ହିଁ ତୋଳିଧରେ ଆଲୋକ ବର୍ତ୍ତିକା ଭବିତବ୍ୟ ପାଇଁ । ଅଧ୍ୟାପକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତହିଁର ବ୍ୟତିକ୍ରମ ନୁହନ୍ତି ।

ଶିକ୍ଷା ପାଇଛନ୍ତି । ଶିକ୍ଷାକୁ ବନ୍ଧ୍ୟାତ୍ୱର ଦୋଷ ଭୋଗିବାକୁ ଦେଇ ନାହାନ୍ତି । ଶିକ୍ଷାକୁ ବ୍ୟବହାର କରିଛନ୍ତି ଏବଂ ଅନ୍ୟମାନଙ୍କୁ ବ୍ୟବହାର କରିବା ପାଇଁ ଶିଖାଇଛନ୍ତି । ଓଡିଶାର ବିଭିନ୍ନ କଲେଜରେ ଶିକ୍ଷାଦେଇ ସେ ତାଲିମ ଦେଇଛନ୍ତି ବହୁ ନୂତନ ଐତିହାସିକମାନଙ୍କୁ । ପ୍ରେରଣା ଦେଇଛନ୍ତି, ଉଦ୍‌ବୁଦ୍ଧ କରିଛନ୍ତି ଏବଂ ତା ସହିତ ନିଜେ ଆପଣାର ଶ୍ରମ ଏବଂ ବୁଦ୍ଧି ପ୍ରୟୋଗ କରିଛନ୍ତି ଇତିହାସର ପୁନରୁଦ୍ଧାର ପାଇଁ ।

ଯାଜପୁର-କଟକ (ବର୍ତ୍ତମାନର ଯାଜପୁର) ଉପରେ ତାଙ୍କର ଗବେଷଣା ତାର ଏକ ପ୍ରମାଣ ମାତ୍ର । ବୟସ ହୋଇଛି । ଚାକିରିରୁ ଅବସର ନେଇଛନ୍ତି, କିନ୍ତୁ କର୍ମରୁ ନୁହେଁ ।

ସେ ଦିନ । କଳାବିକାଶ କେନ୍ଦ୍ରରେ ତାଙ୍କୁ ଅଭ୍ୟର୍ଥିତ କରାଯାଉଥିଲା । ସଭାପତି ଥିଲେ ଡକ୍ଟର ହରେକୃଷ୍ଣ ମହତାବ, ଓଡ଼ିଶାର ଅନେକ ବିଷୟରେ ପାଇଓନିଅର । ଡକ୍ଟର ପାଣିଗ୍ରାହୀ ଅସୁସ୍ଥ । ରୋଗ ତାଙ୍କୁ ଗ୍ରାସ କରିଯାଇଛି । ଜୀବନର ସଂଧ୍ୟା ଆସି ଯାଇପାରେ ଯେ କୌଣସି ମୁହୂର୍ତ୍ତରେ । ଉପଯୁକ୍ତ ଚିକିତ୍ସା ହୋଇପାରୁ ନାହିଁ ବୋଲି ତାଙ୍କର ଅଭିଯୋଗ, ଅଭିମାନ । କାହା ଉପରେ ? ଏ ଜାତି ଉପରେ । ସେ ନିବେଦନ କଲେ । ଆହୁରି ଅନେକ କାମ ବାକି ଅଛି । ଅନେକ । ଆଖିରୁ ତାଙ୍କର ଲୁହ ଝରୁଥିଲା । କଣ୍ଠ ହୋଇଯାଉଥିଲା ବାଷ୍ପରୁଦ୍ଧ । ଓଡ଼ିଶା ଇତିହାସର ଅନେକ ଅଧ୍ୟାୟ ତଥାପି ତମସାଚ୍ଛନ୍ନ । ମୁଁ ବଞ୍ଚି ରହିବାକୁ ଚାହେଁ । ମୋର ଚିକିତ୍ସାର ବ୍ୟବସ୍ଥା ଆପଣ କରିବେ । ଓଡିଶାର ଇତିହାସ..... ।

ଆଉ କହି ପାରିଲେ ନାହିଁ । କଣ୍ଠ ବାଷ୍ପରୁଦ୍ଧ ହୋଇଗଲା ସମ୍ପୂର୍ଣ୍ଣ ଭାବରେ । ଡକ୍ଟର ମହତାବଙ୍କ ଆଖି ଛଳ ଛଳ । ସେ କ'ଣ କହିବେ ? ଏ କ'ଣ ବ୍ୟକ୍ତିର ବେଦନା, ନା ଇତିହାସ କଥା କହୁଛି । ଏ ବାକ୍ୟ କ'ଣ ଶୁଭୁଛି ମଣିଷର କଣ୍ଠରୁ ନା ମାଟି ଫାଟି ଏ ଡାକରା ଶୁଭୁଛି !

ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମେଧାବୀ ଛାତ୍ର ଥିଲେ । ବିଚକ୍ଷଣ ଶିକ୍ଷକ ଏବଂ ଗବେଷକ ଥିଲେ । ଓଡିଶାର ବିଭିନ୍ନ କଲେଜରେ ଅଧ୍ୟକ୍ଷତା କରିଛନ୍ତି । ପ୍ରତ୍ନତତ୍ତ୍ୱ ଠାରୁ ଇତିହାସ । ବହୁ ବିଷୟ ତାଙ୍କର ଆଲେଖ୍ୟ ବହନ କରିଛି ।

କିନ୍ତୁ ଓଡ଼ିଶା ଇତିହାସର ସେ ଥିଲେ ଏକନିଷ୍ଠ ଗବେଷକ । ଏବଂ ସେଥିରେ ସେ କାହାରି ସହିତ ସାଲିସ କରି ପାରି ନଥିଲେ । ସେ ଯେତେ ପ୍ରତିଷ୍ଠିତ ବା ଶକ୍ତିଶାଳୀ ହେଉନା କାହିଁକି । ଯାହା ଗବେଷଣା-ପ୍ରସୂତ ତାକୁ ନିର୍ଭୀକ ଭାବରେ ଥୁଆଯିବା ଉଚିତ, ଏହା ହିଁ ଥିଲା ତାଙ୍କର ଦୃଢ଼ ନିଷ୍ପତ୍ତି । ସେଥିରୁ ସେ ବିଚଳିତ ବା ସ୍ଖଳିତ ହୋଇନାହାନ୍ତି ।

ଇତିହାସର ସେଇ ମହାନ ଗବେଷକ ଆଉ ନାହାନ୍ତି । ଇତିହାସର ଏକ ଅଧ୍ୟାୟର ପରିସମାପ୍ତି ଘଟିଛି । ଭବିଷ୍ୟତ ପୀଢ଼ି ପାଇଁ ସେ ରହିଯିବେ ଚିର ନମସ୍ୟ ହୋଇ ।

□□□

# ଅଚ୍ୟୁତ ବିନ୍ଧାଣୀ

## (ଵ କୃଷ୍ଣଚନ୍ଦ୍ର ଗନ୍ତାୟତ)

ବିଶିଷ୍ଟ ଇଂଜିନିଅର କୃଷ୍ଣଚନ୍ଦ୍ର ଗନ୍ତାୟତଙ୍କର ପରଲୋକ ହୋଇଯାଇଛି । ବମ୍ବେରୁ କଟକ ଆସୁଥିବା ବେଳେ ଟ୍ରେନ୍ ଭିତରେ । ଚମକ ଲାଗିଲା, ଆଖିରେ ଲୁହ ଜମି ଆସିଲା ଏଇ ସମ୍ବାଦ ଶୁଣି ।

କୃଷ୍ଣଚନ୍ଦ୍ର ଗନ୍ତାୟତ ବିଚକ୍ଷଣ ଇଂଜିନିଅର ଥିଲେ । ତାଙ୍କୁ ସମସ୍ତେ ଡରୁଥିଲେ, ଭକ୍ତି କରୁଥିଲେ । ଆପଣାର ସାଧୁତା ଏବଂ ନିଷ୍ଠା ଯୋଗୁଁ ସେ ଓଡିଶା ଇଲେକ୍‌ଟ୍ରିସିଟି ବୋର୍ଡ଼ର ଚେୟାରମ୍ୟାନ ହୋଇଥିଲେ । ଅବସର ନେବା ପରେ ନିଜର କ'ଣ ସବୁ ଶିଳ୍ପ ଗଢ଼ିବା ପାଇଁ ଆପଣାକୁ ବିନିଯୋଗ କରିଥିଲେ । ସେଇ ସଂକ୍ରାନ୍ତରେ ସେ ବମ୍ବେକୁ ବାରମ୍ବାର ଯିବା ଆସିବା କରୁଥିଲେ ଏବଂ ଯାଉଥିଲେ ଦ୍ୱିତୀୟ ଶ୍ରେଣୀରେ । ବହୁବର୍ଷ ମୋଟର କାର, ଉଡାଜାହାଜ, ପ୍ରଥମ ଶ୍ରେଣୀରେ ଯାତ୍ରା ହୋଇଛି । କିନ୍ତୁ ତାହା ତାଙ୍କୁ ଆଦୌ ଆଚ୍ଛନ୍ନ ବା ଆସକ୍ତ କରିପାରି ନାହିଁ । ଅବସର ନେବା ସହିତ ସେ ଅବଲୀଳାକ୍ରମେ ଦ୍ୱିତୀୟ ଶ୍ରେଣୀ, ବସ ଏବଂ ପାଦରେ ଚାଲିବାକୁ ଆଦରି ନେଇଥିଲେ । କାହାରି କଥା, କାହାରି ବାରଣ ମାନୁ ନଥିଲେ । ଜୀବନରେ କାହାକୁ ତ ମାନି ନାହାନ୍ତି ଆଉ ଆଜି ମାନିବେ ?

ସେ ବର୍ଷ । ତାରିଖ ମନେ ନାହିଁ । କିନ୍ତୁ ଏକ ବର୍ଷାତୁର ରାତି । ଇଂଜିନିଅର ଗନ୍ତାୟତଙ୍କ ପାଖରେ ମୁଁ ପହଞ୍ଚିଥିଲି କୁରିଅର୍ ହୋଇ, ସମ୍ବାଦ ବହନ କରି । ବେଆଇନ କମ୍ୟୁନିଷ୍ଟ ପାର୍ଟି ପାଇଁ ଦରକାର ପ୍ରାୟ ପଚାଶ ହଜାର ଟଙ୍କା । ପଞ୍ଚମ ଦଶନ୍ଧିର କଥା । ସ୍ତ୍ରୀର ଗହଣା ଏବଂ ନିଜ ଗାଡିକୁ ବନ୍ଧକ ରଖି ତା'ପର ଦିନ ସେ ମୋତେ ବଢ଼ାଇ ଦେଇଥିଲେ ଅର୍ଥ ।

ତିରିଶ ଦଶକରେ କୃଷ୍ଣଚନ୍ଦ୍ର ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଛାତ୍ର । ପ୍ରସିଦ୍ଧ କବି ଅନନ୍ତ ପଟ୍ଟନାୟକ ଯାଇ ଥାଆନ୍ତି ମାଡ୍ରାସ ନିଖିଳ ଭାରତ ଛାତ୍ର ସଂଘର ସମ୍ମିଳନୀରେ ଯୋଗଦେବା ପାଇଁ । ସେଠାରେ ସହ-ପ୍ରତିନିଧି କୃଷ୍ଣଚନ୍ଦ୍ର ଗନ୍ତାୟତଙ୍କ ସହିତ ସାକ୍ଷାତ ହୁଏ । ସେଇ ବନ୍ଧୁତା ଗାଢ଼ ହୁଏ ସମୟକ୍ରମେ । ଗନ୍ତାୟତ କମ୍ୟୁନିଷ୍ଟ ପାର୍ଟିର ସମର୍ଥକ

ପାଇଚନ୍ତି । ସେଇ ଆନୁଗତ୍ୟ ଅତୁଟ ରହେ ମୃତ୍ୟୁ ପର୍ଯ୍ୟନ୍ତ । କିନ୍ତୁ ସୋଭିଏଟ ୟୁନିଅନରେ ସମାଜବାଦୀ ପରୀକ୍ଷାରେ ସେ ସନ୍ତୁଷ୍ଟ ହୋଇ ପାରନ୍ତି ନାହିଁ । ଅନନ୍ତ ପଟ୍ଟନାୟକଙ୍କର ମୃତ୍ୟୁ ଦିନ ସକାଳେ ଆସି ପହଞ୍ଚିଥିଲେ ଗନ୍ତାୟତ ଚା ଖାଇବା ପାଇଁ । ସେତେବେଳକୁ ଅନନ୍ତବାବୁ ଗଲେଣି ଚାଲି ସେ ପୁରକୁ ଚା ଖାଇବା ପାଇଁ ।

୧୯୭୬ ମସିହାର କଥା । କଟକରେ ଆମେ ଆନ୍ତର୍ଜାତିକ ସେମିନାର କରୁଥାଉଁ ବୌଦ୍ଧ ଓ ଜୈନ ଦର୍ଶନ ଉପରେ । ସରକାରୀ ପ୍ରେସରେ ଛପା ଯାଉଥାଏ ସେମିନାରର ନିବନ୍ଧ ସବୁ । ଅରଖ ନୂଆ କଥା । ସେମିନାର ପରେ ଛପାଯାଏ ନିବନ୍ଧ । ବହୁ ସେମିନାରର ନିବନ୍ଧ ଛପାଯାଏନା । ଭୂରି ଭୂରି ଉଦାହରଣ ରହିଛି । କିନ୍ତୁ ଆମେ ନିଷ୍ପତ୍ତି କରିଥାଉଁ ନିବନ୍ଧ ସବୁକୁ ଆଗରୁ ଛାପି ଏକ ନୂଆ ପରମ୍ପରା ସୃଷ୍ଟି କରିବୁ ।

ହଠାତ୍ ପ୍ରେସ୍‌ର ସୁପରିଟେଣ୍ଡେଣ୍ଟ ଫୋନ କଲେ । ବହି ସେମିନାର ପୂର୍ବରୁ ପ୍ରକାଶିତ ହେବା ସମ୍ଭବ ନୁହେଁ । ଆମ ମୁଣ୍ଡରେ ବଜ୍ର ପଡିଲା କି ଆଉ !

ସୁପରିଟେଣ୍ଡେଣ୍ଟ କହିଲେ ଆଗାମୀ କାଲିଠାରୁ ପ୍ରେସକୁ ବିଜୁଳି ଆଲୁଅ ବନ୍ଦ ହେବ । ହୀରାକୁଦ ଲାଇନ ମରାମତି ହେବ । କୌଣସି ମତେ କ'ଣ ମରାମତି କାର୍ଯ୍ୟ ସ୍ଥଗିତ ରହି ପାରିବ ନାହିଁ ? ଅସମ୍ଭବ ବୋଲି ସୁପରିଟେଣ୍ଡେଣ୍ଟ କହିଲେ । ଗଲାସନ ପ୍ରେସ୍‌ରେ ବ୍ୟାଲେଟ ପେପର ଛପା ଯାଉଥିଲା । ଏହା ସତ୍ତ୍ୱେ ଲାଇନ ମରାମତି ପାଇଁ ବିଜୁଳି ବନ୍ଦ ହେଲା । କେହି ଶୁଣିଲେ ନାହିଁ । ବ୍ୟାଲେଟ ପେପର ପାଇଁ ଯେଉଁଠି ହାର ମାନିଛୁ, ଆପଣଙ୍କ ବହି ପାଇଁ ଶୁଣିବ କିଏ ?

ବାଧହୋଇ ଭୁବନେଶ୍ୱର ଗଲି ଗନ୍ତାୟତଙ୍କୁ ଦେଖା କରିବା ପାଇଁ । ସବୁ ଶୁଣିଲେ । କିଛି କହିଲେ ନାହିଁ । ଚା କପେ ପାଇଁ ଅର୍ଡର ଦେଲେ ଏବଂ ପଚାରିଲେ କାହିଁରେ ଆସିଛ । ବସରେ ବୋଲି କହିବାରୁ କହିଲେ,ଚା ଖାଅ, ଗାଡି ନେଇ ବସ୍ ଷ୍ଟାଣ୍ଡରେ ଛାଡ଼ିଦେଇ ଆସିବ । କିନ୍ତୁ ମୋ କାମ କଥା ? ପୁଣି ଥରେ କହିଲି । ସେଇ ନୀରବତା । ତୃତୀୟ ଥରକ କହିବାରୁ କହିଲେ, ହଉଏ କହିଲତ, ଯ, ସେମିନାରରେ ଦେଖା ହେବ । ଉପାୟ ନଦେଖି ଫେରିଲି । ଓହ୍ଲେଇଲି ମଧୁପାଟଣା ଛକରେ । ବୁଝିଯିବି ଛାପାର ଅବସ୍ଥା । ସୁପରିଟେଣ୍ଡେଣ୍ଟଙ୍କ ସାଙ୍ଗରେ ସାକ୍ଷାତ ହେବାରୁ ସେ କହିଲେ ଯେ ଆପଣ ଯାଇ ମୁଖ୍ୟମନ୍ତ୍ରୀଙ୍କୁ କହିଦେଲେ କି ? ମୁଁ ନାହିଁ କଲି । ସେ କହିଲେ ଯେ ନିର୍ଦ୍ଦେଶନା ଆସିଛି ପାୱାର ସପ୍ଲାଇ ବନ୍ଦ ହେବ ନାହିଁ । ଜଣେ ସୁପରିଣ୍ଟେଣ୍ଡିଙ୍ଗ ଇଂଜିନିଅର ପ୍ରେସରେ ଅବସ୍ଥାପିତ ହୋଇଛନ୍ତି ଅସ୍ଥାୟୀ ଭାବରେ । ସେ ଦେଖିବେ ଯେପରି ବିଜୁଳି ସପ୍ଲାଇ କୌଣସି କାରଣରୁ ମଧ ବ୍ୟାହତ ନ ହୁଏ । ସମସ୍ତେ ଆଶ୍ଚର୍ଯ୍ୟ, ଚକିତ ।

ବହି ବାହାରିଲା । ବହି ଖଣ୍ଡେ ଗନ୍ତାୟତଙ୍କୁ ଦେଲି । ଧନ୍ୟବାଦ ଜଣାଇବାରୁ କହିଲେ ହଉଏ, କର୍ତ୍ତବ୍ୟ କରିବା ହେତୁ ଧନ୍ୟବାଦ କାହିଁକି ? କର୍ତ୍ତବ୍ୟ ବାହାରେ କାମ କଲେ ସିନା ଧନ୍ୟବାଦ ପାଇବାର କଥା ନା ।

ଗନ୍ତାୟତ ଯାଇଥିଲେ ସୋଭିଏଟ୍ ୟୁନିଅନ ସରକାରୀ ଗସ୍ତରେ । ଅତ୍ୟନ୍ତ ନିରାଶ ହୋଇ ଫେରିଲେ ମଣିଷ ଦେଖି । କିନ୍ତୁ କାହାକୁ କହିବେ ? ଯେଉଁମାନଙ୍କୁ ସେ ଜାଣନ୍ତି ଏବଂ ଯେଉଁମାନେ ତାଙ୍କୁ ଜାଣନ୍ତି ସେଇମାନଙ୍କୁ ସେ କହିପାରିବେ ସିନା । ମୋତେ ଦିନେ ଡକାଇ ପଠାଇଲେ । କଅଣ ହେ, '' ଖାଲି ବିଜୁଳି, ଲୁହା, ଗହମ ଉତ୍ପାଦନ ବଢ଼ିଗଲେ ନୂଆ ମଣିଷ ଗଢ଼ା ହୋଇଯିବ କି ? ନୂଆ ମଣିଷ ଗଢ଼ିବା ପାଇଁ ତ କିଛି ଉଦ୍ୟମ ହୋଇ ନାହିଁ । ଇଏ କି ସମାଜବାଦ ?''

ବିଶାଳ ଅସନ୍ତୋଷର ବାତ୍ୟା ବହୁଛି । ସ୍ୱପ୍ନଭାଙ୍ଗି ପଡୁଛି । ଏ ସ୍ୱପ୍ନ ସାଧାରଣ ସ୍ୱପ୍ନ ନୁହେଁ । ବହୁ ତ୍ୟାଗରେ ସିକ୍ତ ଏଇ ସ୍ୱପ୍ନ । ଗନ୍ତାୟତ ଯେତେବେଳେ ଦେଖନ୍ତି କହନ୍ତି ସେଇ କଥା । ନୂଆ ମଣିଷ ଗଢ଼ା ନ ହେଲେ ସମାଜବାଦ ତ ତିଷ୍ଠି ପାରିବ ନାହିଁ । ଷ୍ଟାଲିନବାଦର କାହାଣୀ ତଥାପି ଲୋକଲୋଚନକୁ ଆସି ନାହିଁ । ଗନ୍ତାୟତଙ୍କ ମନ ଆହୁରି ଶୁଖିଗଲା ଯେତେବେଳେ ସତକୁସତ ସେଇଆ ଘଟିଗଲା । ଏ କ୍ରୋଧ ସେ ପ୍ରକାଶ କରିପାରିବେ ନାହିଁ, କାହାକୁ କହିପାରିବେ ନାହିଁ । ଆପଣା ଦିହକୁ ଖାଇ ଚାଲିଲା । ବିମର୍ଷ ହୋଇଗଲେ ।

ଗନ୍ତାୟତ ଜାତି, ଧର୍ମ, କୁଳରେ ବିଶ୍ୱାସ କରିନାହାନ୍ତି ପିଲାଦିନରୁ । ବୟସ ବଢ଼ିଛି, ସ୍ୱପ୍ନ ଭାଙ୍ଗି ଯାଉଛି । ସେଇଯୋଗୁଁ ତାଙ୍କ ଭିତରେ କ'ଣ କିଛି ପ୍ରତିକ୍ରିୟା ଦେଖା ଦେଇଛି କି ଆଉ ! ଝିଅ ମାୟା ବିବାହ କରିଛି, ତାର ସାଥୀ ସେ ନିଜେ ବାଛିଚି । ଗନ୍ତାୟତ କାହିଁକି ଏଇ ଛୋଟିଆ ଘଟଣାଟିକୁ ରିକନ୍‌ସାଇଲ କରିପାରିଲେ ନାହିଁ ନା ଆଦର୍ଶ ଧୂଳିସାତ ହୋଇଯାଉଥିବା ଦେଖି ତାରି ସ୍ଥାନରେ ପିତୃତ୍ୱର ଅହମିକା ଦେଖାଦେଲା ? ଶରୀର ଅସୁସ୍ଥ । ଯାଇ ପହଞ୍ଚିଛି ଡାକ୍ତରଖାନାରେ । ବନ୍ଧୁ ଡାକ୍ତର ରବି ସାହୁ ପରିଚୟ କରେଇ ଦେଉଛନ୍ତି ଡାକ୍ତର ମାୟା ସହିତ । ମାୟା ପରୀକ୍ଷା କରୁଚି ମୋତେ । ମୋ ମନ ଯାଇ ରହୁଛି ଅନ୍ୟତ୍ର । କ'ଣ ହେଲା ଗନ୍ତାୟତଙ୍କର ? ଜୀବନରେ ଏତେ କଥାକୁ ଯିଏ ଗ୍ରହଣ କରିଯାଇଛି, ସେ ଏଇ ଟିକକକୁ ଗ୍ରହଣ କରିନେଇ ପାରିଲେ ନାହିଁ ? ମାୟା ତା'ପରେ କେବଳ ବାପାଙ୍କର ମୃତ ଦେହକୁ ହିଁ ଦେଖିବାର ସୁଯୋଗ ପାଇଛି । ବହୁ ବିରାଟ ବ୍ୟକ୍ତିଙ୍କର ଇମିତି ଛୋଟ ଛୋଟ କଥାରେ ଭାରସାମ୍ୟ ହଜିଯାଏ । ପ୍ରବଳ ପ୍ରତାପୀ ଭାରତ ଚନ୍ଦ୍ର ନାୟକଙ୍କ କଥାରେ ମୁଁ ସେହି ହଠାତ୍ ଏକ ବ୍ୟତିକ୍ରମ ଦେଖି ଚମକିଥିଲି । ଆଜି ଠିକ୍ ସେହିପରି ଏକ ବ୍ୟତିକ୍ରମ ଦେଖୁଛି ମୋ ସମ୍ମୁଖରେ ।

ଗନ୍ତାୟତ ଆଉ ନାହାନ୍ତି । ଏକ ବିରାଟ ପୁରୁଷର ଅବସାନ ଘଟିଛି । ପର୍ବତ ପରି ଉଚ୍ଚ, ସାଗର ପରି ବିଶାଳ ।

 □□□

# ଯାହାଙ୍କ ହାତର ସ୍ପର୍ଶରେ ସୂତାରୁ ସଙ୍ଗୀତ ଝରୁଥିଲା

*(୰ କୃତାର୍ଥ ଆଚାର୍ଯ୍ୟ)*

କୃତାର୍ଥ ଆଚାର୍ଯ୍ୟଙ୍କର ପରଲୋକ ହୋଇଯାଇଛି । ଏକ ସଫଳ ଜୀବନ । ଓଡ଼ିଶାକୁ ଭାରତବର୍ଷରେ ଏବଂ ବିଦେଶରେ ପରିଚୟ କରାଇଥିବା ବିନ୍ଧାଣୀ । ସମ୍ବଲପୁରୀ ବସ୍ତ୍ରଶିଳ୍ପକୁ ନୂତନ ଜୀବନ୍ୟାସ ଦେଇଥିବା ମହାରଥୀ । କାର୍ଯ୍ୟର ବୋଧହୁଏ ପରିସମାପ୍ତି ଘଟିଛି । ଏଣିକି ତାକୁ ଚଳାଇରଖିବା, ଅଧିକ ବିକଶିତ କରିବାର ଦାୟିତ୍ୱ ଉତ୍ତର ପୀଢ଼ିର । ସେ ଆଉ କାହିଁକି ରହିବେ ?

ମନେ ପଡୁଛି ୧୯୬୧ ମସିହାର କଥା । ଜର୍ମାନୀର ହାଲେ ସହରରେ ପ୍ରାଚ୍ୟକଳା ସଂସ୍କୃତିର ପ୍ରଦର୍ଶନୀ ହେବ । ସେଇଠି ଓଡିଶାର କଳା ଓ ଭାସ୍କର୍ଯ୍ୟର ଏକ ସ୍ଥାୟୀ ମଣ୍ଡପ ରହିବ । ତା'ପୂର୍ବରୁ ସେଗୁଡ଼ିକ ପ୍ରଦର୍ଶିତ ହେବ ବର୍ଲିନ ସହରରେ । ଓଡିଶାରୁ ସଂଗ୍ରହ ହେବ ଉପାଦାନ । ଚିଠି ଲେଖିଲି ସମସ୍ତଙ୍କୁ । ସମାଜ ସମ୍ପାଦକ ଶ୍ରୀ ରାଧାନାଥ ରଥ ମଧ୍ୟ ବ୍ୟକ୍ତିଗତ ଭାବରେ ଅନେକ ଲୋକଙ୍କୁ କହିଲେ । ଉପାଦାନ ସଂଗ୍ରହ ପାଇଁ ପହଞ୍ଚିଲି ବରଗଡରେ । ସାଙ୍ଗରେ ବନ୍ଧୁ ଆଇନଜୀବୀ ରାଧାବଲ୍ଲଭ ମିଶ୍ର ।

କୃତାର୍ଥବାବୁ କାହାଣୀଟି ଶୁଣି ସତେ ଯେପରି କୃତାର୍ଥ ହୋଇଗଲେ । ଓଡ଼ିଶାର ଶିଳ୍ପକଳା ଏବଂ ବସ୍ତ୍ରକଳା ବର୍ଲିନ ସହରରେ ପ୍ରଦର୍ଶିତ ହେବ ଏହାଠାରୁ ବଳି ଆନନ୍ଦର କଥା ଏଇ ଶିଳ୍ପୀ ପାଇଁ ଆଉ କ'ଣ ହୋଇପାରେ ? କୃତାର୍ଥ ବାବୁ ନିଜେ ବସିଲେ । ସେଦିନ ଖାଲି ରଫ୍ କାମ ହେଲା । କାଲିକି ଫାଇନାଲ ବଛା ଯିବ । ବାଛିଲେ । ଏବଂ ମୁଁ ଯେତିକି ଆଶା କରୁଥିଲି ତା'ଠାରୁ ବହୁତ ବେଶି ଦାନ କଲେ । ଜର୍ମାନ ପ୍ରତିନିଧିମାନଙ୍କ ଆଖି ଖୋସି ହୋଇଗଲା । ବିଶିଷ୍ଟ ପ୍ରାଚ୍ୟବିଦ୍ ଅଧ୍ୟାପକ ଡକ୍ଟର ମୋଦେ କହିଲେ ଏତ କାର୍ପାସରେ କବିତା । ସଙ୍ଗୀତର ମଧୁର ଝଙ୍କାର ତ ଶୁଭୁଛି ଏଥିରୁ ।

କୃତାର୍ଥ ବାବୁଙ୍କର ଜନ୍ମ ଗଙ୍ଗାଧର ମେହେରଙ୍କର ଜନ୍ମସ୍ଥଳୀରେ । ଜବକା ଟିକିରା ନାମକ ମହାନଦୀ କୂଳବର୍ତ୍ତୀ ଏକ ଛୋଟିଆ ଗାଁରେ ଜନ୍ମ ଗ୍ରହଣ କରି ବାଲ୍ୟକାଳରୁ ପିତୃମାତୃହୀନ କୃତାର୍ଥ ଆଚାର୍ଯ୍ୟଙ୍କର ପ୍ରତିଷ୍ଠା କେବଳ ତାଙ୍କର ଗଭୀର ଅଧ୍ୟବସାୟ ଏବଂ ନିଷ୍ଠାର ଫଳ । ବରପାଲିରେ ତାଙ୍କର ଶିକ୍ଷା । ସ୍ତ୍ରୀର ଏକ ସାମାନ୍ୟ କଟୂକ୍ତିରେ କାମାସକ୍ତ ତୁଳସୀ ଦାସ ମହିମ୍ନ ରାମାୟଣର ପ୍ରଣେତା । ଠିକ୍ ସେଇପରି ଦାରିଦ୍ର୍ୟର କଷାଘାତ ସତ୍ତ୍ୱେ ଏକ ଭଲ ହାତ ତିଆରି ଲୁଗା ପିନ୍ଧିବା ପାଇଁ କୃତାର୍ଥ ଆଚାର୍ଯ୍ୟଙ୍କର ଖୁଡ଼ୀପାଖରେ ଅଳି ଯୋଗୁଁ ଏବଂ ଖୁଡ଼ୀଙ୍କର କଟୂକ୍ତି ହେତୁ କୃତାର୍ଥ ଆଚାର୍ଯ୍ୟଙ୍କର ଉତ୍କୃଷ୍ଟ ବସ୍ତ୍ର (ପରେ ସମ୍ବଲପୁରୀ) ବୁଣିବା ପାଇଁ ଭୀଷ୍ମ ପ୍ରତିଜ୍ଞା ।

କୃତାର୍ଥ ଆଚାର୍ଯ୍ୟଙ୍କ ପାଇଁ ବସ୍ତ୍ର ବୟନ କେବଳ ପେସା ନୁହେଁ, ନିଶା ମଧ୍ୟ ଥିଲା । ସ୍ୱାଧୀନତା ଆନ୍ଦୋଳନର ଢେଉ ମଥା ପିଟୁଛି । ଦାରିଦ୍ର୍ୟର କଷାଘାତ ସତ୍ତ୍ୱେ କୃତାର୍ଥ ଆଚାର୍ଯ୍ୟ ସ୍ୱାଧୀନତା ଆନ୍ଦୋଳନର ସୈନିକ । ଗାନ୍ଧିଜୀଙ୍କ ଖଦିବୁଣା ପାଇଁ ଆହ୍ୱାନ ଏବଂ ତାହା ହିଁ ଭାରତର ଅପାଠୁଆ ମଣିଷର ଅର୍ଥନୈତିକ ମୁକ୍ତିର ବାଟ - ଏହା କୃତାର୍ଥ ଆଚାର୍ଯ୍ୟଙ୍କୁ ବେଶି ମୁଗ୍ଧ କରିଥିଲା ।

କୃତାର୍ଥ ବାବୁ ଶିକ୍ଷକ ଥିଲେ । କୃତାର୍ଥ ବାବୁ କପଡା ବୁଣିବାର ଶିକ୍ଷକ ମଧ୍ୟ ଥିଲେ । ତେଣୁ ତାଙ୍କ ନାଁ ହୋଇଗଲା କୃତାର୍ଥ ମାଷ୍ଟ୍ରେ ଏବଂ ତାଙ୍କ ତିଆରି କପଡ଼ା ପରିଚିତ ହେଲା ମାଷ୍ଟର କପଡା, ଦୋକାନ ନାଁ ଥିଲା ମାଷ୍ଟର ଦୋକାନ ।

୧୯୨୮ ମସିହା ଡିସେମ୍ବର ୨୨ ତାରିଖ । ମହାତ୍ମା ଗାନ୍ଧୀଙ୍କ ସମ୍ବଲପୁର ଆଗମନ । କୃତାର୍ଥ ଆଚାର୍ଯ୍ୟଙ୍କର ଜୀବନର ଏକ ମାଇଲ ଖୁଣ୍ଟ । ଖଦି ବୁଣିବା ତାଙ୍କର କାର୍ଯ୍ୟ ହେଲା ଏବଂ ତା' ସହିତ ଏହାର ରଙ୍ଗ କିପରି ଉତ୍କୃଷ୍ଟ ହେବ, ରଙ୍ଗ ଚିରସ୍ଥାୟୀ ହେବ, ଡିଜାଇନ ଉନ୍ନତ ହେବ— ଏହା ହିଁ ହେଲା କୃତାର୍ଥବାବୁଙ୍କର ଏକମାତ୍ର ଦୀକ୍ଷା । ଏବେ କୁହାଯାଉଛି ସମବାୟ ସମିତି ସବୁ ସଫଳ ହୋଇ ପାରୁନାହିଁ । ଅମଲାତାନ୍ତ୍ରିକ ବ୍ୟବସ୍ଥା ଏଥିପାଇଁ ଯେପରି ଦାୟୀ ଠିକ୍ ସେଇପରି ଦାୟୀ ସଭ୍ୟ, ସଙ୍ଗଠକ ଏବଂ କର୍ମକର୍ତ୍ତାମାନଙ୍କର ନିଷ୍ଠାର ଅଭାବ । କୃତାର୍ଥ ଆଚାର୍ଯ୍ୟ ବୁଣାକାରମାନଙ୍କର ସମିତି ଗଠନ କଲେ ଏବଂ ଏହାର ସାଫଲ୍ୟ ସବୁ ସମବାୟ ସମିତିମାନଙ୍କର ପ୍ରେରଣାର ଉତ୍ସ ହେଲା ।

ସ୍ୱର୍ଗତ ଦୟାନନ୍ଦ ଶତପଥୀ ନାହାନ୍ତି । ସେ ଓ କୃତାର୍ଥବାବୁ ମୁଣ୍ଡରେ ବୋହି ଲୁଗା ବିକୁଥିଲେ । ସେଇଠାରୁ ସମବାୟ ସମିତି, ସମ୍ବଲପୁରୀ ବସ୍ତ୍ରାଳୟ ଏକ ଦୀର୍ଘପଥ । କୃତାର୍ଥବାବୁ ପଛକୁ ଫେରି ଅନେଇ ନାହାନ୍ତି । ମୃତ୍ୟୁ ବେଳକୁ ଏହି ସମବାୟ ସମିତି ବର୍ଷକୁ

ଏକ କୋଟି ପଞ୍ଚଷଠି ଲକ୍ଷ ଚଉଦ ହଜାର ଟଙ୍କାର ବସ୍ତ୍ର ଉତ୍ପାଦନ କରିଥିଲା ଏବଂ ପ୍ରାୟ ସବୁ ଲୁଗା ବିକ୍ରୀ ହୋଇ ଯାଇଥିଲା ବର୍ଷକୁ ବର୍ଷ । ସଭ୍ୟ ସଂଖ୍ୟା ପହଞ୍ଚିଥିଲା ୬୬୪୫ରେ । ସାଫଲ୍ୟ ଆଉ କାହାକୁ କହନ୍ତି ?

୭୯ ବର୍ଷ ବୟସରେ ତାଙ୍କର ଦେହାବସାନ ହୋଇଛି । ସେତେବେଳକୁ ସମ୍ବଲପୁରୀ ବସ୍ତ୍ର ଓଡିଶାର ଗୌରବର ଟୀକା । ଏହାର ପରିଧାନ ତରୁଣୀର କାମନା, ବୃଦ୍ଧାର ପିପାସା ଏବଂ ଯୁବକର ପ୍ରଲୁବ୍ଧ କାମନା । ସାରା ପୃଥିବୀରେ ଏହି ବସ୍ତ୍ରର ବୈଜୟନ୍ତୀ । ତାହାର ପ୍ରଧାନ ପୁରୋଧା କୃତାର୍ଥ ଆଚାର୍ଯ୍ୟ ।

କୃତାର୍ଥବାବୁ ଆମର ସଫଳ ଉଜ୍ଜ୍ୱଳ ପରମ୍ପରାର ପ୍ରତୀକ । ସେ ଆଉ ନାହାନ୍ତି ରକ୍ତ ମାଂସର ଶରୀରରେ । କିନ୍ତୁ ସେ କ'ଣ କେବେ ମରି ପାରିବେ, ନା ମରି ପାରିବ, ସମ୍ବଲପୁରୀ ବସ୍ତ୍ର ?

❑❑❑

# ମଣିଷ ଭିତରେ ଯିଏ ପାଇଥିଲେ କୃଷ୍ଣଙ୍କ ସଂଧାନ

*(ସ୍ୱ କୃଷ୍ଣ କାମିନୀ ଦେବୀ)*

କୃଷ୍ଣକାମିନୀ ଦେବୀଙ୍କ ପରଲୋକ ହୋଇଗଲା ୩.୧.୨୦୦୬ ମସିହାରେ । ତାଙ୍କର ମୃତ୍ୟୁ ସଂବାଦ ମୁଁ ଜାଣି ମଧ୍ୟ ପାରିଲି ନାହିଁ । ପୂର୍ବରୁ କେଇଦିନ ସେ ଗୁରୁତର ଅସୁସ୍ଥ ଥିଲେ ଏବଂ ଯେକୌଣସି ମୁହୂର୍ତ୍ତରେ କିଛି ହୋଇଯାଇପାରେ ବୋଲି ତାଙ୍କର ଜାମାତା ବଂଧୁ ଜଗନ୍ନାଥ ପଟ୍ଟନାୟକ କହୁଥିଲେ । ୧୯୧୧ ମସିହା ଜୁନ୍ ୧୩ ତାରିଖରେ ଯାଜପୁର ଜିଲ୍ଲାର ବରିକୂଳ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ, ଭାବଗ୍ରାହୀ ଦାସଙ୍କର କନ୍ୟା ଭାବରେ । ପାଠ ପଢ଼ିଥିଲେ ମାଟ୍ରିକ ପର୍ଯ୍ୟନ୍ତ । ଦେଶରେ ସ୍ୱାଧୀନତା ସଂଗ୍ରାମର ଧ୍ୱନି ଶୁଭୁଥିଲା । କୃଷ୍ଣକାମିନୀ ଦେବୀ ସେଥିରୁ ମୁକ୍ତ ରହନ୍ତେ କିପରି ?

ପିତା ମାତାଙ୍କର ଅଲିଅଳ ଝିଅ କୃଷ୍ଣ କାମିନୀଙ୍କ ବିବାହ ହୋଇଯାଏ ଡାକ୍ତର ସୁବୋଧ ଦାସଙ୍କ ସହିତ । ସ୍ୱାଧୀନଚେତା ସୁବୋଧବାବୁ କୃଷ୍ଣକାମିନୀଙ୍କୁ ପ୍ରେରଣା ଦେଇଥିଲେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ । ପୂର୍ବରୁ ପାରିବାରିକ ପରିଚିତି ଥିଲା ପ୍ରସିଦ୍ଧ ଚୌଧୁରୀ ପରିବାର ସହିତ । କୃଷ୍ଣକାମିନୀ ଦେବୀଙ୍କୁ ତାହା ସାହାଯ୍ୟ କଲା ପ୍ରଭୂତ ।

୧୯୩୦ ମସିହାରେ ସେ ପୁରୀରେ ସେବାଦଳ ତାଲିମ ପାଆନ୍ତି । ତା'ପରେ ଆରମ୍ଭ ହୁଏ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ସମାବେଶ ଏବଂ ସଂଗଠନ । ୧୯୩୧ ମସିହା ଜାନୁଆରୀ ମାସରେ ତାଙ୍କୁ ପୁଲିସ ଗିରଫ କରେ । ଆରମ୍ଭ ହୁଏ ଜୀବନର ଆଉ ଏକ ଅଧ୍ୟାୟ । ପିକେଟିଂ,ବିଦେଶୀ ବସ୍ତ୍ର ବର୍ଜନ, ମଦ ଦୋକାନ ଆଗରେ ଧାରଣା ଏବଂ କାରାବରଣ, କୃଷ୍ଣକାମିନୀ ଦେବୀ ଆଉ ପଛକୁ ଫେରି ଚାହିଁ ନାହାନ୍ତି ।

କିଛି ଭ୍ରୁକ୍ଷେପ କରି ନାହାନ୍ତି ସାମାଜିକ ଜଟକେଣାକୁ । ସ୍ୱାମୀ ଗଲେ ପଢ଼ିବା ପାଇଁ ହୋମିଓପାଥି କୋଲକାତାକୁ । ଆଉ ସେ ଗଲେ ଶ୍ୱଶୁରଘରକୁ ରହିବା ପାଇଁ । ଯେହେତୁ ସେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନରେ ସାମିଲ ହୋଇଥିଲେ ସେଇଯୋଗୁଁ ତାଙ୍କୁ ଖାଇବାକୁ ଦିଆଯାଇଥିଲା କଦଳୀ ପତ୍ରରେ, ବାସନରେ ନୁହେଁ । ମନ୍ଦିର ତାଙ୍କ ପାଇଁ ବାରଣ ଥିଲା, ତାଙ୍କ ଘରୁ ଭୋଗ ମଧ୍ୟ ମନ୍ଦିରକୁ ଯିବା ପାଇଁ ନିଷେଧ ଥିଲା; କିନ୍ତୁ

କୃଷ୍ଣକାମିନୀ ତାକୁ ଖାତିର କରିନଥିଲେ, କାରଣ ଅସ୍ପୃଶ୍ୟତା ନିବାରଣ ତାଙ୍କ ପାଇଁ ସ୍ଲୋଗାନ ନଥିଲା ଥିଲା ବିଶ୍ୱାସ ।

ତା'ପରେ କଟକରେ ରହଣୀ । ଲାଗି ରହିଲା ହରିଜନ ସେବା, ସୂତାକଟା ଏବଂ ମହାତ୍ମା ଗାନ୍ଧୀଙ୍କ ଗ୍ରାମ୍ୟ ସ୍ୱରାଜ୍ୟର ବାର୍ତ୍ତା । ସ୍ୱାମୀଙ୍କ ରହିବା ପାଇଁ ସେ କୋଲକାତା ଯାଆନ୍ତି ଏବଂ ସେଠି ମଧ୍ୟ ଓଡିଆମାନଙ୍କୁ ହରିଜନମାନଙ୍କୁ ଏକାଠି କରିବାକୁ ଆପଣାର କର୍ମ ଭାବରେ ଗ୍ରହଣ କରିଥିଲେ । ସେ ହେଉଛି ୧ ୯୩୬ ମସିହାର କଥା । ସେତେବେଳକୁ ସୁବୋଧ ବାବୁ ରିଭଲ୍ୟୁସନାରୀ ସୋସଲିଷ୍ଟ ପାର୍ଟିରେ ଯୋଗଦେଇ ବାମପନ୍ଥୀ ପାଲଟି ଯାଇଥିଲେ । ନେତାଜୀ ସୁଭାଷ ବୋଷଙ୍କ ସଂପର୍କରେ ଆସିଥିଲେ ଏବଂ ଗୁପ୍ତ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ବୋଲି ଅଭିଯୋଗ ମଧ୍ୟ ହୋଇଥିଲା ।

ଅଲ୍ ଇଣ୍ଡିଆ ରେଡିଓରେ ସେ ଏକ ଚୁକ୍ତି ଭିତ୍ତିକ କାର୍ଯ୍ୟ ଆରମ୍ଭ କରିଥିଲେ ପରିବାର ପୋଷଣ ପାଇଁ । ପଚିଶ ବର୍ଷ କାଳ ସେ ଉକ୍ତ ସଂସ୍ଥା ସହିତ ଜଡିତ ଥିଲେ ଏବଂ ନାରୀ ଶିକ୍ଷା, ଶିଶୁ ଯତ୍ନ, ସ୍ୱାସ୍ଥ୍ୟରକ୍ଷା ପ୍ରଭୃତି କାର୍ଯ୍ୟର ଆୟୋଜନ କରିଥିଲେ ନିପୁଣ ଭାବରେ । ୧ ୯୪୫ ମସିହା ବେଳକୁ ସେ ଫେରନ୍ତି କଟକ । ବାମପନ୍ଥୀମାନଙ୍କ ସହିତ ତାଙ୍କର ପାରିବାରିକ ପରିଚିତି ଏବଂ ବୌଦ୍ଧିକ ଆତ୍ମୀୟତା ।

ସ୍ନେହୀ ମଣିଷଟିଏ । ଅନେକ ଥର ତାଙ୍କ ଘରକୁ ଯିବାର ସୁଯୋଗ ଘଟିଛି । ନଖାଇ କେବେ ଫେରିବାର ହେତୁ ହେଉନାହିଁ । ପୁଅ ବିଶ୍ୱଜିତ୍ ମୋର ସମସାମୟିକ । ପୁତ୍ର ଭଳି ସେ ଦେଖନ୍ତି ପୁଅର ସାଂଗମାନଙ୍କୁ । ପୁଅ ବିଶ୍ୱଜିତ୍ ନାଟ୍ୟକାର, ବାମପନ୍ଥୀ ତେଣୁ ଆତ୍ମୀୟତା ବେଶି ବଢ଼ିଥିଲା ପରିବାର ସହିତ ।

ପୁଅ ନାଟ୍ୟକାର, ନାଟ୍ୟ ନିର୍ଦ୍ଦେଶକ, ବହୁ ନାଟକରେ ହିରୋର ମୃତ୍ୟୁ ଘଟିଛି ଅଚାନକ । ବହୁ ନାଟକ ନିର୍ଦ୍ଦେଶନାରେ ସେ ନିର୍ଦ୍ଦେଶ ଦେଇଛନ୍ତି ଅଭିନେତା ଅଭିନେତ୍ରୀଙ୍କୁ ହଠାତ୍ ଟଳିପଡି ମୃତ୍ୟୁ ବରଣ କରିବା ପାଇଁ । ପୁଅ ବିଶ୍ୱଜିତ୍ ବି ସେଦିନ ହଠାତ୍ ଟଳିପଡ଼ିଲେ କୌଣସି ଏକ ସଭାରେ ନାଟକ ଉପରେ କହିଲାବେଳେ ।

ସ୍ୱାମୀ ବାହୁଡ଼ି ସାରିଥିଲେ । କୃଷ୍ଣ କାମିନୀ ଦେବୀ ଠିଆ ହୋଇଥିଲେ ପରିବାରକୁ ସମ୍ଭାଳିବା ପାଇଁ ତୁଙ୍ଗ ଶିଖର ଭଳି । ପୁଅ ବାହୁଡ଼ିଗଲା ପରେ ଆଉ ମନ ବୋଲ ମାନିଲା ନାହିଁ କି ଦେହ ବୋଲ ମାନିଲା ନାହିଁ । ବୟସ ଅତିକ୍ରାନ୍ତ ହୋଇଛି । ସମସାମୟିକମାନେ ସମସ୍ତେ ଗଲେଣି ଚାଲି । ସେ ଆଉ ରହନ୍ତେ କାହିଁକି ?

ପରିଶେଷରେ ସେଇଦିନ ଆସିଗଲା ଜାନୁଆରୀ ୩, ୨୦୦୬ ମସିହା । ସେ ପାଲଟିଗଲେ ଇତିହାସ, ପରମ୍ପରା ।

□□□

# କର୍ମେ ଜୀଏଁ ନର କର୍ମ ଏକା ତାର
# ଜୀବନର ମାନଦଣ୍ଡ

*(୰ କେ.ଏସ.ଆର. ମୂର୍ତ୍ତି)*

ଅସୀମ ଥିଲା ତାଙ୍କର ଯାତ୍ରାପଥ । ବିଚିତ୍ର ଥିଲା ତାଙ୍କର ଦୁର୍ବାର କାମନା । ପଦାର୍ଥବିଜ୍ଞାନୀ ସେ ଥିଲେ; କିନ୍ତୁ ମଣିଷ ଥିଲା ତାଙ୍କର ଧ୍ୟେୟ । ସେଇଯୋଗୁଁ ମଣିଷ ଜୀବନର ସବୁ ବିଭାବ ପ୍ରତି ଥିଲା ତାଙ୍କର ଆକର୍ଷଣ ଏବଂ ସେ ସବୁଥିରେ ଆପଣାର ଶିଳାଲେଖ ରଖିଯାଇଛନ୍ତି ଯାହା କାଳର କପାଳରେ ସବୁଦିନେ ଝଟକୁଥିବ । ପଦାର୍ଥବିଜ୍ଞାନରୁ ରାଜନୀତିବିଜ୍ଞାନ, ମାର୍କସବାଦ-ଲେନିନବାଦଠାରୁ ଗାନ୍ଧିବାଦ ପର୍ଯ୍ୟନ୍ତ ସୀମାହୀନ, ଦିଗନ୍ତ ବିସ୍ତାରୀ ତାଙ୍କର ଅଭିଲିପ୍‌ସା । ଛାତ୍ର ଜୀବନର ବିପ୍ଳବୀ କେ. ଏସ୍. ଆର. ମୂର୍ତ୍ତି ଉତ୍ତର ଜୀବନରେ କୋମଳ ହୋଇଯାଇଛନ୍ତି । ପଦାର୍ଥବିଜ୍ଞାନୀ ମୂର୍ତ୍ତି ଗାନ୍ଧିବାଦର ଶିଷ୍ୟ ପାଲଟିଛନ୍ତି, କିନ୍ତୁ ସବୁର କେନ୍ଦ୍ରରେ ଯେ ମଣିଷ ତାହା ସେ କେବେ ଭୁଲିଯାଇ ନାହାନ୍ତି ।

ମଣିଷ ହେଉଛି ଶ୍ରେଷ୍ଠ । ଏଇ ଜୀବନ ହେଉଛି ସତ୍ୟ । ତେଣୁ ଭଲ ମଣିଷ ହେବାପାଇଁ, ସୁନ୍ଦର ଜୀବନ ପାଇଁ ଶାନ୍ତିର ପ୍ରତିଷ୍ଠା ପାଇଁ ସତେ ଯେପରି ମୂର୍ତ୍ତି ଏଇ ଜୀବନକୁ ବିନିଯୋଗ କରିଯାଇଛନ୍ତି । କୁଳମଣିବାବୁ କହୁଥିଲେ ଯେ ସେ ଆମରି ଭିତରେ ଥିଲେ ବୋଲି ସିନା ଜଣାପଡୁ ନଥିଲେ; କିନ୍ତୁ ମୂର୍ତ୍ତି କ'ଣ ନଥିଲେ ? ଯେ କୌଣସି ନୂଆ ବହି କଥା ପଚାର, ନୂଆ ଭାବୁକ, ଲେଖକଙ୍କର ନାମ ପଚାର, ତାଙ୍କର ଲେଖା କଥା ପଚାର ଅଧ୍ୟାପକ ମୂର୍ତ୍ତିଙ୍କ ପାଖରେ ତାହା ପହଞ୍ଚି ସାରିଥିବ । ''Whatever you touch you have adorned'' ଏଇ ଉକ୍ତି ତାଙ୍କ ପାଇଁ ପ୍ରଯୁଜ୍ୟ ଥିଲା । ସେ ଦୁର୍ବାର ଯାତ୍ରାର ପଥିକ ଆଉ ମିଳିବେ ନାହିଁ । ସେ ସେଇଠି ରହିଗଲେ ଅଧାବାଟରେ । ତାଙ୍କର କଳ୍ପିତ ସମାଜ, ତାଙ୍କର କଳ୍ପିତ ମଣିଷ ଆସିବାକୁ ଆଉରି ଡେରି ଅଛି । ବହୁ ଯାତ୍ରା, ବହୁ ଚଢ଼ାଣି, ଉଠାଣି ଭେଦକରି ଯିବାକୁ ହେବ । ବହୁ ଲୋକର ଆବଶ୍ୟକ ପଡ଼ିବ । ସେମାନେ ହେଜିବେ ଏଇ ଅଧ୍ୟାପକଙ୍କୁ । ତାଙ୍କର ଜୀବନ ସେମାନଙ୍କୁ ଆଲୋକ ଦେଖାଇବ ତିକ୍ତ ଅନ୍ଧକାର ଭିତରେ । ତାହା ହିଁ ତ ତାଙ୍କର ଜୀବନର ସାର୍ଥକତା । ଉପାଧି, କ୍ଷମତା ତ ସେ ଲୋଡ଼ି ନଥିଲେ । ଲୋଡ଼ିଥିଲେ ମଣିଷକୁ । ସେଇ ମଣିଷ ଆଜି ତାଙ୍କ ପାଇଁ ଅଶ୍ରୁ ଢାଳିବ । ଏହାଠାରୁ ଜୀବନର ବଡ ସାର୍ଥକତା ଆଉ କ'ଣ ଥାଇପାରେ ? ❑❑❑

# କେ.ପି.ଏସ.

## (୰ କେ.ପି.ଏସ୍. ମେନନ୍)

ସେ ଏଇ ନାଁରେ ହିଁ ଜଣା ଥିଲେ ସଭିଙ୍କ ପାଖରେ । ମିଳିତ ଜାତିସଂଘର ଅଧିବେଶନରେ ସେ ଯୋଗଦେଇ ଫେରିଥାନ୍ତି । ସେଠାରେ କୃଷ୍ଣମେନନଙ୍କ ସାଙ୍ଗରେ ତାଙ୍କର ମତଭେଦ ଦେଖାଦେଇଥିଲା । ଆଉ ସେ ଖବର ପହଞ୍ଚିଥିଲା ଜବାହରଲାଲ ନେହେରୁଙ୍କ ପାଖରେ । ସେ କେ.ପି.ଏସ୍. ମେନନଙ୍କୁ ଦେଖି ପଚାରିଲେ କ'ଣ ମୁଁ ଶୁଣିଲି ଯେ ଦୁଇ ମେନନଙ୍କ ଭିତରେ ପଡ଼ିଲା ନାହିଁ, କ'ଣ ସତ୍ୟ ଏଇ ଖବର ? ଉତ୍ତର ମିଳିଲା ମୁଁ କେ.ପି.ଏସ୍. ମାତ୍ର ।

କେ.ପି.ଏସ୍ ମେନନଙ୍କର ଜୀବନ ସବୁ ଦିଗରୁ ପରିପୂର୍ଣ୍ଣ ଥିଲା । ଜୀବନର ବହୁ ବିଭାବକୁ ସେ ଛୁଇଁଥିଲେ ଏବଂ ଯେଉଁ ବିଭାବକୁ ଛୁଇଁଥିଲେ ସେ ବିଭାବକୁ ମଣ୍ଡିତ କରିଥିଲେ । କଟକ ଆସିଥିଲେ । ସେ ଦିନର ଶୀତ ସନ୍ଧ୍ୟା । ବାରବାଟୀ ଷ୍ଟାଡିଅମ ସବୁଜ ପ୍ରାନ୍ତର ଝଂକୃତ ହୋଇଉଠୁଛି ସଂଯୁକ୍ତା ପାଣିଗ୍ରାହୀଙ୍କର ପାଦର ତାଳେ ତାଳେ । ବିମୁଗ୍ଧ କେ.ପି.ଏସ୍, ବିମୁଗ୍ଧ ତାଙ୍କର ତନୟା ଶ୍ରୀମତୀ ନାୟାର । ମଞ୍ଚ ଉପରକୁ ଉଠିଲେ କେ.ପି.ଏସ୍. ବଧାଇ ଜଣାଇବାକୁ । ଆଜି ସନ୍ଧ୍ୟାରେ ଯେଉଁ ତରୁଣୀର ପାଦର ନୂପୁରରେ ଏଇ ପ୍ରାନ୍ତର ଝଂକୃତ ହେଲା ସେ ମୋର ଚିନ୍ତାକୁ ଦୋହଲାଇ ଦେଲା ଏବଂ ମୁଁ ମାନୁଛି ଯେ ବୟସ ଯଦି ଆଉ କୋଡ଼ିଏ ବର୍ଷ କମ୍ ହୋଇଥାନ୍ତା ତା'ହେଲେ ନିଦଟାକୁ ବି ସେ ଟହଲାଇ ଦେଇଥା'ନ୍ତା । ହସରେ କମ୍ପିଉଠିଲା ବାରବାଟୀ ଷ୍ଟାଡ଼ିଅମ୍ । ସେ ହସାନ୍ତି, କିନ୍ତୁ ହସନ୍ତି ନାହିଁ ନିଜେ ।

ସେଇ ବର୍ଷ କିନ୍ତୁ ସେ ସଙ୍ଗୀତ ନାଟକ ଏକାଡେମୀର ଚେୟାରମ୍ୟାନ ଥାଆନ୍ତି ଏବଂ ସେ କହିଲେ ଯେ, ଓଡ଼ିଶୀ ନାଚକୁ ବାଦ ଦେଇ ଭାରତୀୟ ସଂସ୍କୃତିର କଳ୍ପନା କରାଯାଇ ନ ପାରେ । ସଂଯୁକ୍ତା ଗଲେ ସୋଭିଏଟ୍ ୟୁନିଅନ । ନୂତନ ସମ୍ଭାବନାର ଦିଗନ୍ତ ଉନ୍ମୋଚିତ ହେଲା ତାଙ୍କ ପାଇଁ ।

କେ.ପି.ଏସ୍. ଜୀବନର ପ୍ରଥମ ଅଧ୍ୟାୟରୁ ପ୍ରଥମ ହୋଇ ଚାଲିଥିଲେ । ପଛକୁ ସେ ଫେରି ଅନାଇ ନାହାନ୍ତି । ଗୋଟିଏ ଜାମାତାର ପରଲୋକ ହୋଇଯିବା ଛଡା ବ୍ୟକ୍ତିଗତ ପରାଜୟ ତାଙ୍କୁ କେବେହେଲେ ଛୁଇଁନାହିଁ । ଭାରତୀୟ ସିଭିଲ ସର୍ଭିସ ବଛାବଛି ପରୀକ୍ଷାରେ ସେ ପ୍ରଥମ ହୋଇଥିଲେ । ଏଇ ପଦବୀ ବହୁ ବ୍ୟକ୍ତିଙ୍କର ମସ୍ତିଷ୍କକୁ ବିଭ୍ରାନ୍ତ କରିଛି ଏବଂ ଏବେ ବି କରୁଛି । କିନ୍ତୁ କେ.ପି.ଏସ୍ ଥିଲେ ସ୍ୱତନ୍ତ୍ର ଧରଣର ମଣିଷ । ଜିଲ୍ଲାପାଳଠାରୁ ଚିଫ୍ ସେକ୍ରେଟାରୀ ପଦବୀ ଆଉ ତାର ଫ୍ରିଞ୍ଜ ବେନିଫିଟ୍ ବା ଉପୁରୀ ଆୟ ତାଙ୍କୁ ଘାରିଲା ନାହିଁ । ଘୋଡ଼ା ପୃଷ୍ଠରେ ବସି ସେ ଚାଲିଲେ ଚୀନର ତତ୍କାଳୀନ ରାଜଧାନୀ ଚୁଙ୍କିଂକୁ ଦୁରାରୋଧ୍ୟ ପର୍ବତମାଳା ଭେଦକରି । ସେତେବେଳେ ଏଇ କାର୍ଯ୍ୟ ପାଗଳାମୀ ବୋଲି ବିବେଚିତ ହେଲା । ଠିକ୍ ସେଇପରି ସେ ଯେତେବେଳେ ସୋଭିଏତ ରୁଷରେ ଆମର ରାଷ୍ଟ୍ରଦୂତ ହେବାକୁ ସମ୍ମତି ଦେଲେ, ତାହା ମଧ୍ୟ ପାଗଳାମୀ ବୋଲି ବିବେଚିତ ହୋଇଥିଲା, ବୈଦେଶିକ ବିଭାଗର ତତ୍କାଳୀନ ସେକ୍ରେଟେରୀ ବଦରୁଦ୍ଦିନ ତୟାବ୍‌ଜୀଙ୍କ ଦ୍ୱାରା । ସେ କିନ୍ତୁ ଗଲେ ଚୁକିଂ, ସେ ଗଲେ ସୋଭିଏତ ୟୁନିଅନ । ସାଫଲ୍ୟର ଖତିଆନରେ ସେ ଆପଣାର ସ୍ୱାକ୍ଷର ଦେଇଗଲେ ଏବଂ ତାଙ୍କରି ନେତୃତ୍ୱରେ ତିଆରିହେଲେ ଭାରତବର୍ଷର ବହୁ ସଫଳ କୁଟନୀତିଜ୍ଞ ଟି. ଏନ୍ କାଉଲଙ୍କଠାରୁ ପାର୍ଥସାରଥୀ । ପ୍ରସିଦ୍ଧ ଜୁରିଷ୍ଟ ଏବଂ ପୂର୍ବତନମନ୍ତ୍ରୀ ଚଗଲା ତାଙ୍କର ଆତ୍ମଚରିତରେ ଲିପିବଦ୍ଧ କରିଛନ୍ତି ମେନନଙ୍କ ସମ୍ପର୍କରେ ଏହିଭଳି । ଜଣେ ବିଶିଷ୍ଟ ବ୍ୟକ୍ତି ମନ୍ତବ୍ୟ ଦେଲେ '' କେ. ପି. ଏସ୍‌କୁ ସୋଭିଏତ୍ ଛାରପୋକ କାମୁଡିଛି, ଏଇ ଟିକକ ହିଁ ତାର ଦୋଷ ।'' ସୋଭିଏତ ୟୁନିଅନରେ ସେ କିନ୍ତୁ ଉନ୍ମୁକ୍ତ କଲେ ସମ୍ପର୍କର ନୂତନ ତୋରଣ ଯାହା କେବଳ ସୋଭିଏତ ୟୁନିଅନ ବା ଭାରତବର୍ଷ ପାଇଁ ଉପକାରୀ ହେଲା ନୁହେଁ ସମଗ୍ର ବିଶ୍ୱର ଶାନ୍ତିକାମୀ ମଣିଷ ପାଇଁ ଆଣିଲା ନୂତନ ସନ୍ଦେଶ, ନୂତନ ରକ୍ଷାକବଚ । କେ.ପି.ଏସ୍ ପାଲଟିଲେ ଏଇ ମୈତ୍ରୀର ବଡ଼ ବାହକ । ଫ୍ରିଟ୍ରିପ ପାଇଁ ନୁହେଁ, ବିଳାସ ବା ସୌଖୀନ କାରଣରୁ ନୁହେଁ, ଆପଣାର ଅଭିଜ୍ଞତାର ବିଶ୍ୱାସରୁ । ସେଦିନ ଯେଉଁମାନେ କେ.ପି. ଏସ୍‌କୁ ଟିଟିକାର କରୁଥିଲେ ସେମାନଙ୍କ ଦୃଷ୍ଟିର କ୍ଷୀଣ ପରିସର ପ୍ରମାଣିତ ହେଲା ଖୁବ୍ ଶୀଘ୍ର । ସୋଭିଏତ ୟୁନିଅନ ଠିଆହେଲା ଭାରତୀୟ ଜାତୀୟ ଆଶାଆକାଂକ୍ଷା ପାଖରେ । ଭାରତକୁ ଯେଉଁମାନେ ଆପଣାର ଚରାଭୂଇଁ କରିବାକୁ ଚାହିଁଥିଲେ, ସେଇମାନଙ୍କର ଆଶା ଧୂଳିସାତ ହେଲା ।

ପରିପୂର୍ଣ୍ଣ ଥିଲା ଜୀବନ । ସେ ବି ଯେମିତି ସହଧର୍ମିଣୀ ବି ସେଇପରି । ଦେଖାହୋଇଛି ବହୁତଥର । ଲୁଙ୍ଗିକୁ ଅଧାଟେକି ତାଙ୍କ ସାଙ୍ଗରେ ନିର୍ବିକାର ଚିତ୍ତରେ କଥାବାର୍ତ୍ତା କରନ୍ତି ବହୁ କିରାନୀ, ଛାତ୍ର, ଚାହାଦୋକାନୀ । କେ.ପି.ଏସ୍‌ଙ୍କର ଆଇ.ସି.ଏସ.

ତାଙ୍କୁ ଦେହକୁ ଛୁଇଁ ନାହିଁ । ସେଇଯୋଗୁଁ ସେ ସୋଭିଏଟ୍ ୟୁନିଅନରେ ଲାଭ କରିଛନ୍ତି ମସ୍କୋଠାରେ ଶ୍ରେଷ୍ଠ କୂଟନୀତିଜ୍ଞର ଉପଢୌକନ । ଆଉ କୃଷ୍ଣେଭ କହନ୍ତି ଯେ ଏଇ ଟ୍ରଫି ପାଇବେ ଶ୍ରୀମତୀ ଆନୁଜୀ ମେନନ ଏବଂ ତାଙ୍କର କୂଟନୀତିଜ୍ଞ ସ୍ୱାମୀ କେ.ପି.ଏସ୍. । ହସରେ ଉଛୁଳି ପଡେ ସମଗ୍ର ସଭା ମଣ୍ଡପ ।

କେ.ପି.ଏସ୍ ଆଉ ନାହାନ୍ତି । ଯିବାର ବେଳ ହୋଇ ଆସିଥିଲା । ଡାହାଣିଆ ଖରା ପଡ଼ି ଆସିଥିଲା । ଛାଇ ଦୀର୍ଘ ହୋଇ ଆସୁଥିଲା । ବେଳଗଲା, ବେଳଗଲାର ଡାକ ଶୁଭିଥିଲା ବହୁଦିନରୁ । ସେ ହଜି ଯାଇଛନ୍ତି କାଳର ଗର୍ଭରେ । କଲମ କିନ୍ତୁ ତାଙ୍କର ପୋଷା ମାନିଥିଲା । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାହା ଚାଲିଥିଲା ଅବାରିତ ଗତିରେ । ଲାମ୍ପ ଏଣ୍ଡ ଦି ଲାମ୍ପ ସେଡ୍, ମେନି ୱାର୍ଲଡସ୍ । ବହୁ ପୁସ୍ତକ, ବହୁ କାହାଣୀ, ହସ କାନ୍ଦର ବହୁ ସମ୍ଭାର ନେଇ ବହୁ ବହି ତାଙ୍କର କଲମରୁ ନିସୃତ ହୋଇଛି । ସେଇ କଲମ ଆଜି ଥିର ହୋଇଗଲା । କାଳି ଶୁଖିଗଲା କଲମରୁ; କିନ୍ତୁ ଯାହା ଲେଖା ହୋଇଯାଇଛି ତାହା ଅମର ହୋଇ ରହିବ କାଳକାଳକୁ । କେ.ପି. ଏସ୍. ରହିବେ ସଫଳ ଜୀବନର ପ୍ରତୀକ ଭାବରେ ।

□□□

## 'କଲୋସସ୍'ର ବିଦାୟ

### (୰ ଗଙ୍ଗାଧର ରଥ)

କଲୋସସ ଗଙ୍ଗାଧର ରଥ ବିଦାୟ ନେଇଛନ୍ତି ଆମଠାରୁ ମାର୍ଚ୍ଚ ମାସ ୧୫ ତାରିଖ, ୨୦୦୮ ମସିହା ପ୍ରାତଃକାଳରେ କଟକ ବଡ଼ ଡାକ୍ତରଖାନାରେ । ୧୯୨୨ ମସିହାରେ ବାଗଲପୁରରେ ସେ ଜନ୍ମଗ୍ରହଣ କରିଥିଲେ । ପିତୃଦତ୍ତ ସାଙ୍ଗିଆ ଥିଲା ଶତପଥୀ । ପୁଅ ହୋଇଯାଇ ସେ ରଥ ପାଲଟିଥିଲେ, କିନ୍ତୁ ପିଲାଦିନରୁ ହିଁ ସେ ହିନ୍ଦୁ ଧର୍ମ ପରିତ୍ୟାଗ କରି ସାମ୍ୟବାଦୀ ପାଲଟିଥିଲେ, ୰ ଭଗବତୀ ଚରଣ ପାଣିଗ୍ରାହୀଙ୍କ ପ୍ରେରଣାରେ । ପ୍ରକୃତରେ ସେ ଥିଲେ କଲୋସସ୍ ସବୁ ଦିଗରୁ । ଚେହେରା ଯେମିତି, କଣ୍ଠସ୍ୱର ସେମିତି ଆଉ ମସ୍ତିଷ୍କ ବି ସେମିତି । ଜୀବନର ବହୁ ବିଭାବକୁ ସେ ସ୍ପର୍ଶ କରିଯାଇଥିଲେ ଏବଂ ସବୁ ବିଭାବରେ ଆପଣାର ଆଲେଖ୍ୟ ରଖିଯାଇଥିଲେ କଲୋସସ୍ ଭଳି । ଭଲ ପାଠ ପଢୁଥିଲେ । ରାମକୃଷ୍ଣ ମଠରେ ରହି ପଢୁଥିଲେ ସ୍କୁଲରେ । ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ଠିକ୍ ସେହିପରି ଆଇନରେ ପ୍ରଥମ ଶ୍ରେଣୀରେ ସ୍ନାତକ ମଧ୍ୟ ହୋଇଥିଲେ । କଲୋସସ୍ ଭଳି ଜିଦ୍‌ଖୋର ଥିଲେ ସେ । ଯାହା କରିବାକୁ ସ୍ଥିର କରିବେ ସେଥିରେ କୃତିତ୍ୱ ଅର୍ଜନ କରିବେ, ପରାକାଷ୍ଠା ଲାଭ କରିବେ, ଯାହା ପଛେ ହେଉ । କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ସେତେବେଳେ ପାର୍ଟିର ଆର୍ଥିକ ଅବସ୍ଥା ସାଂଘାତିକ । ପାର୍ଟି କମିଟିରେ କର୍ମୀମାନଙ୍କ ପାଇଁ ରୋଷେଇ କରିବା ନିମନ୍ତେ ନିଜର ବିଧବା ମାଆଙ୍କୁ ଆଣିଲେ । ସେ ପାର୍ଟିରେ ବୋଉ ଭାବରେ ପରିଚିତ ହେଲେ ଏବଂ ସେଇଠି ଅର୍ପିଦେଇ ଆସିଲେ ବୋଉକୁ ଏକାକୀ । ଯାହା ଜିଦ୍ ଧରିଛନ୍ତି ସେଇଆ କରିବେ । ଆପଣାର ସହଯୋଦ୍ଧା ନିରୂପମାଙ୍କୁ ବିବାହ କଲେ ବହୁ ପ୍ରତିକୂଳ ପରିସ୍ଥିତିରେ । ବିରୋଧ ଆସିଥିଲା ପରିବାରରୁ, ପାର୍ଟି ଭିତରୁ ବି, କିନ୍ତୁ ଜିଦ୍‌ର ବିଜୟ । ନିରୂପମା ପଢ଼ିବେ ମେଡିକାଲ କଲେଜରେ, ସବୁ ପ୍ରତିକୂଳ ପରିସ୍ଥିତିରେ । ଗଙ୍ଗାଧର ବାବୁ ପାର୍ଟି ମୁଖପତ୍ର 'ମୁକ୍ତିଯୁଦ୍ଧ'ର ସମ୍ପାଦନାମଣ୍ଡଳୀରେ । ହାତ ତିଆରି କାଗଜ, ହାତ କମ୍ପୋଜିଂ, ଟ୍ରେଡଲ ପାଦଚଣା । ପୁଣି କାଗଜ ସମ୍ପାଦନାଠାରୁ ହକିଙ୍ଗ, ସବୁ କରିବାକୁ ପଡ଼ିବ । ହାଫ୍‌ପ୍ୟାଣ୍ଟ ହେଉଛି ଡ୍ରେସ । ଗଙ୍ଗାଧର ବାବୁ ସବୁ କରିଚାଲିଛନ୍ତି ନିରଳସ

ଭାବରେ । ସେଇ ଜିଦ୍ ଅତୁଟ । ସବୁ କରିବେ, ଯାହା କରିବେ ନିଷ୍ଠାର ସହିତ । ବିବାହ କରିଛନ୍ତି । ଘରଟିଏ ଦରକାର, ସ୍ତ୍ରୀ ପାଠ ପଢ଼ିବେ ମେଡିକାଲରେ । ତେଣୁ ଜୀବିକା ପାଇଁ ସେ ହେଲେ ଇନ୍‌ସୁରାନ୍ସ ଏଜେଣ୍ଟ, ପ୍ରାଇଭେଟ କମ୍ପାନୀର । ପରେ ଟ୍ରେଡ଼ଲ ମେସିନରେ ପତ୍ରିକା 'ସଂକେତ' ବାହାରିଲା, କିନ୍ତୁ ଆରମ୍ଭ ହେଲା ତତ୍କାଳୀନ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ସହିତ ମତଭେଦ । 'ସଙ୍କେତ' ପତ୍ରିକା ବନ୍ଦ, କମ୍ୟୁନିଷ୍ଟ ପାର୍ଟିରୁ ବିଦାୟ । ଏଇ ସମୟରେ ଦାରୁଣ ଦୁର୍ବିପାକ ଭିତରେ ସେ ଏବଂ ବସିଅପା ବଢ଼ାଇଦିଅନ୍ତି ଆମକୁ ତାଙ୍କ ଖାଇବାରୁ କାଟି । ଦିନେ ନୁହେଁ, ମାସ ମାସ ଧରି । ସେ ତ ସାକ୍ଷାତ ଅମୃତ-ମଣୋହୀ । ବସିଅପା ମେଡିକାଲରୁ ପାସ୍ କରେ, ଗଙ୍ଗାଧରବାବୁ ଆଇନ୍ ପାସ୍ କରନ୍ତି । ନୂତନ ଦିଗନ୍ତ ଉନ୍ମୋଚିତ ହୁଏ । ଗଙ୍ଗାଧର ବାବୁ ଓକିଲ ହୁଅନ୍ତି । ବୋଧ୍ହୁଏ ଦୀନବନ୍ଧୁ ସାହୁଙ୍କ ପ୍ରେରଣାରୁ ସେ କାମ ଆରମ୍ଭ କରନ୍ତି । ମୋର ଠିକ୍ ମନେପଡୁ ନାହିଁ; କିନ୍ତୁ ଆଉ ପଛକୁ ସେ ଫେରି ଚାହିଁନାହାନ୍ତି । ପାର୍ଟି ଛାଡ଼ିଛନ୍ତି; କିନ୍ତୁ ବନ୍ଧୁତା ରହିଛି ଅତୁଟ, ପ୍ରାକ୍ତନ ସହଯୋଦ୍ଧାମାନଙ୍କ ସହିତ ମତାନ୍ତର ମନାନ୍ତରରେ ପରିଣତ ହୋଇନାହିଁ । ସେଇଯୋଗୁଁ ସହଯୋଦ୍ଧା ବୈଦ୍ୟନାଥ ରଥଙ୍କର ସ୍ମୃତିଚାରଣ ଲେଖା ଲେଖିବା ପାଇଁ ବସିଅପାକୁ ଲେଖାଟିଏ ଡାକିବା ଆରମ୍ଭ କରନ୍ତି ଆଉ ସେଇଠି ଅଟକି ଯାଆନ୍ତି ।

ଆଡଭୋକେଟ, ଆଡଭୋକେଟରୁ ଆଡଭୋକେଟ ଜେନେରାଲ । ତିନିଥର, ତେରବର୍ଷ କାଳ । ପୁଣିଥରେ ମଝିରୁ ଇସ୍ତଫା । ବହୁ ସାଫଲ୍ୟର ଅଧିକାରୀ । ସୁପ୍ରିମକୋର୍ଟର ଇଜଲାସ । 'ମି ଲର୍ଡ, ଇଟ୍ ଷ୍ଟିଙ୍କସ' ଯୁକ୍ତି ଉପସ୍ଥାପନା କରି କହୁଛନ୍ତି ଗଙ୍ଗାଧର ରଥ । ବିଚାରକମଣ୍ଡଳୀର ସବୁ ସଭ୍ୟମାନଙ୍କର ନାସିକା କୁଞ୍ଚନ ହୋଇଯାଉଛି । ଲେଖକ ତାହାର ଚାକ୍ଷୁସ ସାକ୍ଷୀ । ତେବେ ମୋକଦ୍ଦମା ଠିକ୍ ମନେ ପଡୁନି । ଯେଉଁ ସମୟରେ ହାଇକୋର୍ଟର ବିଚାରପତି ହେବାର କଥା ହୋଇନାହାନ୍ତି ତେଣୁ ପରେ ହେବା ପାଇଁ ଅନିଚ୍ଛୁକ ହୋଇଛନ୍ତି । ସିଧାସଳଖ ସୁପ୍ରିମକୋର୍ଟକୁ ଯିବା ପାଇଁ କିଛି ଲୋକଙ୍କର ପ୍ରଚେଷ୍ଟା ଫଳବତୀ ହୋଇନାହିଁ । ସେଥିପ୍ରତି ସେ ନିଘା ଦେଇନାହାନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍ ପାଇଁ ପ୍ରାର୍ଥୀ ହୋଇଛନ୍ତି । ସେଇ ଜିଦ୍ । ଜୟଲାଭ କରିବାକୁ ହେବ । ସାଙ୍ଗରେ ବୁଲିଛୁ ସାରା ଓଡିଶା । ବାଟରେ ଦେଖା ହୋଇଛି ସାମ୍ୟବାଦର ଆଦ୍ୟ ଦୀକ୍ଷାଗୁରୁ ପ୍ରଖ୍ୟାତ ଶିଳ୍ପୀ ଗୋପାଳ କାନୁନ୍‌ଗୋଙ୍କ ସହିତ । ସେ ମୋର ଆଦ୍ୟ ଦୀକ୍ଷାଗୁରୁ । ଗୁରୁଙ୍କୁ ଭୁଲିନାହାନ୍ତି ଗଙ୍ଗାଧର ରଥ । ମୁଣ୍ଡିଆ ମାରିଛନ୍ତି ।

କେସ୍ ବିନା ଫିସ୍‌ରେ ଲଢ଼ିଲେ ଯେଉଁ ନିଷ୍ଠା, ଜିଦ୍ ଫିସ୍ ନେଇ ଲଢ଼ିଲେ ବି ସେଇ ଜିଦ୍, ସେଇ ନିଷ୍ଠା । ୰ ପ୍ରାଣନାଥ ପଟ୍ଟନାୟକଙ୍କଠାରୁ ତ୍ରିଲୋଚନ କାନୁନ୍‌ଗୋଙ୍କ ପର୍ଯ୍ୟନ୍ତ

ସେଇ ସାକ୍ଷ୍ୟ ବହନ କରନ୍ତି । ମୁଁ ଆଉ କେସ୍‌ରେ ବେଶି ଆଗ୍ରହୀ ନୁହେଁ । କିମିତି ମନେ ହେଉଛି ଦିନକାଳ ସରି ଆସୁଛି । ତେଣୁ ଫିସ୍‌ର ପରିମାଣ ବଢ଼ାଇଦେଇଛି । ଗଙ୍ଗାଧରବାବୁ କହନ୍ତି, କ'ଣ ପ୍ରିମୋନିସନ୍ ନା କ'ଣ ?

ଗଙ୍ଗାଧର ବାବୁ ଲେଖୁଥିଲେ 'ମୁକ୍ତି ଯୁଦ୍ଧ' ରେ । ପରେ ଲେଖିଲେ 'ସଂକେତ'ରେ । ଗଳ୍ପ, ଅନୁବାଦ, ସମ୍ବିଧାନ ଉପରେ ଲେଖା, ସୋଭିଏତ ରୁଷ ଏବଂ ଆମେରିକା ଉପରେ ଲେଖା, ବକ୍ତୃତା ସଂକଳନ, ପଣ୍ଡିତ ନେହେରୁଙ୍କ ଜୀବନୀ । ଅନେକ ବହି ତାଙ୍କର ଆଲେଖ୍ୟ ବହନ କରେ । ଓଡିଶାର ସବୁଠାରୁ ବଡ଼ ସାହିତ୍ୟ ପୁରସ୍କାର 'ସାହିତ୍ୟ ଭାରତୀ'ର ସେ ସ୍ରଷ୍ଟା । ସେଇ ଜିଦ୍ । ସାହିତ୍ୟ ପୁରସ୍କାର ଦେବି । ତା'ହେବ ସବୁଠାରୁ ବଡ଼ ପୁରସ୍କାର ।

ଆପଣାର ଗ୍ରାମ ବାଗଲପୁର ପାଖରେ ଅଳକା ନଈର ବାଲୁକା ଶଯ୍ୟାରେ ପ୍ରତିଷ୍ଠା ହୋଇଛି ଅଳକା ମହାବିଦ୍ୟାଳୟ । ଗଛ ସବୁ ଆସିଛି ଉଡାଜାହାଜରେ ଦିଲ୍ଲୀରୁ ଥରେ ନୁହେଁ ବାରମ୍ବାର, ବହୁତ ଥର । ଖାଆନ୍ତି ବେଶ୍, ଖୁଆନ୍ତି ବି ବେଶ୍ । ଅତିଥି ପରାୟଣ ।

ପ୍ରଖ୍ୟାତ ରସାୟନବିଦ୍ ପ୍ରଫେସର ଡକ୍ଟର ବଳଭଦ୍ର ପ୍ରସାଦଙ୍କ ମତରେ ସେ ହେଉଛନ୍ତି ପ୍ରକୃତ କମ୍ୟୁନିଷ୍ଟ, କାରଣ ସେ ବିବାହ କରିଛନ୍ତି ଅନ୍ୟ ଜାତିରେ । କେହି ରହିବେ ନାହିଁ, ସେ ବି ନାହାନ୍ତି ଆଜି । ଖାନନଗରର ଧୁନିରେ ସେଇ ବିଶାଳ ଦେହ ପାଉଁଶ ହୋଇଯାଇଛି । ପଛରେ ରହିଯାଇଛି ବାର୍ କାଉନ୍‌ସିଲ, ବାର୍ ଆସୋସିଏସନ୍, ନିଖିଳ ଉତ୍କଳ ଆଇନଜୀବୀ ସଂଘ ।

କଲୋସସ୍ ଛାଡି ଯାଇଛି ବିରାଟ ଇତିହାସ ।

ସେହି ତା'ର ସାକ୍ଷୀ ।

ଆଇନର କଖଗ ଶିଖାଇଥିଲେ ମୋତେ ସେ । ଭଲ ପାଉଥିଲେ ଅନୁଜ ଭଳି, କିନ୍ତୁ ଯାଇ ଶେଷ ଦର୍ଶନ କରିବାର ଶକ୍ତି ମୋର ନାହିଁ । ହେ ଅଗ୍ରଜ, ତୁମକୁ ପ୍ରଣାମ ।

□□□

# ତୁମେ ଜାଣିଲ ନାହିଁ
# କିଏ ତୁମ ପଛେ ପଛେ ଗଲା

*(୰ ଗୋଦାବରୀଶ ମିଶ୍ର)*

ଗଲା କାଲି ସକାଳଟା ବର୍ଷାମୁଖର ହୋଇ ଉଠିଚି ହଠାତ୍ । କାହିଁକି ଅଚାନକ ଏ ବର୍ଷା ? ଆକାଶରୁ ଏତେ ଲୁହ ଝରୁଚି କାହିଁକି ? ଖବର ଆସିଲା ଗୋଦାବରୀଶ ମିଶ୍ର ଆଉ ନାହାନ୍ତି । କଟକ ବଡ଼ ଡାକ୍ତରଖାନାରେ ମୃତ୍ୟୁ ସହିତ ତାଙ୍କର ସଂଗ୍ରାମରେ ମୃତ୍ୟୁର ଜୟ ହୋଇଛି । ସ୍କୁଲ କଲେଜ ସବୁ ଛୁଟି ହୋଇଯାଉଚି । ସେ ଥିଲେ ଓଡ଼ିଶାର ଶିକ୍ଷାମନ୍ତ୍ରୀ । ସେ ହେଉଛନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା । ଲୋକ ଧାଡ଼ି ଛୁଟିଚି । ଡାକ୍ତରଖାନାରେ ଭିଡ ଜମିଗଲାଣି । ମରଦେହ ଯିବ ସତ୍ୟବାଦୀକୁ । ସେଇଠି ଗୋପବନ୍ଧୁ ଦାସଙ୍କ ଚାରିପଟରେ ରହିବେ ସେମାନେ । ସେଇ ପଞ୍ଚସଖା ଯେଉଁମାନେ ଓଡ଼ିଆ ଜାତିର ବିଂଶ ଶତାବ୍ଦୀର ଇତିହାସ ସୃଷ୍ଟି କରି ଯାଇଛନ୍ତି ସାହିତ୍ୟରେ, ସମାଜସେବାରେ, ସଂସ୍କୃତିରେ । ମରଦେହ ସିଧା ସତ୍ୟବାଦୀକୁ ଯିବ ବୋଲି କେହି ନିଷ୍ପତ୍ତି କରିଛନ୍ତି । କିଏ, କିଏ ସେ ନିଷ୍ପତ୍ତି କଲାବାଲା ? କଟକ ସହରର କ'ଣ ଗୋଦାବରୀଶ ମିଶ୍ରଙ୍କ ଉପରେ କୌଣସି ଅଧିକାର ନାହିଁ ? ସତେ ତ ? ଶବକୁ ନେଇ ଆରମ୍ଭ ହେଲା ବିରାଟ ଶୋଭାଯାତ୍ରା । ମେଡ଼ିକାଲରୁ ଗୌରୀଶଙ୍କର ପାର୍କ ପର୍ଯ୍ୟନ୍ତ । ସେଇଠି ଅପେକ୍ଷା କରିଛନ୍ତି ପଣ୍ଡିତ ନୀଳକଣ୍ଠ ଦାସ, ରାଧାନାଥ ରଥ ପ୍ରଭୃତି । ଶୋଭାଯାତ୍ରାର ଅଗ୍ରଭାଗରେ ଅଛନ୍ତି ଗୋଦାବରୀଶ ମହାପାତ୍ର, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଏକାନ୍ତ ଅନୁଗତ ।

'ସମାଜ' ଅନୁଷ୍ଠାନ ସହିତ ଗୋଦାବରୀଶ ମିଶ୍ରଙ୍କ ସମ୍ପର୍କ ପ୍ରତିଷ୍ଠା ହେବା ଦିନଠାରୁ । ସେଇ ଅନୁଷ୍ଠାନ ଯୋଗାଇ ଦେଇଛି ଗାଡ଼ି । ଆଗ ସିଟ୍‌ରେ ଗୋଦାବରୀଶ ମହାପାତ୍ର, ପଛ ପାଖରେ ଶବ ସହିତ ବିନୋଦ (ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ପ୍ରାଧ୍ୟାପକ) ଏବଂ ମୁଁ । 'ଓଡ଼ିଶାର ଦୀପ ଲିଭିଗଲା'– ଏକ କୋମଳ କଣ୍ଠର ବାଣୀ ଶୁଣି ଅନେଇଲି । ରେଭେନ୍‌ସା ଗାର୍ଲସ୍କୁଲର ଏକ ଛାତ୍ରୀର ଆଖିରୁ ଲୁହ

ଝରୁଛି । ଏଇ ଗାର୍ଲ ସ୍କୁଲ ପରିଦର୍ଶନ କଲାବେଳେ ଶିକ୍ଷାମନ୍ତ୍ରୀ ଗୋଦାବରୀଶ ଆପଣାର ଜ୍ୟେଷ୍ଠପୁତ୍ର ରଘୁନାଥ ମିଶ୍ରଙ୍କ ପାଇଁ ବୋହୂ ବାଛିଥିଲେ ।

ଇତିହାସ କଥା କହୁଚି । ଅର୍ଦ୍ଧ ଶତାବ୍ଦୀର ଇତିହାସ । ଯୁବକ ଜଣେ । ସେଦିନ ରାଜରାସ୍ତା ଉପରେ ହଠାତ୍ ଗୋପବନ୍ଧୁ ଦାସଙ୍କ ସାକ୍ଷାତ । କିଓ ଗୋଦାବରୀଶ ! କୁଆଡେ ଯାଉଚ ଇମିତି ସୁଟ୍ ବୁଟ୍ ପିନ୍ଧି ? ସାର୍, ଇଣ୍ଟର୍‌ଭିଉ ଦେବାକୁ ଯାଉଚି । ହଉ, ଯାଅ । ଶୁଭ ହେଉ ତୁମର । ଦେଶ ଆମର ପରାଧୀନ ରହିଥିବ । ତମେ ସବୁ ହାକିମ ହେବ । ହଉ ଯାଅ । ଗୋପବନ୍ଧୁ ଚାଲିଲେ ରାଜପଥରେ । କିଛି ବାଟ ଗଲାପରେ ହଠାତ୍ ପଛକୁ ଫେରି ଅନାନ୍ତି । ଦେଖନ୍ତି ସେଇ ଯୁବକକୁ । ସେ ତାଙ୍କ ପଛେ ପଛେ ଆସୁଚି । କିଓ, ତୁମେ କ'ଣ ଗଲ ନାହିଁ କି ? କ'ଣ ହେଲା ? ନାଇଁ, ମୁଁ ଆପଣଙ୍କ ସାଙ୍ଗରେ ଯିବି । ଡିପୋଟି ହେବାକୁ ଯାଉଥିବା ଗୋଦାବରୀଶଙ୍କ ଜୀବନ ନୂଆ ନଈରେ ବୋହିବାକୁ ଲାଗିଲା ।

ଗୋଦାବରୀଶ ବାବୁ ଇଂରାଜୀ ସାହିତ୍ୟରେ ଏମ.ଏ. ପାସ୍ କରିଥିଲେ ଏବଂ ଯୋଗ ଦେଇଥିଲେ ସତ୍ୟବାଦୀ ବନ ବିଦ୍ୟାଳୟରେ ଶିକ୍ଷକ ହୋଇ । ଇଂରାଜୀ କହନ୍ତି (Queen's English) । ଶବ୍ଦ ଯେପରି ଉଚ୍ଚାରଣ ସେପରି । କଥା ଅଛି– ଥରେ ଗୋରା କମିଶନର ଆସିଥିଲେ ସତ୍ୟବାଦୀ ବନ ବିଦ୍ୟାଳୟ ପରିଦର୍ଶନ କରିବା ପାଇଁ । ପାଖ କୋଠରୀରେ ଜଣେ ଇଂରାଜୀ ପଢ଼ାଉଛନ୍ତି ପିଲାଙ୍କୁ । କମିଶନର ଦେଖି ନାହାନ୍ତି ଶିକ୍ଷକଙ୍କୁ । କେବଳ କାନରେ ବାଜିଛି ତାଙ୍କର କଥା ସେ ପଚାରିଲେ ଗୋପବନ୍ଧୁ ଦାସଙ୍କୁ । ଆପଣ ତ ମିଛ କହନ୍ତି ନାହିଁ । ଆପଣ ଗୋରା ଇଂରାଜୀ ଶିକ୍ଷକ ରଖିଛନ୍ତି । କିନ୍ତୁ କହୁଛନ୍ତି କ'ଣ ନା ଏହା ଜାତୀୟ ବିଦ୍ୟାଳୟ । ଗୋପବନ୍ଧୁ ଦାସ ହସିଲେ ଏବଂ ନେଇଗଲେ ତାଙ୍କୁ ସେଇ କ୍ଲାସକୁ । ରଜତ ଶୁଭ୍ର ଚେହେରା, ପରିଧାନ ଖଦଡ଼, ଭାଷା ଶୁଦ୍ଧ ଇଂରାଜୀ, ଉଚ୍ଚାରଣ ମଧ୍ୟ ସଂପୂର୍ଣ୍ଣ ଇଂରେଜମାନଙ୍କ ଭଳି । ଇଂଲିଶ ହେଉଛି କୁଇନ୍‌ସ ଇଂଲିଶ । ଗୋଦାବରୀଶ ବାବୁ ଦିନେ ନିଷ୍ପତ୍ତି କଲେ ଯେ ସେ ଆଉ ଇଂରାଜୀରେ କହିବେ ନାହିଁ, କହିବେ ଓଡିଆରେ । ତାଙ୍କର ଓଡିଆ ଭାଷଣରେ ଗୋଟିଏ ମଧ୍ୟ ଇଂରାଜୀ ଶବ୍ଦ ବ୍ୟବହୃତ ହୁଏନା । ଯେପରି ଶୁଦ୍ଧ ଇଂରାଜୀ, ସେଇପରି ଶୁଦ୍ଧ ଓଡ଼ିଆ ।

ଗୋଦାବରୀଶ ବାବୁ ବେଶି ଦିନ ସତ୍ୟବାଦୀରେ ରହିଲେ ନାହିଁ । ସେ ଗଲେ ସିଂହଭୂମିକୁ । ଶିକ୍ଷକତା ସହିତ ଓଡ଼ିଆ ଭାଷାର ସୁରକ୍ଷା ଏବଂ ପ୍ରସାର ପାଇଁ । ଶିକ୍ଷା ସହିତ ଗୋଦାବରୀଶ ବାବୁ ଅଙ୍ଗାଙ୍ଗୀ ଭାବେ ଜଡିତ । ଶିକ୍ଷା ବିନା ଯେ ପ୍ରଗତି ଅସମ୍ଭବ ଏ କଥା ସେ ଅନୁଭବ କରିଥିଲେ । ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ ସେ ହେଉଛନ୍ତି ଅଗ୍ରଣୀ । ଗୋଦାବରୀଶ, ନୀଳକଣ୍ଠ ପ୍ରଭୃତିଙ୍କ ମତଭେଦ ଦେଖାଦେଇଥିଲା କଂଗ୍ରେସ

ଦଳ ଏବଂ ଏହାର ନେତୃତ୍ୱ ସହିତ । କୁହାଯାଏ ଏହି ଗ୍ରୁପ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ସହିତ ସମ୍ପର୍କ ପ୍ରତିଷ୍ଠା କରିଥିଲେ । ସେତେବେଳେ ନେତାଜୀ ଜର୍ମାନୀରୁ ଆସି ଜାପାନରେ ପହଞ୍ଚିଛନ୍ତି ଏବଂ ଇତିହାସ ପ୍ରସିଦ୍ଧ ଆଇ.ଏନ୍.ଏ. ବାହିନୀ ବର୍ମା ସୀମାନ୍ତରେ ଆଘାତ ହାଣୁଛନ୍ତି । ନେତାଜୀଙ୍କ ନିର୍ଦ୍ଦେଶରେ ସେମାନେ ଓଡିଶାରେ ସରକାର ଗଠନ କରିଥିଲେ । ଏହାର କୌଣସି ଐତିହାସିକ ପ୍ରମାଣ ମିଳି ନାହିଁ । କଂଗ୍ରେସରୁ ଅଲଗା ହୋଇ ମନ୍ତ୍ରିମଣ୍ଡଳ ଗଢ଼ିବା ଯୋଗୁଁ ଗୋଦାବରୀଶ ସମାଲୋଚନାର ଶରବ୍ୟ ହୋଇଛନ୍ତି; କିନ୍ତୁ ଓଡ଼ିଶାକୁ ଏକ ବିଶ୍ୱବିଦ୍ୟାଳୟ ମିଳିଛି । ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଯୋଗୁଁ ଓଡ଼ିଶାରେ ଶିକ୍ଷାର ନୂତନ ଦିଗନ୍ତ ଉନ୍ମୋଚିତ ହୋଇଛି ।

ଗୋଦାବରୀଶ ମିଶ୍ର ମନ୍ତ୍ରୀ ବା ରାଜନୀତିଜ୍ଞ ବା ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା ଭାବରେ କେତେଦିନ ବଞ୍ଚି ରହିବେ କହିପାରିବି ନାହିଁ; କିନ୍ତୁ ଓଡିଆ ଜାତି ବଞ୍ଚିଥିବା ପର୍ଯ୍ୟନ୍ତ 'କାଳିଜାଇ' ଏବଂ ' ତୁଙ୍ଗ ଶିଖରୀ ଚୂଳ' କବିତା ପାଇଁ ସେ ବଞ୍ଚି ରହିବେ ଜନସମାଜରେ । ଠିକ୍ ସେଇପରି 'ଅର୍ଦ୍ଧ ଶତାବ୍ଦୀର ଓଡିଶା ଓ ତହିଁରେ ମୋର ସ୍ଥାନ' ଶୀର୍ଷକ ଆତ୍ମ-ଜୀବନୀ ପାଇଁ ସେ ବଞ୍ଚି ରହିବେ ଅନନ୍ତକାଳ ପର୍ଯ୍ୟନ୍ତ । ପଣ୍ଡିତ ନୀଳକଣ୍ଠ ଦାସ କିନ୍ତୁ କୁଆଡ଼େ ଦାବୀ କରନ୍ତି ଯେ 'ତୁଙ୍ଗ ଶିଖରୀ ଚୂଳ' କବିତାର ଲେଖକ ସେ ନିଜେ । ଗୋଦାବରୀଶ ନୁହନ୍ତି । କିନ୍ତୁ ଏହାର କୌଣସି ପ୍ରମାଣ ନାହିଁ ।

ଗୋଦାବରୀଶ ମିଶ୍ର ସ୍ୱାଧୀନତା ସଂଗ୍ରାମରେ ଜେଲ ଯାଇନାହାନ୍ତି । ପିନ୍ଧ ପିନ୍ଧ ଶୁଭ୍ର ଖଦଡ ଧୋତି ଓ ପଞ୍ଜାବୀ ତାଙ୍କର ରଜତ ଶୁଭ୍ର ଚେହେରାକୁ ବେଶ୍ ମାନେ । ସେ ହାତରେ ଖାଇପାରନ୍ତି ନାହିଁ । କଣ୍ଟା ଚାମଚରେ ଖାଆନ୍ତି । ଖାଆନ୍ତି ସବୁ ଜିନିଷ । କିନ୍ତୁ ପରିଷ୍କାର ପ୍ଲେଟ୍ ପରିଷ୍କାର ଚାମଚ, ପରିଷ୍କାର ପରଷୁଣୀ । ସବୁ ପରିଷ୍କାର ହେବା ଆବଶ୍ୟକ । ତାଙ୍କୁ ତଳେ ଖାଇବାକୁ ଦେଇ ହାତରେ ବାଢ଼ିବା ଏବଂ ଅପରିଷ୍କାର ଖଲିରେ ଦେବା ଫଳରେ ତାଙ୍କୁ ବାନ୍ତି କରିବାର ମୁଁ ଦେଖିଛି ।

ଗୋଦାବରୀଶ ବାବୁ ଝରକା ଖୋଲାକରି ଶୋଇପାରନ୍ତି ନାହିଁ । ଥରେ ଆମେ ବ୍ରହ୍ମପୁର ଯାଉଥିଲୁ, ବାଟରେ ବରକୁଳ ଡାକବଙ୍ଗଳାରେ ରାତିରେ ରହିଲୁ । ଦେଖିଲି ସେ ଶୋଇବା ପୂର୍ବରୁ ସବୁ ଝରକା ବନ୍ଦ କରୁଛନ୍ତି । ପଚାରିବାରୁ ସେ କହିଲେ ଯେ ସେ ବାହାରେ ପଦାରେ ଶୋଇ ପାରିବେ; କିନ୍ତୁ ଘର ଭିତରେ ଝରକା ଖୋଲି ଶୋଇପାରିବେ ନାହିଁ । ମୋର ଠିକ୍ ଇମିତି ଏକ ଅଭ୍ୟାସ ଥିବାରୁ ମନଟା ଖୁସି ହୋଇଗଲା । ବଡ଼ ଲୋକମାନେ ତ ଇମିତି କରନ୍ତି ।

ଗୋଦାବରୀଶ ବାବୁଙ୍କ ନିୟମାନୁବର୍ତ୍ତିତା ସମ୍ପର୍କରେ ବହୁ କାହାଣୀ ରହିଛି । ଶ୍ରୀ ନରସିଂହ କର (ମାତୃଭୂମି) ବେଶ୍ ବଢ଼ିଆ କଥାଟିଏ କହନ୍ତି ତାଙ୍କର ସ୍ମୃତିରୁ । ସେମାନେ ରହୁଥିଲେ ଗୋଦାବରୀଶ ବାବୁଙ୍କ ଘର ପାଖରେ । ତାଙ୍କ ଝରକାରୁ ଗୋଦାବରୀଶ ବାବୁଙ୍କ ପଠନାଗାର ଦେଖାଯାଏ । ଗୋଦାବରୀଶ ବାବୁ ଲେଖାପଢ଼ାରେ ନିମଜ୍ଜିତ ଥାଆନ୍ତି । ଖାନ୍‌ସାମା ଆଣି ପଛପଟ ଟେବୁଲରେ ଖାଇବା ରଖିଦେଇ ଯାଏ ଚୁପ୍‌ଚାପ । ଗୋଦାବରୀଶ ବାବୁଙ୍କ ଧ୍ୟାନ ଭାଙ୍ଗେ ନାହିଁ । ଗୋଦାବରୀଶ ବାବୁ ବସନ୍ତି ଏକ ରିଭଲଭିଙ୍ଗ ଚୌକୀରେ । ସେ ପଢ଼ାଲେଖା ସାରି ଚଉକୀ ବୁଲାଇ ବସନ୍ତି ପଛପଟ ଟେବୁଲକୁ ସାମ୍ନା କରିବାପାଇଁ । ଖାଇବା ବେଳ ଘଡ଼ିରେ ଠିକ୍ ରାତି ଦଶଟା । ଦେଖନ୍ତି । ଗୋଦାବରୀଶ ବାବୁ ଘଡିକୁ ଦିନେ ଚାହିଁ ନାହାନ୍ତି ସମୟ ଦେଖିବା ପାଇଁ କି ଦିନେ ବି ତାଙ୍କର ବିଳମ୍ବ ହୋଇନାହିଁ ।

ଗୋଦାବରୀଶ ବାବୁଙ୍କର ମରଦେହକୁ ଆମେ ସବୁ କାଲି ସତ୍କାର କରି ଫେରିଲୁ ସାକ୍ଷୀଗୋପାଳରେ । ପଣ୍ଡିତ ନୀଳକଣ୍ଠଙ୍କର ଶୁଭ୍ର ଶ୍ମଶ୍ରୁଦେଇ ଝରି ପଡିଥିଲା ଲୋତକ । ସେ ଆକାଶକୁ ଅନାଇ ଦେଖୁଥିଲେ ସତ୍ୟବାଦୀର ଅତୀତକୁ । ଗୋଦାବରୀଶ ବାବୁ ଆଉ ନାହାନ୍ତି । ରାଜନୀତିଜ୍ଞ ଗୋଦାବରୀଶ ବଞ୍ଚିରହିବେ ନାହିଁ । କିନ୍ତୁ ଲେଖକ ଗୋଦାବରୀଶ ବଞ୍ଚିରହିବେ ଚିରକାଳ ।

ooo

# ତୁମେ କି ଉଠିବ ନାଇଁ
# ଅରୁଣିତ ନବ ପୂର୍ବାଚଳେ

*(୰ ଗୋଦାବରୀଶ ମହାପାତ୍ର)*

ସେଦିନର ସଂଧ୍ୟା ଥିଲା ବର୍ଷାମୁଖର । ଗୋଦାବରୀଶ ମହାପାତ୍ର ଆଖି ବୁଜିଦେଲେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜର କନିକା କଟେଜରେ । କାଳ କାଳ ଦିଗନ୍ତ ମହାକାଳ ଫାଟି ଦୁଇଫାଳ ହୋଇଗଲା । ଗୋଦାବରୀଶ ମହାପାତ୍ର ଇତିହାସ ପାଲଟିଗଲେ । ଓଡ଼ିଆ ସାହିତ୍ୟରେ ଏଭଳି ଏକ ଲେଖକ ଆଗରୁ ଜନ୍ମ ହୋଇ ନାହାନ୍ତି । କେତେ ଯୁଗ ପରେ ପୁଣି ଜଣେ ଇମିତି ଲେଖକ ଜନ୍ମହେବେ କହିହେବ ନାହିଁ । ତେଣୁ ଆଗାମୀର ବଂଶଧରମାନେ ପ୍ରାକ୍-ଗୋଦାବରୀଶ ମହାପାତ୍ର ଏବଂ ପର- ଗୋଦାବରୀଶ ମହାପାତ୍ର କଥା ଉଲ୍ଲେଖ କରିବେ । ଗୋଦାବରୀଶ ମହାପାତ୍ର ଉଜ୍ଜଳି ରହିବେ ଆପଣାର 'ନିଆଖୁଣ୍ଟା' ପରି ।

ମରଦେହକୁ ନିଆହେବ ସତୀଚଉରା । ସଂସ୍କୃତି ମନ୍ତ୍ରୀ ଫୁଲମାଳ ଦେଇ ଫେରିଗଲେଣି ଭୁବନେଶ୍ୱର । ପ୍ରୋଟୋକଲର ଦଫା ଶେଷ । ନିଆଁଖୁଣ୍ଟା ମହାପାତ୍ରେ ବିଧାନ ସଭା ବା ପାର୍ଲ୍ୟାମେଣ୍ଟ ସଭ୍ୟ ନଥିଲେ । ନିର୍ବାଚନ ଲଢ଼ି ନଥିଲେ । ତେଣୁ ତାଙ୍କୁ ରାଷ୍ଟ୍ରୀୟ ସମ୍ମାନ ଦିଆଯାଇପାରିବ ନାହିଁ । କିନ୍ତୁ ରାଷ୍ଟ୍ର ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟାର ଆୟୋଜନ କ'ଣ କରିପାରିବ ନାହିଁ ? କିଏ କହିବ, କାହାକୁ କହିବ ? ଚତୁର୍ଦ୍ଦିଗରେ ନିସ୍ତବ୍ଧତା ।

ଗୋଦାବରୀଶ ମହାପାତ୍ର ବିବାଦୀୟ ଲୋକ ଥିଲେ । ତାଙ୍କର କଲମ ଥିଲା ଶାଣିତ, ତୀବ୍ର ଏବଂ ମର୍ମଭେଦୀ । ସେଇଯୋଗୁଁ ଅନେକ ଲୋକ ତାଙ୍କର ଶତ୍ରୁ ପାଲଟିଥିଲେ । ଗୋଦାବରୀଶ ମହାପାତ୍ରଙ୍କ ଉପରେ ଥରେ ଦି'ଥର ଆକ୍ରମଣ ମଧ ହୋଇଥିଲା । କାରଣ ସେ କାହାରିକୁ ବାଦ ଦେଇ ନାହାନ୍ତି । କାହାକୁ ଛାଡ଼ି ନାହାନ୍ତି । କେବଳ ଜଣେ ବ୍ୟକ୍ତି ତାଙ୍କର କଲମର ବଲ୍ଲମ ଆକ୍ରମଣରୁ ମୁକ୍ତ । ସେ ହେଉଛନ୍ତି ତାଙ୍କର ଗୁରୁ ଗୋଦାବରୀଶ ମିଶ୍ର । ମୋର ମନେ ପଡ଼ିବାରେ ବୋଧହୁଏ ଗୋଟିଏ କୌଣସି ଲେଖାରେ ସେ

ଗୋଦାବରୀଶ ମିଶ୍ରଙ୍କ ବିଷୟରେ କିଛି ଲେଖିଥିଲେ । ତା'ମଧ୍ୟ ବେଶ୍ ମୁଲାୟମ ଭାଷାରେ । ଗୋଦାବରୀଶ ମହାପାତ୍ର ଗୋଦାବରୀଶ ମିଶ୍ରଙ୍କୁ ନମସ୍କାର କରନ୍ତି ନାହିଁ । ଆଖିକୁ କିମିତି ଅଖାଡୁଆ ଦେଖାଯାଏ । ଦିନେ ମୁଁ ତାଙ୍କୁ କାରଣ ପଚାରିଲି । ସେ କହିଲେ ତମର ଗୋଟିଏ ଅଙ୍ଗ କ'ଣ ଆର ଅଙ୍ଗକୁ ନମସ୍କାର କରେ ? ଉତ୍ତର ଦେବାର କିଛି ନଥିଲା । ଏଇ ଥିଲା ତାଙ୍କର ଗୋଦାବରୀଶ ମିଶ୍ରଙ୍କ ସହ ଅଭିନ୍ନତା ।

ଶବକୁ କୋକେଇରେ ରଖାଯାଇଛି । କିଛି ଲେଖକ, କିଛି ପ୍ରକାଶକ ପହଞ୍ଚିଛନ୍ତି । ପେଟ୍ରୋମାକ୍ସ ଲାଇଟ ଦୁଇଟା ଆସି ଯାଇଛି । ମହାପାତ୍ରେ ବାହାରିବେ ଅନ୍ତିମ ଯାତ୍ରାରେ । ଶବବାହକମାନେ ଶବକୁ କାନ୍ଧେଇ ଚାଲିଛନ୍ତି । ରାମ ନାମ ସତ୍ୟହେ... ହରି ନାମ ସତ୍ୟ ହେ । ଚିରାନୁଚରିତ ଡାକ । କିଛି ପରିବର୍ତ୍ତନ ଘଟି ନାହିଁ କି କିଛି ବଦଳି ନାହିଁ ।

ମେଡିକାଲରୁ ମଙ୍ଗଳାବାଗ । ମଙ୍ଗଳାବାଗରୁ ନୂଆପାଟଣା । ମୁଖ୍ୟ ରାସ୍ତା ସଙ୍କୁଚିତ ହୋଇଯାଇଛି । ମଙ୍ଗଳାବାଗରୁ ନୂଆପାଟଣା ବାଟ ମଝିରୁ ରୁଦ୍ଧ ହୋଇ ଯାଉଛି । ଆଗରୁ ଆସୁଚି ଏକ ବିରାଟ ଶୋଭାଯାତ୍ରା । ଶହ ଶହ ଲାଇଟ୍ । ଝାଞ୍ଜ, ମୃଦଙ୍ଗ, ଖୋଳ, କରତାଳ ପଞ୍ଝାକୁ ପଞ୍ଝା । କ'ଣ ଏଇ ଶୋଭାଯାତ୍ରା ? କା'ର, କ'ଣ ପାଇଁ ? ବିରାଟ ସୁସଜ୍ଜିତ ଟ୍ରକ୍ । ଫୁଲ, ଅତର ଗନ୍ଧରେ ସମଗ୍ର ବାୟୁମଣ୍ଡଳ ଭାରାକ୍ରାନ୍ତ । ପଛରେ ଗାଡ଼ିର ବିରାଟ ଧାଡ଼ି । ବହୁ ବିଶିଷ୍ଟ ବ୍ୟକ୍ତି ଗାଡ଼ିମାନଙ୍କରେ ଆସୀନ । ପଚାରିଲେ କିନ୍ତୁ କହୁଚନ୍ତି ଆଗରେ ଶୋଭାଯାତ୍ରା ବାଟ ରୁନ୍ଧି ଦେବାରୁ ସେମାନେ ବାଧ୍ୟ ହୋଇ ଟ୍ରକ ପଛରେ ଚାଲିଛନ୍ତି । ଆମେ ସବୁ ଆଉଜିଗଲୁ ଗୋଟାଏ କଡକୁ । ଆମ ଲାଇଟ ସେ ଆଲୋକମାଳାରେ ନିଷ୍ପ୍ରଭ ହୋଇଗଲା । ଆମକୁ ସଡରେ ଯେମିତି ଗୋଟାଏ କଡକୁ ପେଲିଦେଇ ସେମାନେ ବୀର ଦର୍ପରେ ଚାଲିଯାଉଛନ୍ତି । କିଏ ? କାହାପାଇଁ ଏ ଶୋଭାଯାତ୍ରା ?

ଶୋଭାଯାତ୍ରାରେ ସହରର ନାମଜାଦା ଚୋରା ମଦ ବ୍ୟବସାୟୀଙ୍କର ମୁଖ୍ୟ ଡ୍ରାଇଭରର ମୃତ ଦେହକୁ ନିଆଯାଉଛି କାଳିଆବୋଦା । ଆଜି ସଂଧ୍ୟାରେ ପ୍ରଖ୍ୟାତ ଲେଖକ, ସମ୍ପାଦକ, ସମାଲୋଚକ ଗୋଦାବରୀଶ ମହାପାତ୍ରଙ୍କର ଜୀବନାବସାନ ସହିତ ଚୋରା ମଦ ବ୍ୟବସାୟୀଙ୍କର ପ୍ରଖ୍ୟାତ ଡ୍ରାଇଭରର ମଧ୍ୟ ପରଲୋକ ହୋଇଯାଇଛି । ମହାପାତ୍ରେ ଯାଇଛନ୍ତି ସତୀଚଉରା, ଏ ଜାତିର ତୀର୍ଥଭୂମି ଶ୍ମଶାନକୁ । ଆଉ ସେ ଯାଉଛି କାଳିଆବୋଦା ଗୁରୁକ୍ଷେତ୍ରରେ ଦାହ ହେବାକୁ । ଉଭୟଙ୍କର ଶୋଭାଯାତ୍ରାରେ କି ବୈଷମ୍ୟ ?

ମନେପଡିଲା ପ୍ରସିଦ୍ଧ ଥେଇସ ଉପନ୍ୟାସ । ମନେପଡିଲା ଦେବୀ ମାଳିନୀ ଚଳଚିତ୍ର । କୁହ ମହର୍ଷି ଶ୍ରୀଜ୍ଞାନ ! ଜୀବନ ବଡ଼ ନା ମୃତ୍ୟୁ ବଡ଼ ? ପଚାରୁଛି ମହର୍ଷି

ଶ୍ରୀଜ୍ଞାନଙ୍କର ପୂର୍ବତନ ପ୍ରେମିକା ବର୍ତ୍ତମାନ ସହରର ପ୍ରସିଦ୍ଧ ନଟୀ । ଗୋଟାଏ ପଟୁ ଆସୁଚି ଦେବୀ ମାଳିନୀର ଶୋଭାଯାତ୍ରା । ଆର ପଟରୁ ଆସୁଛି ମହର୍ଷି ଶ୍ରୀଜ୍ଞାନଙ୍କ ଗୁରୁଦେବଙ୍କର ମର ଦେହକୁ ବୋହି ନେଉଥିବା କତିପୟ ଲଣ୍ଡିତ ମସ୍ତକ ଗୈରିକ ବସ୍ତ୍ର ପରିହିତ ସନ୍ନ୍ୟାସୀମାନଙ୍କର ଶୋଭାଯାତ୍ରା । ଗୁରୁଦେବଙ୍କର ପରଲୋକ ପରେ ଆତ୍ମାରାମ ନିର୍ବାଚିତ ହୋଇଛନ୍ତି ମଠର ମୁଖ୍ୟ ରୂପେ । ତାଙ୍କର ନାମ ହୋଇଚି ଶ୍ରୀଜ୍ଞାନ । କିନ୍ତୁ ସହରର ନଟୀ ଦେବୀ ମାଳିନୀ ପାଇଁ ସେ ତଥାପି ଆତ୍ମାରାମ । ଦେବୀ ମାଳିନୀକୁ ସୁସଜ୍ଜିତ ଦୋଳାରେ ବସାଇ ନେଇ ଚାଲିଛନ୍ତି ସହରର ଅସଂଖ୍ୟ କାମାତୁର ଯୁବକ । ସେମାନଙ୍କ ବଲ୍ଲିହାରୀ ଡାକରେ ବୁଡିଯାଉଛି ସନ୍ନ୍ୟାସୀମାନଙ୍କର କ୍ଷୀଣ ଶବବାହକଙ୍କ ଡାକ । ସାଗରର ଶବ୍ଦ ଯେପରି ଗ୍ରାସକରିଯାଏ ଗୀତାର ପାରାୟଣ, କୋକିଳର କୁହୁତାନ ଏବଂ ବୀଣାର ଝଙ୍କାରକୁ ।

କୁହ ଆତ୍ମାରାମ ! ନଟୀର ପ୍ରଶ୍ନ । ପୂର୍ବତନ ପ୍ରେମିକାର ବେଦନାତୁର ଭାଷା । ମହର୍ଷି ଶ୍ରୀଜ୍ଞାନ ସଂଶୋଧନ କରି ଦେଉଛନ୍ତି । ମୁଁ ଆଉ ଆତ୍ମାରାମ ନୁହେଁ । ମୁଁ ମହର୍ଷି ଶ୍ରୀଜ୍ଞାନ ।

ଆଚ୍ଛା କୁହ ମହର୍ଷି ଶ୍ରୀଜ୍ଞାନ ! ଜୀବନ ବଡ଼ ନା ମୃତ୍ୟୁ ବଡ଼ ? ମହର୍ଷି ଶ୍ରୀଜ୍ଞାନଙ୍କର ଗମ୍ଭୀର କଣ୍ଠରୁ ନିର୍ଗତ ହେଉଛି ସେଇ ବାଣୀ । ମୃତ୍ୟୁ ବଡ଼ । କାରଣ ମୃତ୍ୟୁ ହିଁ ସତ୍ୟ । ମୃତ୍ୟୁ ଅଲଂଘନୀୟ । ଜନ୍ମିବା ଆଗରୁ ସେଇ ମାଳା ପିନ୍ଧି ନିଜ ଗଳେ, ଭୂମିଷ୍ଠ ହୁଅଇ ଜୀବ ଜନନୀ ଗର୍ଭରୁ ।

ଗୋଲାପର ସ୍ତବକକୁ ଆପଣାର ରଙ୍ଗୀନ ଚିବୁକ ଉପରେ ଖେଳାଇ ନେଇ ଦୋଳାୟମାନ ଲୁଲିତାର ତୀର୍ଯ୍ୟକରେ ପଚାରୁଛି ମାଳିନୀ । କିନ୍ତୁ ମହର୍ଷି ଶ୍ରୀଜ୍ଞାନ । ଜୀବନ ଥିବା ପର୍ଯ୍ୟନ୍ତ ଜୀବନ ହିଁ ବଡ଼ । ତାହାହିଁ ସତ୍ୟ । ସେଇ ଯୋଗୁଁ ଜୀବନର ରାଜପଥରେ ଭିଡ଼ ଜମେ । ଆଉ ମରଣର ରାଜପଥରେ ତମ ଭଳି କେତେ ନପୁଂସକଙ୍କର କୃଚ୍ଛ୍ର ସାଧନା । ନୁହେଁ ମହର୍ଷି ଶ୍ରୀଜ୍ଞାନ ।

କିନ୍ତୁ ମହର୍ଷି ଶ୍ରୀଜ୍ଞାନଙ୍କର କଥାକୁ ବାଧାଦେଇ ନଟୀର ଉଦାତ୍ତ ଆହ୍ୱାନ । ଏଇ ଦେଖ ମହର୍ଷି ଶ୍ରୀଜ୍ଞାନ ଜୀବନର ଜୟଯାତ୍ରା ମରଣ ଉପରେ । ତା'ର ଆଖିର ଇଙ୍ଗିତରେ ମାଡି ଚାଲିଲେ ଅଗଣିତ ଯୁବକ, ନାଗରିକ । ଏବଂ ଆଡେଇ ହୋଇ କଡକୁ ଆଉଜିଗଲେ ମହର୍ଷି ଶ୍ରୀଜ୍ଞାନ ଏବଂ ଶବବାହକମାନେ ।

ଗୋଦାବରୀଶ ମହାପାତ୍ରଙ୍କର ଶବକୁ ନେଇ ଆମେ ସବୁ ଆଉଜି ଯାଉଥୁ ଗୋଟାଏ କଡକୁ । ଏ କ'ଣ ସେଇ ଘଟଣାର ରୂପାନ୍ତର !

ଗୋଦାବରୀଶ ମହାପାତ୍ର ଲେଖିଛନ୍ତି ଗଳ୍ପ, କବିତା । ଛୋଟ ଛୋଟ ମଣିଷ, ଛୋଟ ଛୋଟ ଜିନିଷ, ଛୋଟ ଛୋଟ ଘଟଣା ତାଙ୍କର କବିତାର ବସ୍ତୁ । ଘାସ ଯେପରି ତାଙ୍କର କବିତାରେ ଜୀବନ୍ୟାସ ପାଇଛି ଠିକ୍ ସେଇପରି ପାଇଛି ମାଗୁଣିର ଶଗଡ଼ । ମହାପାତ୍ରେ କାହାକୁ ଛାଡ଼ି ନାହାନ୍ତି । ଛୋଟିଆ କଥାଟିଏ ତାଙ୍କର କଲମ ମୂନରେ ଝଞ୍ଜାର ରୂପ ନେଇଛି । କିନ୍ତୁ ମହାପାତ୍ରେ ନିର୍ବିକାର ।

ରାଧାନାଥ ବାବୁ (ସମାଜ ସମ୍ପାଦକ)ଙ୍କ ପାଖରେ ଏକ ଚିଠି ଆସି ପହଞ୍ଚିଛି । ମହାପାତ୍ରେ ଦେଇଛନ୍ତି । ଆପଣଙ୍କ ବିରୁଦ୍ଧରେ ଲେଖା ଛାପୁ ଛାପୁ କାଗଜ ସରିଗଲା । କାଗଜ ଆଉ ନାହିଁ । ଦୟାକରି ଦଶ ରିମ୍ କାଗଜ ପଠାଇଦେବେ । ମଣିଷ ହସିବ ନା କାନ୍ଦିବ ? ରାଧାନାଥ ବାବୁଙ୍କର ମୁହଁରେ ଏକ ସ୍ମିତହାସ୍ୟର ରେଖା । ଚିଠିଟିକୁ ଅନ୍ୟମାନଙ୍କୁ ପଢ଼ିବାକୁ ଦେଇ ସେ କାଗଜ ପଠାଇବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ମହାପାତ୍ରଙ୍କର ଓଡ଼ିଆ ପ୍ରୀତି ବହୁତ । ଓଡ଼ିଆ ସ୍ୱାଭିମାନର ସେ ଜଣେ ଜାଗ୍ରତ ପ୍ରହରୀ । ତେଣୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକଙ୍କର ଦୁଃଖ, ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଥିଲା ତାଙ୍କର ସ୍ୱତନ୍ତ୍ର ଦରଦ ।

ବାଣପୁରରେ ଜନ୍ମଗ୍ରହଣ କରିଥିଲେ ଗୋଦାବରୀଶ ମହାପାତ୍ର । କିନ୍ତୁ କଟକ ତାଙ୍କର କର୍ମସ୍ଥଳୀ ହୋଇଯାଇଥିଲା ବହୁ ଦିନ ଧରି । ନିଆଁଖୁଣ୍ଟା ତାଙ୍କର ଏକକ ଅଭିନୟର ଫଳ । ସେ ହିଁ ସମଗ୍ର ନିଆଁଖୁଣ୍ଟାର କବିତା, ଗଳ୍ପ, କାହାଣୀର ଲେଖକ । ପୁଅ ନାହାନ୍ତି । ଜାମାତାମାନଙ୍କ ମଧ୍ୟରେ ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା, ବର୍ତ୍ତମାନ ନିଆଁଖୁଣ୍ଟାର ସମ୍ପାଦକ କିଶୋର ଚନ୍ଦ୍ର ମିଶ୍ର । ଗୋଦାବରୀଶ ବାବୁଙ୍କର କଲମ ଆପଣାର ଜାମାତା ଗୌରୀ କୁମାରଙ୍କୁ ମଧ୍ୟ ଛାଡ଼ି ନାହିଁ ।

ଗୋଦାବରୀଶ ମହାପାତ୍ର ଅନନ୍ୟ । ତାଙ୍କ ପୂର୍ବରୁ ସେପରି କେହି ନାହାନ୍ତି କି ପରେ କାହାକୁ ଦେଖାଯାଇ ନାହିଁ । ମୁରାରୀ ମୋହନ ଜେନା, ଅଚ୍ୟୁତାନନ୍ଦ ପ୍ରଭୃତିଙ୍କୁ ଦିଗ୍‌ବିଜୟରେ ଦେଖାଯାଇଛି । ଇତିହାସ କହିବ ସେମାନେ କେତେ ସଫଳ ହେବେ । ଦେବ ମହାପାତ୍ର ତ ଅସ୍ତାଚଳରେ । ଫତୁରାନନ୍ଦ ଅସୁସ୍ଥ (ବର୍ତ୍ତମାନ ସ୍ୱର୍ଗତ) ହାସ୍ୟରସରେ ଓଡିଆ ସାହିତ୍ୟ ଦରିଦ୍ର ହୋଇଯାଇଛି ।

ଗୋଦାବରୀଶ ମହାପାତ୍ରଙ୍କର ଚିତା ଜଳୁଛି ।

❑❑❑

## ଜାତି କୀରତି କେତନ

*(ଁ ଗୋବିନ୍ଦ ପ୍ରଧାନ)*

" ସେ ଯେ ଗୋବିନ୍ଦ ପ୍ରଧାନ,          ଜାତି କୀରତି କେତନ
...ସେ ଯେ ସାରଥୀ ତୋର ।"

ଏଇପରି ଗୀତ ଗଞ୍ଜାମ ଜିଲ୍ଲାର ଗାଁ ଗାଁରେ ବୋଲାଯାଏ । ଗୋବିନ୍ଦ ପ୍ରଧାନ ଏକ ପ୍ରବାଦ ପୁରୁଷ । ବିଶାଳକାୟ ମଣିଷ । ଖାଆନ୍ତି ଯେମିତି ଖୁଆନ୍ତି ବି ସେମିତି । ତାଙ୍କ ନାଁରେ ଯେତିକି କାହାଣୀ, ସେତିକି ଗଳ୍ପ । ଧନୀ ଚାଷୀ ପରିବାରରେ ଜନ୍ମ । ଟାକରଡା ଗାଁ । ମାଟିର ମଣିଷ କିନ୍ତୁ ଥିଲେ ସେ । ଅନେକ ଜାଗା ବୁଲିଛନ୍ତି, ଅନେକ ପ୍ରତିଷ୍ଠା ପାଇଛନ୍ତି, କିନ୍ତୁ ନିଜ ଗାଁରେ ନିଜ ମାଟିରେ ସେ ଯେପରି ଅନୁଭବ କରିଛନ୍ତି ସେପରି ଅନୁଭବ ଅନ୍ୟତ୍ର ସେ ପାଇ ନାହାନ୍ତି । ସୋଭିଏଟ୍ ୟୁନିଅନ ଯାଇଥିଲେ । ସେ ପାଣି, ସେ ଜଳବାୟୁ ତାଙ୍କୁ ପୋଷାଇଲା ନାହିଁ । ପୁଣି ପାନ ମିଳିବ ନାହିଁ । ଗୋବିନ୍ଦ ପ୍ରଧାନ ଆଉ ବିଦେଶ ଯିବାକୁ ମନ ବଳାଇ ନାହାନ୍ତି । ସବୁ ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କରିଛନ୍ତି । ଗଞ୍ଜାମ ଜିଲ୍ଲାରେ ଜନ୍ମ । ମୁସ୍ତାଦାରୀ ପ୍ରଥା ବିରୁଦ୍ଧରେ, ସଂଗ୍ରାମରେ ରତ ହେଲେ ପିଲାଦିନୁ । ସହଯୋଦ୍ଧାମାନେ ସମସ୍ତେ ବାହୁଡି ଗଲେଣି । ଉମା ଚରଣ, ଦିବାକର , ବିଶ୍ୱନାଥ ସମସ୍ତେ । ଗୋବିନ୍ଦ ପ୍ରଧାନ ୧୯୩୭ ମସିହା ନିର୍ବାଚନରେ କଂଗ୍ରେସ ଦଳରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ପ୍ରବଳ ପ୍ରତାପୀ ବ୍ରିଟିଶ୍ ସରକାରର ପ୍ରତିନିଧିଙ୍କୁ ହରାଇ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଗୋବିନ୍ଦ ପ୍ରଧାନ ଏକ ପ୍ରବାଦ ପୁରୁଷରେ ପରିଣତ ହୋଇଥିଲେ । ଗଞ୍ଜାମର ସବୁ ଗାଁରେ ତାଙ୍କର ପରିଚିତି ଥିଲା ଏବଂ ମାଟିର ମଣିଷ ଭାବରେ ତାଙ୍କର ଖ୍ୟାତି ପରିବ୍ୟାପ୍ତ ହୋଇଥିଲା ସାରା ରାଜ୍ୟରେ । କୃଷକ ଆନ୍ଦୋଳନର ଏଇ ମହାରଥୀ ଆପଣାର ତ୍ୟାଗ, ସାଧୁତା ଏବଂ କର୍ମନିଷ୍ଠା ହେତୁ ସବୁ ଦଳ, ମତ, ଗୋଷ୍ଠୀର ପ୍ରିୟ ହୋଇପାରିଥିଲେ । ସ୍ୱାଧୀନତା ଅନ୍ଦୋଳନରେ ଗୋବିନ୍ଦ ପ୍ରଧାନ ବାରମ୍ବାର କାରାବରଣ କରିଛନ୍ତି । ଶାଣିତ ହୋଇଛନ୍ତି କଠୋର ସଂଗ୍ରାମରେ । ୧୯୪୨ ମସିହା ଭାରତ ଛାଡ ଆନ୍ଦୋଳନରେ ସେ ପୁଣି କାରାବରଣ କରନ୍ତି ଏବଂ ସେଇ କାରାଗାର ଭିତରେ ସେ ସମାଜବାଦୀ ଦର୍ଶନ ପ୍ରତି ଆକୃଷ୍ଟ ହୁଅନ୍ତି । ଫାସିବାଦ ବିରୋଧୀ ଯୁଦ୍ଧରେ

ସମାଜବାଦୀ ସୋଭିଏଟ୍ ୟୁନିଅନର ଅପୂର୍ବ ବୀରତ୍ୱ ପୃଥିବୀର ବହୁ ବ୍ୟକ୍ତିଙ୍କୁ ନୂତନ ସମାଜ ଓ ସୋଭିଏଟ ୟୁନିଅନ ପ୍ରତି ଆକୃଷ୍ଟ କରେ ଏବଂ ଗୋବିନ୍ଦ ପ୍ରଧାନ ତହିଁର ବ୍ୟତିକ୍ରମ ନଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ସମାଜବାଦ ପ୍ରତି ତାଙ୍କର ଆନୁଗତ୍ୟ ଏବଂ ନିଷ୍ଠା ଅତୁଟ ରହେ । କାରାଗାରରୁ ମୁକ୍ତି ପରେ ଗୋବିନ୍ଦ ପ୍ରଧାନ ଭାରତର ମୁକ୍ତି ପାଇଁ ସଂଗ୍ରାମର ଶେଷ ପର୍ଯ୍ୟାୟରେ, ସାମନ୍ତବାଦୀ ପ୍ରଥାର ବିଲୋପ ପାଇଁ ସଂଗ୍ରାମରେ ଏବଂ ସର୍ବୋପରି ସମାଜବାଦୀ ଚିନ୍ତାଧାରା ପାଇଁ ସଂଗ୍ରାମରେ ଲିପ୍ତ ରହନ୍ତି । ବହୁ ପୂର୍ବତନ ସହଯୋଦ୍ଧା ବନ୍ଧୁମାନଙ୍କ ସହିତ ମତାନ୍ତର ଘଟିଛି । କିନ୍ତୁ ମନାନ୍ତର ହୋଇ ନାହିଁ । ନୀତି ପାଇଁ ସଂଗ୍ରାମରେ ସେ ଅବିଚଳିତ, ନିର୍ଭୀକ କିନ୍ତୁ ବ୍ୟକ୍ତିଗତ ବନ୍ଧୁତା ସେମିତି ଅତୁଟ ରହିଛି । ଗୋବିନ୍ଦ ପ୍ରଧାନ ଦଳ, ମତ, ଗୋଷ୍ଠୀର ଊର୍ଦ୍ଧ୍ୱରେ ଜନନାୟକ ପାଲଟି ଯାଇଛନ୍ତି । ସେଇପରି ଅମାୟିକ, ବନ୍ଧୁବତ୍ସଳ ସେ ରହିଯାଇଛନ୍ତି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ତାଙ୍କ ପାଇଁ ନିର୍ବାଚନ ପ୍ରଚାରରେ ଅନେକ ସମୟରେ ଦେଖାଯାଇଛି ତାଙ୍କର ସେହି ବନ୍ଧୁମାନଙ୍କୁ ଯେଉଁମାନେ ହୁଏତ ଏକ ଭିନ୍ନ ରାଜନୈତିକ ମତାବଲମ୍ବୀ । କିନ୍ତୁ ସେମାନଙ୍କୁ ଆକୃଷ୍ଟ କରିଛି ଗୋବିନ୍ଦ ପ୍ରଧାନଙ୍କ ନିଷ୍ଠା, ସାଧୁତା ଏବଂ ତ୍ୟାଗ ।

ଭାରତବର୍ଷ ସ୍ୱାଧୀନ ହୋଇଛି । ରାଜନୈତିକ ସ୍ୱାଧୀନତା ଆସିଛି ସତ୍ୟ କିନ୍ତୁ ଅର୍ଥନୈତିକ ସ୍ୱାଧୀନତା କାହିଁ ? ଅର୍ଥନୈତିକ ସ୍ୱାଧୀନତା ବିନା ରାଜନୈତିକ ସ୍ୱାଧୀନତାରେ ଲାଭ କ'ଣ ?

ଗୋବିନ୍ଦ ପ୍ରଧାନ ପାଇଁ ଆରମ୍ଭ ହେଲା ସ୍ୱାଧୀନତା ସଂଗ୍ରାମର ଦ୍ୱିତୀୟ ପର୍ଯ୍ୟାୟ । 'ଏ ଆଜାଦୀ ଝୁଟା ହୈ' ସ୍ଲୋଗାନ ମନ୍ଦ୍ରିତ ହେଲା ତାଙ୍କରି କଣ୍ଠରେ । ଏହାର ବହୁବର୍ଷ ପରେ ଜୟପ୍ରକାଶ, ନବକୃଷ୍ଣ ଚୌଧୁରୀ, ଜର୍ଜ ଫର୍ଣ୍ଣାଣ୍ଡେସ୍ ପ୍ରଭୃତି ସେଇକଥା କହିଲେ ଏବଂ କାରାବରଣ କଲେ । ଗୋବିନ୍ଦ ପ୍ରଧାନ ସାଜିଲେ ପଳାତକ । ତାଙ୍କ ନାମରେ ୱାରେଣ୍ଟ ଜାରି ହେଲା । ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ମହାରଥୀ ପୁଣି ଥରେ ସାଜିଲେ ମୁକ୍ତିସଂଗ୍ରାମୀ । କଲିକତାଠାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ଏଇ ପୃଥୁଳକାୟ ଗୋବିନ୍ଦ ପ୍ରଧାନଙ୍କୁ ଖୋଜିବା ପାଇଁ ପୁଲିସ ବାହିନୀ ଲାଗିପଡିଲେ । ହୁଲିଆ ଜାରି ହେଲା, ପୁରସ୍କାର ଘୋଷଣା ହେଲା । ବହୁ ଗଳ୍ପ କାହାଣୀ ଗଢ଼ି ଉଠିଲା ତାଙ୍କୁ କେନ୍ଦ୍ର କରି । କାରଣ ପୁଲିସ ତାଙ୍କୁ ଧରିବା ପାଇଁ ସକ୍ଷମ ହୋଇ ପାରିଲା ନାହିଁ । ଯଦିଓ ଗଞ୍ଜାମ ଜିଲ୍ଲା ଛାଡ଼ି ସେ କୁଆଡେ ଯାଇ ନାହାନ୍ତି । ମାଟିର ମଣିଷର ଶକ୍ତି ହେଉଛି ମାଟି ଆଉ ମଣିଷ, ତାକୁ ପାରିବ କିଏ ? ୧୯୪୮ ମସିହାରେ ତାକରଡା ଗୁଳିକାଣ୍ଡ ହୋଇଗଲା । କିଶୋରୀ ବାଳିକା ହେମ ଟଳିପଡିଲା ପୁଲିସ ଗୁଳିରେ, ଗୋବିନ୍ଦ ପ୍ରଧାନଙ୍କୁ ରକ୍ଷା କରିବା ପାଇଁ । ୧୯୪୫ ମସିହାରେ କିଶୋର ରାମେଶ୍ୱର ବାନାର୍ଜୀ ଟଳି ପଡିଥିଲା ପୁଲିସ ଗୁଳିରେ କିନ୍ତୁ ସୂଚନା ଦେଇଗଲା ନୂତନ

ଉଷାର ଆପଣାକୁ ରକ୍ତରେ ରଞ୍ଜିତ କରି । ଆଜି ସେଇପରି ହେମ ସମିଧ ହୋଇଗଲା ନୂତନ ଯଜ୍ଞର ମହାବେଦୀରେ । କେତେ କବିତା, ଗୀତ ଲେଖାଗଲା ଏଇ ହେମ ନାମରେ ।

''ହେମ ନାମେ ବାଳୀ ରଇତ ଦୁଲାଳୀ ତାକରଡା ପଲ୍ଲୀଗ୍ରାମେ,
କେଉଁ ଶୀତଳ ନଡିଆମାଳର ନାୟାର ସେ କୁନିରାମେ ।''

ଗୋବିନ୍ଦ ପ୍ରଧାନ ଗିରଫ ହେଲେ ଏବଂ ପୁଣି ବନ୍ଦୀ ହେଲେ ସେଇ ବ୍ରହ୍ମପୁର ଜେଲରେ, ଯେଉଁଠି ଦିନେ ତାଙ୍କର ସହଯୋଦ୍ଧା ଲକ୍ଷ୍ମଣ ନାୟକ ଫାଶିକାଠରେ ଝୁଲିଥିଲା ମୁକ୍ତିପାଇଁ, ମୁକ୍ତି ସାଧାରଣ ମଣିଷ ପାଇଁ । ସେଇ ମୁକ୍ତି ପାଇଁ ସଂଗ୍ରାମରେ ସେନାପତି ଗୋବିନ୍ଦ ପ୍ରଧାନ ବର୍ତ୍ତମାନ ପୁଣି ଥରେ କରାଗାରରେ ବନ୍ଦୀ । ଇତିହାସର କ୍ରୁର ପରିହାସ । ବନ୍ଦୀଶାଳାରେ ଗୋବିନ୍ଦ ପ୍ରଧାନ ଅନଶନ କରନ୍ତି ୫୭ ଦିନ । ସହଯୋଦ୍ଧା ସାଧୁଚରଣ, ପ୍ରାଣନାଥ, ସମସ୍ତେ ଗଲେଣି ଚାଲି । ଗୋବିନ୍ଦ ପ୍ରଧାନ ଜେଲଖାନାରୁ ଖଲାସ ହୋଇ ନିର୍ବାଚନରେ ଜୟଲାଭ କରନ୍ତି । ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି ଅନେକ ଥର । ଯେଉଁ ସଂଗ୍ରାମ ସେ ବିଧାନସଭା ବାହାରେ ପରିଚାଳିତ କରନ୍ତି ସେଇ ସଂଗ୍ରାମ ସଂପ୍ରସାରିତ ହୁଏ ବିଧାନସଭାକୁ । ସମସ୍ତେ ଶୁଣନ୍ତି ତାଙ୍କର ଭାଷଣ । ପାଣ୍ଡିତ୍ୟ ନଥାଇପାରେ କିନ୍ତୁ ନିଷ୍ଠାରେ ଶାଣିତ, ରଞ୍ଜିତ ତାଙ୍କର ଭାଷଣ । ବାକ୍‌ଚାତୁରୀ ନାହିଁ, ଅଛି ସାଧାରଣ ମଣିଷର କଥା, ତାହାରି ଭାଷାରେ । ସଂଗ୍ରାମୀ ଗୋବିନ୍ଦ ପ୍ରଧାନଙ୍କୁ କିନ୍ତୁ ଆକୃଷ୍ଟ କରି ରଖିପାରି ନାହିଁ ବିଧାନସଭା । ତାଙ୍କୁ ଅନେକ ସମୟରେ ସେଠାରେ ଘୁମନ୍ତ ଅବସ୍ଥାରେ ଦେଖାଯାଏ । ବନ୍ଧୁ ଗୋଦାବରୀଶ ମହାପାତ୍ର ନିଆଁଖୁଣ୍ଟାରେ ଲେଖନ୍ତି ।

''ଘୁମାଅ, ଘୁମାଅ, ଘୁମାଅରେ ଧନ
ଲାଟସଭା ଘରେ ଯେହ୍ନେ ଗୋବିନ୍ଦ ପ୍ରଧାନ ।''

ଗୋବିନ୍ଦ ପ୍ରଧାନ ହସନ୍ତି । କିଛି କହନ୍ତି ନାହିଁ । କାହାରି ପ୍ରତି ବ୍ୟକ୍ତିଗତ ରାଗ, ବିତୃଷ୍ଣା ନାହିଁ ।

କାଳକ୍ରମେ ବୟସ ବଢ଼ିଯାଏ । ବିଶାଳକାୟ, ପୃଥୁଳକାୟ ଦେହ । ଖାଆନ୍ତି ଯେମିତି, ଖୁଆନ୍ତି ବି ସେମିତି । ସେ ଅସୁସ୍ଥ ହୋଇଯାଆନ୍ତି । ଖସିପଡି ଗୋଡ ହାତ ଭାଙ୍ଗିଯାଏ । ବାଡିଟିଏ ଧରି ଯିବାଆସିବା କରନ୍ତି । ସମୟ ଅତିକ୍ରାନ୍ତ ହୁଏ । ସମାଜବାଦୀ ଆନ୍ଦୋଳନ ଦ୍ୱିଧା ବିଭକ୍ତ ହୁଏ । ଗୋବିନ୍ଦ ପ୍ରଧାନ ଧୀରେ ଧୀରେ ଅପସରି ଯାଆନ୍ତି ମୁଖ୍ୟ ମଞ୍ଚ ଉପରୁ । କିନ୍ତୁ ଜନସେବା ଅବ୍ୟାହତ ରୁହେ ।

ଗୋବିନ୍ଦ ପ୍ରଧାନ ଅତିଥିପରାୟଣ । ଦଳ, ମତ, ଗୋଷ୍ଠୀ, ଜୀବିକା ନିର୍ବିଶେଷରେ ସମସ୍ତେ ତାଙ୍କର ଅତିଥି ହୁଅନ୍ତି । ସେ ବସି ଖୁଆନ୍ତି, ବଳେଇ ବଳେଇ ଖୁଆନ୍ତି । ଖାଇବାଟା ଅତ୍ୟାଚାର ହୋଇଯାଏ । ପିଠା, ପଣା, ମାଛ, ମାଂସ, ଶାଗ, ବଡ଼ି, ସବୁ କିସମର ଖାଦ୍ୟ ।

ଖାଇ ପେଟ ପୂରିଯାଏ । ତଥାପି ଗୋବିନ୍ଦ ପ୍ରଧାନ ନଛୋଡ଼ବନ୍ଧା । ଏଥିରୁ ଟିକିଏ, ସେଥିରୁ ଟିକିଏ ଆଉ ଟିକିଏ । ଗୋବିନ୍ଦ ପ୍ରଧାନଙ୍କ ଭାଷା, ଆଦର ଭାଙ୍ଗି ହୁଏନା ।

ମନେ ପଡୁଚି । କେରଳର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଇ.ଏମ୍.ଏସ୍. ନମ୍ବୁଦ୍ରିପଦଙ୍କ ସାଙ୍ଗରେ ମୁଁ ଯାଇଥାଏ । ନମ୍ବୁଦ୍ରିପଦ ଖୁବ୍ ସ୍ୱଳ୍ପାହାରୀ । ଗୋବିନ୍ଦ ତାଙ୍କୁ ବଳେଇ ବଳେଇ ଖୁଆଉଥାଆନ୍ତି । ଇ.ଏମ୍.ଏସ୍ ଆଉ ନ ଖାଇବା ଦେଖି ଗୋବିନ୍ଦ ପ୍ରଧାନ ତାଙ୍କୁ କହିଲେ, କମ୍ରେଡ, ଏଇଟା ହେଉଛି ଓଡିଆ ଜାତୀୟ ଖାଦ୍ୟ । ତେଣୁ ଆପଣ ଖାଇବେ ନିଶ୍ଚୟ । ଉତ୍ତର ମିଳିଲା- ସେଇଟା ଠିକ୍ ଯେ କମ୍ରେଡ, ଜାତୀୟତା ଦୁଇ ପ୍ରକାରର । ସାମନ୍ତବାଦୀ ଏବଂ ଜନବାଦୀ । ଏଇଟା କେଉଁ ଜାତୀୟତାର ଖାଦ୍ୟ ? ହସରେ ସମସ୍ତେ ଫାଟି ପଡିଲେ । ବାଟରେ ଗାଡ଼ି ଖରାପ ହୋଇଗଲା । ଗାଡ଼ିରୁ ଓହ୍ଲାଇ ଗୋବିନ୍ଦ ପ୍ରଧାନ ଗାଡି ଠେଲିବାକୁ ଆରମ୍ଭ କଲେ । ଏହା ଦେଖି ନମ୍ବୁଦ୍ରିପଦ ମଧ ଓହ୍ଲାଇ ଗାଡ଼ି ପେଲିବାକୁ ଆରମ୍ଭ କଲେ । ଗୋବିନ୍ଦବାବୁ ତାଙ୍କୁ ବାରଣ କରିବା ଦେଖି, ନମ୍ବୁଦ୍ରିପଦ ଉତ୍ତରଦେଲେ, କମ୍ରେଡ, ଆପଣଙ୍କର ବାରଣର କାରଣ ମୁଁ ବୁଝିପାରୁ ନାହିଁ । ବୟସ, ତ୍ୟାଗ ସବୁଥିରେ ଆପଣ ମୋ'ଠାରୁ ବଡ଼ । କ'ଣ ମୁଁ ଦୈବାତ୍ ଏକ ମୁଖ୍ୟମନ୍ତ୍ରୀ ହୋଇଗଲି ବୋଲି ଆପଣ ଇମିତି ଅପମାନ କରିବେ ? ଆଉ ଆପଣଙ୍କ ଯୋଗୁଁ ମୁଁ ମୁଖ୍ୟମନ୍ତ୍ରୀ, ନା ନୁହେଁ ?

ଗୋବିନ୍ଦ ପ୍ରଧାନଙ୍କ ଘରେ ସମସ୍ତେ ଅତିଥି ହୁଅନ୍ତି । ରାଜନୈତିକ ମତବାଦ ସହିତ ତାହାର କୌଣସି ସମ୍ପର୍କ ନାହିଁ । ସେ ଅଫିସର ହେଉ ବା ସାଧାରଣ ମଣିଷ ହେଉ ସେଥିରେ ବି କୌଣସି ବାରଣ ନାହିଁ । କେହି ମଧ ସେଥିରେ ଆପତ୍ତି କରନ୍ତି ନାହିଁ । ମୋର ବନ୍ଧୁ ଚନ୍ଦ୍ରମଣି ନାୟକ ଭଞ୍ଜନଗରରେ ଏସ୍.ଡି.ଓ. । ଭୀଷଣ ନୈଷ୍ଠିକ । ଟୁର୍‌ରେ ଗଲେ ଖାଇବାକୁ ସାଙ୍ଗରେ ନିଏ । କାହାରି ଘରେ ଖାଏ ନାହିଁ । ମୁଁ ତା'ର ଅତିଥି । ସେ କିନ୍ତୁ ଗୋବିନ୍ଦ ପ୍ରଧାନଙ୍କ ଘରେ ଖାଇବାକୁ ଆପତ୍ତି କଲେ ନାହିଁ । ସାଙ୍ଗ ହୋଇ ଗଲୁ, ଖାଇଲୁ । କିନ୍ତୁ ପରଦିନ ସେ ଅନ୍ୟ ଜଣେ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ଘରକୁ ତା' ଗାଡ଼ି ନେବାକୁ ମନାକଲା ଏବଂ ଖାଇବାକୁ ନିମନ୍ତ୍ରଣ ମଧ ଏଡାଇ ଦେଲା । ମୁଁ ଏହାର କାରଣ ପଚାରିବାରୁ ସେ କହିଲା ଯେ ଗଞ୍ଜାମ ଜିଲ୍ଲାରେ ଗୋବିନ୍ଦ ପ୍ରଧାନଙ୍କ ସ୍ଥାନ ସ୍ୱତନ୍ତ୍ର, ଅନନ୍ୟ-ସାଧାରଣ । ତାଙ୍କ ଘରେ କେହି ଖାଇବାକୁ ଆପତ୍ତି କରନ୍ତି ନାହିଁ । ବରଂ ତାଙ୍କ ପାଖରୁ ନିମନ୍ତ୍ରଣ ନ ଆସିଥିଲେ ଉପରିସ୍ଥ ହାକିମ ପଚାରିବେ, ଗୋବିନ୍ଦ ବାବୁଙ୍କ ଘରେ ପତ୍ର ପଡିଲାଣି ନା ନାହିଁ ? ପତ୍ର ନ ପଡ଼ିଥିଲେ କହିବେ ତମର କିଛି ତ୍ରୁଟି ଅଛି କି ? ନହେଲେ ଏପର୍ଯ୍ୟନ୍ତ ଗୋବିନ୍ଦ ପ୍ରଧାନ ତୁମକୁ କିପରି ଡାକି ନାହାନ୍ତି ?

ଗୋବିନ୍ଦ ପ୍ରଧାନ ମାଟିର ମଣିଷ । ଅହମିକା ନାହିଁ, ଗର୍ବ ନାହିଁ, ଫୁଟାଣି ନାହିଁ । ମୋ ଶାଳୀ (ଅଳୀ) ର ବାଆଘର । ଗୋବିନ୍ଦ ପ୍ରଧାନ ସକାଳୁ ପହଞ୍ଚିଲେ । ମୁଁ ଚଉକାଟିଏ

ଆଣି ବସିବାକୁ ଦେବାରୁ ସେ ବାରଣ କରି କହିଲେ ଯେ ମୁଁ ରୋଷେଇଘରୁ ଆସେ । ଯେ ଖନ୍ଦାଶାଳରେ ପଶିଲେ ବାହାରିଲେ ରାତି ବାରଟାରେ ସମସ୍ତେ ଖାଇସାରିଲା ପରେ । ଅଥଚ ତାଙ୍କଠାରୁ ବହୁତ କନିଷ୍ଠ ବ୍ୟକ୍ତି, ନେତା ଭୋଜିଖାଇ ଗଲେଣି ଅନେକ ବେଳରୁ ।

ଗୋବିନ୍ଦ ପ୍ରଧାନ ଜାଣି ପାରିଥିଲେ ଯେ ଜୀବନର ସାୟଂକାଳ ଉପସ୍ଥିତ । ହଠାତ୍ ଦିନେ ଦିନ ଦଶଟାରେ ଗୋଟାଏ ଗାଡ଼ି ଆସି ପହଞ୍ଚିଲା । ୟୁନିଭର୍ସ ନୂଆ ଗଢ଼ା ହୋଇଥାଏ । ଆଗରୁ ଜାଣିଥିଲି ଗୋବିନ୍ଦ ପ୍ରଧାନ ଅସୁସ୍ଥ ବୋଲି । ତାଙ୍କୁ ଦେଖି ଚକିତ ହେଲି । ଗାଡ଼ିରେ ଆସିଛନ୍ତି । ସାଙ୍ଗରେ କମୋଡ୍ । କାରଣ ଝାଡ଼ା ଯାଇ ପାରୁନାହାନ୍ତି ବସିକରି । ଆପଣ ଇମିତି ଅବସ୍ଥାରେ କୁଆଡେ ? ଉତ୍ତର ମିଳିଲା, ତୁମକୁ ଦେଖିବା ପାଇଁ । ମୋତେ ? ହଁ, ତୁମକୁ । ମୋର ତିନି ଚାରିଜଣଙ୍କୁ ଦେଖିଯିବା ପାଇଁ ଇଚ୍ଛା ହେଲା । ସମୟ ହୋଇ ଆସିଲାଣି । ଦେଖିଯିବା ତୁମମାନଙ୍କୁ ଥରେ । ଶୁଣିଲି ସେ ତିନିଜଣଙ୍କୁ ଦେଖିଯିବା ପାଇଁ ଆସିଥିଲେ କଟକ, ଭୁବନେଶ୍ୱର । ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ଏବଂ ମୁଁ । ଏଇ ତାଲିକା ସେ କେମିତି ତିଆରି କଲେ, ମୁଁ ସେଇ ତାଲିକାକୁ କିମିତି ଆସିଲି ଭାବିଲେ ଆଖିରେ ଆଜି ବି ଲୁହ ଜମିଆସେ । ଖବର ପାଇଁ ସମସ୍ତେ ଦୌଡ଼ି ଆସିଲେ । ଦେଖିଲାବେଳକୁ ପୁଲିସ ଅଫିସର ଅନାଦି ସାହୁ ଓ ତାଙ୍କର ସହ ଧର୍ମିଣୀ ଟିଫିନ୍ କାରିଅର ଧରି ଆସୁଛନ୍ତି ତାଙ୍କ ପାଇଁ ଖାଦ୍ୟ ବହନକରି । ଚନ୍ଦ୍ରମଣି ନାୟକ ଆସିଛନ୍ତି । ଶ୍ୟାମସୁନ୍ଦର ମିଶ୍ର ପହଞ୍ଚିଛନ୍ତି ରିକ୍ସାରେ । ନିଜର ଅଚଳ ଅବସ୍ଥା, ତଥାପି ଆସିଛନ୍ତି ବନ୍ଧୁଙ୍କୁ ଭେଟିବା ପାଇଁ । ଗୋବିନ୍ଦ ଚନ୍ଦ୍ର ମହାନ୍ତି ପ୍ରଭୃତି ଦଳେ ସମାଜବାଦୀ । ଲୋକ ଭିଡ଼ ଜମି ଉଠୁଛି । ଗୋବିନ୍ଦବାବୁ ହସୁଛନ୍ତି ଛୁଆଙ୍କ ଭଳି । ମିଠା ଖାଉଛନ୍ତି, ଯଦିଓ ସେ ବହୁମୂତ୍ର ରୋଗୀ । ମନେହେଲା ଯେ ନା ଆଉ ବେଶି ଦିନ ନୁହେଁ । ସତକୁ ସତ ସେଇଆ ହେଲା ।

ଗୋବିନ୍ଦ ପ୍ରଧାନ ଆଖି ବୁଜିଦେଲେ । ଆସ୍କାରେ ଠିଆ ହୋଇଛି ବିରାଟ ତିନି କାରଖାନା । ଯେଉଁଦିନଠାରୁ ଗୋବିନ୍ଦ ପ୍ରଧାନ କାରଖାନା ବୁଝିଛନ୍ତି ସମ୍ପ୍ରସାରିତ ହୋଇଛି ଆଖୁଚାଷ । ଆଉ ଆଖୁ ନିଅଣ୍ଟ ହୋଇ ନାହିଁ । କାରଖାନା ଲାଭରେ ଚାଲିଛି । ଗୋବିନ୍ଦ ପ୍ରଧାନ ଥିଲେ ଚାଷୀ । ଚାଷୀ ବୋଲି ସେ ଗର୍ବିତ ଥିଲେ ଏବଂ ସମଗ୍ର ପରିବାର ଚାଷକାର୍ଯ୍ୟକୁ ଗ୍ରହଣ କରିଥିଲେ କେବଳ ଜୀବିକା ପାଇଁ ନୁହେଁ, ଦେଶର ବିକାଶ ପାଇଁ ମଧ୍ୟ । ଆସ୍କା ତିନି କାରଖାନାର ପୂର୍ବତନ ଆଖୁ ବିକାଶ ଅଫିସର ବିନୟ କୁମାର ପଟ୍ଟନାୟକ ଲୋତକଭରା ଆଖିରେ ସ୍ମରଣ କରନ୍ତି ।

କେହି ରହିବେ ନାହିଁ । ସମସ୍ତଙ୍କୁ ଯିବାକୁ ହେବ । କିନ୍ତୁ ଗୋବିନ୍ଦ ପ୍ରଧାନଙ୍କ ପରି କ୍ଲାସିକାଲ କଲୋସସ୍ ମିଳିବେ କେତୋଟି ?

□□□

# ଅନନ୍ତ ପଥର ପଥିକ ଗୋବିନ୍ଦ

## (୰ ଗୋବିନ୍ଦ ଚନ୍ଦ୍ର ସେନାପତି)

ମଲାଜହ୍ନ ଉପନ୍ୟାସ । ଲେଖକ ଉପେନ୍ଦ୍ର କିଶୋର ସତୀକୁ ଛାଡ଼ିଆସନ୍ତି ସେଇଠି ଏକାକୀ । ସେ ଯିବ କୁଆଡ଼େ ? ଉପନ୍ୟାସର ସମାପ୍ତି ସେଇଠି ଘଟିଛି । ଚଳଚିତ୍ର ପାଇଁ ସଂଳାପ ଲେଖିବାକୁ ଯାଇ ଡାକ୍ତର ଗୋବିନ୍ଦ ସେନାପତି ଅଟକିଗଲେ । ସତରେ ତ ! ସତୀ ଏକୁଟିଆ ଯିବ କୁଆଡେ ? ସେ ପଚାରିଲେ ଲେଖକଙ୍କୁ । ଏକ ଇଣ୍ଟରଭିଉ । ଚଳଚିତ୍ରରେ ସେଇପରି ରହିଗଲା । ସତୀ ଏକୁଟିଆ ଚାଲିଗଲା କୁଆଡେ ?

ଲେଖକ ଗୋବିନ୍ଦ ଆଜି ଏକୁଟିଆ ଚାଲିଗଲା । ସମସ୍ତଙ୍କୁ ଠକିଦେଇ । ରୋଗୀ ଅପେକ୍ଷା କରିଛନ୍ତି । ଅପେକ୍ଷା କରିଛନ୍ତି କେତେ ମାଆ, କ୍ରନ୍ଦନରତ ଶିଶୁକୁ କୋଳରେ ଧରି । ଅପେକ୍ଷା କରିଛନ୍ତି ବନ୍ଧୁ, ସ୍ୱଜନ, ପରିବାର । ସମସ୍ତଙ୍କୁ ଠକିଦେଇ ସେ ଖସି ପଳେଇଛି ଆରାମରେ ।

ଲୁହର ଢେଉ ମଥା ପିଟୁଛି । ମଥା ପିଟୁଛି ଭଉଣୀ ରାଧା । ମଥା ପିଟୁଛି କନ୍ୟା ସଂଘମିତ୍ରା । ଆଉ ସହଧର୍ମିଣୀ ସ୍ନେହାଞ୍ଜଳି ତ ପଥର ପାଲଟି ଯାଇଛନ୍ତି । ସ୍ନେହର ଅଞ୍ଜଳି ଥିଲେ ସେ ସ୍ୱାମୀଙ୍କର । ଏକ ବେନିୟମ ବିବାହରେ ସେ ପିତାମାତା ପରିବାରକୁ ଛାଡ଼ି ହାତ ଧରିଥିଲେ ତାଙ୍କର ସହପାଠୀଙ୍କର । ତାଙ୍କର ତ୍ୟାଗ ସ୍ୱାମୀ ଭୁଲି ନଥିଲେ । ତାଙ୍କୁ କିଛି କହିବାକୁ ଦେଇ ନାହାନ୍ତି । ସବୁ ନିଜେ ବୁଝିଛନ୍ତି । ଆଉ ଆଜି ହଠାତ୍ ସବୁ ତାଙ୍କ ଉପରେ ଲଦିଦେଇ ସେ ଖସିଯାଇଛନ୍ତି ଆଉ କେଉଁ ଏକ ଦୁର୍ବାର ଡାକରାରେ । କ'ଣ ସେଠି ଶିଶୁର କ୍ରନ୍ଦନ, ଗର୍ଭିଣୀ ନାରୀର ପ୍ରସବ ବେଦନା, ସଦ୍ୟଜାତ ଶିଶୁର ରୋଳ ବେଶି ନା କ'ଣ ? ତା'ହେଲେ ମୋତେ ନେଇଗଲେ ନାହିଁ, ମୁଁ ତ ବି ଡାକ୍ତର । ଏଠି ଥିଲି ତାଙ୍କ ପାଖରେ । ସେଠି ବି ରହିଥାଆନ୍ତି । କିଏ ଦେବ ଉତ୍ତର ? ଭିଡ଼ ଜମିଛି । ସମସ୍ତେ ମୁହ୍ୟମାନ । ନୀରବ । ଇଃ । କି ନୀରବତା । ଖାଲି ମଝିରେ ମଝିରେ ତୁହାକୁ ତୁହା କାନ୍ଦର ଢେଉ ।

ଗୋବିନ୍ଦ ଶୋଇ ରହିଛି । ମୁହଁରେ ଲାଖିରହିଛି ସେଇ ଦୁଷ୍ଟ ହସ । ଡାକ୍ତରମାନେ କହୁଛନ୍ତି ହାର୍ଟ ଆଟାକ୍ । କିନ୍ତୁ କାଇଁ, ଯନ୍ତଣାର ଲେଶମାତ୍ର ଚିହ୍ନ ନାହିଁ । କ'ଣ ଫାଜିଲାମି କରୁଛି ନା କ'ଣ ସମସ୍ତଙ୍କ ସାଙ୍ଗରେ । ମରିଗଲେ କାର କ'ଣ ପ୍ରତିକ୍ରିୟା ହେଉଛି, ତାକୁ ଦେଖିବା ପାଇଁ ସେ କ'ଣ ଯୋଗନିଦ୍ରା ସାଜୁଛି ? ଇମିତି ନବଜିଆ ଥିଲା ସେ ସବୁଦିନେ । ନାଟକ ହେଉଥିଲା ମେଡିକାଲ କଲେଜରେ । ଲେଖିଥିଲା ଅକଳନ୍ତି ନାଟକ । ତା' ଭିତରୁ ପୃଥକ ପୃଥିବୀ ଅନ୍ୟତମ । ଆଜି ସେଇ ପୃଥିବୀରୁ ସେ ପୃଥକ ହୋଇଯାଇଛି । ପଛରେ ରହିଯାଇଛନ୍ତି ସମସ୍ତେ । ଏଇମାନଙ୍କ ସହିତ ତାର ନିବିଡ ପରିଚୟ ରହିଥିଲା ସବୁଦିନ । ଆଉ ସେଇ ସବୁକୁ ଛିଣ୍ଡାଇ ସେ ଚାଲିଯାଇନି । ଡାକ୍ତର ଅମର ମିଶ୍ର ହେଜୁଛନ୍ତି ରେଭେନ୍ସା କଲେଜର ଦିନ ଗୁଡିକୁ ସେହିପରି ହେଜୁଛନ୍ତି ପୋଲିସ୍ ଅଫିସର ବନବିହାରୀ ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସକୁ, ଅଭିନେତା ହେମନ୍ତ ଥରି ଥରି ପଖାଳୁଛନ୍ତି କେତେ ନାଟକର ସ୍ମୃତି । ମଙ୍ଗଳାବାଗର ପାନଦୋକାନୀ ଦୋକାନ ବନ୍ଦ କରିଦେଇଛି । ପାନଖିଆ ସେଇ ବାବୁ ଆଉ ଗାଡି ରଖି ପାନ ଖାଇବେ ନାହିଁ । ଗୋବିନ୍ଦ ଆଉ ଆସିବ ନାହିଁ ସକାଳୁ ସାଇକେଲରେ, କି ଉଦୁଉଦିଆ ଦି'ପହରରେ ମୋଟରଗାଡ଼ିରେ । ସୋଫା ଉପରେ ଶୋଇପଡି ଘୁଂଗୁଡି ମାରିବ ନାହିଁ । କପରେ ନୁହେଁ ଗିଲାସରେ ଚା' । ସୁଭାଷ ଆଖିରୁ ଲୁହ ଝରୁଛି । ମହେନ୍ଦ୍ର ଦୋକାନ ବନ୍ଦକରି ଦେଇଛନ୍ତି । କାନ୍ଧରେ ବୋହିନେବା ପାଇଁ ଗୋବିନ୍ଦକୁ ।

ଗୋବିନ୍ଦ ଡାକ୍ତର ଥିଲା । ଥିଲା ଲେଖକ, ଅଭିନେତା ଏବଂ ସର୍ବୋପରି ବନ୍ଧୁବତ୍ସଳ । ରାତି ଅଧ ହେଉ, ବରଷା ରାତି ହେଉ, ଶୀତ ପାହାନ୍ତି ହେଉ । ଭରସା ଥିଲା ଗୋବିନ୍ଦ ଅଛି । ଯେତେବେଳେ ଡାକ ସେତେବେଳେ ଆସିବ । ନିଶ୍ଚୟ ଆସିବ । ସେ ଅଛି, ଆଉ ଆସିବ ନାହିଁ ? କିନ୍ତୁ ଆଜି ତ ସେ ଆଉ ନାହିଁ ? ଡାକିଲେ କ'ଣ ସତରେ ଆସିବ ନାହିଁ ସେ ?

ଡାକ୍ତର । ଔଷଧ କିନ୍ତୁ ଖୁବ୍ କମ୍ ଦିଏ । ବେଶି ଦିଏ ଭରସା । ବିଚାରପତି ଲିଙ୍ଗରାଜ ରଥ ଶ୍ମଶାନରେ ସେଇ କଥା ହେଜୁଥିଲେ । ଆମ ପୀଢ଼ିର ବେଳ ଆସିଗଲା । ଗୋବିନ୍ଦ ତାହାରି ସୂଚନା ଦେଇଗଲା । ଅନ୍ୟମାନଙ୍କୁ ପ୍ରସ୍ତୁତ ରହିବାକୁ କହିଗଲା । ଦୁଃଖ କଣ ଜାଣି ନଥିଲା । ସବୁ ଦୁଃଖ, ଗ୍ଳାନିକୁ ତ ସେ ନୀଳକଣ୍ଠ ଭଳି ପାନକରି ଯାଇଛି । କ'ଣ ଦୁଃଖ, ଖାଲି ସେଇ ମୁରୁକି ହସ । ମନମତାଣିଆ ହସ । କାହାରି ସହିତ ତ ଶତ୍ରୁତା ନଥିଲା । ନା ବ୍ୟକ୍ତିଗତ ନା ପ୍ରଫେସନାଲ । ତାହେଲେ କ'ଣ ହେଲା ତାର ? ବନ୍ଧୁ ଡାକ୍ତର ତେଜେଶ୍ୱର

ସେଇ କଥା ହେଜୁଛନ୍ତି । ସେ ହେଉଛନ୍ତି ତାର ଶେଷ ଭିଜିଟର । ସେଇ ଗଳ୍ପ, ସେଇ ହସ । ଆଉ ମାତ୍ର କେଇଟା ମୁହୂର୍ତ୍ତ ପରେ ସବୁ ନୀରବ, ସବୁ ନିସ୍ପନ୍ଦ ।

ଗୋବିନ୍ଦ ସେନାପତି ଆଉ ନାହାନ୍ତି । କେହି ରହିବେ ନାହିଁ । କିନ୍ତୁ ସେ ଏତେ ଆଗରୁ ଗଲେ କାହିଁକି ? ସେ ଅନନ୍ତ ପ୍ରଶ୍ନର ଉତ୍ତର ମିଳି ନାହିଁ । ଏହି ଉତ୍ତର ଖୋଜିବାକୁ ଯାଇ ରାଜପୁତ୍ର ଗୌତମ ପାଲଟିଲେ ବୁଦ୍ଧ । ଗୋବିନ୍ଦ କ'ଣ ସେହିଯାଗୁଁ ତାର ପୁଅ ନାଁ ଦେଇଥିଲା ସିଦ୍ଧାର୍ଥ । ସଂଘକୁ ଭଲ ପାଉଥିଲା ବୋଲି ଝିଅ ନାଁ ଦେଇଥିଲା ସଂଘମିତ୍ରା । ଆଉ ସେଇ ସଂଘକୁ ଛାଡି ଗୋବିନ୍ଦ ଏକୁଟିଆ ଚାଲିଗଲା କୁଆଡେ ?

ଗୋବିନ୍ଦ, ତମକୁ ଡାକୁଛି ରେଭେନ୍‌ସା କଲେଜର ପଶ୍ଚିମ ଛାତ୍ରାବାସ, ଡାକୁଛି ମେଡିକାଲ ହଷ୍ଟେଲ, ଡାକୁଛି ରବି ମିଶ୍ର ଦୂରଦର୍ଶନ କେନ୍ଦ୍ରରୁ, ଡାକୁଛି ହେମନ୍ତ ଆକାଶବାଣୀରୁ, ମଙ୍ଗଳାବାଗର ପାନଦୋକାନୀ ଡାକୁଛି, ଡାକୁଛି 'ମଲାଜହ୍ନ' । ଡାକୁଛି 'ମୁକ୍ତି' । ଫେରିଆସ ଗୋବିନ୍ଦ ଫେରିଆସ । ଯିବାର ସମୟ ହୋଇ ନାହିଁ ।

ନା, ଗୋବିନ୍ଦ ସେନାପତି ଆଉ ଫେରିବ ନାହିଁ । କିନ୍ତୁ ଦେଖାହେବ ତା' ସାଥୀରେ ପୁଣି । ଆଉ ପଚାରିବି- କିମିତି ଚାଲିଆସିଲୁ ଆଗରୁ ? କ'ଣ ଦେବ ତାର ଉତ୍ତର ଗୋବିନ୍ଦ । ଅସନା ଶ୍ମଶାନ । ଚେକା ଚେକା ଜହ୍ନ ଆଲୁଅ । ରଡ ନିଆଁର ଧାସ । ଗୋବିନ୍ଦ ମୁହଁରେ ସେଇ ହସ, ସେଇ ମିଶଚିଭିଅସ ହସ ଲାଖିରହିଛି । ସେ ଆଉ ଫେରିବ ନାହିଁ ।

❑❑❑

# ସେଇ ଆଖି ସେଇ ଭାଷା

*(୰ ଗୋଲକ ବିହାରୀ ବାନାର୍ଜୀ)*

ସାର୍‌, ଗୋଲକ ବିହାରୀ ବାନାର୍ଜୀଙ୍କ ଉପରେ ଆପଣଙ୍କର ମତ କ'ଣ ? ମୁଁ ପଚାରିଲି ଡକ୍ଟର ସଦାଶିବ ମିଶ୍ରଙ୍କୁ । ସେ ତାଙ୍କର ସ୍ୱଭାବ ସୁଲଭ ଭାଷାରେ କହିଲେ ସେ ହେଉଛନ୍ତି ରେଭେନ୍‌ସା କଲେଜର ଶେଷ ପ୍ରିନ୍‌ସିପାଲ । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ସାର୍‌, ଆପଣ ପରା ତା'ପରେ ପ୍ରିନ୍‌ସିପାଲ୍‌ ହେଲେ ରେଭେନ୍‌ସା କଲେଜରେ ? ସାର୍‌ ପୁଣି ତାଙ୍କର ସ୍ୱଭାବ ସୁଲଭ ଶାଣିତ ଭାଷାରେ କହିଲେ ମୁଁ ତୁମକୁ କ'ଣ କହିଲି ତମେ ଶୁଣିପାରିଲ ନାହିଁ କି ? ସେ ହେଉଛନ୍ତି ଶେଷ ପ୍ରିନ୍‌ସିପାଲ ।

ଗୋଲକ ବିହାରୀ ବାନାର୍ଜୀ ପୁରୀ, ସମ୍ବଲପୁର ଏବଂ ରେଭେନ୍ସା କଲେଜରେ ପ୍ରିନ୍‌ସିପାଲ ଥିଲେ । ରେଭେନ୍‌ସା କଲେଜରେ ପଦାର୍ଥ ବିଜ୍ଞାନରେ ଅଧ୍ୟାପକ ମଧ୍ୟ ଥିଲେ । ଗଲା ସପ୍ତାହରେ ତାଙ୍କର ପରଲୋକ ହୋଇଗଲା କଟକ ବଡ଼ ଡାକ୍ତରଖାନାରେ । ଗୋଲକ ବିହାରୀ ବାନାର୍ଜୀ ପ୍ରବଳ ପ୍ରତାପୀ ମଣିଷ । କଣ୍ଠରୁ ଶବ୍ଦ ନିର୍ଗତ ହୁଏ ହୋସ୍‌ ପାଇପରୁ ପାଣି ବାହାରିଲା ପରି । ଆଖି ଦୁଇଟା ମନ୍ଦାର ଫୁଲ ପରି ଲାଲ । ପ୍ରୋଟ୍ରୁଡିଙ୍ଗ ଏବଂ ବିଶାଳ । ଅନେଇଦେଲେ ଭୟ ହୁଏ । ହାତରେ ସବୁବେଳେ କ୍ୟାଭେଣ୍ଡର୍ସ ସିଗାରେଟ ଟିଣ । କୁହାଯାଏ ସବୁବେଳେ ସେ ଦୁଇ ଚାରି ପେଗ୍‌ ହୁଇସ୍କିରେ ମସ୍‌ଗୁଲ୍‌ ଥାଆନ୍ତି । ଚାଲନ୍ତି ବାଘ ପରି । ସେ ଯାହା କହନ୍ତି ତାହା ଆଇନ୍‌ । ପ୍ରିନ୍‌ସିପାଲ ପଦବୀକୁ ସେ ସମ୍ମାନ ଦେଇ ଜାଣନ୍ତି । ମୁଁ ପ୍ରିନ୍‌ସିପାଲ, ମୁଁ ପିଲାଙ୍କର ଗାର୍ଡିଆନ । କଲେଜ ଭିତରେ ମୋର ହୁକମ ସୁପ୍ରିମ୍‌, ଫାଇନାଲ । ଏଇଭଳି ଏକ ପ୍ରିନ୍‌ସିପାଲଙ୍କ ପରଲୋକରେ ଯେଉଁ ଶୋଭାଯାତ୍ରା ଯାଉଥିଲା ସେଇପରି ଏକ ଶୋଭାଯାତ୍ରା ଅଭୂତପୂର୍ବ ! ଭବିଷ୍ୟତରେ ମଧ୍ୟ କୌଣସି ପ୍ରିନ୍‌ସିପାଲଙ୍କ ପାଇଁ ଏଭଳି ଶୋକାର୍ତ୍ତ ଶୋଭାଯାତ୍ରା ଉତ୍ସବ ହେବ କି ନାହିଁ ସନ୍ଦେହ । ରେଭେନ୍‌ସା କଲେଜର ସବୁ ଉପସ୍ଥିତ ଛାତ୍ର ଛାତ୍ରୀ, ଅଧ୍ୟାପକ ଅଧ୍ୟାପିକା, କର୍ମଚାରୀମାନେ ଏଇ ଶୋଭାଯାତ୍ରାରେ ଥିଲେ, ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ । ସବୁଠାରୁ ଆଶ୍ଚର୍ଯ୍ୟର କଥା ଗୋଲକ ବିହାରୀ ବାନାର୍ଜୀଙ୍କଦ୍ୱାରା ଏକଦା ଦଣ୍ଡିତ ଛାତ୍ରଛାତ୍ରୀମାନେ କାନ୍ଦି କାନ୍ଦି ଯାଉଥିଲେ ଶୋଭାଯାତ୍ରାରେ । ମେଡିକାଲରୁ ଖାନନଗର । ପ୍ରବଳ ଜନ ସମାଗମ ।

କ'ଣ ଥିଲା ବିଶେଷତ୍ୱ ଏଇ ମଣିଷର, ଏଇ ଅଧ୍ୟାପକର, ଏଇ ପ୍ରିନ୍ସିପାଲର ? ଏଇ ମଣିଷ ପାଇଁ କାହିଁକି ଏତେ ଲୁହ, ଏତେ କାନ୍ଦ ?

ସମସ୍ତେ କହୁଛନ୍ତି ।

ପୁରୀ କଲେଜରେ ଧର୍ମଘଟ । ପ୍ରିନ୍ସିପାଲ ଗୋଲକ ବିହାରୀ ବାନାର୍ଜୀ । ସ୍ଲୋଗାନ ଦେଉଛନ୍ତି ଛାତ୍ରନେତା ବ୍ରଜବନ୍ଧୁ, ଅଖିଳ ମୋହନ । ଗୋଲକ ବାନାର୍ଜୀ ଗୁଣ୍ଡା ହୈ । ପଛପଟୁ ହଠାତ୍ ଦୁଇଟା ବଳିଷ୍ଠ ହାତ ସେମାନଙ୍କର ବେକ ଓ କଲର ଧରିଛି । ହାତ ଦୁଇଟା ଗୋଲକ ବିହାରୀ ବାନାର୍ଜୀଙ୍କର । ଠେଲି ଠେଲି ଦୁଇଜଣଙ୍କୁ ନେଇଗଲେ ଆପଣା ଅଫିସକୁ । ପିଅନକୁ ଡାକି ହୁକୁମ ଦେଲେ କବାଟ ବନ୍ଦ କରିବାପାଇଁ । ସିଟ୍ ଡାଉନ୍ । ପ୍ରିନ୍ସିପାଲଙ୍କ କଣ୍ଠରୁ ନିର୍ଗତ ବଜ୍ର ଭଳି ଆବାଜ । ବୟ, ବ୍ରିଙ୍ଗ ଥ୍ରୀ କପ୍ସ ଅଫ୍ ଟି । ଚା ଆସିଲା । ହୁକୁମ ହେଲା ଚା ଖାଅ, ବହୁତ ଗର୍ଜିଛ । ଚା ପାନ ସରିଲା । ପ୍ରିନ୍ସିପାଲ ହୁକୁମ ଦେଲେ । ଉଠ, ଗେଟ୍ ଆଉଟ୍ । ଗୋଲକ ବିହାରୀ ବାନାର୍ଜୀ ଗୁଣ୍ଡା ହୈ । ହାଃ, ହାଃ, ହାଃ । ସେ ସ୍ଲୋଗାନ ବନ୍ଦ ହୋଇଗଲା । ବ୍ରଜ ଭାଇନା କାନ୍ଦୁଛି ।

କାନ୍ଦୁଛନ୍ତି ଅଧ୍ୟାପକ ସର୍ବେଶ୍ୱର ଦାସ । ୧୯୫୧ ମସିହା ଛାତ୍ର ଧର୍ମଘଟ । ପୋଲିସ ଲାଠି ଚାର୍ଜ କରୁଛି । ହୋସ୍ ପାଇପରୁ ପାଣି ଛାଡୁଚି ପିଲାଙ୍କ ଉପରେ । ସର୍ବେଶ୍ୱର ବାବୁ ଛାତ୍ର-ପ୍ରବଣ, ଭାବପ୍ରବଣ । ପିଲାଙ୍କୁ ରକ୍ଷା କରିବା ପାଇଁ ଡେଇଁ ପଡିଛନ୍ତି ପୁଲିସ କର୍ଡନ ଭିତରକୁ । ଭୁଲି ଯାଇଛନ୍ତି ସେ ସରକାରୀ ଚାକିରି କରିଛନ୍ତି ବୋଲି । ପୁଲିସ ଲାଠିରେ ମୁଣ୍ଡ ଫାଟି ଯାଇଥାଆନ୍ତା । ପଛପଟରୁ ଦୌଡି ଆସି ଧରି ନେଇଛନ୍ତି ଗୋଲକ ବିହାରୀ ବାନାର୍ଜୀ । ଛାତ୍ରମାନଙ୍କ ଉପରେ ପୁଲିସର ବର୍ବର ଲୀଳା ଦେଖି ଅସହ୍ୟ ହୋଇ ଉଠିଛି ତାଙ୍କର ହୃଦୟ । କଥା ସିନା ପଥର ଭଳି କଠୋର; କିନ୍ତୁ ହୃଦୟ ଫୁଲ ପରି କୋମଳ । ଛାତ୍ରମାନଙ୍କ ଉପରେ ପୁଲିସ ଅତ୍ୟାଚାର ପରେ ସେ ଆଉ ପୁଲିସକୁ ସାହାଯ୍ୟ କରିନାହାନ୍ତି । ତତ୍କାଳୀନ ଏମ.ଏଲ.ଏ. ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ରଙ୍କୁ ବାହାର କରି ଦେଇଛନ୍ତି ନିଜ କୋଠରୀରୁ । ବିପଦ ଆସିବ, ଆସୁ । କିନ୍ତୁ ଗୋଲକ ବିହାରୀ ବାନାର୍ଜୀ ପ୍ରିନ୍ସିପାଲ, ସୁପ୍ରିମ, ହେଡ୍ ଅଫ୍ ଦି କଲେଜ ।

ଗୋଲକ ବିହାରୀ ବାନାର୍ଜୀ ହୁଇମ୍‌ଜିକାଲ । ଗାଁରୁ ଆସିଛି ଗରିବ ପିଲାଟିଏ । ଠିଆହୋଇଛି କଲେଜ ଅଫିସ ପାଖରେ । ଟଙ୍କା ହେଉନି । କାନ୍ଦୁଛି । ଗୋଲକ ବିହାରୀ ବାନାର୍ଜୀ ସେଇ ବାଟ ଦେଇ ଗଲାବେଳେ ଆଖି ପଡିଛି । ପିଲାଟିଏ କାନ୍ଦୁଛି । ତାଙ୍କ କଲେଜରେ । କାହିଁକି କାନ୍ଦୁଛି ? ବାନାର୍ଜୀ ସାହେବ ଅଟକି ଗଲେ । ଶୁଣିଲେ ସବୁ କଥା । ନିଜ ହାତରୁ ଟଙ୍କା ଦେଇ ନାଁ ଲେଖାଇ ଦେଲେ କଲେଜରେ । ହଷ୍ଟେଲରେ ମଧ ନାଁ ଲେଖା ହୋଇଗଲା । ହେଡ୍ କ୍ଲର୍କ ଆପତ୍ତି କଲେ । ତା'ର ତ ନମ୍ବର ନାହିଁ ହଷ୍ଟେଲରେ ରହିବାପାଇଁ । କିମିତି ରହିବ ? ତାର ଦାରିଦ୍ର୍ୟ ନମ୍ବରକୁ ଆପଣ ମିଶାଇ ନାହାନ୍ତି । ସେଇଟା ମିଶାଇଦେଲେ ତା'ର ନମ୍ବର ହୋଇଯିବ । ବାନାର୍ଜୀ ଚାଲିଯାଇଛନ୍ତି ଦୂରକୁ । କେହି ପାଟି

ଫିଟାଇ ପାରିବ ନାହିଁ । କାରଣ କୌଣସି ସ୍ୱାର୍ଥ, ଆବିଳତା ସଂକୀର୍ଣ୍ଣ ଦୃଷ୍ଟିକୋଣ ନାହିଁ ଏହି ମଣିଷର ? ଆପତ୍ତି କିଏ କରିବ, କାହିଁକି କରିବ ?

ଜେଲଖାନା, ପଳାତକ ଜୀବନ ଛଅ ବର୍ଷ ପରେ ମୁଁ ପୁଣି ପହଞ୍ଚିଛି ରେଭେନ୍ସାରେ ଆଇ.ଏ. ପଢ଼ିବା ପାଇଁ । ସାଙ୍ଗମାନେ ଶିକ୍ଷକ ହୋଇଗଲେଣି । ଭାବିଲି କାଜୁଆଲ ଷ୍ଟୁଡେଣ୍ଟ ହେଲେ କିମିତି ହେବ ? ଆଗରୁ ତ ଦୁଇ ବର୍ଷ ପଢ଼ିଛି । ପୁଣି ଥରେ ହାଜିରା ପକାଇବା ପାଇଁ ଇଚ୍ଛା ନାହିଁ । ବ୍ରଜ ଭାଇନା ମୋତେ ନେଇ ପହଞ୍ଚିଲେ ପ୍ରିନ୍ସିପାଲ ଗୋଲକ ବିହାରୀ ବାନାର୍ଜୀଙ୍କ ପାଖରେ । କେବଳ କହି ନାହାନ୍ତି ଯେ ମୁଁ ସଦ୍ୟ ଫେରିଛି ଜେଲଖାନାରୁ । ମୋ ଦେହ ଖରାପ କଥା କହିବେ । ପ୍ରିନ୍ସିପାଲ କହିଲେ କାଜୁଆଲ ଷ୍ଟୁଡେଣ୍ଟସିପ୍ କେବଳ ଝିଅ ପିଲାଙ୍କ ପାଇଁ । ପୁଅ ପିଲାଙ୍କ ପାଇଁ ନୁହେଁ । ତମେ କାଲି ଆସ ନିଷ୍ପତ୍ତି କରି ଯେ ତମେ ପ୍ରାଇଭେଟ ପରୀକ୍ଷା ଦେବ ନା ରେଗୁଲାର କଲେଜରେ ପଢ଼ିବ ।

ସେ ଥରେ କହିଦେବା ମାନେ ସେଇଟା ଆଇନ୍ । ଆଉ ବଦଳିପାରିବ ନାହିଁ । ଫେରିଲୁ ସେଦିନ । ତା'ପର ଦିନ ମୁଁ ଏକାକୀ ଗଲି । ମେଘଗର୍ଜନ ପରି ଶୁଭିଲା କଣ୍ଠ । କ'ଣ ନିଷ୍ପତ୍ତି କଲ ? ବାଧହୋଇ କହିଲି ଯେ ମୁଁ ରେଗୁଲାର ହୋଇ ପଢ଼ିବି । କିନ୍ତୁ ତମର ଯେ ଦେହ ଖରାପ ? ଶୁଣ, ତମ ପାଇଁ ମୁଁ କବିରାଜୀ ଔଷଧ ଆଣିଛି । ନିଅ ଏହାକୁ ଖାଇବ । ଏଥିରେ ଏଲୋପାଥିକ ଔଷଧ ପରି ସାଇଡ୍ ଏଫେକ୍ଟ ନାହିଁ । ହଁ, ହ୍ୱାଟ୍ ଡୁ ଇଉ ଥିଙ୍କ୍ ? ସାର୍, ଆଇ ଥିଙ୍କ୍..... । କଥା ନ ସରୁଣୁ ସେ ପଟରୁ ଶୁଭିଲା ବଟ୍ ଆଇ ଥିଙ୍କ୍ ଦାଟ୍ ୟୋର୍ କେଶ୍ ସୁଡ୍ ବି ଟ୍ରିଟେଡ୍ ଆଜ୍ ଏ ସ୍ପେଶାଲ କେଶ୍ । ଯାଅ, ନାଁ ଲେଖାଅ କାଜୁଆଲ ଛାତ୍ର ଭାବରେ । ଦରଖାସ୍ତ ଫର୍ମ କାହିଁ ? ଦରଖାସ୍ତ ଫର୍ମ ତାଙ୍କରି ପାଖରେ ଥିଲା । ମୁଁ ଭାବିଲି ବୁଢ଼ା କି ସବୁଯାକ ପଢ଼ିବ ? ଫର୍ମର ଶେଷ ପାରାରେ ଲେଖା ହୋଇଛି (While appearing in the I.A. Examination I was compelled to drop from the midst of it.)

କାହିଁକି ତମେ ପରୀକ୍ଷା ମଝିରୁ ଡ୍ରପ୍ କଲ ? ଯାଏ କୁଆଡେ ମୁଁ ? ପରୀକ୍ଷା ହଲର ଗେଟ୍ ପାଖରୁ ଯେ ମୋତେ ଗିରଫ କରି ନିଆଯାଇଛି ତା' ମୁଁ ଲେଖି ନାହିଁ ଜାଣିଶୁଣି । କିନ୍ତୁ ବର୍ତ୍ତମାନ ? କହିବି ନା କହିବି ନାହିଁ ? ପଡିଲି ଅଡୁଆରେ । ସ୍ଥିର କଲି ସତ କହିବି । କାରଣ ମିଛ କହିଲେ ଗୋଲକ ବାନାର୍ଜୀ ପାଖରେ ରକ୍ଷା ନାହିଁ ।

ବାଧ ହୋଇ କହିଲି । ସାର୍, ମୁଁ ଗିରିଫ ହୋଇଗଲି ପରୀକ୍ଷା ହଲ୍ ଗେଟ୍ ପାଖରୁ । ପ୍ରିନ୍ସିପାଲ ମୋତେ ଅନେଇଲେ ତାଙ୍କର ସେଇ ବାଘ ଅଖିରେ । ଗିରଫ ? କାହିଁକି ? କ'ଣ କରିଥିଲ ତମେ ? ସାର୍, କାରଣ କ'ଣ ମୁଁ ଜାଣିନାହିଁ । ମୋତେ ପ୍ରତିରକ୍ଷା ଆଇନରେ ଅଟକ ରଖା ଯାଇଥିଲା । କେତେଟା ପେପର ବାକି ଥିଲା ? ଆଉ ଯୋଡ଼ିଏ ପେପର୍ ମାତ୍ର, ଦିନଟାଏ । ମାତ୍ର ଗୋଟାଏ ଦିନ ତମକୁ ବାହାରେ ରଖିଲେ ସମଗ୍ର ରାଷ୍ଟ୍ରରେ ବିପ୍ଳବ

ହୋଇଯାଇଥାନ୍ତା ? ଷ୍ଟ୍ରେଞ୍ଜ । ବୟସ କେତେ ହୋଇଥିଲା ? ଷୋହଳ ମାତ୍ର । ଷୋହଳ ବର୍ଷ ବୟସ, ମାତ୍ର ଗୋଟାଏ ଦିନ.... ସେ ଗୁଣୁ ଗୁଣୁ ହେଲେ । ତମେ ତ ଏତେ ବିପଜ୍ଜନକ ଦେଖାଯାଉ ନାହଁ । ତା'ହେଲେ ତୁମକୁ ଆଡ୍‌ମିସନ୍ ଦେଇ ମୁଁ କଲେଜକୁ ଗଣ୍ଡଗୋଳ ବରଣକରି ଆଣୁଛି ?

ନୋ, ସାର୍ ।

ୟେ, ୟେସ୍ ସାର୍ ।

ନୋ, ସାର୍ ।

ୟେ, ୟେସ୍ ସାର ।

ୟଙ୍ଗମାନ୍, ୟୁ ଆର୍ ୟଙ୍ଗ୍ । ଇଟ୍ ଇଜ୍ ୟୋର୍ ରିଲିଜିଅନ୍ ଟି କ୍ରିଏଟ୍ ଟ୍ରବଲ୍ । ମାଇ ସନ୍ କ୍ରିଏଟ୍‌ସ ଟ୍ରବଲ୍ । ହି ଇଜ୍ ୟଙ୍ଗ୍ । ଆଇ କ୍ୟାନ୍‌ନଟ୍ କ୍ରିଏଟ୍ ଟ୍ରବଲ୍ । ଆଇ ଆମ୍ ଓଲ୍ଡ । ଆଇ ଆମ୍ ଜେଲସ୍ ଅଫ୍ ମାଇ ସନ୍‌ସ୍ ୟୁଥ୍ ।

ଗୋ, କ୍ରିଏଟ୍ ଟ୍ରବଲ୍ । ବଟ୍, ଡୁନଟ୍ କ୍ରିଏଟ୍ ମବ୍ ଟ୍ରବଲ୍ ।

ଫେରିଲି । ଆଜି ମନେପଡୁଚି ତାଙ୍କ କଥା । ଆଖି ସଜଳ ହୋଇ ଉଠୁଚି । ଇମିତି ମଣିଷଟିଏ ମିଳିବେ କେଉଁଠୁ ?

୧୯୫୧ ମସିହା ଛାତ୍ର ଧର୍ମଘଟ । ହଷ୍ଟେଲ ଚାରିପଟରେ ପୋଲିସ । ହଷ୍ଟେଲ ଅନ୍ତେବାସୀ ଛଡା ଅନ୍ୟ ସମସ୍ତଙ୍କୁ ହଷ୍ଟେଲ ଛାଡିବାକୁ ହୁକୁମ । ପ୍ରିନ୍‌ସିପାଲ ବାନାର୍ଜୀ ନିଜେ ତଦାରଖ କରୁଛନ୍ତି କୋଠରୀ କୋଠରୀ ବୁଲି ।

ଛାତ୍ର ଧର୍ମଘଟର ସବୁ ନେତା ହଷ୍ଟେଲରେ ଆତ୍ମ-ଗୋପନ କରିଛନ୍ତି ଧର୍ମଘଟ ପରିଚାଳନା କରିବା ପାଇଁ । ସେମାନଙ୍କ ସହିତ ଭେଟ ହେଲା ପ୍ରିନ୍‌ସିପାଲଙ୍କର ।

ଗୋଲକ ବିହାରୀ ବାନାର୍ଜୀ ପ୍ରଶ୍ନ କଲେ । ତମେ ପ୍ରିନ୍‌ସିପାଲଙ୍କର ଅର୍ଡର ଦେଖିଛ ? କ'ଣ ତମର ବକ୍ତବ୍ୟ ।

ଛାତ୍ରନେତା ପ୍ରବୀର ପାଲିତ ଆଗେଇ ଆସି କହିଲେ, ଆମେ ଆପଣଙ୍କର ଅର୍ଡର ପାଇଛୁ । କିନ୍ତୁ କ୍ଷମା କରିବେ ବୃହତ୍ତର ସ୍ୱାର୍ଥ ପାଇଁ ଆମେ ତାକୁ ନ ମାନିବା ପାଇଁ ସ୍ଥିର କରିଛୁ ।

ବ୍ରାଭୋ, ମୁଁ ଆନନ୍ଦିତ ଯେ ମୋ ପିଲାମାନେ ବୃହତ୍ତର ସ୍ୱାର୍ଥ ପାଇଁ ମୋର ଆଦେଶକୁ ଅମାନ୍ୟ କରିବାପାଇଁ ସ୍ଥିର କରିଛନ୍ତି । ଗୁଡ୍ ଲକ୍ ଫର୍ ୟୁ ।

ଗୋଲକ ବାନାର୍ଜୀଙ୍କ ପଥୁରିଆ ଆଖିରେ ଲୁହ ।

ଗୋଲକ ବାନାର୍ଜୀ ଅନନ୍ୟ-ସାଧାରଣ । ସେ ଏକକ । ତାଙ୍କର ଚିତା ଜଳୁଛି ଖାନନଗରରେ ।

ଠଠଠ

# ଗୁରୁ-ଦକ୍ଷିଣା

## (୰ ଗୋପାଳ କାନୁନ୍‌ଗୋ)

ଗୁରୁଙ୍କର ପରଲୋକ ହୋଇଯାଇଛି । ଦୁଃଖରେ କ୍ଷୋଭରେ ସେ ଭାଙ୍ଗି ପଡ଼ିଥିଲେ । ପାରିବାରିକ ଜୀବନ ଅସହ୍ୟ ହୋଇ ଉଠିଥିଲା । ଏକମାତ୍ର ପୁତ୍ରର କାର୍ଯ୍ୟ ଆଦର୍ଶବାଦୀ ପିତା ସହ୍ୟ କରିପାରି ନଥିଲେ । ମୃତ୍ୟୁ ପାଖେଇ ଆସିଲା ସେଇଥିପାଇଁ ।

ଶିଳ୍ପୀ ଗୋପାଳ କାନୁନ୍‌ଗୋ ମୋର ଡ୍ରଇଁ ଶିକ୍ଷକ ଏବଂ ମୋ ଭଳି ଅନେକ ବ୍ୟକ୍ତିଙ୍କର ରାଜନୈତିକ ଆଦ୍ୟ ଗୁରୁ । ସେମାନଙ୍କ ମଧ୍ୟରେ ପ୍ରସିଦ୍ଧ ଆଡଭୋକେଟ ଗଙ୍ଗାଧର ରଥ, ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ବନମାଳୀ ଦାସ ଅନ୍ତର୍ଭୁକ୍ତ । ସାର୍‌ଙ୍କ ସହ ମୋର ପରିଚୟ ହୁଏ ସମ୍ବଲପୁରରେ । ସେ ହାଇସ୍କୁଲରେ ଡ୍ରଇଁ ଶିକ୍ଷକ ଏବଂ ମୁଁ ଛାତ୍ର । ମୋ ବାପା ସମ୍ବଲପୁରରେ ଫରେଷ୍ଟ ଅଫିସର ଭାବରେ ସମ୍ବଲପୁର ସହରର ଉପାନ୍ତରେ ଥିବା ମୋତିଝରଣ ଜଙ୍ଗଲରେ ଅବସ୍ଥିତ । ଶିଳ୍ପୀ ଗୋପାଳ କାନୁନ୍‌ଗୋ କେବଳ ଡ୍ରଇଁ ଶିକ୍ଷକ ନୁହନ୍ତି, ସେ ପ୍ରଖ୍ୟାତ ଶିଳ୍ପୀ ମଧ୍ୟ । ସେତେବେଳକୁ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର ରଚିତ ମାଟିର ମଣିଷ ଆମର ପାଠ୍ୟପୁସ୍ତକ ଏବଂ ଏଇ ବହିର ସିଲହଟ୍ ଚିତ୍ରସବୁର ଚିତ୍ରକର ହେଉଛନ୍ତି ତାଙ୍କର ବନ୍ଧୁ ଗୋପାଳ କାନୁନ୍‌ଗୋ । ଗୋପାଳ ବାବୁଙ୍କୁ ରବିବାର ଦିନ କେହି ବସାରେ ପାଇବ ନାହିଁ । ସେ ମୋତିଝରଣ ଜଙ୍ଗଲରେ ବସି ଆଙ୍କୁଥିବେ ଚିତ୍ର । ସମଗ୍ର ଦିନ । ପାଖରେ ଥିବ ଟ୍ରିପ୍‌ସ, କିଛି ପାଣି ଓ ଖାଦ୍ୟ ଏବଂ ଗୋଟିଏ ଦୁଇଟି ଚଉକୀ ଅତିଥିମାନଙ୍କ ପାଇଁ । ଫୋଲଡିଙ୍ଗ ଚେୟାର ବାପାଙ୍କ ଅଫସରୁ ଯାଇ ସେଇଠି ପକାଯାଏ । ଗୋପାଳ ବାବୁଙ୍କୁ ବେଳେ ବେଳେ ବାପା ବା ଦାଦା ଯାଇ ଡାକି ଆଣନ୍ତି ମଧ୍ୟାହ୍ନ ଭୋଜନ ପାଇଁ । ଶିଳ୍ପୀ ତାର ଶିଳ୍ପ ଛାଡ଼ି ଆସିବା ବା ଅଧାରେ ରଖି ଆସିବା ଭାରି କଠିନ । ତଥାପି ବହୁକଷ୍ଟରେ ଗୋପାଳ ବାବୁ ଆସନ୍ତି । ଆମ ପରିବାର ସହିତ ପରିଚିତି ଘନିଷ୍ଠ ହୋଇଉଠେ ।

ଗୋପାଳ ବାବୁ କେବଳ ଶିଳ୍ପୀ ନୁହନ୍ତି । ଜଣେ ମାର୍କସବାଦୀ ବିପ୍ଳବୀ ଚିନ୍ତାରେ ଉଦ୍‌ବୁଦ୍ଧ ମଣିଷ । ଏ କଥା ଅନେକ ଜାଣନ୍ତି ନାହିଁ । ସେ କ୍ଲାସରେ ପାଠ ପଢ଼ାଇଲା ବେଳେ

ବାଛନ୍ତି ପିଲାଙ୍କୁ । କାହାକୁ ତାଲିମ ଦେଇହେବ ବିପ୍ଳବର ଦର୍ଶନରେ । ଭାରତର ସ୍ୱାଧୀନତା ପାଇଁ ସଂଗ୍ରାମ ସହିତ ସମାଜବାଦୀ ଦର୍ଶନରେ ଯେଉଁମାନଙ୍କୁ ଅନୁପ୍ରାଣିତ କରିହେବ, ତା'ପରେ ସେମାନଙ୍କୁ ଡାକନ୍ତି ଘରକୁ । 'ମୁକ୍ତିଯୁଦ୍ଧ' ପଢ଼ିବାକୁ ଦିଅନ୍ତି ।

ତୁମେ କହି କି ପାର ଆଜି,
ପଡୁଛି କିଆଁ ଆମର ମେରୁ
ଲଳିତା ପରି ଭାଜି ।

ମୋର ଏଇ କବିତାଟି ମନେ ପଡୁଚି । କାରଣ ଏଇଟି ଗୋପାଳ କାନୁନ୍‌ଗୋ ନିଜେ ଆବୃତ୍ତି କରି ଶୁଣାଉଥିଲେ ଏବଂ ତାହା ସରଳ ଶିଶୁ ମନରେ ଅଙ୍କିତ ହୋଇଯାଇଥିଲା ।

ଗୋପାଳ ବାବୁ ଆବୃତ୍ତି କରନ୍ତି, ବାଜି ରାଉତକୁ,
"ସଞ୍ଚାର ଚଉରା ମୂଳେ ପ୍ରଦୀପର ନିରୁକ୍ତ ବେଦନ,
ଜଳିଉଠି କ୍ଷଣ ପାଇଁ ଯାହା,
ସାର୍ଥକ କରଇ ଜୀବନର ଅବଶିଷ୍ଟ ଆହା
ଗର୍ଭେ ତାର ହୋଇଛି ଜନମ,
ତାହାରି ବନ୍ଦନା କରେ ଆୟୁଷ୍ମାନ ଶିଖା ପ୍ରିୟତମ ।"

ବୁଝିବା ପାଇଁ ଶକ୍ତି ହୋଇ ନଥିଲା । କିନ୍ତୁ ଦେହ ଶିହରି ଉଠିଲା ଭଳି ଆବୃତ୍ତି କରୁଥିଲେ ସେ ।

କହୁଥିଲେ ଗଳ୍ପ । ଲେନିନ୍‌ଙ୍କର, ଷ୍ଟାଲିନ୍‌ଙ୍କର । ସେ ଗଳ୍ପରେ କିଛି ସତ୍ୟତା ନଥିଲା । କେବଳ ରୋମାଞ୍ଚକର କାହାଣୀ । ପରେ ତାଙ୍କୁ ପଚାରିଛୁ ସାର୍, ଏ ସବୁ ତ ଆଦୌ ସତ୍ୟ ନୁହେଁ, ଆପଣ କିମିତି ଆମକୁ କହୁଥିଲେ ଏଇ ମିଛ ଗଳ୍ପ ?

ସାର୍ ହସିଲେ । ମୋର ଉଦ୍ଦେଶ୍ୟ ଥିଲା ତୁମକୁ ଅନୁପ୍ରାଣିତ କରିବି । ତାହା ସଫଳ ହୋଇଚି ନା ନାହିଁ କୁହ । ଯଦି ତାହା ସଫଳ ହୋଇଛି ତା'ହେଲେ ମୁଁ କେଉଁ ଗଳ୍ପ କହିଥିଲି ତାହା ସତ୍ୟ ନା ମିଥ୍ୟା ଥିଲା, ସେଥିରୁ କ'ଣ ମିଳିବ ? ଉଦ୍ଦେଶ୍ୟ ସଫଳ ହୋଇଛି । ମୁଁ କୃତାର୍ଥ । ଜୀବନରେ ନିଜେ ବିପ୍ଳବୀ ହୋଇପାରି ନାହିଁ । ପେଟ ପୋଷିବା ପାଇଁ ବୃତ୍ତି ଧରିଥିଲି । କିନ୍ତୁ ମାଟି ମାଆର ପୂଜାବେଦୀରେ ତୁମମାନଙ୍କୁ ତାଲିମ ଦେଇ ମୁଁ ସଫଳ ହୋଇଛି ମୋର କାମରେ ।

ସାର୍ ବେଶ୍ ଗର୍ବିତ ଶିକ୍ଷୀ । ସାର୍ ହଥୋର୍ଣ୍ଣ ଲୁଇ ଓଡ଼ିଶାର ରାଜ୍ୟପାଳ ହେବା ପୂର୍ବରୁ ସମ୍ବଲପୁରର ଜିଲ୍ଲାପାଳ ଥିଲେ । ସେ ଜଣେ ଗୁଣଗ୍ରାହୀ ଲୋକ । ବିସ୍ମୟକର ତାଙ୍କର

ସ୍ମୃତି ଶକ୍ତି । ସେ ସମ୍ବଲପୁର ଗସ୍ତରେ ଯିବେ । ଲେଖିଲେ ଚିଠି ଜିଲ୍ଲାପାଳଙ୍କୁ ଯେ ଶିଳ୍ପୀ ଗୋପାଳ କାନୁନ୍‌ଗୋଙ୍କ ସହିତ ତାଙ୍କର ସାକ୍ଷାତକାରର ଏକ କାର୍ଯ୍ୟକ୍ରମ ସ୍ଥିର କରିବାପାଇଁ । ସେ ଦେଇଥିବା ଦିନ ଥିଲା ରବିବାର । ଶିଳ୍ପୀ ସମ୍ବଲପୁର ଜିଲ୍ଲାପାଳଙ୍କର ଚିଟଉ ପାଇ ଉତ୍ତର ଦେଲେ ଯେ ମହାଭାଗ, ଆପଣ ମୋତେ ମନେ ରଖିଥିବାରୁ ମୁଁ କୃତଜ୍ଞ । ଆପଣ ଦେଇଥିବା ତାରିଖ ହେଉଛି ରିବିବାର । ସେଦିନ ତ ଆପଣ ଜାଣନ୍ତି ମୁଁ ମୋତିଝରଣ ଜଙ୍ଗଲରେ ଚିତ୍ର ଆଙ୍କେ । ଆପଣ ସେଦିନ ସେଠାକୁ ଆସିପାରିଲେ ମୁଁ କୃତଜ୍ଞ ହେବି । ଆପଣଙ୍କର ଚିତ୍ର ଦେଖିବାର ଓରମାନ ମେଣ୍ଟିଯିବ । ମୁଁ ଆପଣଙ୍କ ଲାଗି ସେଇଠି ଚଉକୀଟିଏ ରଖିଥିବି । ସମ୍ବଲପୁର ଜିଲ୍ଲାପାଳ ଏପରି ଏକ ଚିଠି ପାଇ ଆଶ୍ଚର୍ଯ୍ୟ । କି ଆସ୍ପର୍ଦ୍ଧା ଏଇ ଡ୍ରଇଁ ଶିକ୍ଷକର ! ସେ ରାଜ୍ୟପାଳଙ୍କୁ ଏପରି ଚିଠି ଲେଖିପାରେ !

କିନ୍ତୁ ଗୋପାଳ କାନୁନ୍‌ଗୋ ଅନମନୀୟ । ସେ ରାଜ୍ୟପାଳଙ୍କୁ ଉତ୍ତର ଦେଇଛନ୍ତି । ସେଥିରେ ଜିଲ୍ଲାପାଳଙ୍କର କୌଣସି ଭୂମିକା ନାହିଁ । ରାଜ୍ୟପାଳ ଆସିଲେ, ଗଲେ ମୋତିଝରଣ ଜଙ୍ଗଲକୁ । ବସିଲେ ସେଠି ବେଶ୍ କିଛି ସମୟ । ଶିଳ୍ପୀର ବିଜୟ ହେଲା । ଇମିତି ଡ୍ରଇଁ ଶିକ୍ଷକ ବା ଶିଳ୍ପୀ ଆଜି କେତେଜଣ ମିଳିବେ ?

ଗୋପାଳ କାନୁନ୍‌ଗୋଙ୍କ ଆଶୀର୍ବଚନ ମନେପଡୁଚି । ବୋମା ମାଡରେ ମୋର ହାତ ଦେହ ସବୁ ଖଣ୍ଡିଆ ହୋଇଯାଇଥାଏ । ବାପା ମୋତେ କତରବଗା ଗାଁରେ ନେଇ ଭଲକରି ଆଣିଥାନ୍ତି ସମ୍ବଲପୁରକୁ ପୁଣି । ଗୋପାଳ ବାବୁ ଦିନେ ପହଞ୍ଚିଲେ ଘରେ ଏବଂ ମୋତେ କୁଣ୍ଢେଇ ପକାଇ କହିଲେ – ବାପା, ଦିନେ ତୁ ଏ ଜାତି ପାଇଁ ମନେ ରହିବୁ । ଏଇ କାମନା କରୁଚି । ତୋ' ଆଗରେ ଆଜି ମୁଁ କେତେ ଛୋଟ ହୋଇଯାଇଚି ।

ସାରଙ୍କର ଆଶୀର୍ବଚନ ସଫଳ ହୋଇନାହିଁ । କିନ୍ତୁ ତାହା ପ୍ରେରଣା ଦେଇଛି ସବୁବେଳେ । ସାର୍ ଏକ ବିରାଟ ମଣିଷ । ନିଜକୁ ଛୋଟ ବୋଲି କହି ସେ ଆପଣାର ବିରାଟ ଶକ୍ତିର ପରିଚୟ ଦେଇ ଯାଇଛନ୍ତି । ପରମାଣୁ ଭଳି ।

ସାରଙ୍କୁ ପ୍ରଣାମ । ଗୁରୁଙ୍କୁ ଦକ୍ଷିଣା ଦେଇପାରି ନାହିଁ । ଆଜି ଏଇ ଲେଖା ଜରିଆରେ ହିଁ ସେଇ ଦକ୍ଷିଣାର କିୟଦଂଶ ପରିଶୋଧ କରୁଛି ।

□□□

# ଗାନ୍ଧିବାଦୀ କମ୍ୟୁନିଷ୍ଟ

## (ସ୍ୱ ଗୋକୁଳ ମୋହନ ରାୟଚୂଡାମଣି)

ଗାନ୍ଧିଜୀଙ୍କ ଜନ୍ମଦିନର ପାଳନର ପୂର୍ବଦିନ ଅପରାହ୍ନ । ଅକ୍ଟୋବର ପହିଲା ୨୦୦୭ ମସିହା । ଆପଣାର କର୍ମ ଭୂମି ଖୋର୍ଦ୍ଧା ସହରରେ ଆଖିବୁଜି ଦେଇଛନ୍ତି ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ବୟସ୍କ କମ୍ୟୁନିଷ୍ଟ ନେତା ଗୋକୁଳ ମୋହନ ରାୟଚୂଡାମଣି ଆପଣାର ଜୀବନର ବିଳମ୍ବିତ ଅପରାହ୍ନରେ । ବୟସ ହୋଇଥିଲା ୯୭ ବର୍ଷ, ଆଖିକୁ ଭଲ ଦିଶୁନଥିଲା । କିନ୍ତୁ ମସ୍ତିଷ ଥିଲା କର୍ମକ୍ଷମ । ପାଖରେ ଥିଲେ ଅବସରପ୍ରାପ୍ତ ଶିକ୍ଷୟିତ୍ରୀ ସ୍ତ୍ରୀ ବିଷ୍ଣୁପ୍ରିୟା । ଏକମାତ୍ର ପୁତ୍ର ଅର୍ଣ୍ଣବ ମସ୍କୋ ସହରରେ ଅବସ୍ଥାପିତ ।

ଯଦି ଗାନ୍ଧିଜୀଙ୍କୁ ଆମେ ମନେ ପକାଉ ତାଙ୍କର ଜୀବନଶୈଳୀର ସାରଲ୍ୟତା ପାଇଁ, ତାହା ହେଲେ ଏଇ ସାରଲ୍ୟତାର ପ୍ରତୀକ ଥିଲେ ଗୋକୁଳ ମୋହନ । ୧୯୩୦ ମସିହାରେ ସ୍ୱାଧୀନତା ଆନ୍ଦୋଳନର ପ୍ରତ୍ୟକ୍ଷ ଅଂଶୀଦାରଙ୍କ ସଂଖ୍ୟା ବର୍ତ୍ତମାନ ହାତଗଣତା । ସେଇ ଆନ୍ଦୋଳନରେ ଯୋଗ ଦେଇଥିଲେ ପୁରୀ ଜିଲ୍ଲାର ସମ୍ଭ୍ରାନ୍ତ ପରିବାରରେ ଜନ୍ମଲାଭ କରିଥିବା ଗୋକୁଳଦା' । ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ଗୋକୁଳଦା'ଙ୍କ ପାଠପଢ଼ାରେ ଡୋର ପଡ଼ିଥିଲା । ତାହା ପରେ ସେ ପଛକୁ ଫେରି ଅନେଇ ନାହାନ୍ତି । ୧୯୭୨ ମସିହାରେ ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦିଅନ୍ତି ସତ୍ୟ; କିନ୍ତୁ ଗାନ୍ଧିଜୀଙ୍କର ସରଳ ଜୀବନଶୈଳୀ ରହିଯାଏ ସେମିତି । ପ୍ରତ୍ୟେକ ଦିନ ଲୁଗା ନିଜେ ସଫା କରିବା, ଜୀବନର ସବୁ ସମ୍ବଳକୁ ଆପଣାର କାଖ ମୁଣାରେ ସାଇତି ରଖିବା ତାଙ୍କର ଚିରନ୍ତନ ଅଭ୍ୟାସରେ ପରିଣତ ହୋଇଛି ।

ଖୋର୍ଦ୍ଧା ହାଇସ୍କୁଲ । ପରାଧୀନ ଭାରତବର୍ଷ । ହାଇସ୍କୁଲ ସାମନାରେ ଗୋକୁଳ ବାବୁ ବକ୍ତୃତା କରିବାର ଦେଖାଯାଏ ପ୍ରତିଦିନ । ପିଲା, ଯୁବକ ଭିଡ ଜମାନ୍ତି । ସେମାନଙ୍କ ଭିତରୁ ତିଆରି ହୁଅନ୍ତି ବାନରସେନା । ପରବର୍ତ୍ତୀ କାଳରେ ଯୁବ ସାମ୍ୟବାଦୀ । ଓଡ଼ିଶାର ବହୁ ଜଣାଶୁଣା ସ୍ୱାଧୀନତା ସଂଗ୍ରାମୀ, ସାମ୍ୟବାଦୀ ହୋଇଛନ୍ତି । କେତେ କଂଗ୍ରେସ ଦଳରେ, କେତେ କମ୍ୟୁନିଷ୍ଟ ପାର୍ଟିରେ, ସମସ୍ତଙ୍କର ସେ ପାଲଟିଛନ୍ତି ଗୋକୁଳଦା'।

ଖୋର୍ଦ୍ଧାର ଚାଷୀ ଆନ୍ଦୋଳନରୁ ପୁରୀ ମାହାର ୟୁନିଅନ୍ । ବୋଧହୁଏ ଓଡିଶାର ପ୍ରଥମ ଶ୍ରମିକ ସଙ୍ଗଠନ । ଗୋକୁଳ ମୋହନଙ୍କୁ ସବୁଠି ଦେଖିବାକୁ ମିଳେ । ବହୁଥର ଜେଲ ଯିବାକୁ ପଡିଛି । ପଳାତକ ହୋଇଛି ପୋଲିସର ଗିରଫଦାରୀ ପରବାନାକୁ ଏଡେଇବା ପାଇଁ । ଜମିଦାର ଘରର ପୁଅ ସର୍ବହରା ପାଲଟିଛି । ପାର୍ଟି ଅଫିସ୍ ଘର ପାଲଟିଛି । ଧୀର, ଶାନ୍ତ ବ୍ୟବହାର କିନ୍ତୁ ନୀତିରେ ଅଟଳ । ଗୋକୁଳ ଦା' ଦଳମତ ନିର୍ବିଶେଷରେ ସମସ୍ତଙ୍କର ପ୍ରିୟ, ଆପଣାର ସରଳ ଓ ନିଷ୍କପଟ ଜୀବନଶୈଳୀ ପାଇଁ ।

ଗାନ୍ଧିବାଦୀ କଂଗ୍ରେସରୁ, କଂଗ୍ରେସ ସୋସାଲିଷ୍ଟ, ତାପରେ କମ୍ୟୁନିଷ୍ଟ ଗୋକୁଳଦା' ଅବିଚଳ ସ୍ୱାଧୀନତା ସଂଗ୍ରାମୀ । ସ୍ୱାଧୀନତା ଆସିବ । ଆସିବ ଚାଷୀ ପାଇଁ, ଆସିବ ଶ୍ରମିକ, ଛାତ୍ର, ଶିକ୍ଷକ, ବୁଦ୍ଧିଜୀବୀ ପାଇଁ । ସେ ସଂଗ୍ରାମ ସରିନାହିଁ । ସ୍ୱାଧୀନତାର ସେ ସ୍ୱପ୍ନ ଗୋକୁଳ ଦା'ଙ୍କୁ ଅନୁପ୍ରାଣିତ କରି ରଖିଛି ମୃତ୍ୟୁ ପର୍ଯ୍ୟନ୍ତ । ବୟସ ହୋଇଛି ବେଶି, କାମ କରିବା ସମ୍ଭବପର ହେଉନି । କିନ୍ତୁ ସ୍ୱପ୍ନ ରହିଛି ସେମିତି ।

ଗୋକୁଳ ଦା' ପଳାତକ । ଏ ସ୍ୱାଧୀନତା ଠିକ୍ ସ୍ୱାଧୀନତା ନୁହେଁ । ଆମକୁ ସ୍ୱାଧୀନତା ଆଣିବାକୁ ହେବ ସଶସ୍ତ୍ର ସଂଗ୍ରାମ ଜରିଆରେ । ନିବୁଜ, ନିରନ୍ଧ୍ର ଜଙ୍ଗଲ ଭିତରେ ଗୋକୁଳ ଦା' ସହିତ ସାକ୍ଷାତ । ହାତରେ ତାର ଏକ ନକ୍ସା- ଚନ୍ଦକା, ରଣପୁର ଜଙ୍ଗଲର । ଆଉ ହାତରେ ଦୁଇପଟ ରୁଟି ।

ଗୋକୁଳ ଦା' କୁ ସ୍ୱପ୍ନ ଘାରିଛି । ବିବାହ କରିବାକୁ ସଂସାର ପାତିବାକୁ ସମୟ ପାଇନାହିଁ । ଆପଣାର ବ୍ୟାଗ ଭିତରେ ସଂସାର, ଦୁଇଖଣ୍ଡ ଲୁଗା, କାମିଜ ଗୋଟିଏ, ଗାମୁଛାଟିଏ ଆଉ ଦାନ୍ତକାଠି । ସଂସାର କହିଲେ ସେତିକି । ଭୂମି ହେଉଛି ବିଛଣା । ସାର୍ଟରେ ବୋତାମ ନାହିଁ ।

ବହୁ ଜିଗର, ଝଗଡ଼ା ପରେ ଗୋକୁଳ ଦା' ରାଜି ହୋଇଛି ବିବାହ କରିବା ପାଇଁ । ଆସ, ପୁରୀ ପାର୍ଟି ଅଫିସ୍ ସମ୍ଭାଳ । ମୁଁ ମାସକୁ କୋଡିଏ ଟଙ୍କା ଦେବା ପାଇଁ ରାଜି- ଆମ ଛାତ୍ର କ୍ୟାଡରକୁ ଗୋକୁଳ ଦା'ର ଆହ୍ୱାନ । କୋଡିଏ ଟଙ୍କା ଯଥେଷ୍ଟ ତା କଳ୍ପନାରେ । ଭାତ ଆଉ ଡାଲମା । ଅଧିକା କ'ଣ ଦରକାର ?

ବିବାହ ହେଲା । କିଛି ଦିନ ପରେ ହଠାତ୍ ଭେଟ ହୋଇଗଲା ଦାଦା ସାଙ୍ଗରେ ଶେରପଡ଼ା ରାସ୍ତାରେ ଦାଦା, କିମିତି ଅଛୁ ? ଦେଖୁନୁ ମୋତେ । ସାର୍ଟରେ ବୋତାମ ଲାଗିଛି । ପାଦରେ ସାଣ୍ଡାଲ୍, ଚଟି ନୁହେଁ । ଫିନ୍ ଫିନ୍ ଧୋତି । ଆଉ ସେ ଦାଦା ଅଛି ? ଖିଙ୍କାରି ଗୋଡାଇଲା କି ମୋତେ ? କିନ୍ତୁ ଦାଦା ସେଇମିତି ରହିଗଲା । ପୁଣି ଚଟି । ମୋଟା ଧୋତି ହାପ୍ ସାର୍ଟ, ସବୁ ପୂର୍ବପରି ।

ଅମୃତସରରେ ପାର୍ଟି କଂଗ୍ରେସ । ଦାଦା ପ୍ରତିନିଧି । ଇଚ୍ଛା ଟିକିଏ କାଶ୍ମୀର ବୁଲି ଆସନ୍ତା । ଯାଇ ପହଞ୍ଚିଲା ସାଥୀ ସ୍ୱର୍ଗତ ଲକ୍ଷ୍ମଣ ପଟ୍ଟନାୟକଙ୍କ ପାଖରେ ଦାନ ପାଇଁ । ଦାଦା, କେତେ ଦରକାର । ଲକ୍ଷ୍ମଣ ପଟ୍ଟନାୟକ ତିନି ଶହଟଙ୍କା ହାତରେ ଧରି ପଚାରିଲେ । ଦାଦା ହିସାବ କରି କହିଲା ତିରିଶ ଚାଳିଶ ଟଙ୍କା ହେଲେ ଚଳିବ । ଶିକାରାରେ ଦିନଟେ ରହିବୁ ନାଇଁ, କାଶ୍ମୀର ଯିବୁ କାହିଁକି ? ଶିକାରା କିଏ ମୁଁ କିଏ ? ଦାଦା କହିଲା । ଲକ୍ଷ୍ମଣ ପଟ୍ଟନାୟକ ଜୋର ଜବରଦସ୍ତ ତିନିଶହ ଟଙ୍କା ଧରାଇଦେଲେ । ଦାଦା ଫେରିଥିଲା କାଶ୍ମୀରରୁ । ଅଢ଼େଇ ଶହ ଟଙ୍କା ଫେରାଇ ଦେବାକୁ ଆସିଥିଲା । ଇମିତି ମଣିଷଟିଏ ମିଳିବ କେଉଁଠି ?

ଦାଦା ଥିଲା ବୟସ୍କ ଅଭିଭାବକ, ସମସ୍ତଙ୍କର ଗାର୍ଡିଏନ୍ । ଦାଦା ଆସିଥିଲା କିଛି ବର୍ଷ ତଳେ । ଲେଖିଥିଲା ଜୀବନଶୈଳୀ, ଚରୈବତି ବା ଆଗେଇ ଚାଲ ବହି ପାଇଁ । ବହି ପ୍ରକାଶନ ହୋଇଛି । ଦାଦା କିନ୍ତୁ ନାହିଁ ତାହା ଦେଖିବାକୁ । ତେବେ ତାର ଲେଖା ବୟସ୍କ ମାନଙ୍କୁ ପ୍ରେରଣା ଦେବ । ଯେମିତି ତା'ର ଜୀବନ ବହୁ ସାମାଜିକ କର୍ମୀଙ୍କୁ ପ୍ରେରଣା ଦେଇଛି ।

ସମୟ ବାଲିରେ ସମସ୍ତେ ହଜିଯିବେ ଦାଦା ବଞ୍ଚି ରହିବ ଆଗାମୀ ପୀଢ଼ି ପାଇଁ ଗାନ୍ଧିବାଦୀ ସାରଲ୍ୟ ଓ ସାମ୍ୟବାଦୀ ନିଷ୍ଠା ପାଇଁ ।

❑❑❑

# ଶେଷ ଅସ୍ତ

## (୰ ଗୋରାଚାନ୍ଦ ମିଶ୍ର)

ଅକ୍ଟୋବର ୨୦, ୨୦୦୫ ମସିହା । ସବୁଦିନ ପରି ସେଦିନର ସକାଳ ଥିଲା ସାଧାରଣ । କିନ୍ତୁ ହଠାତ୍ ଗୋଟାଏ ସମ୍ବାଦ ଯେପରି ନିଷ୍ପ୍ରଭ କରିଦେଲା ସକାଳଟାକୁ । ମେଘ ଭିତରେ ସୂର୍ଯ୍ୟ ବୁଡ଼ିଗଲେ ହଠାତ୍ ।

ବଂଧୁ ଗୋରାଚାନ୍ଦ ମିଶ୍ର ଆଉ ନାହାନ୍ତି । ଜଣେ ବଂଧୁ ଫୋନ କରୁଛନ୍ତି ରାଜା ବଗିଚା ଲେବର କଲୋନୀରୁ, ଯେଉଁଠି ସେ ରହୁଥିଲେ । କଣ ହୋଇଥିଲା ? ସକାଳୁ ହଠାତ୍ ଛାତିରେ ଯନ୍ତ୍ରଣା । ତା'ପରେ ଡାକ୍ତରଖାନା । ଆଉ ତା'ପରେ ସବୁ ଶେଷ ।

ସେ ଚନ୍ଦ୍ର ଅସ୍ତ ହୋଇଗଲା ଶେଷଥର ପାଇଁ । ବହୁ ଡାଏଲଗ, ବହୁ ଯୁକ୍ତି, ବହୁ ଭାବର ଆଦାନ ପ୍ରଦାନ ଶେଷ ହୋଇଗଲା ।

ଆମେ ଦୁହେଁ ପ୍ରାୟ ଏକା ବୟସର । ଗଂଜାମ ଜିଲ୍ଲା କୁଲାଡ ପାଖାପାଖି ପରସିଂହ ଥାନା ଷେରଡ଼ା ଗ୍ରାମରେ ସେ ମାର୍ଚ୍ଚ ୨୨, ୧୯୩୦ ମସିହାରେ ଜନ୍ମ ଗ୍ରହଣ କରିଥିଲେ । କିନ୍ତୁ ତାଙ୍କର ବାଲ୍ୟଜୀବନ କଟିଥିଲା ମାମୁଁ ଘରେ ବାଣପୁରରେ । ଯଦିଓ ମୁଁ ବହୁଦିନ ଭଂଜନଗରରେ କଟାଇଛି ଏବଂ ସେଠିକା ସ୍କୁଲରେ ପାଠ ପଢ଼ିଛି, ତାଙ୍କ ସହିତ ପରିଚିତି ହୁଏ ସେ ସାମନ୍ତ ଚନ୍ଦ୍ର ଶେଖର କଲେଜ, ପୁରୀରେ ପଢ଼ିବାବେଳେ । ସେ ଛାତ୍ରାବସ୍ଥାରୁ ହିଁ ସମାଜବାଦୀ ଚିନ୍ତାଧାରା ପ୍ରତି ଆକୃଷ୍ଟ ହୋଇଥିଲେ ।

ସେତେବେଳେ ସମାଜବାଦୀ ଚିନ୍ତାଧାରା ପ୍ରତି ଜନସାଧାରଣଙ୍କୁ ଆକୃଷ୍ଟ କରିବା ପାଇଁ କମ୍ୟୁନିଷ୍ଟ ଏବଂ ସୋସଲିଷ୍ଟମାନଙ୍କ ମଧ୍ୟରେ ପ୍ରତିଯୋଗିତା, ଡାଏଲଗ୍ ତୀବ୍ର, ମତାନ୍ତର ତୀବ୍ର କିନ୍ତୁ ମନାନ୍ତରର ପ୍ରଶ୍ନ ନାହିଁ । ଗୋରାଚାନ୍ଦ ପୁରୀ କଲେଜରୁ ଆସନ୍ତି କଟକ, ସୋସଲିଷ୍ଟ ପତ୍ରିକା କୃଷକର ସମ୍ପାଦନାରେ ସାହାଯ୍ୟ କରିବା ପାଇଁ । କିଛି ଦିନ ସେ ନିଜେ ସଂପାଦକ ହୋଇଥିଲା ଭଳି ମନେହୁଏ ।

ଆମ ସମସ୍ତଙ୍କର ସେ ଥିଲେ ପରିଚିତ, ଏକାନ୍ତ ଆତ୍ମୀୟ । ସେ କାଳର ସୋସଲିଷ୍ଟ ବଂଧୁମାନଙ୍କ ଭିତରୁ କେତେକ ଅଛନ୍ତି ରବି ରାୟ, ଦେବୀପ୍ରସନ୍ନ ପଟ୍ଟନାୟକ, ସୁରେନ୍ଦ୍ର

ମହାନ୍ତି । ଅନ୍ୟମାନେ ବାହୁଡିଗଲେଣି । କେତେ ଯୁକ୍ତିତର୍କ, କେତେ ଡାଏଲଗ୍ ସବୁ ମନେ ପଡୁଛି । ମନେ ପଡୁଚି ଉଷ୍ଣମ ଚା' କପ୍ ଏବଂ ବିଡି ।

ସମାଜବାଦୀ ଆନ୍ଦୋଳନ ଧିମେଇ ଗଲା, ଉଷ୍ଣତା କମିଗଲା । ଗୋରାଚାନ୍ଦ ଯୋଗଦେଲେ 'ପ୍ରଜାତନ୍ତ୍ର'ର ସମ୍ପାଦକୀୟ ମଣ୍ଡଳୀରେ । ସେଇଟା ବୋଧହୁଏ ୧୯୫୭ ମସିହାର କଥା । ସେ ୧୯୯୧ ମସିହା ପର୍ଯ୍ୟନ୍ତ ଥିଲେ ପ୍ରଜାତନ୍ତ୍ରରେ । ବାର୍ତ୍ତା ସମ୍ପାଦକ ହୋଇଥିଲେ ଅନେକ ଦିନ ଧରି ।

ସମାଜବାଦୀ ଅନୁରାଗ ଛାଡିନଥିଲା ତାଙ୍କୁ । ଆପଣାର ପ୍ରାକ୍ତନ ନେତା ସୁରେନ୍ଦ୍ରନାଥ ଦ୍ୱିବେଦୀ ହେଲେ ରାଜ୍ୟପାଳ ଅରୁଣାଚଳ ପ୍ରଦେଶରେ । ଗୋରାଚାନ୍ଦ ତାଙ୍କର ହେଲେ ବ୍ୟକ୍ତିଗତ ସେକ୍ରେଟେରୀ, ଅବଶ୍ୟ ସଂକ୍ଷିପ୍ତ କାଳ ପାଇଁ । ମନେହୁଏ ଆଠମାସ ପାଇଁ ।

ଜୀବନରେ ବହୁତ ଉଦୟ ଏବଂ ଅସ୍ତର ସ୍ୱାଦ ଚାଖିଛନ୍ତି ସେ । ଫେରିଲେ ରାଜା ବଗିଚା ଲେବର୍ କଲୋନୀକୁ । ମନେହେଉଛି, ସମାଜବାଦୀ ଆନ୍ଦୋଳନରେ ବିପର୍ଯ୍ୟସ୍ତତା ତାଙ୍କୁ ଟାଣିନେଲା ଧର୍ମଚିନ୍ତାକୁ । ସେ ପାଲଟିଗଲେ ଧାର୍ମିକ, ଆଧ୍ୟାତ୍ମିକ । ଦେଖାହୁଏ, ମଝିରେ ମଝିରେ । ପୁରାଣାଦିନକୁ ହେଜିବାରେ କଟିଯାଏ ସମୟ । କାରଣ ତାଙ୍କର ନବୋଦୟ ଧାର୍ମିକତା ଭିତରକୁ ମୁଁ ପଶିପାରେ ନାହିଁ । ସେ ହସନ୍ତି, କାରଣ ଦ୍ୱେଷ ତାଙ୍କ ଭିତରୁ ଯେପରି ହଜିଯାଇଛି ।

ଅନେକ ବହି ଲେଖିଛନ୍ତି ସେ । ଜୀବନୀ, ଗଳ୍ପ, ଉପନ୍ୟାସ, ବିଭିନ୍ନ ଧର୍ମ ଉପରେ ବହି, ବିଭିନ୍ନ ନେତାମାନଙ୍କ ଉପରେ ବହି, ଭ୍ରମଣ କାହାଣୀ । ଖାଲି ସମାଜବାଦୀ ଚିନ୍ତକ ଭାବରେ ନୁହେଁ, ଜଣେ ଲେଖକ ଭାବରେ ମଧ୍ୟ ସେ ସ୍ମୃତ ହୋଇ ରହିବେ ଜନମାନସରେ ।

କିନ୍ତୁ ଆମେ ତାଙ୍କର ସମସାମୟିକମାନେ ତାଙ୍କୁ ହେଜିବୁ ଜଣେ ଦରଦୀ ବନ୍ଧୁ ଭାବରେ, ଜଣେ ମଣିଷ ପରି ମଣିଷ ଭାବରେ ।

□□□

# ବନ୍ଧୁର ବିୟୋଗରେ

(୰ ଗୋପବଂଧୁ ଦାସ)

ଗୋପ ମୋଠାରୁ ବୟସରେ ସାନ । ମୋ ଠାରୁ ଗୋଟିଏ ବର୍ଷ ଜୁନିଅର ମଧ କଲେଜରେ । ସମାଜବାଦୀ ଚିନ୍ତାଧାରା ପ୍ରତି ସେ ଅକୃଷ୍ଟ ସେଇକାଳରୁ । ପରିଚିତି ମଧ ସେଇ ମାଧମରେ । ସ୍ୱାଧୀନତାର ପ୍ରାକ୍‌କାଳ । ସ୍ୱାଧୀନତାର ରୂପରେଖ କଣ ହେବ ? ପ୍ରବଳ ବିତର୍କ । କଂଗ୍ରେସ, ସମାଜବାଦୀ (ସୋସଲିଷ୍ଟ) ଏବଂ ସାମ୍ୟବାଦୀ(କମ୍ୟୁନିଷ୍ଟ) ମାନଙ୍କ ମଧରେ । ସେ ବିତର୍କ ଆଜି ନାହିଁ । ସେଇଯୋଗୁଁ ଚନ୍ଦ୍ରମଣି, ଗୋପ, ରାଜେନ୍ଦ୍ରଙ୍କ ସହିତ ବ୍ୟକ୍ତିଗତ ବଂଧୁତା ପ୍ରଗାଢ଼ । ଦୁଇଜଣ ଯାଇଥିଲେ ଏବଂ ଗୋପ ଏବେ ଚାଲିଗଲା । ଆମେ ଦୁହେଁ ପ୍ରାୟ ଏକ ସାଂଗରେ ଅସୁସ୍ଥ ହୋଇ, ଅଚଳ ହୋଇଗଲୁ । ସେ ସାନ ହୋଇ ଆଗ ଚାଲିଗଲା, ମୋତେ ଛାଡିଗଲା ଅଧାବାଟରେ, ଜୀବନ୍ମୃତ ଅବସ୍ଥାରେ । ସେ ମୋ ପାଇଁ ଲେଖିଥାନ୍ତା, ମୋତେ ତା' ପାଇଁ ଲେଖିବାକୁ ପଡିଲା । ସମସାମୟିକମାନଙ୍କ ମଧରୁ ଗଲାବର୍ଷକ ଭିତରେ ନନ୍ଦିନୀ ଶତପଥୀ, ସନ୍ତୋଷ ସାହୁ, ରାମକୃଷ୍ଣ ବେହେରା ବାହୁଡି ଗଲେଣି । ଏବେ ବନ୍ଧୁ ଦେବ ମିଶ୍ର କହୁଥିଲେ ଯେ ଏକଦା କଂଗ୍ରେସ ଦଳର ଯୁବ ନେତା, ପରେ ପ୍ରଶାସକ ଏବଂ ଓକିଲ ନରୋତ୍ତମ ମଧ ବାହୁଡି ଗଲେଣି ଏଇ କିଛି ଦିନ ହେଲା । ମହାକାଳର ଡାକରାକୁ ଏଡ଼ିଦେବ କିଏ ? ନିଜେ ଅଚଳ ହୋଇଗଲା ପରେ ଆଉ ଅନେକଙ୍କର ବାହୁଡ଼ିବା ସମ୍ବାଦ ମଧ ମିଳୁନାହିଁ ବା ଖବର କାଗଜରୁ ଦେଖିବାକୁ ମିଳୁଛି ।

ସେ ଦିନ ବଡି ସକାଳୁ । ମଇ ୨୨ ତାରିଖ, ୨୦୦୭ ମସିହା । ଟେଲିଫୋନ ବାଜୁଛି । ଏତେ ସକାଳୁ ସକାଳୁ ଫୋନ ବାଜୁଛି । କିଛି ଗୋଟାଏ ଜରୋରୀ ସଂବାଦ ନିଶ୍ଚୟ । ସତକୁ ସତ ଗୋପର ସାନଭାଇ କୃପାସିନ୍ଧୁ ଫୋନ କରୁଛନ୍ତି, ଭାଇ କାଲି ରାତିରେ ଚାଲିଗଲେ । ଚାଲିଗଲେ, କୁଆଡେ ଚାଲିଗଲେ ? କେତେ ସ୍ୱପ୍ନ ବାକି ଥିଲା, କେତେ କାମ ବାକିଥିଲା ? କିନ୍ତୁ ସବୁ କାମ ଅଧାରେ ରହିଯିବା ନାମ ତ ଜୀବନ । କେତେ କଥା, କେତେ ବ୍ୟଥା । କେତେ ସୁଖ, କେତେ ଦୁଃଖ । କିଛି ମାସ ତଳେ ମୋର ଏକ ଲେଖା ପଢ଼ି ସେ ଫୋନ କରିଥିଲେ । ଯାହାହେଉ ଆପଣ ଲେଖିପାରୁଛନ୍ତି । ସେଇ ତାଙ୍କ ସହିତ ଶେଷ କଥାବାର୍ତ୍ତା ।

ଗୋପର ଶେଷ ଦାୟିତ୍ୱ ହେଉଛି ସଂବାଦ ପତ୍ରିକା । ଅସୁସ୍ଥ ହୋଇ ପଡିଲା ପରେ ଗୋପ କହୁଥିଲେ ଯେ ସେ ସଂବାଦ ପତ୍ରିକାରୁ ଅବସର ନେବାକୁ ଚାହିଁବାରୁ ସଂପାଦକ ସୌମ୍ୟ କହିଲେ ଯେ ମୃତ୍ୟୁ ହିଁ ଆପଣଙ୍କର ଏକମାତ୍ର ଅବସର । ସେତେବେଳେ ପର୍ଯ୍ୟନ୍ତ ଅବସର କାହିଁ ? ପରିଶେଷରେ ଗୋପର ମୃତ୍ୟୁ ଆସିଛି । ଜାତସ୍ୟହି ଧ୍ରୁବ ମୃତ୍ୟୁ ।

ଗୋପ ରେଭେନ୍‌ସା କଲେଜ ପାଠ ସାରି ଚାକିରି କରିଥିଲା । କିଛି ପେସା, କିଛି ନିଶା, ପେସା ଜୀବିକା ପାଇଁ, ପରିବାର ଚଳାଇବା ପାଇଁ । କିଛି ନିଶା ସମାଜର କିଛି ପରିବର୍ତ୍ତନରେ ସାହାଯ୍ୟରେ ଭୂମିକା ନେଇ ହେବ ତ ! ତେଣୁ ସେ ଜଣେ ଖାଲି ଓ.ଏ.ଏସ୍. ଅଫିସର ନଥିଲେ । ଥିଲେ ଜଣେ ଅଙ୍ଗୀକାରବଦ୍ଧ, କର୍ମନିଷ୍ଠ, ଦକ୍ଷ ଏବଂ ସଚ୍ଚୋଟ ଅଫିସର ।

ମୁଁ ତାଙ୍କୁ ନିବିଡ ଭାବରେ ଦେଖିଛି ସ୍ୱାସ୍ଥ୍ୟମନ୍ତ୍ରୀ ବଂଧୁ ସୋମନାଥ ରଥଙ୍କ ପି.ଏ., ଭାବରେ ଦେଖିଛି କଟକ ପୌର ସଂସ୍ଥାର ଅତିରିକ୍ତ ଏକ୍‌ଜିକ୍ୟୁଟିଭ ଅଫିସର, ପାରାଦ୍ୱୀପ ପୋର୍ଟଟ୍ରଷ୍ଟର ଡେପୁଟି ସେକ୍ରେଟେରୀ ଏବଂ ଓଡିଶା ହସ୍ତ ଶିଳ୍ପ ନିଗମର ମ୍ୟାନେଜିଂ ଡାଇରେକ୍ଟର ଭାବରେ । ଏଇ ସମୟକାଳ ତାଙ୍କ ସହିତ ଘନିଷ୍ଠ ସହଯୋଗୀ ଭାବରେ ତାଙ୍କୁ ଲକ୍ଷ୍ୟ କରିଛି । ଇତିହାସ କେତେ ମନେ ରଖିଚି ସେ କଥା ମୁଁ କହି ପାରିବି ନାହିଁ । କିନ୍ତୁ ଆମେ ସବୁ ଯେଉଁମାନେ ତାଙ୍କୁ ସେଇ ସମୟରେ ଦେଖିଚୁ ସେମାନେ ଗୋପକୁ ଭୁଲିବେ କିମିତି ? କଟକ ସହରର ପ୍ରସିଦ୍ଧ ଷ୍ଟର୍ମ ୱାଟର ଚାନେଲ ଉପରୁ ଜବର ଦଖଲ ଉଠାଇ ତା'ର ପ୍ରଶସ୍ତି କରଣ କରିବା, ପ୍ରଭାତ ସିନେମା ଠାରୁ ଛତ୍ରବଜାର ପର୍ଯ୍ୟନ୍ତ ସେଇ ଚାନେଲର ଗୋଟାଏ ପାଖରେ ରାସ୍ତା କରିବା, ପ୍ରସିଦ୍ଧ ୟୁନିଅନ କ୍ଲବର ପୁନରୁଦ୍ଧାର କରିବା, ଭଂଜ ମଣ୍ଡପ ପାଇଁ ଜବର ଦଖଲ ଉଠାଇ ନିର୍ଦ୍ଧାରିତ ଜମି ଦେବା ତାଙ୍କର ଆଲେଖ୍ୟ ବହନ କରେ । ପାରାଦ୍ୱୀପ ବନ୍ଦରର ବହୁ ବିକାଶ ସହିତ ସେ ଜଡିତ ଥିଲେ ଏବଂ ଯେଉଁ କାମ ହାତକୁ ନେଉଥିଲେ ତାକୁ ସଂପୂର୍ଣ୍ଣ କରିବା ପର୍ଯ୍ୟନ୍ତ ଛାଡୁ ନଥିଲେ । ସୋମନାଥ ରଥ ସ୍ୱାସ୍ଥ୍ୟମନ୍ତ୍ରୀ, ସୀତାକାନ୍ତ ମହାପାତ୍ର, ସ୍ୱାସ୍ଥ୍ୟ ସଚିବ । ସେମାନଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରିବାର ଗୁରୁ ଦାୟିତ୍ୱ ଗୋପବାବୁଙ୍କ ଉପରେ । ଅନେକ ସ୍ମୃତି ହାବୁକା ମାରେ, ଆଖି ରୁନ୍ଧି ହୋଇଯାଏ । ଓଡିଶା ହସ୍ତ ଶିଳ୍ପ ନିଗମର ବିକାଶ ସହିତ ଏହାକୁ ବ୍ୟବସାୟ ଦୃଷ୍ଟିରୁ ସଫଳ କରିବାର ଗୁରୁ ଦାୟିତ୍ୱ ସେ ବହନ କରିଥିଲେ । ରାଜ୍ୟ ପର୍ଯ୍ୟଟନ ସହିତ ହସ୍ତଶିଳ୍ପ ଏବଂ ହସ୍ତତନ୍ତର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସେ ଉପଲବ୍ଧି କରିଥିଲେ ।

ଚାକିରିରୁ ଅବସର ଗ୍ରହଣ କଲେ କିନ୍ତୁ କାମରୁ ନୁହେଁ । ୟୁନିଭର୍ସ ପ୍ରତିଷ୍ଠା ପାଇଁ ତାଙ୍କର ଅବଦାନ ବିପୁଳ । ଠିକ୍ ସେଇପରି ବହୁ ଆନ୍ତର୍ଜାତିକ ସେମିନାର, ପୁସ୍ତକ ପ୍ରକାଶନ

ପାଇଁ ତାଙ୍କର ଭୂମିକା କଥା ମନେ ପକାଇଲେ ଆଖି ଝୁଣ୍ଟି ହୋଇଯାଏ । ସେଇଟା ୟୁନିଭର୍ସ ପ୍ରତିଷ୍ଠାର ପ୍ରାକ୍‌କାଳ । ସମସ୍ୟା ବହୁତ କିନ୍ତୁ ଗୋପବାବୁ ଅଛନ୍ତି । ଭରସାରେ ଭୁଲ ହୋଇନି କଦାପି । ସେ ଆଜି ନାହାନ୍ତି କିନ୍ତୁ ଭୁଲିହେବ କିମିତି ତାଙ୍କର ଅବଦାନ । ମନେପଡୁଚି ଆନ୍ତର୍ଜାତିକ ବୌଦ୍ଧ ଜୈନ ଦର୍ଶନ ସେମିନାର କଥା ଏବଂ ଗୋପବାବୁଙ୍କ ଭୂମିକା ।

ଜୀବନରେ ବହୁ ବିପର୍ଯ୍ୟୟ ଆସିଛି । ତାକୁ ସାମନା କରିଛନ୍ତି ସେ ସାହସର ସହିତ, ଧୈର୍ଯ୍ୟହରା ହୋଇ ନାହାନ୍ତି । ମଣିଷ ନା ପଥର ନା ସୈନିକ ? ଯୁବ ଅବସ୍ଥାରେ ଛାତିର ରୋଗ, ତାଙ୍କର ଜୀବନ କାଳବ୍ୟାପୀ ସାଥୀ ହୋଇଛି । ସଦା ହସ ହସ ସ୍ତ୍ରୀକୁ ହରାଇଛନ୍ତି ଅପରେଶନ ଟେବୁଲରେ । ନିଶ୍ଚେତକ ଔଷଧ ପାଲଟିଛି ମରଣଯନ୍ତା । ତାର କବଳରୁ ମୁକ୍ତି ନପାଇ ସେ ବିଦାୟ ନେଇ ଯାଇଛନ୍ତି ଚିର ଦିନ ପାଇଁ । ଏକମାତ୍ର ପୁତ୍ରର ଆକସ୍ମିକ ଦୁର୍ଘଟଣାରେ ମୃତ୍ୟୁ ହୋଇଛି । ତରୁଣ ବୟସ, ସଦ୍ୟ ଚାକିରି କରିଛି ଆଉ ଭୁବନେଶ୍ୱର ରାଜରାସ୍ତାରେ ହରାଇଛି ଜୀବନ, ସମସ୍ତଙ୍କ ଅଜାଣତରେ । ଗୋପ ପଥର ପାଲଟି ଯାଇଛି କିନ୍ତୁ ହାରି ନାହିଁ ।

ପରିବାର ବତ୍ସଳ, ବନ୍ଧୁ ବତ୍ସଳ, ମେଳାପୀ ଗୋପ ହଜିବାକୁ ଚେଷ୍ଟା କରିଛି ଦୁଇ କନ୍ୟାଙ୍କ ଗହଣରେ, ସାନ ଭାଇ ଆଉ ତା'ର ପରିବାର ଭିତରେ, ହଜିବାକୁ ଚେଷ୍ଟା କରିଛି ବୃନ୍ଦାବନ, ରାଇଚରଣ ପ୍ରଭୃତି ବନ୍ଧୁଙ୍କ ଗହଣରେ । ଗୋପ ସହିତ ମୋର ଜୀବନର ବହୁ ସ୍ମୃତି ବିଜଡ଼ିତ । କୃପାସିନ୍ଧୁ ଫୋନ କରୁଚି, ବୃନ୍ଦାବନ, ରାଇଚରଣ ଫୋନ କରୁଛନ୍ତି ଲେଖିବେଟି ଲେଖି ପାରିବେଟି ? ସତରେ ଭାରି କଷ୍ଟ କାମ, ମୋତେ କିନ୍ତୁ ଲେଖିବାକୁ ହେବ । କାରଣ ତା'ର ମୃତ୍ୟୁରେ ମୁଁ ହରାଇ ବସିଛି ଏକ ସହୋଦର, ସହଯୋଦ୍ଧା ଏବଂ ସହକର୍ମୀ ।

ସଂସାରରେ କେହି ରହିବେ ନାହିଁ । ସମସ୍ତଙ୍କୁ ଯିବାକୁ ହେବ । ସମୟର ବାଲିରେ ଯାହାର ପାଦ ଚିହ୍ନ ଯେତିକି ଉଜ୍ଜ୍ୱଳି ରହିବ ତାର ଜୀବନ ସେତିକି ସାର୍ଥକ । ଗୋପ କଷ୍ଟ ପାଉଥିଲା । ଆଉ କ'ଣ କାମ ବାକି ଥିଲା ? କାହିଁକି ଆଉ କଷ୍ଟ ପାଆନ୍ତା ? ଗୋପ, ତମେ ଗଲ । ଆମେ ସବୁ ଯିବା ବାଟରେ । ଦେଖାହେବ ଶୀଘ୍ର । ତମ ଲାଗି ଦି'ଟୋପା ଲୁହ ବୋହି ନାଇଁ । ଆଖି ପଥର ପାଲଟି ଯାଇଛି ନା କ'ଣ ?

ଗୋପ ଆଉ ନାହିଁ ।

□□□

# କର୍ମେ ଜୀଏଁ ନର

## (୰ ଗୌରୀଶଙ୍କର ରାୟ)

ଇତିହାସ ଏକ ମହାପ୍ରବାହ । ଅବାରିତ ତାର ଗତି । ସେ ସବୁ ପୋଛି ପକାଏ । ରହିଯାଏ କେବଳ ସେଇମାନଙ୍କ ସ୍ମୃତି । ଯେଉଁମାନେ ନିଜେ ଜଳି ଅନ୍ୟକୁ ଆଲୋକ ଦିଅନ୍ତି, ଅନ୍ଧାର ଭିତରେ । ଇମିତି ଏକ ଅନ୍ଧାର ଥିଲା ସେଦିନ । ଦରକାର ପଡୁଥିଲା ସେମିତି ଲୋକ ଯେଉଁମାନେ ଭୟକୁ ଡରିବେ ନାହିଁ, ଗୋଲାମୀ ସହିତ ସାଲିସ କରିବେ ନାହିଁ । ସେଇ ବିରାଟ ଆକାଂକ୍ଷା, ଜାତୀୟ ଅଭିଲିପ୍‌ସାର ପ୍ରତୀକ ଥିଲେ ଗୌରୀଶଙ୍କର ।

ସେ ଆସିଥିଲେ ସଂସାରକୁ ୧୮୩୮ ମସିହାରେ । ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ସରିଥିଲା ୧୮୦୩ ରେ । ପରାଧୀନତାର ଅନ୍ଧକାର, ସୂଚୀଭେଦ୍ୟ ଅନ୍ଧକାର ଘେରି ରହିଥିଲା ସାରା ଦେଶକୁ । ଏଇ ଜାତି କେବଳ ବ୍ରିଟିଶମାନଙ୍କର ପରାଧୀନ ହୋଇନଥିଲା । ମରହଟ୍ଟା ବର୍ଗୀ, ବଙ୍ଗାଳୀ ଜମିଦାର, ଯବନ ଆକ୍ରମଣକାରୀଙ୍କ ଶରବ୍ୟ ହୋଇ ଶୋଇ ରହିଥିଲା ମୂର୍ଚ୍ଛାହତ ହୋଇ । ଏ ଜାତିର ଭାଷା, ସଂସ୍କୃତି, ଐତିହ୍ୟ ସବୁ ଯେମିତି ଲିଭିଯିବ ।

ନା, ଲିଭିବ ନାହିଁ । ଲିଭି ପାରେ ନା । ଉଦାତ୍ତ କଣ୍ଠ । ନିର୍ଭୀକ ଆବାଜ । ସେ ଚାକିରି କରୁଥିଲେ । ହାକିମ ବିଲାତି, ହାକିମ ବଙ୍ଗାଳୀ । ତଥାପି ସେ ଡରିବାର ଲୋକ ନୁହନ୍ତି । ଆଜି ତ ସରକାରୀ କର୍ମଚାରୀ କୁର୍ଣ୍ଣିସ କରି କରି କ୍ଲାନ୍ତ, ତଥାପି ରକ୍ଷା ନାହିଁ । ଆମେ ବର୍ତ୍ତମାନ ସ୍ୱାଧୀନ ଭାରତର । କିନ୍ତୁ ସେତେବେଳେ ? ପାଠ ପଢ଼ିବା ଯେମିତି ଦୁର୍ମୂଲ୍ୟ ଥିଲା, ତା'ଠାରୁ ଆଉରି ଦୁର୍ମୂଲ୍ୟ ସରକାରୀ ଚାକିରି । ଏହା ସତ୍ତ୍ୱେ ମହାଯଜ୍ଞରେ ବଳିର ପ୍ରୟୋଜନ । ସରକାରୀ କିରାନୀ ଗୌରୀଶଙ୍କର ପାଲଟିଲେ କର୍ମବୀର ।

ଧରିଲେ କଲମ । କିନ୍ତୁ ସେତକ ତ କୃପାଣ ନୁହେଁ । ଲେଖା ପାଇଁ ମାଧ୍ୟମ ଦରକାର । ଆରମ୍ଭ ହେଲା 'ଉତ୍କଳ ଦୀପିକା' ଛାପିବା ପାଇଁ କଟକ ପ୍ରିଣ୍ଟିଂ ପ୍ରେସ । ଜାତୀୟ ଚେତନାର ପ୍ରଥମ ଉଦ୍‌ବେଳନ । ଓଡିଆ ଭାଷା ଓ ସଂସ୍କୃତିକୁ ରକ୍ଷା କରିବାକୁ ହେବ, ବର୍ଗୀର ଆକ୍ରମଣରୁ । ବର୍ଗୀ ହେଉଛି ବର୍ଗୀ । ତାର ଜାତି ନାଇଁ, ଧର୍ମ ନାହିଁ । ସେଇ ବିରାଟ

ଜାତୀୟତାରେ ଓଡ଼ିଆ ଜାତି ଗର୍ବିତ । ଏହାର କର୍ମବୀର ଗୌରୀଶଙ୍କର ବଙ୍ଗାଳୀ, ରାଧାନାଥ ରାୟ ବଙ୍ଗାଳୀ, ମଧୁସୂଦନ ମହାରାଷ୍ଟ୍ରୀୟ, କିନ୍ତୁ ସେମାନେ ଓଡ଼ିଆ ଜାତିର ପ୍ରାଣଧାର । ଭାରତର କୌଣସି ପ୍ରାନ୍ତରେ ଏ ପ୍ରକାର ଜାତୀୟତାବୋଧ ନାହିଁ । ଏ ଜାତି ଆପଣାର ସ୍ୱାତନ୍ତ୍ର୍ୟ ପାଇଁ ଯେମିତି ଲଢ଼ିଛି, ମହାଭାରତୀୟତାକୁ ସେମିତି ଅକ୍ଷୁର୍ଣ୍ଣ ରଖିଛି । ଗୌରୀଶଙ୍କର ଏହି ଜାତୀୟତାର ଉଜ୍ଜ୍ୱଳ ପ୍ରତୀକ ।

ଆଜି ଟାଉନହଲରେ ଶହେ ଟଙ୍କା ଦେଇ ସଭା କରିହୁଏ । ଆମେ ପଢ଼ିଲାବେଳେ ଥିଲା ଦୁଇ ଟଙ୍କା । ବୋଧହୁଏ ପଚାଶ ଗୁଣ ଦାମ ତିରିଶ ବର୍ଷରେ ବଢ଼ିଥିବା ସାମଗ୍ରୀ ମଧ୍ୟରେ ଟାଉନହଲ ସର୍ବପ୍ରଥମ । ବିଶ୍ୱାସ କରିବା କଠିନ ଯେ ଏଇ ଟାଉନହଲକୁ ଗୌରୀଶଙ୍କର ନିଜ ଅର୍ଜିତ ଝାଳବୁହା ପଇସାରେ ତିଆରି କରିଥିଲେ କଟକବାସୀଙ୍କ ପାଇଁ । ସଭାଟିଏ କରିବାକୁ ଘରଟିଏ ନଥିଲା ।

କର୍ମୀର କର୍ମ ବ୍ୟାପକ । ଦେଶରେ କର୍ମର ଅଭାବ ନା କର୍ମୀର ? ତଥାପି ଦଳାଦଳି, ପିଟାପିଟି । କର୍ମ ରହିଲାଣି କେତେ ଦୂରରେ । ଉତ୍କଳ ଆସୋସିଏସନରୁ ପ୍ୟାରୀମୋହନ ଏକାଡେମୀର ହଷ୍ଟେଲ, ତାଳପତ୍ର ପୋଥିର ପୁନରୁଦ୍ଧାରରୁ ଟିକସ ବିରୁଦ୍ଧରେ କଲମ ଚାଳନା, କର୍ମବୀରଙ୍କର କର୍ମ ଛୁଇଁଥିଲା ଜୀବନର ବହୁ ବିଭାବକୁ । ସୀମାହୀନ, ଦିଗନ୍ତ ବିସ୍ତାରୀ ତାଙ୍କର କର୍ମଭୂମି । କର୍ମବୀର ନାମର ସାର୍ଥକତା ତ ଏଇଠି ।

ପ୍ରଥମ ମହାଯୁଦ୍ଧ ସରି ସରି ଆସୁଛି । ଜନ୍ମଲାଭ କରିବ ନୂତନ ପୃଥିବୀ । ଏତ ତାର ଗର୍ଭବେଦନା ମାତ୍ର । ଭାରତବର୍ଷର ଜାତୀୟ ଜୀବନରେ ନୂତନ ଅରୁଣୋଦୟ ପ୍ରତିଭାତ ହୋଇଛି । ଓଡ଼ିଆ ଜାତି ଓ ତାର ଭାଷା ବଞ୍ଚି ରହିଛି । କର୍ମବୀରଙ୍କର କର୍ମର ସମାପ୍ତି ଘଟିଛି ୧୯୧୭ ମସିହାରେ ।

କିନ୍ତୁ ସତରେ କ'ଣ ତାଙ୍କର କର୍ମର ସମାପ୍ତି ଘଟିଛି ? ନା, କର୍ମ ହେଉଛି ଅବାରିତ, ଚିରନ୍ତନ । ସେ ଛାଡ଼ି ଯାଇଛନ୍ତି ତାଙ୍କର କାର୍ଯ୍ୟକୁ ଉତ୍ତରାଧିକାରୀମାନଙ୍କ ପାଇଁ, ଏଇ ସମଗ୍ର ଜାତିପାଇଁ ।

□□□

# ଅଭିନୟର ସିଦ୍ଧପୁରୁଷ

## (୰ ଗୌର ଘୋଷ)

ଗୌର ଘୋଷ ମୋର ସହପାଠୀ । ପିଲାଦିନରୁ ଅଭିନୟ ବସା ବାନ୍ଧିଥିଲା ତାଙ୍କ ଭିତରେ । ଗୌର ଡ୍ରାମାଟିକ୍ ସୋସାଇଟିର ପ୍ରତିନିଧି ପଦବୀ ପାଇଁ ଯେଉଁ ସୁନ୍ଦର ଅଭିନୟ ଭଙ୍ଗୀରେ ଭୋଟ ପାଇଁ ନିବେଦନ କରିଥିଲା ତା' ଆଜି ପାଞ୍ଚ ଦଶନ୍ଧି ପରେ ମଧ୍ୟ ମନରେ ଭାସି ଉଠେ । ଜୁଲାଇ ମାସରେ କଲେଜରେ ନାମ ଲେଖା ପ୍ରଥମ ବାର୍ଷିକ ଶ୍ରେଣୀରେ ଏବଂ ଅଗଷ୍ଟ ମାସରେ ନିର୍ବାଚନ । ସେବେ ଅଗଷ୍ଟ ୧୪ ତାରିଖ ସୁଦ୍ଧା କଲେଜ ୟୁନିଅନ ନିର୍ବାଚନ ହେଉଥିଲା ଏବଂ ବିଜୟୀ ପ୍ରାର୍ଥୀମାନେ ଗୋଟାଏ ପୂରା ବର୍ଷ ପାଉଥିଲେ କାର୍ଯ୍ୟ କରିବା ପାଇଁ । ମଝିରେ ଏହି ନିର୍ବାଚନ ନଭେମ୍ବର-ଡିସେମ୍ବର ମାସରେ ହେବାକୁ ଲାଗିଲା ଏବଂ ଫଳ କ'ଣ ହେଲା ତା' ସମସ୍ତେ ଜାଣନ୍ତି ।

ଗୌର ଘୋଷ ସେଦିନ ଯେଉଁ ଅଭିନୟ ଭଙ୍ଗୀରେ ଭୋଟ ପାଇଁ ନିବେଦନ କଲେ ତାହା ମୋର ଅଦ୍ୟାପି ସ୍ମୃତ ହୋଇ ରହିଛି । ସେ କ'ଣ ପଢ଼ିଲେ ରେଭେନ୍‌ସା କଲେଜରେ ମୋର ହେତୁ ହେଉ ନାହିଁ । କିନ୍ତୁ ଗୌର ଘୋଷ, ସହପାଠୀ ଗୌର ଘୋଷ ଯେ ଶ୍ରୀ ଜଗନ୍ନାଥ ଫିଲ୍ମରେ ଅଭିନୟ କରୁଛନ୍ତି ଏହା ମୁଁ ଜାଣିବାକୁ ପାଇଲି କାରାଗାର ଭିତରୁ । ଚଳଚିତ୍ର ଜଗତରେ ସେ ଅଭିନୟ କରିବାକୁ ବାହାରି ଯିବା ପୂର୍ବରୁ ଜୀବନର ଅନ୍ୟ ଏକ ନାଟକକୁ ଓହ୍ଲାଇ ଯାଇଥିଲି ମୁଁ । ତା'ପରେ ବହୁଦିନ ଧରି ଦେଖା ହୋଇନାହିଁ । କିମିତି ହୁଅନ୍ତା ? ଜୀବନର ରାଜପଥରେ ସେ ଯେଉଁଠି ଅଭିନୟ କରୁଥିଲେ, ତା'ର ବହୁ ଦୂରରେ ମୁଁ ହୁଏତ କାରାଗାର ଭିତରେ ବନ୍ଦୀ ଜୀବନ ବା ଗଭୀର ଅରଣ୍ୟାନୀ ଭିତରେ ପଳାତକ ଜୀବନଯାପନ କରୁଥିଲି । କିନ୍ତୁ ଗୌର ଯାଇଛନ୍ତି ବମ୍ବେ ଏବଂ ସେଠାରେ ପୃଥ୍ୱୀରାଜ କପୁରଙ୍କର ପ୍ରସିଦ୍ଧ ପୃଥ୍ୱୀ ଥିଏଟରରେ ଅଭିନୟ କରିବାର ସୁଯୋଗ ପାଇଛନ୍ତି ଏହା ଖବରକାଗଜରୁ ଜାଣିଥିଲି । ଆଜିର ଯୁବକମାନେ ବା ଯୁବ କଳାକାରମାନେ ପୃଥ୍ୱୀ ଥିଏଟର ସମ୍ପର୍କରେ ବିଶେଷ କିଛି କହିପାରିବେ ନାହିଁ । କିନ୍ତୁ ସେତେବେଳେ ପୃଥ୍ୱୀ ଥିଏଟରର ଭୂମିକା ଥିଲା ଐତିହାସିକ, ଯୁଗାନ୍ତକାରୀ । ଅଭିନୟ ସରିବା ପରେ ଖୋଦ୍ ପୃଥ୍ୱୀରାଜଙ୍କୁ ଦେଖାଯାଏ ଥିଏଟରର ଗେଟ୍ ସାମନାରେ, ଏକ ଟାୱେଲ ହାତରେ । ଭିକ୍ଷା ମାଗୁଛନ୍ତି

ପୃଥ୍ୱୀ ଥିଏଟର ପାଇଁ । କୁଳାନ ହେଉ ନାହିଁ ଆୟ, ତେଣୁ ଭିକ୍ଷା । ଟାୱେଲ ଭର୍ତ୍ତି ହୋଇଯାଏ ନୋଟରେ, ଟଙ୍କାରେ । କାରଣ ପୃଥ୍ୱୀ ଥିଏଟର୍ସ ଦେଇଥାଏ ଏକ ନୂତନ ଦିଗ୍‌ଦର୍ଶନ । ଅଭିନୟର ନୂତନ ଶୈଳୀ । ଗୌର ଘୋଷ ଆହୁରି ମଧ୍ୟ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କର ପ୍ରସିଦ୍ଧ ଓଡିଶା ଥିଏଟର୍ସରେ କାର୍ଯ୍ୟ କରିବାର ସୁଯୋଗ ପାଇଥିଲେ । କବିଚନ୍ଦ୍ର ଓଡିଶାର ନାଟ୍ୟ ଓ ସଙ୍ଗୀତର ଏକ ଇତିହାସ । ଓଡିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟ ଭାବରେ ସ୍ୱୀକୃତି ପାଇଁ ତାଙ୍କର ଅବଦାନ ଯେପରି ବିପୁଳ, ବାସ୍ତବଧର୍ମୀ ସାମାଜିକ ନାଟକ ପାଇଁ ତାଙ୍କର ଅବଦାନ ସେଇପରି ଯୁଗସ୍ରଷ୍ଟା । କବିଚନ୍ଦ୍ରଙ୍କ ଭାତ, ବେକାର ପ୍ରଭୃତି ନାଟକ ଓଡ଼ିଶାରେ ଇତିହାସ ଯେପରି ସୃଷ୍ଟି କରିଛି ଚମକ ମଧ୍ୟ ସେଇପରି ସୃଷ୍ଟି କରିଛି । ଗୌର ଘୋଷ ତାଲିମ ପାଇଥିଲେ ଏବଂ ପାକଳ ହୋଇଥିଲେ । ଫଳରେ ଶ୍ରୀଜଗନ୍ନାଥ ଚଳଚ୍ଚିତ୍ର ଅଭୂତପୂର୍ବ ସାଫଲ୍ୟ ଅର୍ଜନ କରିଥିଲା ଏବଂ ଗୌର ଘୋଷଙ୍କ ଅଭିନୟ ମଧ୍ୟ ଉଚ୍ଚ ପ୍ରଶଂସା ଲାଭ କରିଥିଲା । ଗୌର ଘୋଷଙ୍କର ତିନୋଟି ଚଳଚ୍ଚିତ୍ର 'ମା', 'ଲକ୍ଷ୍ମୀ' ଏବଂ 'କା' ଜାତୀୟ ପୁରସ୍କାର ଲାଭ କରିଛି । ଏତିକିବେଳେ ଗୌର ଆଉ ଗୋଟିଏ ପୁରସ୍କାର ଲାଭ କଲେ ନିଜ ଜୀବନ ପାଇଁ । ସାରଦା ପ୍ରସନ୍ନ ନାୟକ କେବଳ ଏକ କଳାକାର ନଥିଲେ, ସେ ମଧ୍ୟ ଥିଲେ ସୋସଲିଷ୍ଟ ପାର୍ଟିର ଜଣେ ସକ୍ରିୟ କର୍ମୀ । ତାଙ୍କର ପ୍ରତିଭାଶାଳୀ ଭଉଣୀ ହେଉଛନ୍ତି ଚପଳା ନାୟକ । ତାଙ୍କୁ ପତ୍ନୀ ରୂପରେ ଗ୍ରହଣ କଲେ ଗୌର । ଚପଳାଙ୍କର ନାଁ ବଦଳିଗଲା । ହେଲା ପାର୍ବତୀ ଘୋଷ । ସେଇ ନାମରେ ପରିଚିତା ଏଇ ଅଭିନେତ୍ରୀ ଜଣେ ସଫଳ ଅଭିନେତ୍ରୀ ଭାବରେ ବିପୁଳ ଖ୍ୟାତି ଅର୍ଜନ କରିଛନ୍ତି । 'ଛମାଣ ଆଠ ଗୁଣ୍ଠ' ଚଳଚ୍ଚିତ୍ରରେ ପାର୍ବତୀଙ୍କର ଅଭିନୟ ହୋଇଛି ମନଛୁଆଁ । ଗୌର ଓ ପାର୍ବତୀ ଯୁଗଳ ଓଡିଆ ଚଳଚ୍ଚିତ୍ରକୁ ସମୃଦ୍ଧ କରିଯାଇଛନ୍ତି । 'ରୂପ ଭାରତୀ' ଗଢ଼ି ଉଠିଲା ସୁରେନ୍ଦ୍ର ମୋହନ ଦାସଙ୍କ ନେତୃତ୍ୱରେ । ଗୌର ଘୋଷ ଏହାର କେବଳ କର୍ମକର୍ତ୍ତା ନଥିଲେ, ଚଳଚ୍ଚିତ୍ର ନିର୍ମାଣରେ ଏହାର ସାଫଲ୍ୟ ପାଇଁ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ।

ଚଳଚ୍ଚିତ୍ର ଅଭିନୟରୁ ଚଳଚ୍ଚିତ୍ର ନିର୍ମାଣ । ଅଭିନେତା ହିସାବରେ ଯେମିତି ଖ୍ୟାତି ଠିକ୍ ସେଇପରି ଖ୍ୟାତି ଚଳଚ୍ଚିତ୍ର ନିର୍ମାତା ଭାବରେ ।

ଗୌର ଘୋଷ ହଠାତ୍ ଅସୁସ୍ଥ ହୋଇପଡନ୍ତି । ଏବଂ କ୍ୟାନ୍‌ସର ରୋଗରେ ଆକ୍ରାନ୍ତ ହୁଅନ୍ତି । ପାରିବାରିକ ଜୀବନରେ ଅନେକ ବିପର୍ଯ୍ୟୟ ଦେଖାଦିଏ । ଗୌର ଘୋଷ ଜୀବନ ଦୀପ ନିର୍ବାଣୋନ୍ମୁଖୀ ହୋଇଯାଏ । ପ୍ରତିଭାଶାଳୀ ଜୀବନ କ୍ଷୟ ହୋଇଯାଉଚି ଦାରୁଣ ରୋଗରେ ।

ଗୌର ଘୋଷ ଆଉ ନାହାନ୍ତି । କିନ୍ତୁ ଓଡିଆ ଜାତିର ଚଳଚ୍ଚିତ୍ର ଇତିହାସରେ ସେ ଲିପିବଦ୍ଧ ହୋଇ ରହିବେ ଚିରକାଳ ।

□□□

# ଇତିହାସର ସେହେନ୍‌ସାହ

## (୰ ଘନଶ୍ୟାମ ଦାସ)

ଅଧ୍ୟାପକ ଘନଶ୍ୟାମ ଦାସଙ୍କର ପରଲୋକ ହୋଇଗଲା ତାଙ୍କର କ୍ରୁକସ୍ ହିଲ୍ ସମ୍ବଲପୁର ବାସଭବନରେ ୧୪-୧-୧୯୫୯ରେ । ମାତ୍ର ୫୭ ବର୍ଷ ବୟସରେ ତାଙ୍କର ପରଲୋକ ଓଡିଶାର ଇତିହାସ ଗବେଷଣା ପାଇଁ ଏକ ଅପୂରଣୀୟ କ୍ଷତି । ଅନେକ ଅଧ୍ୟାପକ ଆସିବେ, ଆସିବେ ଅନେକ ଗବେଷକ, କିନ୍ତୁ ଠିକ୍ ଇତିହାସର ସେଇ ବାଦଶାହ ଭଳି ଅଧ୍ୟାପକ ମିଳିବେ ନାହିଁ । ଅଧ୍ୟାପକ ଘନଶ୍ୟାମ ଦାସଙ୍କ ଠାଣି ରାଜକୀୟ । ସେ ରେଭେନ୍‌ସା କଲେଜର ବାରଣ୍ଡାରେ ଯାଉଥିଲେ, ତାଙ୍କର ଚାଲି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା – ଛାତ୍ର, ଅଧ୍ୟାପକ ସମସ୍ତଙ୍କର । ଦିନେ ହଠାତ୍ ତାଙ୍କୁ ଏକ ଖଦଡ ପାଇଜାମା, ପଞ୍ଜାବୀ, ଫତେଇ ପିନ୍ଧି ଯିବାରେ ସେଇପରି ସମସ୍ତଙ୍କର ଦୃଷ୍ଟି ଆକର୍ଷିତ ହେଲା, ଏଥରକ କିନ୍ତୁ କିଛିଟ୍ ହସ ସହିତ । ସାର୍, ଆପଣଙ୍କର ଏ କି ବେଶ ! ମୁଁ ପଚାରିଲି । ସେ ପଟରୁ ଉତ୍ତର ଆସିଲା, ନାଟକ । ମୁଁ ଏକ ନୂତନ ଭୂମିକାରେ ଅବତୀର୍ଣ୍ଣ । Androcles was given to the lion, but nobody knew that it is Androcles one day helped the lion. I have been given to the lion Sradhakar Supakar, but nobody knows that I was his teacher and was responsible for his higher studies, for which he is what he is today. ନିର୍ବାଚନ ଏସବୁ ନିୟମ ମାନେ ନାହିଁ । ସାର୍ ଏ କଥା ଜାଣି ନଥିଲେ । ବ୍ୟାଲଟ୍ ବାକ୍ସର ରହସ୍ୟ ରହିଛି ଅନ୍ୟତ୍ର, ସେ କଥା ଐତିହାସିକ ଘନଶ୍ୟାମ ଦାସ ଜାଣିବେ କୁଆଡୁ ? ଚଳନ୍ତି ସମୟ ଇତିହାସ ପାଲଟିବାକୁ ଡେରି ଅଛି । ଯେତେବେଳେ ତାହା ଇତିହାସ ପାଲଟିବ ଏବଂ ଅଧ୍ୟାପକ ଘନଶ୍ୟାମ ଦାସ ସେଥିରେ ଅଥରିଟି । କିନ୍ତୁ ଚଳନ୍ତି ସମୟ ହେଉଛି ରାଜନୀତି ଏବଂ ଘନଶ୍ୟାମ ବାବୁ ସେଥିରେ ଅଜ୍ଞ । ତଥାପି ଅଧ୍ୟାପକ ଘନଶ୍ୟାମ ଦାସ ସମ୍ବଲପୁର ଅଞ୍ଚଳରୁ ସଂଖ୍ୟାଧିକ ଭୋଟ ପାଇଥିଲେ କିନ୍ତୁ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର କରିସ୍ମା ଥିବା ବଲାଙ୍ଗୀର ଅଞ୍ଚଳ ତାଙ୍କ ପାଇଁ ଆଣିଦେଇଥିଲା ପରାଜୟ । ଅଧ୍ୟାପକ ଘନଶ୍ୟାମ ଦାସ ନେଇଥିଲେ ଅକାଳ ପେନ୍‌ସନ (Premature pension) । ତା'ପରେ ତାଙ୍କର ଆଉ କିଛି କାମ ନଥିଲା ବିନା କାମରେ ସେ ରହିପାରିବେ ନାହିଁ । ହଠାତ୍ ହୃଦ୍‌ରୋଗରେ

ଆକ୍ରମିତ ହୋଇ ତାଙ୍କର ପରଲୋକ । କ'ଣ ପରିଣତ ବୟସରେ ନିର୍ବାଚନଜନିତ ଧକ୍କାକୁ ସମ୍ବେଦନଶୀଳ ଘନଶ୍ୟାମ ଦାସ ସହ୍ୟ କରିପାରିଲେ ନାହିଁ କି ?

ଅଧ୍ୟାପକ ଘନଶ୍ୟାମ ଦାସଙ୍କର ପୂର୍ବ ପୁରୁଷଙ୍କ ବାସସ୍ଥାନ ଥିଲା ଧଉଳିଗିରି ପାଖ କୌଣସି ଗ୍ରାମରେ । ଏହି ବଂଶର ନାରାୟଣ ଦାସ ଆପଣାର ପିତାମାତାଙ୍କ ସହ ଚାଲିଯାଇଥିଲେ ସମ୍ବଲପୁର ଏବଂ ପାତିଥିଲେ ସେଇଠି ଆପଣାର କ୍ଷୁଦ୍ର ବ୍ୟବସାୟ । ସେ କାଳକ୍ରମେ ଆପଣା ବ୍ୟବସାୟରେ ପ୍ରଚୁର ସମ୍ପତ୍ତି ଅର୍ଜନ କରିଥିଲେ ଏବଂ ଆଠୋଟି ଗ୍ରାମ ଖରିଦ କରିଥିଲେ । ଜଗନ୍ନାଥ ଦାସ ପୈତୃକ ସମ୍ପତ୍ତିର ବଣ୍ଟୁଆରାରେ ରକ୍ସା ଓ କଟାପାଲି ଗାଁ ପାଇଥିଲେ । ସେଇଠି ଘନଶ୍ୟାମ ଦାସଙ୍କର ଜନ୍ମ ୧୯୦୨ ମସିହା ଏପ୍ରିଲ ଚାରି ତାରିଖରେ । ପିତା ଗୟାଧର ଦାସ ଏବଂ ମାଆ ଶ୍ରୀମତୀ ଦେବୀ ।

ସମ୍ବଲପୁର ଜିଲ୍ଲା ସ୍କୁଲରୁ ସମଗ୍ର ଜିଲ୍ଲାରେ ପ୍ରଥମ ସ୍ଥାନ ଅଧିକାର କରି ମାଟ୍ରିକ ପାଶ୍ କରିବା ପରେ ସେ ରେଭେନ୍ସା କଲେଜରେ ଅଧ୍ୟୟନ କରନ୍ତି । ତାଙ୍କର ଶିକ୍ଷକମାନଙ୍କ ମଧ୍ୟରେ ଅଧ୍ୟାପକ ନିଶିକାନ୍ତ ସାନ୍ୟାଲ ଓ ସାର୍ ଯଦୁନାଥ ସରକାରଙ୍କ ଭଳି ବିଶିଷ୍ଟ ଐତିହାସିକ ଓ ସେମାନଙ୍କର ପ୍ରେରଣା ହିଁ ଘନଶ୍ୟାମଙ୍କୁ ଓଡ଼ିଶା ଇତିହାସର ତମସାଚ୍ଛନ୍ନ ଅଧ୍ୟାୟମାନଙ୍କ ଉପରେ ଅଲୋକପାତ କରିବାପାଇଁ ସାହାଯ୍ୟ କରିଥିଲା । ନୂତନ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ଘନଶ୍ୟାମ । ଏହି ସମୟରେ ୧୯୨୩ ଅକ୍ଟୋବର ମାସରେ ରେଭେନ୍ସା କଲେଜରି ଛାତ୍ର ଓ ଅଧ୍ୟାପକମାନେ ଭ୍ରମଣରେ ଯାଆନ୍ତି ବିହାରର ବୌଦ୍ଧ ପୀଠ ରାଜଗିରକୁ ଏବଂ ସେଇଠି ଏକ ଦୁର୍ଘଟଣାରେ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା ପାଆନ୍ତି ସାର୍ ଯଦୁନାଥ ସରକାର ଛାତ୍ର ଘନଶ୍ୟାମ ଦାସଙ୍କଦ୍ୱାରା । ଶିକ୍ଷକ ଓ ଛାତ୍ର ଭିତରେ ସମ୍ପର୍କ ନିବିଡ ହୋଇଉଠେ । ଓଡିଶା ଇତିହାସର ତମସାଚ୍ଛନ୍ନ ଅଧ୍ୟାୟ ଉପରେ ଆଲୋକପାତର ରେଖା ।

ରେଭେନ୍ସା କଲେଜରୁ ପାଟନା ବିଶ୍ୱବିଦ୍ୟାଳୟ । ସେତେବେଳକୁ ଘନଶ୍ୟାମ ଦୁଇ ପୁତ୍ର ହରିଶଙ୍କର ଓ ସଚ୍ଚିଦାନନ୍ଦଙ୍କର ଜନକ ।

ତା'ପରେ ଇଂଲଣ୍ଡ । ନିଜର ମେଧାବଳରେ ସେ ବିହାର-ଓଡିଶା ବୃତ୍ତି ପାଆନ୍ତି । ଏବଂ ଏହାହିଁ ତାଙ୍କୁ ସାହାଯ୍ୟ କରେ ଇଂଲଣ୍ଡରେ ପଢ଼ିବା ପାଇଁ । ପାଟନା ବିଶ୍ୱବିଦ୍ୟାଳୟରୁ ଏଭଳି ବୃତ୍ତି ପାଇବାରେ ସେ ପ୍ରଥମ ଓଡ଼ିଆ । ଲଣ୍ଡନର ପ୍ରସିଦ୍ଧ ସ୍କୁଲ ଅଫ୍ ଓରିଏଣ୍ଟାଲ ଷ୍ଟଡିଜ୍‌ରେ ଅଧ୍ୟୟନ ଏବଂ ୧୯୨୭ ମସିହାରେ ପୁଣି ପ୍ରତ୍ୟାବର୍ତ୍ତନ ରେଭେନ୍ସା କଲେଜକୁ । ଏଥରକ ଅଧ୍ୟାପକ ଭାବରେ ।

ଓଡ଼ିଶାର ଇତିହାସ ଉପରେ ଗବେଷଣା ଆରମ୍ଭ ହେଲା । ପ୍ରାଚୀ ଉପତ୍ୟକା ଉପରେ ଗଢ଼ି ଉଠିଛି ଓଡ଼ିଶାର ଇତିହାସ । ପ୍ରାଚୀ ଉପତ୍ୟକା ଉପରେ ଗବେଷଣା ଏବଂ ପୁସ୍ତକ ଘନଶ୍ୟାମ ଦାସଙ୍କର ଅନବଦ୍ୟ କୃତି ।

ଘନଶ୍ୟାମ ବାବୁଙ୍କ ସାଙ୍ଗମାନଙ୍କ ଭିତରେ ଓଡ଼ିଶାର ତତ୍କାଳୀନ ଗଭର୍ଣ୍ଣର ଫଜଲ ଅଲ୍ଲି । ଲାଲବାଗ ଉପରେ ଗବେଷଣା ଫଜଲ ଅଲ୍ଲି ଏବଂ ଘନଶ୍ୟାମ ଦାସଙ୍କ ଭିତରେ ବନ୍ଧୁତାର ଗ୍ରନ୍ଥି । ଉଭୟଙ୍କର ବନ୍ଧୁତ୍ୱ ଓଡ଼ିଶା ଇତିହାସ ପାଇଁ ଅନେକ ସାହାଯ୍ୟକାରୀ ହେଲା ।

ଓଡ଼ିଶାର ସଂଗ୍ରହାଳୟ ନାହିଁ । ଏହାର ମୂଳଦୁଆ ପଡ଼ିଲା ରେଭେନ୍ସା କଲେଜରେ । ବର୍ତ୍ତମାନ ଯେଉଁଠି ପରିଜା ପୋଷ୍ଟ ଗ୍ରାଜୁଏଟ ଡିପାର୍ଟମେଣ୍ଟ, ବଟାନୀ ଅବସ୍ଥିତ ସେଇଠି ପଡ଼ିଲା ଏହାର ମୂଳଦୁଆ । ଅଧ୍ୟାପକ ଘନଶ୍ୟାମ ଦାସ ତାର ଏକ ବିନ୍ଧାଣୀ । ବକ୍ସି ଜଗବନ୍ଧୁଙ୍କ ଉପରେ ତାଙ୍କର ଗବେଷଣା ପ୍ରସୂତ ନିବନ୍ଧକୁ ସରକାର ପ୍ରକାଶ କରିବା ପାଇଁ ଅନୁମତି ଦେଲେ ନାହିଁ । ଓଡ଼ିଶାରେ ମରହଟ୍ଟା ଇତିହାସ ଉପରେ ତାଙ୍କର ଗବେଷଣା ସାର୍ ଯଦୁନାଥ ସରକାରଙ୍କ ସହିତ ଏକ ଉଲ୍ଲେଖଯୋଗ୍ୟ ଅବଦାନ ।

ଗଙ୍ଗାଧର ମେହେର କଲେଜର ପ୍ରିନ୍ସିପାଲ ଭାବରେ କାର୍ଯ୍ୟ କଲାବେଳେ "ଗଙ୍ଗାଧର ଜ୍ୟୋତି", ଫକୀର ମୋହନ କଲେଜରେ ପ୍ରିନ୍ସିପାଲ ଭାବରେ କାର୍ଯ୍ୟ କଲାବେଳେ "ଫକୀର ମୋହନ ଜ୍ୟୋତି" ତାଙ୍କର ଅବଦାନ । ତା'ପୂର୍ବରୁ ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ସଭ୍ୟ ଭାବରେ ସେ ହିଁ ପ୍ରସ୍ତାବ ଆଣିଥିଲେ ପ୍ରଥମେ ଓଡ଼ିଶାର କଲେଜଗୁଡ଼ିକୁ ବରପୁତ୍ରମାନଙ୍କ ନାମରେ ନାମିତ କରିବାପାଇଁ ।

୧୯୫୦ ମସିହାରେ କଟକରେ ସର୍ବଭାରତୀୟ ଇତିହାସ କଂଗ୍ରେସର ସେ ସମ୍ପାଦକ । ଏହି କଂଗ୍ରେସରେ ଜଗନ୍ନାଥ ହିନ୍ଦୁ, ବୌଦ୍ଧ ନା ଜୈନ – ଏହାରି ଉପରେ ବିତର୍କ ଜଗନ୍ନାଥଙ୍କ ଉପରେ ଗବେଷଣାର ନୂତନ ଦିଗ୍‌ବଳୟ ଉନ୍ମୋଚନ କରେ ।

ଗବେଷଣା ଭିତରେ ହଠାତ୍ ତାଙ୍କର ମନେହେଲା ରାଜନୀତି କରିବାପାଇଁ । ସେ ଅବସର ନେଲେ । ଗବେଷଣାର ଏକ ଅଧ୍ୟାୟର ଯବନିକା ପଡ଼ିଲା । କିନ୍ତୁ ସେ ସୃଷ୍ଟି କରିଗଲେ ବହୁ ଗବେଷକଙ୍କୁ, ପ୍ରେରଣା ଦେଇଗଲା ସେମାନଙ୍କୁ । ହେଲେ ଇତିହାସର ପିତାମହ ।

ଘନଶ୍ୟାମ ଦାସ ହେଉଛନ୍ତି ଓଡ଼ିଶା ଇତିହାସର ଏକ ବିଶାଳ ପାଟ୍ରିଆର୍କ ।

□□□

## ପହିଲି ପାଳିର ଶେଷ ପାଳି

(୰ ଚକ୍ରଧର ମହାପାତ୍ର)

" ପହିଲି ପାଳି ବୋଉ ଦେଲୁ ପଠେଇ,
ସାଙ୍ଗରେ ଯାଇଥିଲେ ସାନ କକେଇ ।
ଅଧବାଟକୁ ବୋଲି ଗୋ ନନା ଗଲେ,
ଝିଅ ଯାଉଛି ବୋଲି ମେଲାଣି ଦେଲେ ।
ନନାଙ୍କ ମୁହଁକୁ ଯେ ଚାହିଁଲି ମୁହିଁ,
ନନା ଧଇର୍ଯ୍ୟ ଧରି ପାରନ୍ତି ନାହିଁ ।
ଗତିଶ୍ୱରଙ୍କ ମାଳୀ ସେଠାରେ ଥିଲା,
ନନାଙ୍କୁ ବୁଝାଇ ବହୁତ କହିଲା ।
କାହିଁକି କାନ୍ଦ ମିତ୍ରେ ଯାଅ ଘରକୁ,
ଝିଅ ଜନମ ସିନା ପର ଘରକୁ ।"

ଆଜି ୧୯୮୨ ମସିହା ଅକ୍ଟୋବର ୨୪ ତାରିଖ । ମାଘ ସପ୍ତମୀ । ସକାଳର ଚଣ୍ଡୀପାଠ ଶୁଭୁଛି । ନନାଙ୍କର ଶେଷ ପାଳି ଆସିଗଲା । ଆଜି ଯେଉଁ ଘରକୁ ଯିବେ ସେଠାରୁ କେହି ଫେରି ନାହାନ୍ତି । ମଦର ଟେରେସା କହନ୍ତି ମୃତ୍ୟୁ ଖୁବ୍ ସୁନ୍ଦର । ଏହା ଘର ବାହୁଡା ଭଳି । ନନାଙ୍କର ସେଇଟା 'ପରଘର' କି ନିଜ ଘର ତା' ଗତିଶ୍ୱରଙ୍କ ମାଳୀଠାରୁ ଆରମ୍ଭ କରି ବୁଦ୍ଧ, ଯୀଶୁ, ଚୈତନ୍ୟ, ମହମ୍ମଦ କେହି ସଠିକ୍ କହି ପାରିନାହାନ୍ତି ।

ଶୁଭୁଛି କାନ୍ଦଣା । ଲୁହର ଧାର । ୧୯୦୮ ମସିହା ମାର୍ଚ୍ଚ ମାସ ୧୮ ତାରିଖରେ ଜନ୍ମ ନେଇଥିବା ଶିଶୁର ବିଦାୟ ଆଜି । ଆସିଲାବେଳେ ସେ କାନ୍ଦିଥିଲା ଅନ୍ୟମାନେ ହସିଥିଲେ । ଆଜି ଭିନ୍ନ ଭିନ୍ନ ମଣିଷର ଭିଡ ଜମିଛି । ସମସ୍ତଙ୍କର ଆଖିରେ ଭରା ଲୁହ । ସେ କିନ୍ତୁ ଶୋଇ ରହିଛନ୍ତି ନିର୍ବିକାର ଚିତ୍ତରେ । ପାଖରେ ତାଙ୍କର ସଂଗୃହୀତ ଅସଂଖ୍ୟ ଲୋକଗୀତି, ଢ଼ଗଢ଼ମାଳି ସତେ ଯେମିତି ହସୁଛନ୍ତି । ସେମାନେ ହଜିଯାଇଥିଲେ । ସେମାନଙ୍କୁ ଗୋଟାଇ ପୁଣି ଜୀବନ୍ୟାସ ଦେଇଥିବା ବ୍ୟକ୍ତି ଆଜି ନିଜେ ଜୀବନର ପର

ପାରରେ । ଇତିହାସର ସ୍ରଷ୍ଟା ଆଜି ନିଜେ ଇତିହାସ । ଚକ୍ରଧର ମହାପାତ୍ର ଜନ୍ମ ହୋଇଥିଲେ ବିଖ୍ୟାତ ରାଜଗୁରୁ ବଂଶରେ । ବର୍ଷକ ଭିତରେ ସେ ହୋଇଥିଲେ ପିତୃହୀନ । ଜୀବନ ପିଲାଦିନୁଁ ଥିଲା କଠୋର । ପିତା, ପରେ ଅଗ୍ରଜ ଅନନ୍ତ, ତା'ପରେ ଭଉଣୀ ଯମୁନାର ପରଲୋକ ତାଙ୍କର ମାଆଙ୍କୁ ଶାଣିତ କରିଦେଲା । ସେ ପୁତ୍ରକୁ ଲୋକଗୀତ ଶୁଣାଇ ଭୁଲାଇ ପକାଉଥିଲେ ଏବଂ ସେଇ ଲୋକଗୀତ ହିଁ ଚକ୍ରଧରଙ୍କର ମୁଣ୍ଡରେ ବସା ବାନ୍ଧିଥିଲା ପିଲାଦିନରୁ ।

ଚକ୍ରଧର ମହାପାତ୍ର ଜୀବନ ସଂଗ୍ରାମରେ ଏପରି ଶାଣିତ ହୋଇଗଲେ ଯେ ତାଙ୍କର ମେଧାଶକ୍ତି ପ୍ରକଟିତ ହୋଇଥିଲା ବାଲ୍ୟକାଳରୁ । କିନ୍ତୁ ମେଧା ଗୋଟିଏ ପଟରେ । ଆର ପଟରେ ଦୁରାରୋଧ ପରିସ୍ଥିତି । ଭକ୍ତମଧୁ ବିଦ୍ୟାପୀଠରେ ପଢ଼ିବା ପରେ ସେ ଯାଆନ୍ତି ପୁରୀ ସଂସ୍କୃତ ମହାବିଦ୍ୟାଳୟକୁ । ଦୁଇବର୍ଷ ସେଇଠି କଟେ ।

ବାହାରେ ସ୍ୱାଧୀନତା ସଂଗ୍ରାମର ଢେଉ । ଚକ୍ରଧରଙ୍କର ପୋଥିରେ ଡ଼ୋର ବନ୍ଧାହେଲା । ସେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲେ । ଶହୀଦ ଭଗତ ସିଂ ଯେଉଁଦିନ ଲାହୋରରେ ଫାଶି ପାଇଲେ ସେଦିନ ଚକ୍ରଧରଙ୍କୁ ସେଇଠି ଦେଖିବାକୁ ମିଳିଥିଲା । ଅସୁମାରି ମଣିଷ ସହିତ ସେ ମଧ୍ୟ ଭଗତ ସିଂଙ୍କୁ ପୋଡ଼ାଯାଇଥିବା ମାଟିରୁ କିଛି ଖାଇଥିଲେ ଅନୁପ୍ରାଣିତ, ଉଦ୍‌ବେଳିତ ହୋଇ । ଚକ୍ରଧର ମହାପାତ୍ର ଆପଣାର ପୁଅ ପ୍ରେମ ସୁନ୍ଦରକୁ ଭଗତ ସିଂ ଭଳି ହେବାପାଇଁ ଗଢ଼ି ତୋଳୁଥିଲେ । କିନ୍ତୁ କାଳର ଗତି କୁଟିଳ । ପ୍ରେମସୁନ୍ଦରର ସଲିଳ ସମାଧି ହୋଇଯାଏ ଏକ ନୌକା ଦୁର୍ଘଟଣାରେ, କଲିକତାରେ ସ୍କଟିଶ ଚର୍ଚ୍ଚ କଲେଜରେ ପଢ଼ିଲାବେଳେ । ଚକ୍ରଧର ମହାପାତ୍ର ନରସିଂହପୁରରେ ଦେବୋତ୍ତର ବିଭାଗରେ ଚାକିରି ଆରମ୍ଭ କରନ୍ତି ।

ପାଠ ପଢେ ପଢେ ଅପାଠୁଆ । ନିଜେ ଅଧ୍ୟୟନ କରି ଓଡିଆ, ଇଂରାଜୀ, ହିନ୍ଦୀରେ ବ୍ୟୁତ୍ପତ୍ତି ଲାଭ କରନ୍ତି । ଲେଖିବା ଆରମ୍ଭ କରନ୍ତି ମାତ୍ର ୨୦ ବର୍ଷ ବୟସରେ । ପ୍ରଥମ ବହି ଉପନ୍ୟାସ । ଅସବର୍ଣ୍ଣ ବିବାହ ଉପରେ ଲେଖା ବହିର ନାମ 'ଗୋବର ଗୋଟେଇ' । ଦୁଇଟି ବହି 'କଳିଙ୍ଗ କାହାଣୀ', 'ଉତ୍କଳ ଗାଉଁଲି କାହାଣୀ' ପ୍ରକାଶିତ ହୋଇଛି । ପ୍ରଥମ ବହି ପାଇଁ ସାହିତ୍ୟ ଏକାଡେମୀ ଲେଖକଙ୍କୁ ପୁରସ୍କୃତ କରିଛନ୍ତି ।

ଉତ୍କଳ ଗାଉଁଲି ଗୀତର ସେ ପ୍ରଥମ ସଂଗ୍ରାହକ । ତାଙ୍କ ମାଆ ମନେ ରଖିଥିଲେ ଅସଂଖ୍ୟ ଗାଉଁଲି ଗୀତ । ସେ ଗାଇଲାବେଳେ ଚକ୍ରଧର ମହାପାତ୍ରଙ୍କର ସ୍ତ୍ରୀ ସେ ସବୁକୁ କୁଆଡେ ମାଟିରେ ଟିପି ଯାଉଥିଲେ ଏବଂ ଚକ୍ରଧର ମହାପାତ୍ର ପରେ ମୂଳ ପଂକ୍ତି ସ୍ତ୍ରୀଙ୍କଠାରୁ ପାଇ ପୁରା ଗୀତ ସଂଗ୍ରହରେ ଲାଗି ଯାଉଥିଲେ । ''ଉତ୍କଳ ଗାଉଁଲି ଗୀତ ଚୁମ୍ବକ'' ଏବଂ

" ବୋହୂଙ୍କ ସୁଖ ଦୁଃଖ ଗୀତିକା ବହି ପ୍ରକାଶିତ ହେଲା ପରେ ୧୯୫୬ ମସିହାରେ 'ଉତ୍କଳ ଗାଉଁଲି ଗୀତ' ନାମକ ବିରାଟ ପୁସ୍ତକ ପ୍ରକାଶିତ ହୁଏ ଏବଂ ଚକ୍ରଧର ମହାପାତ୍ର ଛିଟିକି ଆସନ୍ତି ଖ୍ୟାତିର ଦିଗ୍‌ବଳୟକୁ ।

ଗୌତମ ବୁଦ୍ଧଙ୍କର ଜନ୍ମସ୍ଥାନ ନେପାଳର କପିଳବାସ୍ତୁ ନୁହେଁ, ଏହା ହେଉଛି ଭୁବନେଶ୍ୱର ପାଖରେ ଥିବା କପିଳେଶ୍ୱର । ଏହା ଥିଲା ଚକ୍ରଧର ମହାପାତ୍ରଙ୍କ ଯୁକ୍ତି । ପୃଥିବୀର ସବୁ ଭାରତବିଦ୍‌ମାନଙ୍କର ଗୁରୁ ଏ.ଏଲ. ବାସମ୍‌ଙ୍କ ଦୃଷ୍ଟି ଆକର୍ଷିତ ହୋଇଥିଲା ଏଥି ପ୍ରତି । କିନ୍ତୁ ତାହା ଜାତୀୟ, ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତି ଲାଭ କରିପାରିଲା ନାହିଁ ।

ନରସିଂହପୁରରୁ କଟକ । ଚକ୍ରଧର ବାବୁ ଆସନ୍ତି ନରସିଂହପୁରରୁ କଟକ । କିଛିକାଳ ଉତ୍କଳ ବିଶ୍ୱବିଦ୍ୟାଳୟ ଜ୍ଞାନକୋଷରେ କାର୍ଯ୍ୟ କରନ୍ତି । ସମୟ ଅତିକ୍ରାନ୍ତ ହୋଇଯାଏ । ସେ ଅବସର ନିଅନ୍ତି କିନ୍ତୁ କାର୍ଯ୍ୟରତ ରୁହନ୍ତି ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ, ଲେଖିବାରେ, କହିବାରେ, ବୁଝିବାରେ, ବୁଝାଇବାରେ । ହୃଦ୍‌ରୋଗ ଆକ୍ରମଣ କରିଥିଲା ଆଗରୁ ।

ଚକ୍ରଧର ମହାପାତ୍ର ବର୍ତ୍ତମାନ ଇତିହାସ । କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ଓଡ଼ିଶାର ଲୋକଗୀତି ରହିଛି ସେ ପର୍ଯ୍ୟନ୍ତ ଚକ୍ରଧର ମହାପାତ୍ର ବଞ୍ଚି ରହିବେ ଜନମାନସରେ ।

□□□

# ପାଇଓନିଅରର ପରଲୋକ

*(୰ ଚକ୍ରଧର ମିଶ୍ର)*

ଚକ୍ରଧର ମିଶ୍ର ଆଉ ନାହାନ୍ତି । ଗଲା କେତେ ବର୍ଷ ହେଲା ଯେ କଟକ ବାସସ୍ଥାନ ଛାଡ଼ି ପୁରୀରେ ରହୁଥିଲେ । ଜଗନ୍ନାଥଙ୍କ ପ୍ରତି ତାଙ୍କର ଅଚଳାଚଳ ଭକ୍ତି ଥିଲା ଏବଂ ସେଇଯୋଗୁଁ ସେ ପୁରୀରେ ହିଁ ଦେହତ୍ୟାଗ କରିବାକୁ ମନସ୍ଥ କରିଥିଲେ । ଏହାଛଡା ପାରିବାରିକ କାରଣ ମଧ୍ୟ ଥିଲା । ସେ ଓ ତାଙ୍କର ସାନଭାଇ ଅଭିନ୍ନ ଥିଲେ । ଇମିତି ଭାଇ ଖୁବ୍ କ୍ୱଚିତ୍ ମିଳନ୍ତି । ମୋ ଦାଦାଙ୍କର ସହପାଠୀ ଥିଲେ ଚକ୍ରଧର ବାବୁ । ଦାଦା କହନ୍ତି ଯେ ମୋ ବାପା ଯେପରି କେବେ ଗୋଟିଏ ଲୁଗା କିଣି ନାହାନ୍ତି, କିଣିଲେ ଦୁଇଟା କିଣିବେ, ଠିକ୍ ସେଇପରି ଚକ୍ରଧରବାବୁ କେବେ ଗୋଟିଏ ଲୁଗା ବା ଗୋଟିଏ ଶାଢ଼ୀ କିଣି ନାହାନ୍ତି । କୌଣସି କାରଣରୁ ଭାଇ ଦୁହିଁଙ୍କର ମନ ମିଳିଲା ନାହିଁ ଜୀବନର ବିଳମ୍ବିତ ଅପରାହ୍ଣରେ । ପାଖାପାଖି ଘର । ଚକ୍ରଧର ମିଶ୍ର ଆଉ କଟକରେ ରହିବାକୁ ମନ ବଳାଇଲେ ନାହିଁ ।

ଚକ୍ରଧର ମିଶ୍ର ଆଠଗଡର ଲୋକ । ପାଠ ପଢ଼ିଥିଲେ କିନ୍ତୁ ଢେଙ୍କାନାଳରେ । କାରଣ ସେତେବେଳେ ଆଠଗଡରେ ସ୍କୁଲ ନଥିଲା । ମୋ ବାପା ଦାଦା ମଧ୍ୟ ସେଇଠି ପାଠ ପଢୁଥିଲେ । ତେଣୁ ଯେଉଁ ସଖ୍ୟ ଜନ୍ମିଥିଲା ସେଦିନ ତାହା ସମ୍ପ୍ରସାରିତ ହୋଇଥିଲା ଉତ୍ତର ଜୀବନକୁ । ସେତେବେଳେ ଅନୁଗୋଳ ପଟରୁ ଗୋଟିଏ ରେଳଗାଡ଼ି ଥାଏ । ତାଳଚେର-ପୁରୀ ପାସେଞ୍ଜର । ରାଜ ଆଠଗଡ ଷ୍ଟେସନରେ ଗାଡି ପହଞ୍ଚେ ସନ୍ଧ୍ୟାବେଳେ । ସେତେବେଳକୁ ଆଠଗଡ ଯିବାପାଇଁ ବସ୍ ନଥାଏ । ରାତିଟା ରହିବା ପାଇଁ କେବଳ ଗୋଟିଏ ସ୍ଥାନ । ଚକ୍ରଧର ମିଶ୍ର କହ୍ନେଇ ମିଶ୍ରଙ୍କ ବଗିଚା । ସେଇଠି ରହଣୀ । ଷ୍ଟେସନରେ ରହିହେବ ନାହିଁ । କାରଣ ୱେଟିଂରୁମ୍‌ରେ ବେଳେବେଳେ ଯାତ୍ରୀ ବଦଳରେ ବାଘ ବସିଥାଏ ।

ଚକ୍ରଧର ମିଶ୍ର ଓଡ଼ିଶାରେ ଅନେକ ବିଷୟରେ ପାଇଓନିଅର । ପାଇଓନିଅରମାନଙ୍କର ଦୁର୍ଦ୍ଦଶା ହେଉଛି ଅନେକ ସମୟରେ ସେମାନେ ନିଜ ଜୀବନକାଳ ଭିତରେ ସାଫଲ୍ୟ ଦେଖି ଯାଇପାରନ୍ତି ନାହିଁ । ସାଫଲ୍ୟ ଆସେ ଉତ୍ତରପୀଢ଼ି ବେଳକୁ । ଚକ୍ରଧର ମିଶ୍ରଙ୍କ ଜୀବନରେ କିନ୍ତୁ ସେଇଆ ଘଟି ନଥିଲା । ସାଫଲ୍ୟ ହୁଏତ କ୍ରମାଗତ ବା ଦୀର୍ଘକାଳ ଧରି ହୋଇନାହିଁ । କିନ୍ତୁ ସାଫଲ୍ୟ ତାଙ୍କୁ ପ୍ରତିଷ୍ଠିତ କରିପାରିଛି । ଏଥିରେ ସନ୍ଦେହ ନାହିଁ ।

ଚକ୍ରଧର ବାବୁ ଓଡିଶାରେ ବସ୍ ଚଳାଚଳରେ ପାଇଓନିଅର । ସମ୍ବଲପୁରରୁ ମେରାମୁଣ୍ଡଳି ହେଉଛି ତାଙ୍କ ବସ୍‌ର ରୁଟ୍ । ପେଟ୍ରୋଲ ବା ଡିଜେଲରେ ବସ୍ ଚାଲେ । କୋଇଲାରେ ବସ୍ ଚାଲିବ ଏକଥା କହିଲେ ଆଜିର ଲୋକେ ବିଶ୍ୱାସ କରିବେ ନାହିଁ । କିନ୍ତୁ ଆଜିକୁ ବହୁ ବର୍ଷ ତଳେ ଚକ୍ରଧର ମିଶ୍ରଙ୍କର ବସ୍ କୋଇଲାରେ ଚାଲୁଥିଲା । ଯୁଦ୍ଧ ସମୟ । ପେଟ୍ରୋଲ ମିଳେନା । ଡିଜେଲ ତ ଆସି ନାହିଁ ମାର୍କେଟ୍‌କୁ । ସମ୍ବଲପୁରରେ ପେଟ୍ରୋଲ ଟାଙ୍କି ଏବଂ ତା'ପରେ ଅନୁଗୋଳରେ ଘରୋଇ ଟାଙ୍କି । ମଝିରେ ମାତ୍ର ଶହେ ମାଇଲ । ଅଗନାଅଗନି ବନସ୍ତ ଭିତରେ ସବୁ କଚା ରାସ୍ତାରେ ଆସିବ ଗାଡି । ଦିନରେ ହାତୀପଲ, ବାଘ ରାସ୍ତାରେ ଭେଟ ହୁଅନ୍ତି । ରେଢ଼ାଖୋଲରେ ରାସ୍ତା ଉପରେ ଦିନବେଳା ବାଘ ଦେଖାମିଳେ । ଚକ୍ରଧର ବାବୁଙ୍କର ଦୁଇଟି ଗାଡି ସମ୍ବଲପୁରରୁ ଆସେ ଏବଂ ଦୁଇଟି ଗାଡି ମେରାମୁଣ୍ଡଳିରୁ ସମ୍ବଲପୁର ଯାଏ । ଏହାଛଡା ଅନୁଗୋଳ ଓ ମେରାମୁଣ୍ଡଳି ଭିତରେ ବସ୍ ଚାଲେ । ପରେ ରାଜ ଆଠଗଡ ଷ୍ଟେସନରୁ ଆଠଗଡ, ତିଗିରିଆ, ବଡମ୍ବା, ନରସିଂହପୁରକୁ ବସ୍ ଚାଲିଲା ତାଙ୍କର ।

ଚକ୍ରଧରବାବୁ ଖାଲି ବ୍ୟବସାୟୀ ନଥିଲେ, ଜାତୀୟତାବାଦୀ ମଧ୍ୟ ଥିଲେ । ମୋର ମନେ ପଡୁଛି । ଭୈରବ ଚନ୍ଦ୍ର ମହାନ୍ତି ସରକାରୀ ଚାକିରିରୁ ଇସ୍ତଫା ଦେଇ କଂଗ୍ରେସରେ ଯୋଗ ଦେଇଛନ୍ତି । ତାଙ୍କ ନାଁରେ ଗିରଫଦାରୀ ପରବାନା ଜାରି ହୋଇଛି । ତାଙ୍କୁ କିନ୍ତୁ କଟକ ଆସିବାକୁ ପଡିବ । କାହିଁରେ ଆସିବେ ? ଏକମାତ୍ର ବାଟ ହେଉଛି ମିଶ୍ର ମୋଟର ଟ୍ରାନ୍ସପୋର୍ଟ । ଚକ୍ରଧରବାବୁ ରାଜିହେଲେ । ତାଙ୍କର ମ୍ୟାନେଜର ସାମନ୍ତସିଂହାର ମଧ୍ୟ ରାଜି ହେଲେ । ଟିକଟ କିଣାହେବ ସମ୍ବଲପୁରରୁ ଭୈରବ ବାବୁ କିନ୍ତୁ ବସିବେ ବାଟରୁ, ମାନେଶ୍ୱରରେ । ଭୈରବବାବୁ କିମିତି ଧରାପଡିଲେ ତାଙ୍କର ଜଣେ ପ୍ରାକ୍ତନ ସହକର୍ମୀଙ୍କ ଅସାବଧାନତା ଯୋଗୁଁ ସେ ଅନ୍ୟ ଏକ କାହାଣୀ ।

ଚକ୍ରଧରବାବୁ ଓଡିଶାରେ ଟୁରିଙ୍ଗ ସିନେମାର ପ୍ରବର୍ତ୍ତକ । ଚଳିତ ଶତାବ୍ଦୀର ତୃତୀୟ ଦଶନ୍ଧିର କଥା କି ଆଗରୁ କହିପାରିବି ନାହିଁ । ଚକ୍ରଧର ବାବୁଙ୍କ ସିନେମା ଘୁରେ ସାରା ଓଡିଶା । ଚଳଚିତ୍ର ଦେଖାଏ । ପ୍ରତ୍ୟେକ ସ୍ଥାନରେ ସ୍ଥାନୀୟ ଅଫିସର ଏବଂ ଅଫିସମାନଙ୍କରୁ ଚାନ୍ଦା ସଂଗ୍ରହ ହୁଏ । କାରଣ ଯେତିକି ଚାନ୍ଦା ତମ୍ବୁ ସହିତ ଥାଏ ତା କୁଳାନ ହୁଏ ନାହିଁ । ଏପରି ଦେଖିଛି ଅନ୍ନପୂର୍ଣ୍ଣା 'ଏ' ଗ୍ରୁପର ବାଉରୀବନ୍ଧୁ ମହାନ୍ତିଙ୍କୁଁ । ବହୁ ଭଲ ଭଲ ଚଳଚିତ୍ର ଦେଖାନ୍ତି - ହିନ୍ଦୀ, ବଙ୍ଗଳା, ତେଲୁଗୁ ଭାଷାର । କିନ୍ତୁ ନଜର ଥାଏ ଓଡିଆ ଚଳଚିତ୍ର ଉପରେ । ନିଶ୍ଚିତ ଭାବରେ ସୀତା ବିବାହ ଦେଖା ହେବ ଉଦ୍‌ଘାଟନ ଦିନଠାରୁ କିଛି ଦିନ ପର୍ଯ୍ୟନ୍ତ । ଚକ୍ରଧର ମିଶ୍ର ଜାତୀୟତାବାଦୀ ।

ଆଗରୁ କହିଛି ଚକ୍ରଧର ବାବୁଙ୍କ ଆଠଗଡ ଷ୍ଟେସନ ବଗିଚା କଥା । ବଗିଚା କରିବାରେ ସେ ଓଡିଶାରେ ଅନ୍ୟତମ ପାଇଓନିଅର । ତାଙ୍କ ବସ୍ ଯାଏ ବଇଣ୍ଡା ଛକ ଦେଇ । ସେଇଠି ବିକ୍ରୀ ହୁଏ ବିରାଟ ବିରାଟ ବିଭିନ୍ନ ପ୍ରକାରର ଆମ୍ବ । ଜଣେ କୌଣସି ବୈଦେଶିକ ଏହି ବଗିଚାର ପ୍ରତିଷ୍ଠାତା ଥିଲେ ବୋଲି ଶୁଣିଛି । ଠିକ୍ ସେଇପରି ସମ୍ବଲପୁରରେ ଥାଏ ଦୁଇ ତିନିଟା ବଡ଼ ସାତରା (କମଳା) ଗଛର ବଗିଚା । ଚକ୍ରଧର ବାବୁଙ୍କ ବଗିଚା ଏ ଅଞ୍ଚଳରେ ନାମକରା ବଗିଚା ଆମ୍ବ ପାଇଁ, ଲେମ୍ବୁ ପାଇଁ, ସପୁରି ପାଇଁ ।

ଚକ୍ରଧର ମିଶ୍ର ଥିଲେ ଜଣେ ପ୍ରସିଦ୍ଧ ହୋମିଓପାଥ । ଏହାର ପ୍ରସିଦ୍ଧି ତାଙ୍କୁ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସାନ୍ନିଧ ଏବଂ ସଖ୍ୟ ଆଣି ଦେଇଥିଲା । ହୋମିଓପାଥିକ ଚିକିତ୍ସା ପାଇଁ ସେ ପାରିଶ୍ରମିକ ବା ଫିସ୍ ନେଉ ନଥିଲେ । ଏହା ଥିଲା ତାଙ୍କର ସାମାଜିକ ଅଙ୍ଗୀକାର ବା ନିଶା । ନାତୁଣୀ ହାତରେ ଔଷଧ ଦେବେ । ତାରି ହାତରୁ ରୋଗୀ ଗ୍ରହଣ କରିବ ଔଷଧ । ୧୯୫୫ ମସିହାର କଥା । ଦଳେଇଘାଇଠାରୁ କେନ୍ଦ୍ରାପଡା ପର୍ଯ୍ୟନ୍ତ ଅଞ୍ଚଳରେ ଆମର ଛାତ୍ରମାନେ ରିଲିଫ କାମରେ ନିଯୁକ୍ତ । ସେମାନଙ୍କୁ ସାହାଯ୍ୟ କରିବାପାଇଁ ମୁଁ ନାନପୁରରେ ଥାଏ । ରାତିରେ ଶୋଇଥିଲାବେଳେ କ'ଣ ଗୋଟାଏ କାମୁଡିଲା । ସେଇ ଇରପ୍‌ସନ ହୋଇ ସମଗ୍ର ହାତକୁ ତାହା ସଞ୍ଚରିଗଲା । ଏପରି ଏକ ସମୟ ଆସିଲା ଯେ ସବୁଯାକ ଆଙ୍ଗୁଠିର ହାଡ଼ ଦେଖାଗଲା । ଡାକ୍ତର ଗିରିଜା ଶଙ୍କର ଦାସ ମହାପାତ୍ର ମତଦେଲେ ଯେ ଆଉ ଅଧିକ ହେଲେ ହାତର ପାପୁଲିକୁ କାଟିଦେବାକୁ ପଡିବ । ଯାର ନାହିଁ ଅନ୍ୟ ଗତି, ଧଇଲେ ବେଟା ହୋମିଓପାଥି । ଯାଇ ପହଞ୍ଚିଲି ଚକ୍ରଧର ବାବୁଙ୍କ ପାଖରେ । ପରିଚୟ ନଦେଇ ରୋଗ କଥା କହିଲି । କିନ୍ତୁ ସେ ତ ପଚାରନ୍ତି ସବୁକଥା । ବାଧ ହୋଇ ମୋତେ ପରିଚୟ ଦେବାକୁ ହେଲା । ବାପା ଦାଦାଙ୍କ ନାଁ କହିବା କ୍ଷଣି ଏକ ଚାପୁଡ଼ା ବାଜିଲା ଗାଲରେ । ମୁଁ ଏଇଠି ଅଛି, ତୁ ଏବେ ଆସୁଛୁ । ଯାହାହେଉ ଚାପୁଡ଼ାଟା ବହୁତ ନରମ ଥିଲା । କିନ୍ତୁ ଖାଇବାଟା ଥିଲା ବହୁତ ବଡ଼ । ଚାରି ଛ'ମାସ ଖାଇଲି । ଭଲ ହୋଇଗଲା । ଆଉ ଯାଇ ନାହିଁ ।

ଚକ୍ରଧର ବାବୁଙ୍କ ମଙ୍ଗଳାବାଗ ଘର ଏକ ବ୍ରିଟିଶ ଭିଲା ପରି ଦେଖାଯାଏ । ସବୁଜିମା ଚାରିଆଡେ । ଥୁଜାଗଛର ଧାଡି ରାସ୍ତା ନିର୍ଦ୍ଧାରଣ କରିଛି । ଏଭଳି ଗାର୍ଡନ ହାଉସ କରିବାରେ ମଧ୍ଯ ସେ ଓଡିଶାରେ ଅନ୍ୟତମ ଅଗ୍ରଗାମୀ ବ୍ୟକ୍ତି ।

ସେଇ ପାଇଓନିଅର ଆଉ ନାହାନ୍ତି ।

ଏକ କ୍ଲାସିକାଲ ମଣିଷର ପରଲୋକରେ ଏ ଦେଶ ଦରିଦ୍ର ହୋଇଯାଇଛି ।

□□□

# ଓଡିଶାରେ ନାରୀଶିକ୍ଷାର ଆଦ୍ୟ ଆଲୋକବର୍ତ୍ତିକା

*(ଦ୍ଦ ଚନ୍ଦ୍ରମୁଖୀ ଦାସ)*

ଊନବିଂଶ ଶତାବ୍ଦୀର ସୂର୍ଯ୍ୟ ବୁଡ଼ିଯିବା ପାଇଁ ତଥାପି ବାକି ଅଛି । ଶତାବ୍ଦୀର ଗୋଧୂଳି ସମୟ । ୧୯୯୪ ମସିହା ସରି ସରି ଆସୁଛି । ଡିସେମ୍ବର ମାସ ୧୬ ତାରିଖ । ସାରା ରାଜ୍ୟରେ ଧନୁ ଉତ୍ସବ । ସେଦିନ ଧନୁ ସଂକ୍ରାନ୍ତି । ଝିଅଟିଏ ଜନ୍ମ ହୁଏ କଟକ ସହରରେ ମାତୃଗର୍ଭରୁ । ବାପା ପ୍ରତାପ ଚନ୍ଦ୍ର ଷଡଙ୍ଗୀ । ଓଡ଼ିଶାର ପ୍ରଥମ ଖ୍ରୀଷ୍ଟଧର୍ମାବଲମ୍ବୀ ପଣ୍ଡିତ ଗଙ୍ଗାଧର ଷଡଙ୍ଗୀଙ୍କର ନାତି । କେଉଁଥିପାଇଁ ସେତେବେଳେ ଏଇ ନୈଷ୍ଠିକ ବ୍ରାହ୍ମଣ ପରିବାରର ପଣ୍ଡିତ ଖ୍ରୀଷ୍ଟଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ ତା'ର ବିବରଣୀ ନାହିଁ । ତେବେ ମନେହୁଏ ଏକେଶ୍ୱରବାଦୀ ସାଧୁ ସୁନ୍ଦର ଦାସଙ୍କ ପାଖରେ ଆଶ୍ରୟ ତଥା ଆଲୋଚନାର ସୁଯୋଗ ମିଳିବ ଏହା ଇଂରାଜୀ ପାଦ୍ରୀମାନେ ଭାବିଥିଲେ । ସ୍ଥାନୀୟ ହାଟରେ ବୈଦେଶିକ ପାଦ୍ରୀମାନେ " ଯୀଶୁଙ୍କର ପାର୍ବତ୍ୟ ଉପଦେଶ" ପ୍ରଭୃତି ବଣ୍ଟନ କରୁଥିଲେ ଏବଂ ସେ ଭିତରୁ କିଛି ପଣ୍ଡିତଙ୍କର ଦୃଷ୍ଟିକୁ ଆସିଥିଲେ । ପଣ୍ଡିତ ଗଙ୍ଗାଧର ଷଡଙ୍ଗୀ ୧୮୨୮ ମସିହାରେ ଖ୍ରୀଷ୍ଟଧର୍ମ ଗ୍ରହଣ କରନ୍ତି ବୋଲି ଓଡ଼ିଆ ବାପ୍ଟିଷ୍ଟ ମିଶନର ରେକର୍ଡରୁ ଜଣାଯାଏ ଏବଂ ଯେତେଦୂର ମନେହୁଏ ତା'ପରେ ତାଙ୍କର ଏକ ନୈଷ୍ଠିକ ହିନ୍ଦୁ ପରିବାର ଓ ପରିବେଶରେ ରହିବା ସମ୍ଭବ ହେଲା ନାହିଁ । ଏବଂ ଗଙ୍ଗାଧର ଷଡଙ୍ଗୀ କଟକ ସହରକୁ ଚାଲି ଆସିଥିଲେ । କୁଜିବର ପ୍ରକାଶନୀରେ କୁହାଯାଇଛି " କୁଜିବରର ସେଇ ବିଶାଳ ଗଛ । ଏହି ପବିତ୍ର ସ୍ଥାନରେ ପ୍ରଥମ ଓଡ଼ିଆ ହାତଲେଖା ଖବରକାଗଜ, 'କୁଜିବର ପତ୍ର' ପ୍ରକାଶ ପାଉଥିଲା । ଏହାର ସଂପାଦକ ଥିଲେ ମହାତ୍ମା ସାଧୁ ସୁନ୍ଦର ଦାସ ଏବଂ ତାଙ୍କର ଦୁଇ ପଟ୍ଟଶିଷ୍ୟ ଗଙ୍ଗାଧର ଷଡଙ୍ଗୀ ଏବଂ ନାଗପୁରର ରାମଚନ୍ଦ୍ର ଜୀ ଯାଚକ । ଗଙ୍ଗାଧର ଜ୍ଞାନୋଦୀପ୍ତ ଏବଂ ଏକ ବିରାଟ ସମ୍ମାନନୀୟ ବ୍ରାହ୍ମଣ ପରିବାରସମ୍ଭୂତ । ଜଣେ ଜଣାଶୁଣା ବିଦ୍ୱାନ ବ୍ୟକ୍ତି, ଲେଖକ ଏବଂ ଭାଷାବିତ୍ ଭାବରେ ତାଙ୍କର ଖ୍ୟାତି ଥିଲା ।"

ଚନ୍ଦ୍ରମୁଖୀଙ୍କର ଏଇ ହେଉଛି ବଂଶ ପରିଚୟ । ପିତା ପ୍ରତାପ ଚନ୍ଦ୍ର କେବଳ ପ୍ରସିଦ୍ଧ ଗଙ୍ଗାଧର ଷଡଙ୍ଗୀଙ୍କର ନାତି ନଥିଲେ, ଗଙ୍ଗାଧରଙ୍କର ସହକର୍ମୀ ରାମଚନ୍ଦ୍ରଙ୍କର ପରିବାରରେ ବିବାହ ମଧ୍ୟ କରିଥିଲେ । ସ୍ୱାଭାବିକ ଶିକ୍ଷା ଏବଂ ଜ୍ଞାନଲାଭ ପାଇଁ ଆଗ୍ରହ ଆସିଥିଲା ପରମ୍ପରାରୁ ଏବଂ ଏକମାତ୍ର କନ୍ୟାକୁ ଗୃହର ଅନ୍ଧାରକୋଣ ଭିତରେ ଆବଦ୍ଧ ନ ରଖି ଉଚ୍ଚଶିକ୍ଷା ଦେବା ପାଇଁ ପିତାମାତା ଅବହେଳା କରି ନଥିଲେ । ଯଦିଓ ବିଂଶ ଶତାବ୍ଦୀର ଆରମ୍ଭ କାଳରେ ନାରୀଶିକ୍ଷା ଓଡିଶାରେ ସମ୍ପ୍ରସାରିତ ହୋଇ ନଥିଲା । ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ହେତୁ ସାମାଜିକ ବନ୍ଧନ ହୁଏତ ବେଶି କାମ କରି ନଥିବ ।

ବିଂଶ ଶତାବ୍ଦୀର ପ୍ରାକ୍‌କାଳ । କଟକ ସହର ଥିଲା ଛୋଟିଆ ସହରଟିଏ । ପୁରାତନ । ନାଲିରାସ୍ତା, ରାସ୍ତାରେ ହାରକିନ ଆଲୁଅ, କିଛି ଫିଟନ ଗାଡି, ଟାଳଘର । ସହର ଖାଲି ପୁରାତନ ନୁହେଁ, ଅବହେଳିତ ମଧ୍ୟ । ଝିଅମାନଙ୍କ ପାଇଁ ମାତ୍ର ଦୁଇଟି ସ୍କୁଲ । ବକ୍‌ଲେ ଗାର୍ଲସ୍ ମିଡଲ ଇର୍ଣ୍ଣାକୁଲାର ସ୍କୁଲ, କଟକ କନ୍‌ଭେଣ୍ଟ ସ୍କୁଲ । କେହି ହାଇସ୍କୁଲ ନୁହନ୍ତି । ଚନ୍ଦ୍ରମୁଖୀ ୧୯୦୨ ମସିହାରେ ନିମ୍ନ ପ୍ରାଇମେରୀ ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇ ବୃତ୍ତି ଲାଭ କରନ୍ତି । ୧୯୦୪ ମସିହାରେ ଉଚ୍ଚ ପ୍ରାଇମେରୀ ପରୀକ୍ଷା ଏବଂ ୧୯୦୬ ମସିହାରେ ମାଇନର ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ଯଥାକ୍ରମେ ତିନି ଟଙ୍କା ଏବଂ ଚାରି ଟଙ୍କା ମାସିକ ବୃତ୍ତି ପାଆନ୍ତି । ସେଇଟା ହେଉଛି ଟଙ୍କାକୁ ଷୋହଳ କଟକୀ ସେର ଚାଉଳର ସମୟ ।

ବାପା ଖ୍ରୀଷ୍ଟଧର୍ମାବଲମ୍ବୀ ଥିଲେ ସତ୍ୟ କିନ୍ତୁ ମନେହୁଏ ଯେ କନ୍‌ଭେଣ୍ଟରେ ପଢ଼ାଯାଉଥିବା ପାଠ୍ୟକ୍ରମ ଓ ଦୃଷ୍ଟିକୋଣ ତାଙ୍କୁ ରୁଚିକର ହେଉନଥିଲା । ଚନ୍ଦ୍ରମୁଖୀ ନୂଆ ଖୋଲିଥିବା ଆଦର୍ଶ ଗାର୍ଲ୍‌ସ ସ୍କୁଲରେ ଯୋଗଦିଅନ୍ତି । ଏଥିପାଇଁ ତତ୍କାଳୀନ ସ୍କୁଲ ଇନ୍‌ସପେକ୍ଟର ଭକ୍ତକବି ମଧୁସୂଦନ ରାଓ ଅନୁମତି ଦେଇଥିଲେ ।

ଓଡ଼ିଶାର ତତ୍କାଳୀନ ପରିସ୍ଥିତିରେ ଦେଖାଯାଏ ଯେ ମଧୁସୂଦନ ରାଓ, ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପ୍ରମୁଖ ବ୍ରାହ୍ମଧର୍ମାବଲମ୍ବୀ ହୋଇଥିଲେ । ହିନ୍ଦୁଧର୍ମର ପିତୁଳା ପୂଜା, ପୁରୋହିତବାଦ ବିରୁଦ୍ଧ ଗୈରିକ ପତାକା ହେଉଛି ବ୍ରାହ୍ମଧର୍ମ । କିନ୍ତୁ ସେମାନେ ଓଡିଶାରେ ବ୍ରାହ୍ମଧର୍ମକୁ ବଙ୍ଗାଳୀମାନଙ୍କଠାରୁ ମୁକ୍ତ କରିଥିଲେ । ଉପାସନା ଆଉ ପୂର୍ବଭକ୍ତି ବଙ୍ଗଳା ଭାଷାରେ ନ ହୋଇ ଓଡିଆରେ ହୋଇଥିଲା । ଠିକ୍ ସେଇପରି ପ୍ରତାପ ଚନ୍ଦ୍ର ଷଡଙ୍ଗୀ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ହେଁ ଅନ୍ୟମାନଙ୍କ ପରି ସେ ଆଂଗ୍ଲୋ ହୋଇ ନଥିଲେ । ଗଭୀର ଜାତୀୟତାବାଦ ତାଙ୍କ ଭିତରେ ବସା ବାନ୍ଧିଥିଲା । ସେଇ କାରଣରୁ ସେ ମଧ୍ୟ ଓଡିଆ ହୋଇ ରହିଯାଇଥିଲେ ଏବଂ ଏଇ ବ୍ରାହ୍ମ ଓ ଖ୍ରୀଷ୍ଟିଆନମାନଙ୍କ ମଧ୍ୟରେ ହୁଏତ ସଖ୍ୟ ମଧ୍ୟ ପ୍ରତିଷ୍ଠିତ ହୋଇଥିଲା ।

ଚନ୍ଦ୍ରମୁଖୀ ଆସିଲେ ଓଡ଼ିଶାର ନାରୀଶିକ୍ଷା ପ୍ରବର୍ତ୍ତିକା ରେବା ରାୟଙ୍କ ପ୍ରଭାବରେ । ରେବା ରାୟ କେବଳ ଏଇ ପ୍ରଥମ ଓଡ଼ିଆ ଗାର୍ଲସ ହାଇସ୍କୁଲର ପ୍ରାଣ ପ୍ରତିଷ୍ଠାତ୍ରୀ ନଥିଲେ, ବହୁ ବାଧାବିଘ୍ନ, ଷଡଯନ୍ତ୍ର ମଧ୍ୟଦେଇ ଏଇ ସ୍କୁଲରୁ ସାତୋଟି ଝିଅଙ୍କୁ ମାଟ୍ରିକୁଲେଶନ ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ କରାଇଥିଲେ । ଫକୀର ମୋହନ, ରାଧାନାଥଙ୍କ କଥା ମନେପଡେ । ଓଡ଼ିଆ ଗୋଟେ ସ୍ୱତନ୍ତ୍ର ଭାଷା ନୁହେଁ— ଏ ଷଡଯନ୍ତ୍ର ହାର ମାନିଥିଲା; କିନ୍ତୁ ତଥାପି ସରିନଥିଲା । ସାତୋଟିରୁ ତିନୋଟିକୁ ଜବରଦସ୍ତ ନେଇ ନିଆଗଲା ଆଉ ଏକ ସ୍କୁଲକୁ, କେବଳ ପରୀକ୍ଷା ଦେବା ପାଇଁ (ପରେ ଉକ୍ତ ସ୍କୁଲ ରେଭେନ୍‌ସା ଗାର୍ଲ୍‌ସ ସ୍କୁଲ ନାମରେ ପରିଚିତ ହେଲା) । ଯେଉଁ ଚାରି ଜଣ ରହିଗଲେ ସେମାନଙ୍କ ମଧ୍ୟରେ ଚନ୍ଦ୍ରମୁଖୀ ଅନ୍ୟତମ । ଚନ୍ଦ୍ରମୁଖୀ ପ୍ରଥମ ଶ୍ରେଣୀରେ ପାସ୍ କଲେ । କିନ୍ତୁ ଆଦର୍ଶ ଗାର୍ଲ୍‌ସ ସ୍କୁଲ ଆଉ ରହିଲା ନାହିଁ । ରେବା ରାୟଙ୍କର ସମସ୍ତ ପ୍ରତିବାଦ, ନିବେଦନକୁ ଭ୍ରୂକ୍ଷେପ ନକରି ସେ ସ୍କୁଲଟିକୁ ମିଶାଇ ଦିଆଗଲା ରେଭେନ୍‌ସା ଗାର୍ଲ୍‌ସ ସ୍କୁଲ ସହିତ । ସ୍କୁଲ ରାଜନୀତି ସେତେବେଳେ ମଧ୍ୟ ଥିଲା ।

୧୯୧୧ ମସିହା । ଚନ୍ଦ୍ରମୁଖୀ କଲିକତାର ପ୍ରସିଦ୍ଧ ବେଥୁନ କଲେଜରେ ପାଠ ପଢ଼ନ୍ତି ଏବଂ ୧୯୧୫ ମସିହାରେ ଗ୍ରାଜୁଏଟ ହୋଇ ଫେରନ୍ତି କଟକ । ବାପା ୧୯୧୧ ମସିହା ବେଳକୁ ସ୍କୁଲ ଇନ୍‌ସପେକ୍ଟର ହୋଇଥାନ୍ତି । ସେଇ ରେଭେନ୍‌ସା ଗାର୍ଲସ ସ୍କୁଲ । ବର୍ତ୍ତମାନ ଚନ୍ଦ୍ରମୁଖୀ ନୂତନ ଭୂମିକାରେ ଅବତୀର୍ଣ୍ଣା । ଛାତ୍ରୀ ବର୍ତ୍ତମାନ ଶିକ୍ଷୟିତ୍ରୀ । ନର୍ମଦା କର, ନିର୍ମଳା ନାୟକ ଓ ଚନ୍ଦ୍ରମୁଖୀ ଦାସ ଓଡ଼ିଆ । ବାକି ସମସ୍ତେ ବଙ୍ଗାଳୀ । ଚନ୍ଦ୍ରମୁଖୀ ଆପଣାର ମଧୁର ବ୍ୟବହାରରେ ସମସ୍ତଙ୍କୁ କିଣି ନିଅନ୍ତି ଏବଂ ତାଙ୍କ ଘରେ ସପ୍ତାହାନ୍ତ ଆସର ଜମିଉଠେ । 'ଉତ୍କଳ କମଳା ବିଳାସ ଦୀର୍ଘିକା' ଠାରୁ ଆରମ୍ଭ କରି ମଧୁସୂଦନଙ୍କ 'ଷଡଋତୁ' ଚନ୍ଦ୍ରମୁଖୀଙ୍କ କଣ୍ଠରେ ଯେପରି ଧ୍ୱନିତ ହୁଏ, ଠିକ୍ ସେଇପରି ଧ୍ୱନିତ ହୁଏ ରବୀନ୍ଦ୍ରନାଥଙ୍କ 'ଯାହାରା ତୋମାର ବିଷାୟେଛେ ବାୟୁ, ନିଭାୟେଛେ ତବୋ ଆଲୋ' । ଆଗରୁ କୁହାଯାଇଛି ଯେ 'ପଣ୍ଡିତ' ଖ୍ରୀଷ୍ଟିଆନ ହୋଇଥିଲେ ହେଁ ପାଦର ମାଟି ସ୍ଥିର ଥିଲା, ଜାତୀୟତାବାଦ ରହିଥିଲା ଅତୁଟ । ଜେଜେମା' ତୁନିଙ୍କ ସହିତ ଯାଇ ଯାଇ ସେକାଳର ସବୁ ପ୍ରତିଷ୍ଠିତ ଓଡ଼ିଆ ପରିବାର ସହିତ ତାଙ୍କର ପାରିବାରିକ ସମ୍ପର୍କ ହୋଇଥିଲା ନିବିଡ ଏବଂ ତାହା ଅତୁଟ ରହିଥିଲା ଜୀବନର ସନ୍ଧ୍ୟା ପର୍ଯ୍ୟନ୍ତ । ସେମାନଙ୍କ ମଧ୍ୟରେ ମଧୁସୂଦନ ରାଓ, ବିଶ୍ୱନାଥ କର, ରାଧାନାଥ ରାୟ, ମଧୁସୂଦନ ଦାସ ପ୍ରଭୃତି ଅନ୍ତର୍ଭୁକ୍ତ ।

ସେ କାଳରେ କଟକରେ ସଉକିନ ଗାଡି ଥିଲା ଫିଟନ ଗାଡି । ଏଇ ଘୋଡାଗାଡି ଏବଂ ହାତଟଣା ରିକ୍‌ସା ଥିଲା ମୁଖ୍ୟ ଯାନବାହନ । ଏବେ ତାକୁ ପାଇବା କଠିନ । ଧଳା

ଘୋଡା ଯୋଚା ହୋଇଥିବା ଏଇପରି ଏକ ଫିଟନ ଗାଡିରେ ଚନ୍ଦ୍ରମୁଖୀ ଯାଆନ୍ତି ସ୍କୁଲକୁ । ଏଇ ସମୟରେ ସମ୍ବଲପୁରରୁ ଆସିଥିବା ଏକ ତରୁଣ ହୋଇଥାନ୍ତି ଡେପୁଟି କଲେକ୍ଟର କଟକରେ । ନାଁ, ସାମୁଏଲ ଦାସ । ଦେଖାହୁଏ କେବେକେବେ ଦୁହିଁଙ୍କ ଭିତରେ, ହୁଏତ ରାଜରାସ୍ତାରେ ବା କୌଣସି ଉତ୍ସବରେ । ସାମୁଏଲ ଦାସ ଚନ୍ଦ୍ରମୁଖୀଙ୍କୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କରନ୍ତି । ଇମିତି ଏକ ପାଠ ପଢୁଆ ଝିଅ କ'ଣ ଭଲ ଘରଣୀ ହୋଇପାରିବ ? ପ୍ରତିବାଦ ଉଠେ ସାମୁଏଲ ଦାସଙ୍କ ଘରେ । ସବୁ ପ୍ରଦିବାଦ ଭାଜିପଡ଼େ । ୧ ୯ ୨ ୦ ମସିହା ଡିସେମ୍ବର ୨ ୯ ତାରିଖରେ ଓଡିଆ ବାପ୍‌ଟିଷ୍ଟ ଚର୍ଚ୍ଚରେ ସେମାନଙ୍କର ବିବାହ ସମ୍ପନ୍ନ ହୁଏ ।

ଗୁଞ୍ଜରଣ ସୃଷ୍ଟି ହୁଏ । ହେବା ମଧ୍ୟ ସ୍ୱାଭାବିକ । ଓଡ଼ିଆ ବାପଟିଷ୍ଟ ଚର୍ଚ୍ଚ (ଇଉରୋପୀୟ ଚର୍ଚ୍ଚରେ ନୁହେଁ) ବିବାହ ସମ୍ପନ୍ନ ହେଉଛି ଡିପୋଟି ସାହେବଙ୍କର । ପୁଣି ବର ପିନ୍ଧିଛନ୍ତି ଓଡିଆ ବର ପରି ଧୋତି, ଚଦର, ପଞ୍ଜାବି । ଆଉରି ଦେଖ । ଖ୍ରୀଷ୍ଟଧର୍ମର କେହି ନୁହଁନ୍ତି, ବ୍ରାହ୍ମଧର୍ମର ପ୍ରସିଦ୍ଧ ଓଡିଆ ବିଶ୍ୱନାଥ କରଙ୍କର କନ୍ୟା ଗାଉଛନ୍ତି ବିବାହ ମାଙ୍ଗଳିକ । କିନ୍ତୁ ଉଭୟେ ସାମୁଏଲ ଦାସ ଏବଂ ଚନ୍ଦ୍ରମୁଖୀ ଥିଲେ ପ୍ରଥମେ ଓଡିଆ, ଦ୍ୱିତୀୟରେ ଭାରତୀୟ ।

ସେଇ ପରମ୍ପରାକୁ ଦମ୍ପତି ଅତୁଟ ରଖିଥିଲେ ନିଜ ପୁତ୍ର କନ୍ୟାମାନଙ୍କର ବିବାହରେ । ଘରେ ବେଦୀ, ବରମାଲ୍ୟ, ମାଙ୍ଗଳିକ !

ଚନ୍ଦ୍ରମୁଖୀଙ୍କ ଜୀବନର ଆଉ ଏକ ଅଧ୍ୟାୟ ଆରମ୍ଭ ହେଲା । ଶିକ୍ଷକ ଜୀବନର ପରିସମାପ୍ତି ଘଟିଲା । ବର୍ତ୍ତମାନ ପରିବାର, ସାମାଜିକ କଲ୍ୟାଣ, ବହି ଲେଖା । ସାଧୁ ସୁନ୍ଦର ଦାସ ତାଙ୍କ ପରମ୍ପରାରେ ରହିଛନ୍ତି ଏବଂ ତାଙ୍କୁ ଅନୁପ୍ରାଣିତ କରିଛନ୍ତି । କରିଛନ୍ତି ରୁଚିମନ୍ତ ଓ ଋଦ୍ଧିମନ୍ତ । ତାଙ୍କର ଜୀବନୀ ଏବଂ ତାଙ୍କର ଦର୍ଶନ ଫୁଟି ଉଠିଲା ଚନ୍ଦ୍ରମୁଖୀଙ୍କ କଲମରେ 'ଆତ୍ମିକ ଜଗତର ଦର୍ଶନ' । ଏବେ ମଧ୍ୟ ପ୍ରକାଶିତ ହେଉଥିବା ମେଗାଜିନ୍ 'ପ୍ରଭାତୀ ତାରା' ର ଆଦ୍ୟ ସମ୍ପାଦିକା ଥିଲେ ସେ । କଲମରୁ ଝରିଲା ବହୁ ଗଳ୍ପ, ବହୁ ଅନୁବାଦ । ବାଙ୍ଗାଲୋରରେ ଥିବା ଗିଫ୍‌ଟ ମିଶନ ପାଇଁ ସେ ଲେଖିଲେ, ଅନୁବାଦ କଲେ ବହୁ ପୁସ୍ତକ ।

କିଛିକାଳ ପାଟନାରେ ରହଣି ସ୍ୱାମୀଙ୍କ ସହିତ । ଓଡିଶା ପ୍ରଦେଶ ଗଠନ । ସାମୁଏଲ ଦାସ ଫେରନ୍ତି ଓଡିଶା ଏବଂ ବାଲେଶ୍ୱରରେ ଅବସ୍ଥାପିତ ହୁଅନ୍ତି କଲେକ୍ଟର ଭାବରେ । କିନ୍ତୁ ଚନ୍ଦ୍ରମୁଖୀ ରହିଯାଆନ୍ତି କଟକରେ ପିଲାମାନଙ୍କର ଦେଖାଶୁଣା ଓ ପାଠପଢ଼ା ପାଇଁ । ମାଟ୍ରିକ୍ ପର୍ଯ୍ୟନ୍ତ ପିଲାମାନେ ଘରେ ପଢ଼ିବେ । ନାବାଳକି କଟିଯିବ । ତା'ପରେ ସେମାନେ ଯିବେ ଉଚ୍ଚଶିକ୍ଷା ପାଇଁ, ଯିଏ ଯାହା ଚାହିଁବ କିନ୍ତୁ ରହିବେ ହଷ୍ଟେଲରେ । ମ'ଣ ହେବେ

ସେଇଠି ସବୁ ପିଲାଙ୍କ ସାଥୀରେ, ସମାନ ଭାବରେ । ବଡ଼ପୁଅ ଇଂଜିନିଅର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଏବଂ ପରେ ନ୍ୟୁୟର୍କର ସାଇରାକ୍ୟୁସ୍ ବିଶ୍ୱବିଦ୍ୟାଳୟରେ ଶିକ୍ଷାଲାଭ । ଦ୍ୱିତୀୟ ପୁତ୍ର ପାଟନା ବିଜ୍ଞାନ କଲେଜ, ପାଟନା ମେଡିକାଲ କଲେଜ ଏବଂ ପରେ ଲଣ୍ଡନରେ ଉଚ୍ଚ ଶିକ୍ଷା ଲାଭକରି ସର୍ଜନ । ଚନ୍ଦ୍ରମୁଖୀଙ୍କର ନିଜର ସ୍ୱପ୍ନ ଥିଲା ଲକ୍ଷ୍ନୌର ଇସାବେଲା ଥୋବର୍ନ କଲେଜରେ ପଢ଼ିବା ପାଇଁ । ଦୂରତ୍ୱ ଏବଂ ଅର୍ଥାଭାବ ପ୍ରତିକୂଳ ହୋଇଥିଲା । ଆଜି ଝିଅମାନଙ୍କ ଭିତରେ ସେଇ ସ୍ୱପ୍ନ ଚରିତାର୍ଥ କଲେ ସେଇ କଲେଜରେ ପଢ଼ାଇ । ସାନ ପୁଅ ପଢ଼ିଲା ସେଣ୍ଟ ଷ୍ଟିଫେନ୍ସ କଲେଜ ଦିଲ୍ଲୀରେ ।

ଏ ତ ଗଲା ନିଜ କଥା, ପରିବାର କଥା । କିନ୍ତୁ ସାମାଜିକ କଲ୍ୟାଣକୁ ସେ ପାଶୋରି ନଥିଲେ । ଆଜିର ନାରୀ ସେବା ସଂଘ (ତତ୍କାଳୀନ ଓଡିଶା ଉଇମେନ୍ସ ଲିଗ୍)ର ସେ ଦୁଇଥର ସମ୍ପାଦିକା । ରାଜାବଗିଚା ଶ୍ରମିକ ବସ୍ତିରେ କ୍ରେଚ୍, ଶ୍ରମଜୀବୀ ମହିଳାମାନଙ୍କର ଶିଶୁମାନଙ୍କ ପାଇଁ କ୍ରେଚ୍ ତାଙ୍କର ଅବଦାନ । ଗୃହମାନଙ୍କର ସନ୍ତାନପ୍ରସବା ନାରୀମାନଙ୍କ ପାଇଁ ଧାତ୍ରୀ ସେବା ତାଙ୍କର ଏବଂ ଶ୍ରୀ ନୀଳମଣି ସେନାପତିଙ୍କର ସ୍ତ୍ରୀ ଶ୍ରୀମତୀ ଇନ୍ଦୁମତୀ ସେନାପତିଙ୍କର ପ୍ରଗାଢ଼ ଉଦ୍ୟମର ଫଳ ।

ମହାସମରର ସମୟ । ୧୯୩୯ରୁ ୧୯୪୪ । ସ୍ୱାମୀ କଟକରେ ଜିଲ୍ଲାପାଳ । ଯୁଦ୍ଧର ଆତଙ୍କ । ପୁଣି ୧୯୪୩ ମସିହାରେ ଦୁର୍ଭିକ୍ଷ । ଚନ୍ଦ୍ରମୁଖୀ ସେଣ୍ଟ ଜନ୍ ଆମ୍ବୁଲାନ୍ସ ସଂଗଠନରେ ବ୍ୟାପୃତ । ରେଡକ୍ରସ ସୋସାଇଟିର ବିଭିନ୍ନ କାର୍ଯ୍ୟ ତାଙ୍କୁ ବ୍ୟସ୍ତ ରଖେ । ବିଡାନାସୀ, ଚଷାପଡା ପ୍ରଭୃତି ଗ୍ରାମମାନଙ୍କରେ ଗାଉଁଲୀ ସ୍ତ୍ରୀ, ଝିଅମାନଙ୍କୁ ପାଠ ପଢ଼ାନ୍ତି । ସମୟ ସେଇଥିରେ କଟିଯାଏ । ସ୍ୱାମୀଙ୍କ ସାଙ୍ଗରେ ଯାଆନ୍ତି ଦୁରାରୋଧ ଅଞ୍ଚଳକୁ । ଗ୍ରାମେ ଗ୍ରାମେ ସ୍ତ୍ରୀ, ଝିଅମାନଙ୍କ ସହିତ, ସେମାନଙ୍କର ଜୀବନ, ଚିନ୍ତା ସହିତ ତାଙ୍କର ପରିଚିତି ଗଢ଼ିଉଠେ । ସହର ଓ ଗ୍ରାମ ଉଭୟ ହୋଇଯାଏ ତାଙ୍କର କର୍ମପୀଠ । ବହୁ ସୋସାଇଟି, ଅନୁଷ୍ଠାନ ତାଙ୍କର ସକ୍ରିୟ କାର୍ଯ୍ୟ ଲାଭ କରେ । ଡାକ୍ତରଖାନା, ଆମ୍ବୁଲାନ୍ସ, ରେଡକ୍ରସ ସୋସାଇଟି, ମାତୃମଙ୍ଗଳ କେନ୍ଦ୍ରଠାରୁ ଆରମ୍ଭ କରି ବାଇବେଲ ଅନୁବାଦ, ପୁଷ୍ପ ପ୍ରଦର୍ଶନୀ କିଛି ବାଦଯାଏନା । ତାଙ୍କର ଲେଖା ''ସମାଜରେ ନାରୀର ସ୍ଥାନ'' ଉଚ୍ଚ ପ୍ରଶଂସା ଲାଭ କରେ । ସମାଜସେବା ପାଇଁ ସେ କାଇଜର-ଇ-ହିନ୍ଦ୍ ମେଡାଲ ପାଆନ୍ତି । କିନ୍ତୁ ପ୍ରତିଷ୍ଠା, ଉପାଧି ତାଙ୍କ ବିଭ୍ରାନ୍ତି କରିପାରେ ନାହିଁ । ସେ ରହିଯାଆନ୍ତି ସେଇପରି ନମ୍ର, ବିନୟୀ ଏବଂ କର୍ମଠ । ନାରୀର ପ୍ରଗତି ହେଉଛି ସମାଜର ପ୍ରଗତି, ଏଇ ମନ୍ତ୍ର ସାଧନ ପାଇଁ ସେ କାମ କରି ଯାଆନ୍ତି ନୀରବରେ । ଆଡ଼ମ୍ବର, ସମ୍ବର୍ଦ୍ଧନା କିଛି ଲୋଡ଼ି ନାହାନ୍ତି । ମାଟିର ଦେହ ଦିନେ ମାଟିରେ ମିଶିବ, ସବୁ ରହିଯିବ ପଛରେ । ଏ ମହାସତ୍ୟ ସମ୍ପର୍କରେ ସେ

ସଚେତନ ଥିଲେ ଚିରକାଳ । ତାହା ହିଁ ତାଙ୍କର ସ୍ମୃତିକୁ ଅମ୍ଳାନ ରଖିଛି ଅଗଣିତ ବନ୍ଧୁ, ପରିବାର ଏବଂ ଉତ୍ତରପୀଢ଼ି ପାଖରେ ।

ସମସ୍ତଙ୍କୁ ଦେଖିଛନ୍ତି ସମାନ ଭାବରେ । ସମସ୍ତେ ଈଶ୍ୱରଙ୍କ ସନ୍ତାନ । ଗୀତା, ବାଇବେଲ, କୋରାନ, ସମସ୍ତେ କହିଛନ୍ତି ସେଇକଥା । ସେଇ ବିରାଟ ଭାରତୀୟ ପରମ୍ପରାର ଦାୟାଦ ଚନ୍ଦ୍ରମୁଖୀ । ସାମୁଏଲ ଦାସ ଆସିଥିଲେ ସମ୍ବଲପୁରରୁ । ସେଠାରେ କଲେଜ ନଥିଲା । ଅନେକେ ଆସନ୍ତି କଟକକୁ ଉଚ୍ଚ ଶିକ୍ଷା ପାଇବା ପାଇଁ । ଘରେ ଚାକରର ମା'ଛେଉଣ୍ଡ ଝିଅଟିଏ । କେହି ତାଙ୍କର ମାତୃ ସ୍ନେହରୁ ବଞ୍ଚିତ ହୋଇ ନାହାନ୍ତି । କିଏ କେଉଁଠି ଦୂର ଯାଗାରୁ ସାହାଯ୍ୟ ଲୋଡ଼ିଛି, ପାଇଛି । ଝିଅମାନଙ୍କ ପାଇଁ ଯାହା କରିବାର କଥା, ଗୋଟିଏ ମଣିଷ ହାତରେ ଯାହା ସମ୍ଭବ ସେ କରିବାକୁ ଚେଷ୍ଟା କରିଛନ୍ତି ।

ସମୟ ଅତିକ୍ରାନ୍ତ ହୋଇଛି । ବୟସ ବଢ଼ିଛି । ସମସାମୟିକ ଲୋକେ ବାହୁଡି ଗଲେଣି । ତାଙ୍କୁ ମଧ୍ୟ ଯିବାକୁ ହେବ । ସେଥିପାଇଁ ସେ ପ୍ରସ୍ତୁତ । ସର୍ବେ ଭବନ୍ତୁ ସୁଖିନା, ସର୍ବେ ସନ୍ତୁ ନିରାମୟା । ସମସ୍ତଙ୍କର ସୁଖ ପାଇଁ ଜୀବନ ବିତିଯାଇଛି, ସେ ନିଜେ ସୁଖୀ ହୋଇଛନ୍ତି । ଧୂଳିରୁ ଆସିଥିଲେ ଧୂଳିକୁ ଫେରି ଯିବାକୁ ହେବ ବାଇବେଲର ଏଇ ବାଣୀ ମନେପଡୁଛି । ତା'ପରେ ?

ସେଇ ମୁହୂର୍ତ୍ତ ଉପସ୍ଥିତ । ଚନ୍ଦ୍ରମୁଖୀ ଆଖି ବୁଜିଦେଲେ ଚିରକାଳ ପାଇଁ । ସେଦିନ ଅକ୍ଟୋବର ୨୧ ତାରିଖ, ୧୯୭୨ ମସିହା । ଚନ୍ଦ୍ରମୁଖୀ ପାଲଟିଗଲେ ପରମ୍ପରା, ଇତିହାସ । ମାଟିର ମଣିଷ ମାଟିରେ ମିଶିଗଲା । କିନ୍ତୁ କଥା ରହିଗଲା କାଳକାଳକୁ ।

□□□

# ଜୀବନର ଶେଷ ହସ

*(୰ ଚୌଧୁରୀ ହେମକାନ୍ତ ମିଶ୍ର)*

ଜୀବନରେ ହସ ହେଉଛି ଏକ ମହୌଷଧି । ଡାକ୍ତର ଓ ମନସ୍ତତ୍ତ୍ୱବିଦ୍‌ମାନେ କହନ୍ତି ଯେ ହସିପାରିଲେ ବା ହସିଲେ ଅନେକ ରୋଗ ଭଲ ହୋଇଯାଏ । ସେଇଥିପାଇଁ ଆଜିକାଲି ହସିବା କ୍ଲବ ବା ଲାଫିଙ୍କ କ୍ଲବ ଗଢ଼ା ହେଲାଣି ଅନେକ ଜାଗାରେ ।

ମଣିଷ ହସେ ସୁଖରେ । ଦୁଃଖରେ ବି ହସିପାରନ୍ତି କେତେକ । ସେମାନେ ହସନ୍ତି, କାରଣ କାନ୍ଦିପାରନ୍ତି ନାହିଁ ବୋଲି । ସେ ହସ ହେଉଛି କାନ୍ଦର ବିକାର । ହସିବା ସବୁ ସମୟରେ କଠିନ । ଅନ୍ୟକୁ ହସାଇବା ତ ବେଶ୍ କଠିନ । ବ୍ୟଙ୍ଗ ସାହିତ୍ୟର ସୃଷ୍ଟି ସେଇଠୁ । ସମାଜର ଅନେକ ଦିଗକୁ ବ୍ୟଙ୍ଗ ସାହିତ୍ୟିକମାନେ ତୋଳିଧରନ୍ତି ଆପଣାର ବିଦ୍ରୂପ ବା ହ୍ୟୁମରରେ ।

ଆଉ ହ୍ୟୁମର ନଥିଲେ ଜୀବନ ଶୁଷ୍କ ମରୁଭୂମି । ପାଣିଟୋପାଏ ବି ନାହିଁ । ଆମ ଦେଶରୁ, ଜୀବନର ସବୁ ବିଭାବରୁ ହ୍ୟୁମର ମରିଯାଉଛି ।

ଏତିକିବେଳେ ବନ୍ଧୁ ଚୌଧୁରୀ ହେମକାନ୍ତ ମିଶ୍ରଙ୍କର ପରଲୋକ ସମ୍ବାଦ ଯେପରି ଏକ ଚଟଲା ଝାଞ୍ଜି ପବନ ଖେଳାଇଦେଲା । ସେ ଅସୁସ୍ଥ ଥିଲେ, ଝିଅ ପାଖରେ ରହୁଥିଲେ କିନ୍ତୁ ହଠାତ୍ ବିନା ମେଘରେ ବଜ୍ରପାତ ! (ତାଙ୍କର ଭାଷାରେ !)

ହେମକାନ୍ତ ମୋର ବନ୍ଧୁ ବହୁଦିନର । କଲେଜରେ ପଢ଼ିଲାବେଳକୁ ବୟସରେ ମୋ ଠାରୁ କିଛି ସାନ । ଜୀବନର ବାତଚକ୍ରରେ ବୁଲିବୁଲି ମୁଁ ପୁଣି ରେଭେନ୍ସା କଲେଜକୁ ଫେରିଲାବେଳକୁ ସେ ମୋର ସମସାମୟିକ ।

ପ୍ରତିଭା ପ୍ରସବିନୀ ମାହାଙ୍ଗାର ଭେଡା ଜମିଦାର ପରିବାରରେ ଜନ୍ମ ତାଙ୍କର ୧୯୩୫ ମସିହା, ଏପ୍ରିଲ୍ ୧୩ ତାରିଖରେ । କିନ୍ତୁ ପିଲାଦିନରୁ ତାଙ୍କର ଲେଖା ଯେପରି ବ୍ୟତିକ୍ରମ, ସେ ନିଜେ ସେଇପରି ବ୍ୟତିକ୍ରମ । ବାମପନ୍ଥୀ, ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ଥିଲା ତାଙ୍କର । ଭଗିନୀପତି ସମାଜବାଦୀ ଆଡ୍‌ଭୋକେଟ ଅଶୋକ ଦାସ ।

କଥା ଯେମିତି ହାସ୍ୟରୂପ ବିଦ୍ରୂପରେ ଭରା, ଲେଖା ବି ସେମିତି । ମନୋବିଜ୍ଞାନରେ ଏମ.ଏ. ଏବଂ ପିଏଚ୍.ଡି. ଉପାଧି ପାଇଲାପରେ ସେ ଭାରତୀୟ ଭାଷା ସଂସ୍ଥା, ମାଡ୍ରାସ୍ ଟେକନିକାଲ ରିସର୍ଚ୍ଚ ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍, ଆହ୍ଲାବାଦ ବିଶ୍ୱବିଦ୍ୟାଳୟ, ଆଇ.ଆଇ.ଟି.

ଖଡଗପୁରରେ ଅଧ୍ୟାପନା କରିଥିଲେ ସଂକ୍ଷିପ୍ତ ସମୟ ପାଇଁ । ପରବର୍ତ୍ତୀ କାଳରେ ସେ ଏନ.ସି.ଇ.ଆର୍.ଟିରେ ଯୋଗଦେଇଥିଲେ ଏବଂ ସେଇଥିରୁ ହିଁ ଅବସର ଗ୍ରହଣ କରିଥିଲେ ।

କହିବାଟା ଯେମିତି ଟେରଛା, ଲେଖା ବି ସେମିତି । ଦେବ ମହାପାତ୍ର ଓ ଫତୁରାନନ୍ଦଙ୍କର ଯୋଗ୍ୟ ଉତ୍ତରାଧିକାରୀ । ଫତୁରାନନ୍ଦଙ୍କ ଜୀବନୀ ତାଙ୍କର ଏକ ସଫଳ କୃତି ।

ଉଲ୍ଲୁକର ପ୍ୟାଣ୍ଡ, ଟେରଛା ଗପ, କୁରୁକୁଳିଆ ଗଳ୍ପ, ଅଘଟଣ, ନିଷିଦ୍ଧ ପୁସ୍ତକ, ହେମକାନ୍ତଙ୍କ ହସଗୋଲା, ହସକୁରା କଥାମାନ, ହାସ ପରିହାସ, ବେଙ୍ଗୁଲୀ ଗଳ୍ପ, ହାସ୍ୟ ସଂକଳନ ପ୍ରଭୃତି ବହୁ କୃତି ତାଙ୍କ କଲମରୁ ଝରିଛି ଏବଂ ଅନ୍ୟମାନଙ୍କୁ ହସର ଖୋରାକ ଦେଇଛି ।

ଓଡିଶାର ପାଠକକୁଳକୁ ସେ ହସାଇଛନ୍ତି ତାଙ୍କର ବିଦ୍ରୂପ ବାଣରେ । ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଏକାଡେମୀ, ପ୍ରଜାତନ୍ତ୍ର ପ୍ରଚାର ସମିତି, ସରସ ସାହିତ୍ୟ ସମିତି, ପ୍ରଭୃତି ବହୁ ଅନୁଷ୍ଠାନଦ୍ୱାରା ସେ ପୁରସ୍କୃତ ହୋଇଛନ୍ତି । କିନ୍ତୁ ସବୁଠାରୁ ବଡ଼ ପୁରସ୍କାର ହେଉଛି ତାଙ୍କର ପାଠକ । ପିଲା, ବୁଢ଼ା, ଭେଣ୍ଡା, ଶ୍ରମିକ, ଯୁବତୀ ସମସ୍ତଙ୍କୁ ମସ୍‌ଗୁଲ କରିଯାଇଛନ୍ତି ସେ ।

ମନେପଡୁଛି । ସେ ଆସିଥିଲେ ୟୁନିଭର୍ସିରେ ଭାଷଣ ଦେବାପାଇଁ । ରାତି ବେଶ୍ ହୋଇଯାଇଥିଲା । ହେମକାନ୍ତ, ରିକ୍ସା ଡାକିଦେବା । ଏକାକୀ ଯିବ କେମିତି ? ନା, ମୁଁ ଝିଅପିଲା ନୁହେଁ ଯେ ଏକାକୀ ଯିବାକୁ ଡରିବି ? ଆଉ, ରିକ୍ସା ମାନେ ସେଇ ଯାନ ଯେଉଁଥିରେ ତିନିଜଣ ଝିଅ ଯାଆନ୍ତି, ସେ ରିକ୍ସା ମୋ ପାଇଁ ନୁହେଁ । ହେମକାନ୍ତ ଅନନ୍ୟ ସତରେ ।

ସମାଜରେ ହସ ମରିଯାଉଛି । ହାସ୍ୟରସ ପ୍ରାୟ ନାହିଁ । ଜୀବନ ଶୁଷ୍କ ହୋଇଯାଉଛି । ସେତେବେଳେ ହେମକାନ୍ତଙ୍କର ବିୟୋଗ କେମିତି ଗୋଟାଏ ଗରମ ଦୀର୍ଘଶ୍ୱାସ ଭରିଦେଲା ଜୀବନରେ ।

ହେମକାନ୍ତ, ତମେ କ'ଣ ସତରେ ଫେରିବ ନାହିଁ ? ୩୧ ଅଗଷ୍ଟ ୨୦୦୫ ମସିହା । ରାତି ଗୋଟାଏ ପଇଁଚାଳିଶ ମିନିଟ । ବାଙ୍ଗାଲୋରରେ ଆପଣାର ଏକମାତ୍ର ସନ୍ତାନ (କନ୍ୟା) ଗୃହରେ ସେଇ ହସ ଲିଭିଗଲା, ଯାହା ଖାଲି ସେ ପରିବାର ନୁହେଁ ଓଡିଆ ଭାଷାର ପାଠକକୁଳର ହସକୁ ଲିଭାଇ ଦେଇଛି । ହସର ବିକଳ୍ପ ନାହିଁ । ଠିକ୍ ସେଇପରି ହେମକାନ୍ତଙ୍କର ମଧ୍ୟ ବିକଳ୍ପ ନାହିଁ ।

ସେ ଅନନ୍ୟ ।



# ଅନ୍ଧାରି ମୁଲକରେ ରେନିଂସାର ପ୍ରତୀକ

## (୰ ଜୟକୃଷ୍ଣ ମିଶ୍ର)

ବିଚାରପତି ଜୟକୃଷ୍ଣ ମିଶ୍ରଙ୍କର ପରଲୋକ ହୋଇଯାଇଛି ପରିଣତ ବୟସରେ । ମୃତ୍ୟୁ ବେଳକୁ ତାଙ୍କୁ ବୟାନବେ ବର୍ଷ ହୋଇଥିଲା । ଗଲା ବେଶ୍ କିଛି ଦିନ ହେଲା ସେ ଅସୁସ୍ଥ ଥିଲେ । ପୁତ୍ର କନ୍ୟା ସମସ୍ତେ ପ୍ରତିଷ୍ଠିତ । ତେଣୁ ତାଙ୍କର ଆଉ ରହିବାର କୌଣସି ଆବଶ୍ୟକତା ନଥିଲା ବୋଧହୁଏ । ଜନ୍ମ ହେଲେ ଗୋଟିଏ କଥା ସୁନିଶ୍ଚିତ । ତା' ହେଉଛି ମୃତ୍ୟୁ । ମୃତ୍ୟୁ ଅଲଂଘନୀୟ ।

ଜୟକୃଷ୍ଣ ବାବୁ ପାଠ ପଢ଼ିଥିଲେ । ସେତେବେଳେ ସୁର ପ୍ରତାପ ଢେଙ୍କାନାଳର ରାଜା । ଓଡ଼ିଶାରେ ଶିକ୍ଷାର ବିକାଶ ପାଇଁ ତାଙ୍କର ଅବଦାନ ଥିଲା ପ୍ରଭୂତ । ଓଡ଼ିଶାର ପ୍ରଥମ ଦଶ ବାରଟି ହାଇସ୍କୁଲ ଭିତରୁ ଢେଙ୍କାନାଳ ହାଇସ୍କୁଲ ଗୋଟିଏ । ପିଲା ପଢ଼ିବାକୁ ଆସୁଥିଲେ ଅନେକ ଆଡୁ । ପ୍ରଧାନ ଶିକ୍ଷକ, ଶିକ୍ଷକ ମଧ୍ୟ ବଛାହୋଇ ଆସୁଥିଲେ ଭାରତର ବିଭିନ୍ନ ସ୍ଥାନରୁ । ଆଜି ସେଇଭଳି କଥା ଅଡୁଆ ଶୁଭିବ । ପ୍ରସିଦ୍ଧ ରାଜେନ୍ଦ୍ର ଲାଲ ମିତ୍ର ଥିଲେ ପ୍ରଧାନ ଶିକ୍ଷକ ।

ଲେଖକର ବାପା ଦାଦା ଉଭୟେ ଶିକ୍ଷା ପାଇଥିଲେ ସେଇ ସ୍କୁଲରୁ । ଦାଦା ବିରଞ୍ଚି ନାରାୟଣ ଜୟକୃଷ୍ଣ ମିଶ୍ରଙ୍କର ଥିଲେ ସହପାଠୀ । ରାଜେନ୍ଦ୍ର ଲାଲ ବାବୁ ଛାତ୍ରମାନଙ୍କ ମଧ୍ୟରେ କେବଳ ପୋଥିଗତ ଶିକ୍ଷାର ବୀଜ ରୋପଣ କରି ନଥିଲେ । କରିଥିଲେ ସ୍ୱାଧୀନଚେତ ହେବାର ବୀଜ ରୋପଣ ମଧ୍ୟ ।

ଜୟକୃଷ୍ଣ ବାବୁ ଉଚ୍ଚ ଶିକ୍ଷା ଲାଭ କରିଥିଲେ, କିନ୍ତୁ ଢେଙ୍କାନାଳରେ ରହିବା ବା ସେଠାରେ ଜୀବିକା ଅର୍ଜନ କରିବା ତାଙ୍କୁ ସୁଖକର ମନେ ହୋଇନଥିଲା । ସମୟ ବଦଳି ଯାଇଥିଲା । ଜୟକୃଷ୍ଣ ବାବୁ ଜୀବିକା ଅର୍ଜନ କରିବାକୁ ସ୍ଥିର କଲେ ଅନ୍ୟତ୍ର । ସରକାରୀ ଚାକିରି ତ କରିପାରିଥାନ୍ତେ । କିନ୍ତୁ ତା' ମଧ୍ୟ କଲେ ନାହିଁ ।

ବିଭିନ୍ନ ଗଡ଼ଜାତ ରାଜ୍ୟରେ ଦେବାନ ହେଲେ । ତା' ମଧ୍ୟରୁ ରେଢ଼ାଖୋଲ ଅନ୍ୟତମ । ସେଇଠି ମୋର ମଉସା କାମ କରୁଥାନ୍ତି । ଦେଖାହୁଏ ସେଇ ଯାଗାରେ

ବହୁବାର । ଦାଦାଙ୍କ ସାଙ୍ଗରେ ତାଙ୍କର ଗପ ଜମେ । କିନ୍ତୁ ବାପାଙ୍କ ସାଙ୍ଗରେ ସେମିତି ଗପ ଜମି ପାରେନା । ଜୟକୃଷ୍ଣ ବାବୁ ହସି ହସି କହନ୍ତି, ନନା ଇମିତି ଗମ୍ଭୀର କିନ୍ତୁ ସରଳ ଯେ ଗପ ଜମିପାରୁ ନାହିଁ ତାଙ୍କ ସାଙ୍ଗରେ, ଯେମିତି ଜମୁଚି ବିରଞ୍ଚି (ମୋର ଦାଦା) ବା ଲକ୍ଷ୍ମୀଧର (ମୋର ମଉସା)ଙ୍କ ସାଙ୍ଗରେ । ସେତେବେଳେ ଗୁଣ୍ଡୁରି (ବର୍ତ୍ତମାନ ବିଚାରପତି ଅମୀୟ ପାଢ଼ୀ) ମଧ ପିଲା । ମୋ'ଠାରୁ କିଛି ବର୍ଷ ସାନ । ମୋ ସାନ ଭାଇ ଏବଂ ମାଉସୀପୁଅ ଭାଇ ମଦନର ସମସାମୟିକ । ଜୟକୃଷ୍ଣ ବାବୁଙ୍କ ଘରେ ସମୟ କଟେ । ମୋତେ ନେଇ ସେ ସ୍କୁଲକୁ ଗଲେ, ରେଢ଼ାଖୋଲର ସ୍କୁଲ । ସେଇଠି ମୁଁ କହିବି ରେଳଗାଡ଼ି କଥା, ରେଳ ଇଞ୍ଜିନ କଥା । କାରଣ ରେଢ଼ାଖୋଲର ପିଲାମାନେ ଦେଖିନାହାନ୍ତି ରେଳଗାଡ଼ି ।

ମୋର ଯେତେଦୂର ମନେପଡୁଛି ଜୟକୃଷ୍ଣ ବାବୁ ସେଠାରେ ଦେବାନ ଥିଲା ପର୍ଯ୍ୟନ୍ତ ସ୍ୱାଧୀନତା ସଂଗ୍ରାମୀମାନେ ଗିରଫ ହୋଇନଥିଲେ । ପରେ ମୁଁ ଦେଖିଚି ତିନିଜଣ ଶିକ୍ଷିତ ଯୁବକଙ୍କୁ ଅଣ୍ଟାରେ ଦଉଡ଼ି ହାତକଡ଼ି ଦେଇ ଜେଲଖାନାରୁ କଚିରୀକୁ ଚଲେଇ କରି ନେବା । ସେ ମଧ୍ୟରୁ କୁଆଡେ ଦୁଇଜଣ ଅଫିସର ମଧ ଥିଲେ ସେଇ ରେଢ଼ାଖୋଲ ଗଡଜାତରେ । ସେମାନଙ୍କର ନାଁ,ପଦବୀ କିଛି ମନେ ନାହିଁ । ଖାଲି ମନେପଡୁଚି ସ୍ମୃତି ।

ଜୟକୃଷ୍ଣ ବାବୁ ବିଭିନ୍ନ କାର୍ଯ୍ୟରେ ହାତ ଦେଇଛନ୍ତି । କିଛିକାଳ ସେ କାଠ ବ୍ୟବସାୟ କରିବାପାଇଁ ମଧ ମନ ବଳାଇଥିଲେ । ମିଶ୍ର ଏବଂ ପଟ୍ଟନାୟକ ନାମରେ ଏକ କମ୍ପାନୀ ଗଠିତ ହୋଇଥିଲା । ଗୋବିନ୍ଦ ଚନ୍ଦ୍ର ମହାନ୍ତି (ଆଠଗଡ) ତାଙ୍କର ପାର୍ଟନର ଥିଲେ । କିନ୍ତୁ ବେଶି ଦିନ ତାହା ଚାଲିନଥିଲା ।

ଜୟକୃଷ୍ଣ ବାବୁ ସ୍ୱାଧୀନଚେତା ଥିଲେ । ଚାକିରି କରିଥିଲେ କିନ୍ତୁ ମନ ସ୍ୱାଧୀନ ଥିଲା । ପରେ ସେ ଜିଲ୍ଲା ଜଜ୍ ଏବଂ ତାପରେ ହାଇକୋର୍ଟ ବିଚାରପତି ହୋଇଥିଲେ । ଜିଲ୍ଲା ଜଜ୍ କିମ୍ବା ହାଇକୋର୍ଟ ବିଚାରପତି ଭାବରେ ସେ କେତେ ଦିନ ଜନସ୍ମୃତିରେ ରହିବେ ତା କଳନା କରିହେବ ନାହିଁ ।

କିନ୍ତୁ ଜୟକୃଷ୍ଣ ଏକ ପରମ୍ପରା । ଢେଙ୍କାନାଳ ଏକ ପଶ୍ଚାଦ୍‌ପଦ ଅଞ୍ଚଳ ଥିଲା । ଦେଶରେ ବିଦେଶୀ ଆଇନ । ଢେଙ୍କାନାଳରେ ରାଜୁତା ଆଇନ । ତାରି ଭିତରେ ଯେଉଁମାନେ ମୁଣ୍ଡ ଟେକି ଠିଆ ହୋଇଥିଲେ, ଠିଆ ହୋଇଥିଲେ ନିର୍ଭୀକ ଭାବରେ ସେମାନଙ୍କ ଭିତରେ ଜୟକୃଷ୍ଣ ମିଶ୍ର ନିଶ୍ଚୟ ମନେ ପଡ଼ିବେ । ଏଇ ସ୍ୱାଧୀନଚେତା ମନୋଭାବ ତାଙ୍କର ପରିବାରବର୍ଗକୁ ମଧ ପ୍ରଭାବିତ କରିସାରିଥିଲା । ସେମାନଙ୍କ ମଧ୍ୟରେ

ଡାକ୍ତର କୁଳମଣି ମିଶ୍ର, ପ୍ରାକ୍ତନ ଛାତ୍ରନେତା ଡାକ୍ତର ବସନ୍ତ କୁମାର ମିଶ୍ର ନିଶ୍ଚୟ ମନେ ପଡ଼ିବେ ।

ପରବର୍ତ୍ତୀ ଜୀବନରେ କିଏ କ'ଣ ହେଲା ସେ କଥା କହିବା କଠିନ । ଜୀବନର ରାସ୍ତା ବନ୍ଧୁର, କଣ୍ଟକିତ ଏବଂ ସର୍ପିଳ । କିନ୍ତୁ ଆଦ୍ୟ ଜୀବନର ଦୁନ୍ଦୁଭି ତ ସତ୍ୟ । ତାହା ହିଁ ତ ଅନୁପ୍ରାଣିତ କରିଛି ଅନେକଙ୍କୁ । ପ୍ରାକ୍ତନ ବିପ୍ଳବୀମାନେ ଯେପରି ଅନୁପ୍ରାଣିତ କରିଛନ୍ତି ଅନେକ ଉତ୍ତର ପୁରୁଷର ପ୍ରତିନିଧିମାନଙ୍କୁ, ସ୍ୱାଧୀନଚେତାମାନେ ସେଇପରି ବହୁ ଅଫିସର, ବିଚାରପତି, ସମାଜସେବୀମାନଙ୍କୁ ଅନୁପ୍ରାଣିତ କରିଛନ୍ତି ।

ଜୟକୃଷ୍ଣ ବାବୁ  ସେମାନଙ୍କ ପାଇଁ ଚିରକାଳ ନମସ୍ୟ ଓ ସ୍ମୃତ ହୋଇ ରହିବେ । ସେଇଯୋଗୁଁ ସେଦିନ ନିଜର ହୃଦଯନ୍ତ୍ର ପରୀକ୍ଷା କଲାବେଳେ ଡାକ୍ତର ହୃଦାନନ୍ଦ ମିଶ୍ର ଯେତେବେଳେ ଏଇ ଦୁଃସମ୍ବାଦ ଦେଲେ ସେଇଠାରୁ ହିଁ ଯାଇଥିଲି ତାଙ୍କୁ ଶେଷାର୍ଘ୍ୟ ଦେବାପାଇଁ ।

କିନ୍ତୁ ।

ସେତେବେଳକୁ ତାଙ୍କର ମରଦେହ ପାଉଁଶରେ ପରିଣତ ହୋଇସାରିଥିଲା । ଖବର ପାଇନଥିଲି ଆଗରୁ ।

ଥିଲା ଖାଲି ସ୍ମୃତି..... ଉଜଳା, ଅମ୍ଳାନ ସ୍ମୃତି ।

□□□

## ଡାକ୍ତର ଜର୍ଜ ପଟ୍ଟନାୟକ- ଏକ ଶ୍ରଦ୍ଧାଞ୍ଜଳି

*(ଁ ଜର୍ଜ ପଟ୍ଟନାୟକ)*

ଏଇ ଶତାବ୍ଦୀର ପ୍ରଥମ ଦଶନ୍ଧି ସରି ଯାଇଥିଲା । ପୃଥିବୀର ବୁକୁ ଉପରେ ପ୍ରଥମ ମହାଯୁଦ୍ଧର କମାଣ ଫୁଟିବାକୁ ଡେରି ଅଛି । କିନ୍ତୁ ଯୁଦ୍ଧର ଦାମାମା ଧ୍ୱନି ବାଜିବାକୁ ଆରମ୍ଭ ହେଁଲାଣି । ପ୍ରଳୟ ଭିତରୁ ଏକ ନୂଆ ଯୁଗର ଆରମ୍ଭ ହେବ । ଭାରତବର୍ଷ ଶୋଇ ପଡିଛି ପରାଧୀନତାର ଶୃଙ୍ଖଳରେ । ଓଡ଼ିଆ ଭାଷାଭାଷୀମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ପାଇଁ ଦାବୀ ଆରମ୍ଭ ହେଲାଣି । ଏଇ ଜାତିର ପୁନରଭ୍ୟୁଦ୍ଥାନର ମାହେନ୍ଦ୍ର ମୁହୂର୍ତ୍ତ ଉପସ୍ଥିତ ।

ଏଇ ସମୟରେ । ୧୯୧୧ ମସିହା ଅଗଷ୍ଟ ୨୪ ତାରିଖରେ କଲିକତା ସହରରେ ଜାତୀୟ ପୁନରଭ୍ୟୁଦ୍ଥାନର ମହାରଥୀ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କର ପୁଅଟିଏ ଜନ୍ମ ହୁଏ । ଆଗରୁ ପୁଅଟିଏ ହୋଇଥିଲା, କିନ୍ତୁ ବଞ୍ଚି ପାରିନଥିଲା । ସେଇଯୋଗୁଁ ସେ ସ୍ତ୍ରୀଙ୍କୁ ନେଇଯାଇଥିଲେ କଲିକତା, ପ୍ରସିଦ୍ଧ ଡାକ୍ତର ନୀଳରତନ ସରକାରଙ୍କ ପାଖକୁ । ବାପା କେବଳ ପୁନରଭ୍ୟୁଦ୍ଥାନର ମହାରଥୀ ନୁହନ୍ତି ସମାଜ-ସଂସ୍କାରକ ମଧ୍ୟ । ବ୍ରାହ୍ମଣବାଦର ନିଗଡ ଭିତରେ ବନ୍ଧା ପଡିଥିବା ହିନ୍ଦୁସମାଜର ସଂସ୍କାର ପାଇଁ ସେଦିନ ସାରା ଭାରତବର୍ଷରେ ଏକ ନୂତନ ଜାଗରଣ ଦେଖାଦେଇଥିଲା । ତାହାର ମଶାଲଧାରୀ ଥିଲେ ରାଜା ରାମମୋହନ ରାୟ, ବ୍ରାହ୍ମଧର୍ମର ପ୍ରବର୍ତ୍ତକ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ସଂସ୍କାରକ ଲକ୍ଷ୍ମୀନାରାୟଣ ସେଥିପ୍ରତି ଆକୃଷ୍ଟ ହୋଇଥିଲେ । ବାପା ଓଡିଆ, ମାଆ ବଙ୍ଗାଳୀ । ଉଭୟ ବ୍ରାହ୍ମଧର୍ମ ଉପାସକ ।

ପରମବ୍ରହ୍ମଙ୍କ ପ୍ରସାଦରୁ ଏଥର ପୁତ୍ରଟିଏ ହୋଇଥିବାରୁ ବାପା ଓ ମା' ଆଗ୍ରହରେ ନାମ ଦେଇଥିଲେ ପ୍ରସାଦାନନ୍ଦ । ଡାକ ନାଁ ଥିଲା ଜର୍ଜ । ଆଉ ସେଇ ଜର୍ଜ ନାଆଁଟି ରହିଗଲା ସମସ୍ତଙ୍କ କଣ୍ଠରେ, ସମସ୍ତଙ୍କ ମନରେ । ସେ ଜର୍ଜ ପଟ୍ଟନାୟକ ନାମରେ ହିଁ ପରିଚିତ ହେଲେ । କେବଳ ସାର୍ଟିଫିକେଟରେ ହିଁ ରହିଗଲା ଆବଦ୍ଧ ହୋଇ ପ୍ରସାଦାନନ୍ଦ ନାଆଁଟି ।

ତା'ପରେ ସେ ପିଠିରେ ଆଣିଥିଲେ ଭଉଣୀଟିଏ । ଆପଣାର ସୁକୃତ ଯୋଗୁଁ ଝିଅଟି ଜନ୍ମ ହୋଇଥିବାରୁ ବା ଝିଅଟି ଭବିଷ୍ୟତରେ ସୁକୃତ କରିବାର କାମନାରେ ଝିଅଟିର

ନାଁ ଦିଆଯାଇଥିଲା ସୁକୃତି । ବ୍ରହ୍ମାନନ୍ଦ ମହାପାତ୍ରଙ୍କୁ ବିବାହ କରି ସେ ସୁକୃତି ମହାପାତ୍ର ନାମରେ ପରିଚିତ ଏବଂ ଦୁଇଟି ପୁତ୍ରର ଜନନୀ ।

ତା'ପରେ ଜନ୍ମଲାଭକରେ ଆଉ ଗୋଟିଏ ଭାଇ ୧୯୧୭ ମସିହାରେ । ମହାଯୁଦ୍ଧରେ ଜର୍ମାନ୍ ବିରୁଦ୍ଧରେ ବିଜୟ ଲାଭ ହେତୁ ବା କେବଳ ନିଜ ପାଇଁ ନୁହେଁ ଦେଶ ପାଇଁ, ଜାତି ପାଇଁ ବିଜୟର ଟୀକା ବହନ କରି ଆଣିବାର କାମନାରେ ପୁଅଟିର ନାମ ଦିଆଯାଇଥିଲା ବିଜୟାନନ୍ଦ । ପରେ ସେ ବିଜୁ ପଟ୍ଟନାୟକ ନାମରେ ଖ୍ୟାତିଲାଭ କରନ୍ତି । ଦୁଇଟି ପୁତ୍ର ଏବଂ ଗୋଟିଏ କନ୍ୟାର ସେ ଜନକ ।

ତା'ପରେ ପୁଣି ପୁଅଟିଏ । ନାଁ ଦିଆଯାଇଥିଲା ଶ୍ରୀଜୟାନନ୍ଦ । ସେ ପରେ ସିଜୁ ପଟ୍ଟନାୟକ ନାମରେ ଖ୍ୟାତି ଅର୍ଜନ କରନ୍ତି । ଭାରତୀୟ ବ୍ୟୋମବାହିନୀର ସେ ଥିଲେ ଗ୍ରୁପ କ୍ୟାପଟେନ୍ । ଗୋଟିଏ ପୁତ୍ର ଏବଂ ଗୋଟିଏ କନ୍ୟାର ସେ ଜନକ । କିଛି ବର୍ଷ ତଳେ ତାଙ୍କର ପରଲୋକ ହୋଇଯାଇଛି ।

ଏଇ ହେଉଛି ଜର୍ଜ ପଟ୍ଟନାୟକଙ୍କ ପାରିବାରିକ ପରମ୍ପରା, ଯାହାର ସେ ହେଉଛନ୍ତି ଉଜ୍ଜ୍ୱଳ ଦାୟାଦ । ତିନି ଭାଇ ଆଉ ଗୋଟିଏ ଭଉଣୀରୁ ଦୁଇଜଣ ଆଉ ନାହାନ୍ତି ।

ଜର୍ଜ ପଟ୍ଟନାୟକ ପାଠ ଆରମ୍ଭ କରନ୍ତି କଟକରେ । ରେଭେନ୍‌ସା କଲେଜିଏଟରେ । ପିଲାଦିନରୁ ଭାଇମାନଙ୍କର କ୍ରୀଡା ପ୍ରତି ଆଗ୍ରହ ଦେଖାଦେଇଥିଲା ଏବଂ ଜର୍ଜ ପଟ୍ଟନାୟକ ସ୍କୁଲ ବେଳରୁ ହିଁ ଜଣେ ସୁଦକ୍ଷ ଫୁଟବଲ ଖେଳାଳି ଭାବରେ ଖ୍ୟାତିଲାଭ କରନ୍ତି । ସେ ବ୍ୟାକ୍‌ରେ ଖେଳୁଥିଲେ ଏବଂ ତାଙ୍କର ସଟ୍ ମାରିବା ଦେଖିବା ପାଇଁ ଦୂରଦୂରାନ୍ତରୁ ଆସନ୍ତି ପିଲା ଏବଂ ବୁଢ଼ା । ପିଲାମାନେ ତାଳି ମାରନ୍ତି, ବୁଢ଼ାମାନେ ଆଶୀର୍ବାଦ କରନ୍ତି । ସ୍କୁଲ ସହପାଠୀ ବିନୋଦ କାନୁନଗୋ ପ୍ରଭୃତି ପଖାଳନ୍ତି ସେଇ କଥା ଅଶ୍ରୁଳ ନୟନରେ ।

ସ୍କୁଲରୁ ଭାଇମାନେ ଫେରନ୍ତି ଘରକୁ । ମାଆ ଜଳଖିଆ ବାଢ଼ିବା ପୂର୍ବରୁ ବାପାଙ୍କର ନିର୍ଦ୍ଦେଶ ମିଳେ— ପିଜୁଳି ଗଛରେ ଚଢ଼ିଯାଅ । ଆଗ ପିଜୁଳି ଖାଅ, ପରେ ଜଳଖିଆ ଖାଇବ । ରାତିରେ ଭାଇମାନେ ମାଆର ଗୋଡ଼ ଚିପନ୍ତି । 'ତୁ ମାଆର ଗୋଡ ଚିପୁଛୁ ନା ନାହିଁ' ? ଜର୍ଜ ପଟ୍ଟନାୟକ, ବିଜୁ ପଟ୍ଟନାୟକ ନାତୁଣୀ ପ୍ରଜ୍ଞାକୁ ପଚାରନ୍ତି । ଆମେ ଯାହା ସବୁ ହୋଇଛୁ ସବୁ ସେଇ ମାଆ ପାଦ-ସେବାର ଫଳ । ଦୁହିଁଙ୍କ ଆଖିରେ ଲୁହ ଜକେଇ ଆସେ ।

ସ୍କୁଲ ପାଠ ସାରି ଜର୍ଜ ପଟ୍ଟନାୟକ ଯାଆନ୍ତି ରେଭେନ୍‌ସା କଲେଜକୁ । ସେଠାରେ ମଧ୍ୟ କ୍ରୀଡା ପାଇଁ ଖ୍ୟାତିଲାଭ କରନ୍ତି ସେ । ଫୁଟବଲ, କ୍ରିକେଟ, ଟେନିସ୍ ଏବଂ ଦ୍ରୁତଗତିରେ ସାଇକେଲ ଚାଳନା ଥିଲା ତାଙ୍କର ନୈପୁଣ୍ୟ । ତା'ପରେ ସେ ଯାଆନ୍ତି ମେଡିକାଲ ସ୍କୁଲକୁ ।

ମହାନଦୀ ବହୁଛି ଘୁଘୁ ହୋଇ । ଜୋବ୍ରା ଆନିକଟ । ଆନିକଟ ତଳେ ଗଭୀର ଗଣ୍ଡ । ପାଣି ଘୂର୍ଣ୍ଣି ଖାଉଛି ମହାପ୍ରଳୟର ଗ୍ରାସରେ । ଆଉ ଜୋବ୍ରା ଆନିକଟର ପଥର ପାହାଚ ଡେଇଁ ଡେଇଁ ନିର୍ବିକାର ଚିତ୍ତରେ ଚାଲିଛି ଜଣେ ବାଳକ । କି ଦୁଃସାହସ ! ଟିକିଏ ପାଦ ଖସିଗଲେ ମୃତ୍ୟୁ ସୁନିଶ୍ଚିତ ! ଆତଙ୍କିତ ପ୍ରିନ୍‌ସିପାଲ ପିଲାଟିର ବାପାଙ୍କୁ ଖବର ଦେଲେ । ବାପା ଶୁଣିଲେ ଏବଂ ହସିଲେ । ଡେଉଁଥିଲା ତ !

ପିଲାଟିର ନାଁ ଜର୍ଜ ପଟ୍ଟନାୟକ ।

ଘରକୁ ଫେରନ୍ତି ଛୁଟି ଦିନମାନଙ୍କରେ । ତୁଳସୀପୁର ଥିଲା ସେତେବେଳେ ଅପନ୍ତରା ରାଜ୍ୟ । ନାଲି ରାସ୍ତା, ମ୍ୟୁନିସିପାଲିଟିର ହାରକିନ ଆଲୁଅ ରାସ୍ତାରେ । ଜଙ୍ଗଲିଆ । ଜନମାନବ ଶୂନ୍ୟ । ଝଙ୍କାଳିଆ ବରଗଛ ସବୁ ଠିଆହୋଇଛି ଧ୍ୟାନମଗ୍ନ ସନ୍ୟାସୀଙ୍କ ଭଳି । ପୁଣି ସେଇ ଛକ ଉପର ବରଗଛରେ (ଯାହାକୁ ଲୋକେ ଏବେ ବିଜୁ ପଟ୍ଟନାୟକ ଛକ ବୋଲି କହନ୍ତି) କୁଆଡ଼େ ଭୂତ ଅଛି ବୋଲି ଲୋକେ କହନ୍ତି ।

ରାତିରେ ଜର୍ଜ ପଟ୍ଟନାୟକ ଫେରିବେ ହଷ୍ଟେଲକୁ । ବାଟରେ ବରଗଛ ପାଖରେ ଡର ମାଡ଼ିଲା । ଘରକୁ ଫେରି ଆସିଲେ । ସକାଳୁ ଯିବେ । ବାପା ପଚାରିଲେ ପୁଅକୁ ଫେରିବାର କାରଣ । ପୁଅର ଉତ୍ତର ଶୁଣି ସେ ନିର୍ଦ୍ଦେଶ ଦେଲେ – ଏଇ ଖଟିଆ ନିଅ । ସେଇ ବରଗଛ ମୂଳକୁ ଯାଇ ଖଟ ପକାଇ ଶୁଅ । ସକାଳୁ ଆସ ।

ଭୟ ତେଣୁ କଟିଯାଇଥିଲା ପିଲାଦିନରୁ । ସବୁ ପ୍ରକାରର ଭୟ । ମାମୁଁପୁଅ ଭାଇ ଆନନ୍ଦ ଗୁପ୍ତ ଐତିହାସିକ ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନ ମୋକଦ୍ଦମାରେ ଅଭିଯୁକ୍ତ ହୋଇ ଆଜୀବନ ଜେଲ ଦଣ୍ଡ ଭୋଗ କରୁଛନ୍ତି ଆଣ୍ଡାମାନର ସେଲୁଲିଆର ଜେଲରେ । ରକ୍ତରେ ଆସିଛି ସେଇ ବୀରତ୍ୱର ଜିଦ୍ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ରହିଯାଇଥିଲେ ସେଇପରି ଦୁର୍ବିନୀତ,ଅନମନୀୟ । ସେ ଆରାମ ଚୌକୀରେ ବସି ମଧ୍ୟ ଅପେକ୍ଷା କରୁଥିଲେ ମୃତ୍ୟୁକୁ ଗାରିବାଲ୍‌ଡିଙ୍କ ପରି ।

ପିତା ଲକ୍ଷ୍ମୀନାରାୟଣ ପୁତ୍ରକନ୍ୟାମାନଙ୍କୁ ନିଜ କାମ ନିଜ ହାତରେ କରିବା ପାଇଁ ଶିଖାଇଥିଲେ । ଘରଦୁଆରଠାରୁ ଆରମ୍ଭ କରି ବାଡ଼ିବଗିଚା ପର୍ଯ୍ୟନ୍ତ । ନିଜ ଘର ନିଜେ ସଫା କର, ନଡିଆଗଛରେ ଚଢ଼, ବଗିଚାରେ ପାଣି ଦିଅ, ଗଛମୂଳ ସଫାକର । ଜର୍ଜ ପଟ୍ଟନାୟକଙ୍କର ସବୁ ଫାଇଲ, ଚିଠିପତ୍ର, କାଗଜପତ୍ର ଏପରିକି ଟିପାଖାତା ପର୍ଯ୍ୟନ୍ତ ସବୁ ରହିଛି ସଜାହୋଇ । ଟେବୁଲ ଉପରେ ଔଷଧ, ଆଲମିରା ଭିତରେ ଟର୍ଚ୍ଚ, କୌଣସି ଜିନିଷ ଅଡୁଆ ରହିନାହିଁ । ମୃତ୍ୟୁ ଆସିଛି ସତେ ଯେପରି ସେଇ ମେଥଡ୍‌ର ଅଂଶ ଭାବରେ ।

୧୯୩୦ ମସିହାରେ ସେ ବିବାହ କଲେ ନମିତା ଦେବୀଙ୍କୁ । ଝିଅର ବାପଘର କଲିକତାରେ । ସମଦୁଣୀ ବାତେନି ପଠାଇଲେ । ସେ କ'ଣ ସବୁ ଦେବେ ଝିଅକୁ । ପିତା ଲକ୍ଷ୍ମୀନାରାୟଣ ଖଣ୍ଡିଏ ତ୍ରିଭାଷୀ ପଠାଇଦେଲେ । ଝିଅକୁ କହିବ ଓଡ଼ିଆ ଶିଖିଆସିବ । ବାସ୍ ସେତିକି । ଏଇଟା ଓଡ଼ିଆ ଘର । ଲକ୍ଷ୍ମୀନାରାୟଣ ଗର୍ବିତ ଓଡ଼ିଆ । ଝିଅର ବିବାହ ହେବ ବ୍ରାହ୍ମଧର୍ମ ଅନୁଯାୟୀ । କିନ୍ତୁ ସବୁ ପ୍ରାର୍ଥନା ହେବ ଓଡ଼ିଆରେ । ସେତେବେଳେ ବ୍ରାହ୍ମଧର୍ମର ସବୁ କ୍ରିୟାକର୍ମ ହେଉଥିଲା ବଙ୍ଗଳାରେ । ନାସିକା କୁଞ୍ଚନ ହେଲା, କିନ୍ତୁ ଲକ୍ଷ୍ମୀନାରାୟଣ ଅନମନୀୟ ।

ବିବାହର ପଚାଶବର୍ଷ ଏବେ ପୂରିଗଲା । ସେ ଯେପରି ଏଇ ସୁବର୍ଣ୍ଣ ଜୟନ୍ତୀକୁ ଅପେକ୍ଷା କରିଥିଲେ ।

୧୯୪୧ ମସିହାରେ ସେ ଆପଣାର ବାପା ଓ ୧୯୪୨ ମସିହାରେ ଆପଣାର ମାଆଙ୍କୁ ହରାଇ ବସନ୍ତି । ସତୀଚଉରାରେ ବାପାଙ୍କର ସମାଧି ତିଆରି ହୁଏ । ୰ଗୋପାଳଚନ୍ଦ୍ର ପ୍ରହରାଜ ଆପଣାର କବିତାରେ ଜଣାନ୍ତି ସମ୍ମାନ ତାଙ୍କର ବନ୍ଧୁଙ୍କୁ । ସେଇ ଫଳକ ତଳେ ଦେଖାଯାଏ ଜର୍ଜ ପଟ୍ଟନାୟକଙ୍କୁ ଆପଣାର ଜୀବନର ନୂତନ ଅଧ୍ୟାୟର ଚିନ୍ତାରେ । ମୃତ୍ୟୁ ପୂର୍ବରୁ ବାପା କହିଯାଇଥିଲେ ଯେ ମୁଁ ତୁମମାନଙ୍କ ପାଇଁ କିଛି ଛାଡ଼ିଯାଉ ନାହିଁ । ଛାଡ଼ିଯାଉଛି ଏଇ ଘର 'ଆନନ୍ଦ ଭବନ' ଏବଂ କର୍ମର ପରମ୍ପରା । କର୍ମ ହିଁ ଜୀବନ ।

୧୯୪୦ ମସିହାରେ ଐତିହାସିକ କମ୍ୟୁନିଷ୍ଟ ଷଡଯନ୍ତ୍ର ମୋକଦ୍ଦମା ଆରମ୍ଭ ହୁଏ । ଦେଖାଯାଏ ଜର୍ଜ ପଟ୍ଟନାୟକ ସେଥିରେ ଜଡିତ ହୋଇଛନ୍ତି । ତାଙ୍କରି ନାମରେ ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ ବେଆଇନ୍ କାଗଜପତ୍ର ଆସୁଥିଲା ଔଷଧ ବାକ୍ସ ଭିତରେ, ଔଷଧ ନାଆଁରେ ।

ଯେତେବେଳେ ଭାଇ ବିଜୁ ପଟ୍ଟନାୟକ ବ୍ରିଟିଶ ସରକାର ବିରୋଧୀ କାର୍ଯ୍ୟରେ ଗିରଫ ହୋଇ ଜେଲରେ ରହନ୍ତି, ସେତେବେଳେ ଆତ୍ମଗୋପନକାରୀ ଅରୁଣା ଆସଫ ଅଲ୍ଲିଙ୍କ ସହିତ ତାଙ୍କର ସାକ୍ଷାତ ହୁଏ । କାରଣ ଆପଣାର ସହଯୋଦ୍ଧା ବିଜୁ ପଟ୍ଟନାୟକଙ୍କୁ ସାହାଯ୍ୟ କରିବାର ଉପାୟ ଖୋଜନ୍ତି ।

ଠିକ୍ ସେଇପରି ଦିନେ ହଠାତ୍ ତାଙ୍କୁ ଖବର ଦିଆଯାଏ ଯେ ଚଉଦବର୍ଷ ଆଣ୍ଡାମାନ ଜେଲରେ ରହିବାପରେ ତାଙ୍କର ରୋଗାକ୍ରାନ୍ତ ଭାଇ ଆନନ୍ଦ ଗୁପ୍ତଙ୍କୁ ଅନ୍ତରୀଣ ବନ୍ଦୀ ଭାବରେ ଖଲାସ କରିବା ପାଇଁ ସରକାର ରାଜି । ଆନନ୍ଦ ଗୁପ୍ତ ପିଲାଦିନରୁ ଯାଇଥିଲେ ଜେଲକୁ । ଆଣ୍ଡାମାନର ନିର୍ଜନ କାରାବାସ ପରେ ତାଙ୍କର ପରିବାରର ଆଉ କୌଣସି ନାମ ମନେ ପଡୁନାହିଁ । କେବଳ ମନେ ପଡୁଚି ଗୋଟିଏ ନାଁ । ଜର୍ଜ ପଟ୍ଟନାୟକ, କଟକ । ଆନନ୍ଦ

ଆସିଲେ ''ଆନନ୍ଦ ଭବନ'' କୁ ଏବଂ ଏଇଠି ରହିଲେ କିଛିକାଳ ଅନ୍ତରୀଣ ବନ୍ଦୀ ଭାବରେ । ଚାରିପଟରେ କଡ଼ା ଜଗୁଆଳି ଭିତରେ ।

ଜର୍ଜ ପଟ୍ଟନାୟକଙ୍କର ପେସା ଥିଲା ଡାକ୍ତରୀ; କିନ୍ତୁ ନିଶା ଥିଲା ଖେଳ ଏବଂ ଅନ୍ୟାନ୍ୟ ସାମାଜିକ କାର୍ଯ୍ୟ । ଡାକ୍ତରୀ କାମ ଛାଡ଼ିଦେଇଥିଲେ ଅତିକ୍ରାନ୍ତ ବୟସରେ; କିନ୍ତୁ ନିଶା ଛାଡି ନଥିଲା ଶେଷ ପର୍ଯ୍ୟନ୍ତ ।

ଜର୍ଜ ପଟ୍ଟନାୟକ ଥିଲେ ବନ୍ଧୁବତ୍ସଳ । ଉତ୍ତର ଜୀବନରେ ସେ କ୍ରମଶଃ ନିଜକୁ ଏକାକୀ ଅନୁଭବ କରୁଥିଲେ । ବନ୍ଧୁ ଭୈରବ (ଭୈରବ ଚନ୍ଦ୍ର ମହାନ୍ତି), ଅମି (ଅମୀୟ ସେନ), ବ୍ରଜେନ (ବ୍ରଜେନ ଦତ୍ତ) ବାହୁଡି ସାରିଲେଣି । ଜଣେ ଦି'ଜଣ ଅଛନ୍ତି । ସୁବୋଧ, ଫେଲୁ, ଶୈଳେନ (ଏବେ ଏମାନେ ସ୍ୱର୍ଗତ), ବାଞ୍ଛାନିଧି । ସେଇମାନଙ୍କ ଭିତରୁ କେତେକଙ୍କର ଗହଣରେ ସନ୍ଧ୍ୟା କଟେ । କିନ୍ତୁ ଦିନଯାକ ? ସେ ଖୋଜନ୍ତି ବନ୍ଧୁ । ଗପିବା ପାଇଁ । କିନ୍ତୁ କର୍ମବ୍ୟସ୍ତ ଜୀବନ ଭିତରେ କେବେ କେବେ କେହି କେହି ବନ୍ଧୁ ଆସନ୍ତି । ସେ ବି ଯାଆନ୍ତି । କିନ୍ତୁ ଜୀବନ ନିଃସଙ୍ଗ ହୋଇ ଆସେ । ପାଦ ବି ଶିଥିଳ ହୋଇ ଆସେ ।

କନ୍ୟା ମଞ୍ଜୁ, ନାତୁଣୀ ବୁବି, ନାତି ବୁଜି ସମସ୍ତେ ଦୂରରେ । ପାଖରେ କେବଳ ପୁଅ ବାବ୍‌ଲୁ, ସ୍ୱାମୀହରା କନ୍ୟା ରେଖା(ବାଚୁ) ଆଉ ସ୍ତ୍ରୀ ନମିତା । କମ୍ୟୁନିକେଶନର ଗ୍ୟାପ୍ ବଢ଼ି ବଢ଼ି ଯାଏ ।

ବୟସ ଅତିକ୍ରାନ୍ତ ହୋଇଛି । ଜୀବନ ସଂଗ୍ରାମରେ ଆଉ କିକ୍ ମାରିବାକୁ ବଳ ପାଉ ନାହିଁ । ଶ୍ୱାସରୋଗରେ ଆକ୍ରାନ୍ତ । ତେଣୁ ଆଉ ରହିବେ କାହିଁକି ?

ସେଇ ଅଶୁଭ ମୁହୂର୍ତ୍ତ ଆସିଗଲା । ଜାନୁଆରୀ ୧୬ ତାରିଖ, ୧୯୯୦ । ସମୟ ଅପରାହ୍ନ ପାଞ୍ଚଟା ବାଜି ପଇଁତିରିଶ ମିନିଟ୍ ।

ମଦର ଟେରେସା କହନ୍ତି । ମୃତ୍ୟୁ କୁଆଡେ ସୁନ୍ଦର । କାରଣ ଏହା ଘରବାହୁଡା ଭଳି । ଏଥିରେ ଦୁଃଖ କରିବାର କିଛି ନାହିଁ ।

ମରିତେ ଚାଇନା ଆମି ସୁନ୍ଦର ଭୁବନେ,
ମାନବର ମାଝେ ଆଜି ବାଞ୍ଚିବାରେ ଚାଇ । (ରବୀନ୍ଦ୍ରନାଥ )

ନିଃସଙ୍ଗ ହୋଇଆସୁଛି ଜୀବନ । ଆଉ ତ ସାଙ୍ଗସାଥୀ ନାହାନ୍ତି । ସେମାନେ ଡାକୁଛନ୍ତି ସେପଟରୁ । ମୃତ୍ୟୁର ପଦଧ୍ୱନି ଶୁଭୁଛି । ଶୀତଳ ପଦଧ୍ୱନି ।

ହେ ମରଣ ! ତୁହୁଁ ମମ ଶ୍ୟାମ ସମାନ,
ମେଘ ବରଣ ତୁଝ୍ ! ମେଘ ଜଟାଜୁଟ । (ରବୀନ୍ଦ୍ରନାଥ)

ସେଇ ମୃତ୍ୟୁ ସ୍ପର୍ଶ । ଶରୀର ନିଷ୍ପନ୍ଦ ହୋଇ ଆସୁଛି । ପାଖରେ ଠିଆହୋଇଛନ୍ତି ସ୍ତ୍ରୀ, ପୁତ୍ରକନ୍ୟା, କିଛି ଆତ୍ମୀୟ, କିଛି ବନ୍ଧୁ ଏବଂ ଡାକ୍ତର ରାଜକିଶୋର ଦାସ । ତାଙ୍କର ଶରୀରକୁ ଚୌକିରୁ ଉଠାଇ ଆଣି ବିଛଣାରେ ଶୁଆଇ ଦିଆଗଲା ।

ପାଞ୍ଚଟା ତିରିଶ ମିନିଟ୍ । ଜର୍ଜ ପଟ୍ଟନାୟକ ଆଉ ନାହାନ୍ତି । ସେ ଅନନ୍ତ ବ୍ରହ୍ମରେ ଲୀନ । ଉତ୍ତରପୁରୁଷ ପାଇଁ ସେ ବର୍ତ୍ତମାନ ଇତିହାସ ।

ଆଉ ତା' ପରଦିନ ମଧ୍ୟାହ୍ନରେ ତାଙ୍କର ମର ଶରୀର ପୋଡି ପାଉଁଶ ହୋଇଗଲା ବୈଦ୍ୟୁତିକ ଚୁଲ୍ଲୀରେ । ବନ୍ଧୁ ସଜଳ ନୟନ ଏବଂ ଅଶ୍ରୁଧାର ଭିତରେ । ସମସ୍ତେ ଆଖିରୁ ଲୁହ ପୋଛୁଛନ୍ତି ଆଉ ଦେଖୁଛନ୍ତି ସେଇ ପୁରୁଷକୁ ଯେ ଆଉ ନାହାନ୍ତି । ସେ ଆଉ ଫେରିବେ ନାହିଁ ।

" From dust thou hath come.
And to dust thou shall return."

କେହି ରହିବେ ନାହିଁ । ମହାକାଳ ସମୟ ସବୁ ପୋଛି ନେଇଯିବ ଧୀରେ ଧୀରେ । ସମୟର ବାଲିରେ ଯାହାର ପଦଚିହ୍ନ ଯେତିକି ଉଜ୍ଜ୍ୱଳ ରହେ ସେତିକି ସାର୍ଥକ ତା'ର ଜୀବନ ।

ଜର୍ଜ ପଟ୍ଟନାୟକ ଥିଲେ ଦାନ୍ତ ଡାକ୍ତର । ଦାନ୍ତ ଭଳି । ଥିଲାବେଳେ ଯେତିକି ମୂଲ୍ୟବାନ୍ ଗଲାପରେ ତା'ର ମୂଲ୍ୟ ବେଶି ମନେପଡେ । କିନ୍ତୁ ତାହା ନଥାଏ । ଆଉ ଫେରେ ନାହିଁ ।

ଜର୍ଜ ପଟ୍ଟନାୟକ ସ୍ମୃତହୋଇ ରହିବେ ଆମ ସଭିଙ୍କ ମଧ୍ୟରେ ବହୁକାଳ ଧରି । ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।

□□□

## ଦୁଇ ସ୍ୱାଧୀନତା ସଂଗ୍ରାମର ମହାରଥୀ

*(୰ ଜୟପ୍ରକାଶ ନାରାୟଣ)*

ଜୟପ୍ରକାଶ ନାରାୟଣ ଆଉ ନାହାନ୍ତି । ଦୀର୍ଘ ସଂଗ୍ରାମର ମହାରଥୀ ଜୟପ୍ରକାଶ । ଦୁଇ ସ୍ୱାଧୀନତା ସଂଗ୍ରାମର ମହାଯୋଦ୍ଧାଙ୍କର ପରଲୋକ ହୋଇ ଯାଇଛି, ସଂଗ୍ରାମ ରହିଯାଇଛି ଅସମାପ୍ତ । କିନ୍ତୁ ପରବର୍ତ୍ତୀ ପୀଢ଼ି ପାଇଁ ସେ ସ୍ମୃତ ହୋଇ ରହିବେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଭଳି । ସଂଗ୍ରାମ ଅସମାପ୍ତ ରହିଯାଇଛି ସତ, କିନ୍ତୁ ସେନାପତି ଛାଡ଼ି ଯାଇଛି ଆପଣାର ଆଲେଖ୍ୟ ।

ଜୟପ୍ରକାଶ ରେଭେନ୍‌ସା କଲେଜ ୟୁନିଅନର ଏକ ସଭାରେ ସ୍ୱୀକାର କରିଥିଲେ ଯେ ମାର୍କସ୍‌ବାଦ ଲେଲିନ୍‌ବାଦରୁ ଗଣତାନ୍ତ୍ରିକ ସାମ୍ୟବାଦ, ଗଣତାନ୍ତ୍ରିକ ସାମ୍ୟବାଦରୁ ଗାନ୍ଧୀବାଦ, ଗାନ୍ଧୀବାଦରୁ ସର୍ବୋଦୟ ଏବଂ ସର୍ବୋଦୟରୁ ଜୀବନଦାନ, ତାଙ୍କର ଜୀବନ ହେଉଛି ବିଭିନ୍ନ ପରୀକ୍ଷାର ସଂଧାନ । ଲୋକେ ତାଙ୍କୁ ଦୋଷ ଦିଅନ୍ତି ଯେ ସେ କୌଣସିଥିରେ ସ୍ଥିର ନୁହନ୍ତି, ସେ ଦୋଦୁଲ୍ୟମାନ । କିନ୍ତୁ ତାଙ୍କର ଜୀବନ ହେଉଛି ସତ୍ୟର ସନ୍ଧାନ ପାଇଁ ସଂଗ୍ରାମ । ଯେକୌଣସି 'ବାଦ' ତାଙ୍କୁ ତୃପ୍ତି ଦେଇ ପାରି ନାହିଁ ।

ଜୟପ୍ରକାଶଙ୍କର ଜୀବନ ହେଉଛି ବିଚିତ୍ର । ନିୟମର ବହିର୍ଭୂତ ସେ ସବୁବେଳେ । ଆମେରିକା ଯାଆନ୍ତି ଏବଂ ପୁଂଜିବାଦର ପୀଠରେ ହିଁ ସେ ଦୀକ୍ଷିତ ହୁଅନ୍ତି ମାର୍କସ୍‌ବାଦ-ଲେଲିନବାଦରେ । ଆମେରିକାର କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୁଅନ୍ତି । କିନ୍ତୁ ଏହା ତାଙ୍କୁ ବେଶିକାଳ ଆକୃଷ୍ଟ କରି ରଖିପାରେ ନାହିଁ ।

ସେ ଫେରନ୍ତି ଭାରତବର୍ଷକୁ । ସୋଭିଏଟ୍ ୟୁନିଅନରେ ଘଟି ଯାଉଥିବା ଘଟଣାବଳୀ ତାଙ୍କୁ କେବଳ ଗଣତାନ୍ତ୍ରିକ ସାମ୍ୟବାଦରେ ବିଶ୍ୱାସୀ କରେ ନାହିଁ, କମ୍ୟୁନିଷ୍ଟ-ବିରୋଧୀ ଶିବିରରେ ମଧ୍ୟ ନେଇ ପହଞ୍ଚାଇ ଦିଏ । ଷ୍ଟାଲିନଙ୍କ ସମୟରେ ଯେଉଁ ସବୁ ଘଟଣା ଘଟିଗଲା ତାହା ତାଙ୍କୁ ସୋଭିଏଟ୍-ବିରୋଧୀ ଶିବିରର ଅନ୍ତର୍ଭୁକ୍ତ କରେ ।

ଭାରତବର୍ଷରେ ସେ ଜାତୀୟ ଆନ୍ଦୋଳନରେ ଯୋଗ ଦିଅନ୍ତି । ପ୍ରତିଭାଶାଳୀ ସଂଗଠକ, ବିଚକ୍ଷଣ ବୁଦ୍ଧି । ଏହା ଏକ ପକ୍ଷରେ ଯେପରି ଗାନ୍ଧିଜୀଙ୍କୁ ଆକୃଷ୍ଟ କରେ ।

ଅନ୍ୟଦିଗରେ ସାମ୍ୟବାଦର ଅର୍ଥନୈତିକ ଏବଂ ସାମାଜିକ ଦିଗ ପ୍ରତି ଆକୃଷ୍ଟ ଜବାହରଲାଲଙ୍କର ମଧ୍ୟ ସେ ନିକଟତର ହୁଅନ୍ତି । ଗାନ୍ଧିଜୀ ତାଙ୍କୁ ନିମନ୍ତ୍ରଣ କରନ୍ତି ଆପଣା ଆଶ୍ରମରେ ରହିବା ପାଇଁ । ସେ ଗାନ୍ଧିଜୀଙ୍କୁ କହନ୍ତି ଯେ, 'ମୁଁ ଆମିଷ ଭଲ ପାଏ । ଆପଣଙ୍କର ଆଶ୍ରମ ହେଉଛି ନିରାମିଶାଷୀ । ମୋତେ ଯଦି ଆମିଷ ଖାଇବାକୁ ଅନୁମତି ମିଳେ ତା'ହେଲେ ମୁଁ ରହିବି' । ଗାନ୍ଧିଜୀ ତା'ଠାରୁ ବଳି କୁଶଳୀ । କ୍ୟାଡର ବଡ଼ ନା ଖାଦ୍ୟ ବଡ଼ ! ଗାନ୍ଧିଜୀ ତତ୍‌କ୍ଷଣାତ ଉତ୍ତର ଦିଅନ୍ତି ଯେ ସେ ଯଦି ଆମିଷ ଖାଇବାକୁ ଭଲ ପାଆନ୍ତି, ତା'ହେଲେ ସେଥିପାଇଁ କିଛି ଆପତ୍ତି ନାହିଁ ।

ଜୟପ୍ରକାଶ ନାରାୟଣ ଗାନ୍ଧିଜୀଙ୍କ ଆଶ୍ରମରେ ଦୁଇ ବର୍ଷରୁ ଊର୍ଦ୍ଧ୍ୱକାଳ ରହନ୍ତି ଏବଂ ସେଇଠି ତାଙ୍କର ପ୍ରଭାବତୀ ଦେବୀଙ୍କ ସହିତ ବିବାହ ହୁଏ । ଗାନ୍ଧିଜୀ ଆହୁରି ବିଚିତ୍ର ମଣିଷ । ନବ ବିବାହିତ ଦମ୍ପତିଙ୍କୁ ଆଶୀର୍ବାଦ ଦେଇ କହନ୍ତି ଯେ ତମେ ତ ବିବାହ କଲ, ଏଣିକି ଭାଇ-ଭଉଣୀ ଭାବରେ ଚଳିବ । ସମସ୍ତେ ଚକିତ ହୁଅନ୍ତି । ଏ କି ଆଶୀର୍ବାଦ ! କିନ୍ତୁ ଗାନ୍ଧିଜୀ ଗାନ୍ଧିଜୀ ।

ଜୟପ୍ରକାଶ ନାରାୟଣଙ୍କର ଈଶ୍ୱର ବିଶ୍ୱାସ ନଥିଲା । ସେ ଠିକ୍ ଆଥେଇଷ୍ଟ ବା ନିରୀଶ୍ୱରବାଦୀ ନଥିଲେ । କିନ୍ତୁ ଥିଲେ ଆଗ୍ନୋଷ୍ଟିକ, ବାର୍ଟାଣ୍ଡ ରସେଲଙ୍କ ପରି ।

ଜୟପ୍ରକାଶ ଅନେକ ନେତାଙ୍କ ଭଳି ଦାଢ଼ି ରଖିବା ବା ଉପଯୁକ୍ତ ଭାବରେ ଲୁଗା ନ ପିନ୍ଧିବାକୁ ପସନ୍ଦ କରୁ ନଥିଲେ । ଏଭଳି ଅନେକ ବ୍ୟକ୍ତି ଥିଲେ ଯେଉଁମାନେ ଭାବୁଥିଲେ ଯେ ଅଧାଲୁଗା ପିନ୍ଧିଲେ ସେମାନେ ଗାନ୍ଧିଜୀ ହୋଇଯିବେ ବା ସେଇଟା ହେବ ଗାନ୍ଧିଜୀ ଆଦର୍ଶ ପ୍ରତି ଅନୁରକ୍ତି । ଜୟପ୍ରକାଶ ବା ଜବାହରଲାଲଙ୍କର ସେଥିପ୍ରତି ଆଗ୍ରହ ନଥିଲା । ଜୟପ୍ରକାଶ ପ୍ରତିଦିନ ଖିଅର ହୁଅନ୍ତି ଏବଂ ବାହାରୁ ଆମଦାନୀ ହୋଇ ଆସୁଥିବା ବ୍ଲେଡ ପ୍ରତି ଥିଲା ତାଙ୍କର ଦୁର୍ବଳତା । ଇମ୍ପୋର୍ଟେଡ ବ୍ଲେଡ ତାଙ୍କର ନିଶ୍ଚିତ ଭାବରେ ଦରକାର ଖିଅର ହେବାପାଇଁ ।

ଜୟପ୍ରକାଶ ଗଢ଼ିଲେ କଂଗ୍ରେସ ଭିତରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି । ଆଚାର୍ଯ୍ୟ ନରେନ୍ଦ୍ର ଦେବ, ରାମ ମନୋହର ଲୋହିଆ, ଅଚ୍ୟୁତ ପଟବର୍ଦ୍ଧନ, ଅରୁଣା ଆସଫ ଅଲ୍ଲି ମଧ୍ୟ ଯାଇ ଯୋଗ ଦିଅନ୍ତି ଏବଂ ତାହା ସହିତ ଯୋଗଦିଅନ୍ତି ବହୁ କମ୍ୟୁନିଷ୍ଟ ସେମାନଙ୍କ ଭିତରେ ନମ୍ବୁଦ୍ରିପଦଙ୍କଠାରୁ ଆରମ୍ଭ କରି ଭଗବତୀ ଚରଣ ପାଣିଗ୍ରାହୀଙ୍କ ପର୍ଯ୍ୟନ୍ତ ଅନ୍ତର୍ଭୁକ୍ତ । କମ୍ୟୁନିଷ୍ଟ ପାର୍ଟି ବେଆଇନ୍ ଥାଏ । ଜୟପ୍ରକାଶ ଆସନ୍ତି ଓଡ଼ିଶା । ରହନ୍ତି ତାଙ୍କର ବାଲ୍ୟବନ୍ଧୁ ରେଭେନ୍‌ସା କଲେଜର ରସାୟନ ବିଭାଗର ଲେକ୍‌ଚରର ବଳଭଦ୍ର ପ୍ରସାଦଙ୍କ ଘରେ । ବଳଭଦ୍ର ପ୍ରସାଦ ପରେ ରସାୟନ ବିଭାଗର ଅଧ୍ୟାପକ, ଡି.ପି.ଆଇ., ଆଲ୍ଲାହାବାଦ,

ପାଟଣା ବିଶ୍ୱବିଦ୍ୟାଳୟର କୁଳପତି ହୁଅନ୍ତି । କିନ୍ତୁ ସେତେବେଳେ ସେ ଏକ ଲେକ୍‌ଚରର ମାତ୍ର । ଦିନେ ଜୟପ୍ରକାଶ ତାଙ୍କୁ କହିଲେ, ବଳଭଦ୍ର, ତୁ ସରକାରୀ ଚାକିରି କରୁଛୁ । ମୋ କଥା ତ ଜାଣୁ । ମୁଁ ଆସି ତୋ ପାଖରେ ରହିଲେ ତୋର ଚାକିରିରେ ଅସୁବିଧା ହୋଇପାରେ । ମୁଁ ଆସି ଅନ୍ୟତ୍ର ରହିଲେ କ'ଣ କ୍ଷତି ହୁଅନ୍ତା ? ବଳଭଦ୍ର ପ୍ରସାଦ ଉତ୍ତରଦେଲେ ଯେ ଅସମ୍ଭବ ତା' ହୋଇପାରେନା, ତୁ ମୋର ବନ୍ଧୁ, ସହପାଠୀ, ପୁଣି ପ୍ରଭା ତୋ ସାଙ୍ଗରେ ଆସିବ । ଆଉ ତୁ ରହିବୁ ଅନ୍ୟତ୍ର । ସେକଥା ହୋଇ ପାରିବ ନାହିଁ । ୧୯୪୨ ମସିହା ଅଗଷ୍ଟ ବିପ୍ଲବର କିଛି ସମୟ ପୂର୍ବରୁ ଜୟପ୍ରକାଶ ଆସିଥିଲେ ଓଡ଼ିଶା । ଏଥରକ ପରିସ୍ଥିତି ସ୍ୱତନ୍ତ୍ର । ସେ ଆସି ବଳଭଦ୍ର ପ୍ରସାଦଙ୍କ ଘରେ ରହିବା ପରେ ଆସିଲା ଓୟାରଲେସ କଟକର କଲେକ୍ଟରଙ୍କ ପାଖକୁ । ତୁରନ୍ତ କୈଫିୟତ ମାଗ ଯେ ବଳଭଦ୍ର ପ୍ରସାଦ କାହିଁକି ଜୟପ୍ରକାଶଙ୍କୁ ଅତିଥି କରିଛନ୍ତି । କଲେକ୍ଟର ବାର୍ତ୍ତାଟିକୁ ହାତରେ ଧରି ଆପଣାର ଷ୍ଟେନୋକୁ ଡାକିଲେ ଉତ୍ତର । ମୋର ଅଧିକା ପାଇଖାନା, ଅଧିକା ଗାଧୁଆଘର ନଥିବାରୁ ଜେ.ପି. ବଳଭଦ୍ର ପ୍ରସାଦଙ୍କ ଅତିଥି ହୋଇଛନ୍ତି । ନଚେତ ସେ ମୋର ଅତିଥି ହୋଇଥାନ୍ତେ । ସମସ୍ତେ ଚକିତ ଏ ଉତ୍ତରରେ । କଲେକ୍ଟର ଏଲ୍.ପି.ସିଂ । ପରେ ସେ ଭାରତର ଘରୋଇ ସଚିବ । କେତେ ରାଜ୍ୟରେ ରାଜ୍ୟପାଳ ହୋଇଛନ୍ତି । ତାଙ୍କ ଚାକିରି ସେଦିନ ଯାଇନଥିଲା । ଆଜି କଲେକ୍ଟର ସେମିତି ଉତ୍ତର ଦେଇ ପାରନ୍ତେ କି ନାହିଁ ବା ଦେଲେ ତାଙ୍କ ଅବସ୍ଥା କ'ଣ ହୁଅନ୍ତା ତା' କିଏ କହିବ ?

ଜୟପ୍ରକାଶ ଗିରଫ ହେଲେ ୧୯୪୨ ମସିହା ଅଗଷ୍ଟ ଆନ୍ଦୋଳନରେ । ଜୟପ୍ରକାଶ ସବୁଥିରେ ବ୍ୟତିକ୍ରମ । ଗାନ୍ଧିବାଦୀ ସୋସାଲିଷ୍ଟ ଜୟପ୍ରକାଶ ହଜାରୀବାଗ ଜେଲ ଡେଇଁ ପଳାୟନ କଲେ । କିନ୍ତୁ କିଛି ମାସ ପରେ ଗିରଫହୋଇ ବନ୍ଦୀହେଲେ ।

ଜୟପ୍ରକାଶ ଗଢ଼ିଥିଲେ କଂଗ୍ରେସ ସୋସାଲିଷ୍ଟ ପାର୍ଟି । କମ୍ୟୁନିଷ୍ଟମାନେ ସ୍ଥିରକଲେ ଯେ ସେମାନେ ସ୍ୱତନ୍ତ୍ର ହୋଇ ଆପଣାର ପାର୍ଟି ଗଢ଼ିବାର ସମୟ ଆସିଛି । ଯେଉଁ ପରିସ୍ଥିତି ଏଥିରୁ ଉଦ୍‌ଭବ ହେଲା ତା' ଜୟପ୍ରକାଶଙ୍କ ପାଇଁ ଅସହ୍ୟ ହେଲା । ଗୋଟାଏ ଗୋଟାଏ ପ୍ରଦେଶର ସଂପୂର୍ଣ୍ଣ କଂଗ୍ରେସ ସୋସାଲିଷ୍ଟ ପାର୍ଟି କମ୍ୟୁନିଷ୍ଟ ପାର୍ଟିରେ ପରିଣତ ହୋଇଗଲା । ଜୟପ୍ରକାଶ ଆହୁରି କମ୍ୟୁନିଷ୍ଟ ବିରୋଧୀ ହୋଇଗଲେ ଏବଂ ସୋସାଲିଷ୍ଟ କମ୍ୟୁନିଷ୍ଟମାନଙ୍କ ଭିତରେ ତିକ୍ତତା ବୃଦ୍ଧି ପାଇବାରେ ତାଙ୍କର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ।

ଭାରତବର୍ଷ ସ୍ୱାଧୀନ ହେଲା । ଏହା କମ୍ୟୁନିଷ୍ଟ ବା ସୋସାଲିଷ୍ଟମାନଙ୍କୁ ତୃପ୍ତ କଲାନାହିଁ । ଏଇ ରାଜନୈତିକ ସ୍ୱାଧୀନତା କେବଳ ସାଇନବୋର୍ଡର ପରିବର୍ତ୍ତନ । ଅର୍ଥନୈତିକ ସ୍ୱାଧୀନତା କାହିଁ ?କମ୍ୟୁନିଷ୍ଟମାନେ ସଶସ୍ତ୍ର ସଂଗ୍ରାମର ନୀତି ଗ୍ରହଣ କଲେ ।

ସୋସଲିଷ୍ଟମାନେ ସ୍ୱତନ୍ତ୍ର ସୋସାଲିଷ୍ଟ ପାର୍ଟି ଗଠନ କଲେ ଏବଂ କଂଗ୍ରେସର ବିରୋଧ କଲେ । ଏହା ସତ୍ତ୍ୱେ ଏଇ ଦୁଇ ବିରୋଧୀ ଦଳ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ହୋଇ ପାରିଲା ନାହିଁ । ବରଂ ପରସ୍ପର ପ୍ରତି ସନ୍ଦେହ ଏବଂ ଅବିଶ୍ୱାସ ବୃଦ୍ଧି ପାଇଲା । ଏହା ଚୂଡାନ୍ତ ପର୍ଯ୍ୟାୟରେ ପହଞ୍ଚିଲା ୧୯୪୯ ମସିହାରେ । ୧୯୪୯ ମସିହା ମାର୍ଚ୍ଚ ମାସରେ ଏକ ରେଳବାଇ ଧର୍ମଘଟର ଡାକରା ଦିଆଗଲା କିନ୍ତୁ ଜୟପ୍ରକାଶ ଏକତରଫା ଭାବରେ ଏହି ଧର୍ମଘଟରୁ ଓହରିଗଲେ । ରେଳବାଇ ଧର୍ମଘଟ ବିଫଳ ହେଲା । କମ୍ୟୁନିଷ୍ଟ ଏବଂ ସୋସାଲିଷ୍ଟମାନଙ୍କ ମଧ୍ୟରେ ତିକ୍ତତା ବୃଦ୍ଧି ପାଇଲା । ଏହା ଫଳରେ ଜୟପ୍ରକାଶ ଯେତେବେଳେ ୧୯୫୦ ମସିହାରେ ଓଡ଼ିଶା ଆସନ୍ତି ସେତେବେଳେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ କମ୍ୟୁନିଷ୍ଟମାନେ ତାଙ୍କୁ ପଚା ଅଣ୍ଡା, ପଚା କମଳା ଫିଙ୍ଗି 'ଅଭ୍ୟର୍ଥନା' ଜଣାଇଲେ । ପ୍ରତିଷ୍ଠିତ ସାହିତ୍ୟିକ କାଳିନ୍ଦୀ ଚରଣ ପାଣିଗ୍ରାହୀ ଥିଲେ ଅଭ୍ୟର୍ଥନା ସମିତିର ସଭାପତି ।

ଜୟପ୍ରକାଶ ବିକଳ୍ପ ପନ୍ଥା ଖୋଜନ୍ତି । ଏବଂ ଯେତେବେଳେ ବିନୋବା ଭାବେ ତେଲେଙ୍ଗାନା ଆନ୍ଦୋଳନ ପରେ ଭୂଦାନ ଆନ୍ଦୋଳନ ଆରମ୍ଭ କଲେ ସେତେବେଳେ ଜୟପ୍ରକାଶ ତାଙ୍କ ସାଙ୍ଗରେ ଯୋଗଦେଲେ । ଭୂଦାନର ପଦଯାତ୍ରା ପରେ ଜୟପ୍ରକାଶ ଜୀବନଦାନ ଆନ୍ଦୋଳନ ଆରମ୍ଭ କଲେ । କିନ୍ତୁ ଭାରତବର୍ଷର ଘଟଣାବଳୀ ତାଙ୍କୁ ବିବ୍ରତ କଲା । ବିହାର ତାଙ୍କର ଜନ୍ମଭୂମି । ବିହାରର ଘଟଣା ଭୟାବହ ହୋଇ ଉଠିଲା । ଜୟପ୍ରକାଶ ଦ୍ୱିତୀୟ ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନ ଦେଲେ । କମ୍ୟୁନିଷ୍ଟମାନଙ୍କ ମଧ୍ୟରୁ ବାମପନ୍ଥୀ କମ୍ୟୁନିଷ୍ଟ ବା ସି.ପି.ଏମ୍. ତାଙ୍କ ସହିତ ଯୋଗଦେଲେ । କିନ୍ତୁ ଦକ୍ଷିଣପନ୍ଥୀ କମ୍ୟୁନିଷ୍ଟମାନେ ତାଙ୍କୁ ସି.ଆଇ.ଏ.ର ଲୋକ ବୋଲି ଅଭିଯୋଗ କଲେ । ଏଣେ କଂଗ୍ରେସ ଦଳରେ ମଧ୍ୟ ବିଭାଜନ ଦେଖାଗଲା ।

ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା । ଦେଶରେ ଜରୁରୀ ପରିସ୍ଥିତି ଜାରି ହେଲା । ବିନୋବା ଭାବେଙ୍କ ସହିତ ତାଙ୍କର ମତଭେଦ ଦେଖାଦେଲା । ବିନୋବା ଭାବେ ଜରୁରୀ ପରିସ୍ଥିତିକୁ ଅନୁଶାସନ ପର୍ବ ବୋଲି ବର୍ଣ୍ଣନା କଲେ । ଜୟପ୍ରକାଶଙ୍କୁ ଗିରଫ କରାଗଲା । ଗିରଫବେଳେ ଜୟପ୍ରକାଶ ଏହାକୁ 'ବିନାଶକାଳେ ବିପରୀତ ବୁଦ୍ଧି' ବୋଲି ଆଖ୍ୟାଦେଲେ । ଏହି ସଂଗ୍ରାମରେ ଜୟପ୍ରକାଶ ସେହିମାନଙ୍କ ସହିତ ମୈତ୍ରୀ ପ୍ରତିଷ୍ଠା କଲେ ଯେଉଁମାନଙ୍କ ସହ ସେ ଚିରଦିନ ଯୁଦ୍ଧ କରି ଆସିଥିଲେ । ଦକ୍ଷିଣପନ୍ଥୀ କମ୍ୟୁନିଷ୍ଟମାନେ ମଧ୍ୟ ପରେ ତାଙ୍କ ସହିତ ଯୋଗଦେଲେ । ଜରୁରୀ ପରିସ୍ଥିତି ଉଠିଗଲା । ନିର୍ବାଚନ ହେଲା । ଇନ୍ଦିରା ବିରୋଧୀ ଗୋଷ୍ଠୀ ନିର୍ବାଚନରେ ଜୟଲାଭ କଲେ ଏବଂ ସରକାର

ଗଢ଼ିଲେ । ରାଜଘାଟରେ ଗାନ୍ଧିଜୀଙ୍କ ସମାଧିପୀଠରେ ଜୟପ୍ରକାଶ ସେମାନଙ୍କୁ ଶପଥ ପାଠ କରାଇଲେ ନୂତନ ଭାରତବର୍ଷ ଗଢ଼ିବା ପାଇଁ, ଶପଥ ନେଲେ ସମସ୍ତେ । କିନ୍ତୁ ଐକ୍ୟ ରହିଲା ହିଁ କ୍ଷଣକାଳ ପାଇଁ । ସରକାର ଭାଙ୍ଗିଗଲା ତିନିବର୍ଷ ଭିତରେ ।

ଜୟପ୍ରକାଶ ବହୁଦିନରୁ ବହୁମୂତ୍ର ରୋଗୀ । ଡାଇଲେସିସ୍‌ରେ ବଞ୍ଚିରହିଛନ୍ତି ବହୁ ବର୍ଷ । ମନବଳର ଦୃଢ଼ତା ତାଙ୍କୁ ବଞ୍ଚାଇ ରଖିଛି । ଆମେରିକା ଯାଇଛନ୍ତି ଚିକିତ୍ସା ପାଇଁ । ବିଶେଷ ଫଳ ହୋଇନାହିଁ । ଧୀରେ ଧୀରେ ଅଚଳ ହୋଇ ଯାଇଛନ୍ତି । ଜେଲଖାନା ଭିତରେ ତାଙ୍କର ମୃତ୍ୟୁ ଅବଶ୍ୟମ୍ଭାବୀ ଭାବି ତାଙ୍କ ପାଇଁ ଚିତା ପ୍ରସ୍ତୁତ ହୋଇ ସାରିଥିଲା । କିନ୍ତୁ ସେ ମଲେ ନାହିଁ । ଏ ଉଧାରକରା ଜୀବନ ଆଉ କେତେ ଦିନ ? ଲୋକନାୟକ ଉପାଧି ମିଳିଛି । କିନ୍ତୁ ଯେଉଁ ପରୀକ୍ଷା ଆରମ୍ଭ କରିଥିଲେ ସେ ପରୀକ୍ଷା ?

ଆଉ ବଞ୍ଚିବାର ସ୍ପୃହା ନାହିଁ । କାହିଁକି ବଞ୍ଚିବେ ? ସବୁ ପରୀକ୍ଷା ବ୍ୟର୍ଥ ହୋଇଯାଇଛି । ଏକ ବିରାଟ ପରୀକ୍ଷାର ଜୀବନ ଶେଷ ହୋଇ ଆସୁଛି । କିନ୍ତୁ ଉତ୍ତର ପୁରୁଷ ପାଇଁ ତାହା ରହିଯିବ ଏକ ଆଦର୍ଶ ଭାବରେ ।

□□□

# ସେଇ ହସ ହସ ମୁହଁ ସେଇ ଦରଦୀ ଭାଷା

*(୰ ଜୟକୃଷ୍ଣ ମିଶ୍ର)*

ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କର ପରଲୋକ ହୋଇଯାଇଛି । ଓଡିଆ ସାହିତ୍ୟର ପ୍ରଖ୍ୟାତ ଅଧ୍ୟାପକ, ସମୀକ୍ଷକ ଏବଂ ସମାଲୋଚକର ବିଦାୟ ଓଡିଶାର ସଂସ୍କୃତି ଜଗତର ଏକ ଅପୂରଣୀୟ କ୍ଷତି । ଅଧ୍ୟାପକ ଜୟକୃଷ୍ଣ ମିଶ୍ର ମୋଭଳି ବହୁ ସହସ୍ର ଛାତ୍ରଙ୍କର ଶିକ୍ଷକ ଥିଲେ । ତାଙ୍କର ତେଜୋଦୀପ୍ତ ଭାଷା, କହିବାର ଠାଣି, ବର୍ଣ୍ଣନା ଚାତୁରୀ, ଅସୁମାରି ଛାତ୍ରଙ୍କର ଓଡିଆ ସାହିତ୍ୟ, ସଂସ୍କୃତି, ବିଶେଷତଃ ପ୍ରାଚୀନ ସାହିତ୍ୟ ପ୍ରତି ଆଗ୍ରହ ସୃଷ୍ଟି କରିଛି । ସେମାନଙ୍କ ମଧ୍ୟରେ ଓଡିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅନ୍ୟତମ । ସେ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କର ଅପ୍ରକାଶିତ ମୂଲ୍ୟବାନ ପାଣ୍ଡୁଲିପିର ପ୍ରକାଶନ ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ସେଗୁଡିକର ପ୍ରକାଶନ ହିଁ ହେବ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କର ପ୍ରକୃତ ସ୍ମୃତି ରକ୍ଷା । ତାହା ହିଁ ହେବ ଏ ଜାତିର ଯଥାର୍ଥ ଗୁରୁ ଦକ୍ଷିଣା ।

କାରଣ ଅମାୟିକ ଜୟକୃଷ୍ଣ ମିଶ୍ର ଆପଣାର ଜୀବନରେ ବିଶେଷ କିଛି ଲୋଡ଼ି ନାହାନ୍ତି । ବହୁକୁଟୁମ୍ବୀ ଜୟକୃଷ୍ଣ ମିଶ୍ରଙ୍କର ଜୀବନଯାପନର ପ୍ରଣାଳୀ ଥିଲା ସରଳ, ପୁରାତନ ଏବଂ ଅଯତ୍ନ । ଘରେ ବାହାରେ, ବେଶଭୂଷାରେ, ଚାଲିଚଳନରେ କେଉଁଠି ଟିକିଏ ହେଲେ ଆଡମ୍ବର ନଥିଲା । ଘରକୁ ଗଲେ କେହି କହିବ ନାହିଁ ଏହା ଜଣେ ବିଶିଷ୍ଟ ଅଧ୍ୟାପକଙ୍କର ଘର । କେବଳ ଥାକ ଥାକ ବହି, ଅସୁମାରି ନୋଟ୍ ହିଁ ଯାହା ପ୍ରମାଣ କରୁଥିଲା ଅଧ୍ୟାପକଙ୍କର ଘର ବୋଲି ।

ଏପରିକି ସାର୍‌ଙ୍କ ହାତର ଘଡ଼ିଟି ମଧ୍ୟ ଚାଲେ ନାହିଁ ଠିକ୍ ଭାବରେ । ପାନଖିଆ ଦାନ୍ତ ଦେଖାଇ ସାର୍ ହସି ହସି କହନ୍ତି ଯେ ମୋ ଭାଗ୍ୟରେ ଭଲ ଘଡ଼ିଟିଏ ମଧ୍ୟ ଜୁଟିଲା ନାହିଁ । କିନ୍ତୁ ସେଥିଲାଗି ତାଙ୍କର ଅବଶୋଷ ନଥିଲା, ଦୁଃଖ ବି ନଥିଲା । ସାରଲ୍ୟ ଏବଂ ସାଧାରଣ ଜୀବନକୁ ଯେପରି ସେ ଆଦରି ନେଇଛନ୍ତି ଜାଣିଶୁଣି, ନିର୍ବିକାର ଚିତ୍ତରେ ।

ସାର୍‌ଙ୍କ ଘର ତିଗିରିଆ । ଚାକିରି କଲେଣି କଟକରେ ଅନେକ ଦିନରୁ । ଘର ଖଣ୍ଡିଏ କରିପାରି ନାହାନ୍ତି । କଟକରେ ଜମି ବହୁତ ଶସ୍ତା ତାଙ୍କ ବେଳେ । ପଚାରିଲେ ହସି

ହସି କହନ୍ତି ଆରେ, ଘରକୁ ଯାଇଛୁ ପରା । ପିଲାପିଲିଙ୍କୁ ଚଳଉ ଚଳଉ ତ ପଇସା ନିଅଣ୍ଟ । ଆଉ, ଘର ନା ଜମି । ସାର୍ ଅବସର ନେଇ ଫେରିଲେ ସତରେ ଗାଁକୁ । ସେଇଠି ହିଁ ଆଖି ବୁଜିଦେଲେ ।

ସାର୍ ପାଠ ପଢ଼ାନ୍ତି ତନ୍ମୟ ହୋଇ । ମଥୁରାମଙ୍ଗଳ ପଢ଼ଉଥିଲେ ଆମକୁ । ଶୁଣିଲେ ମନେହୁଏ ଯେମିତି ସେଇ ଯୁଗର ଇତିହାସ କଥା କହୁଚି । ସାର୍ ନିର୍ମାୟା ଲୋକ । ଯିଏ ମାଗିଲା ସାର୍ଟିଫିକେଟ ତାକୁ ଦେଲେ । ପ୍ରସିଦ୍ଧ ଅଧ୍ୟାପକ ଡକ୍ଟର ବଳଭଦ୍ର ପ୍ରସାଦ କହନ୍ତି, ଜୟକୃଷ୍ଣ ବାବୁଙ୍କ ସାର୍ଟିଫିକେଟ ହେଉଛି ମାନସିକ ଦୟାର ପ୍ରତୀକ । ଏହା ପ୍ରକୃତ ଚିତ୍ରର ପ୍ରତିଫଳନ ନୁହେଁ । ପ୍ରତିଫଳନ ଛାତ୍ରବତ୍ସଳତା ଏବଂ ଦୟାର ।

ସାର୍ ଗପୁଡି ଲୋକ । ଗପନ୍ତି ସମସ୍ତଙ୍କ ସାଙ୍ଗରେ । ପିଲା ବୁଢ଼ା ସମସ୍ତଙ୍କ ସହିତ । ବାଛ ବିଚାର କିଛି ନାହିଁ । ଘରକୁ ଗଲେ ଚାହା ମିଳେ ଖାଇବା ପାଇଁ । ଭଙ୍ଗା କପ୍, ଭଙ୍ଗା ଚୌକୀ, ଭଙ୍ଗା ବେଞ୍ଚ । ସାର୍ ହସନ୍ତି । ଆରେ, ଏ ହେଉଛି ବିରାଟ ଭଙ୍ଗାଭଙ୍ଗିର ସଂସାର । ତାରି ଭିତରେ ମୁଁ ଠେଲି ପଶିଯାଇଚି ।

ତାଙ୍କର ସାହିତ୍ୟ କୃତି ରହିଗଲା ଅଜଣା । ଆର୍ଥିକ ଦୂରବସ୍ଥା ଭିତରେ ସେ ପ୍ରକାଶ କରିପାରିଲେ ନାହିଁ କିଛି । ଇତିହାସ କହିବ ସେସବୁ ଦିନେ ପ୍ରକାଶିତ ହୋଇପାରିବ କି ନାହିଁ । ତାହା ହିଁ ମୂଲ୍ୟାୟନ କରିବ ତାଙ୍କର । କିନ୍ତୁ ସେତେବେଳକୁ ତ ସେ ଆଉ ନାହାନ୍ତି ।

□□□

# ଲୁହବୋଳା ସ୍ମୃତି

## (୰ ଜଗନ୍ନାଥ ଦାସ)

ମୋତେ ଶୁଣିବାକୁ ହେବ, ଲେଖିବାକୁ ହେବ, ବୟସରେ ମୋଠାରୁ ସାନ । କିନ୍ତୁ ଜଗନ୍ନାଥ ଚାଲିଗଲେ ଆଗରୁ । ପରିଚିତି, ଆତ୍ମୀୟତା ଅନେକ ଦିନର । ସହଯୋଦ୍ଧା ମଧ୍ୟ । ମୋର କିନ୍ତୁ ଟିକିଏ ହେତୁ ହେଉଛି, ମନେ ପକାଇଲେ, ସ୍ମୃତି ପଖାଳିଲେ ଆଖି ମନ ସବୁ ସଜେଇ ଆସେ ।

କଟକ ପ୍ରେସ ଶ୍ରମିକ ସଂଘ ଏକ ପୁରୁଣା, ପ୍ରଖ୍ୟାତ ସଂଗଠନ । ବହୁ ଶ୍ରମଜୀବୀ ମଣିଷର ନେତାକୁ ଏହା ସୃଷ୍ଟି କରିଛି । ସେମାନଙ୍କ ମଧ୍ୟରେ ଜଗନ୍ନାଥ ଅନ୍ୟତମ । ବହୁ ସଂଗ୍ରାମର ସେ ସାରଥୀ । ଖାଲି ପ୍ରେସ୍ ଶ୍ରମିକ ନୁହନ୍ତି । ମେହନତୀ ମଣିଷର ସବୁ ସଂଗ୍ରାମର ନେତା । କର୍ମୀରୁ ନେତା କିମିତି ସୃଷ୍ଟି ହୁଅନ୍ତି ଜଗନ୍ନାଥ ତା'ର ଏକ ଜ୍ୱଳନ୍ତ ଉଦାହରଣ । ମୋର ମନେ ପଡୁଛି ମୋର ପଳାତକ ଦିନର କଥା । ଜଗନ୍ନାଥ ଆମକୁ କେତେଥର ଏସକର୍ଟ କରି ନେଇଛନ୍ତି ନିରାପଦ ସ୍ଥାନକୁ ପୁଲିସର ବଳୟ ଭେଦ କରି ।

ସ୍ମୃତି ପଖାଳୁଛି । କଟକ ସହରର ବହୁ ସଂଗ୍ରାମର ସେ ସେନାନୀ । ଲୁହା କ୍ରମେ ଇସ୍ପାତ ପାଲଟିଛି । ସଂଗ୍ରାମ ଭିତରେ । ହଠାତ୍ ତାଙ୍କର ମୃତ୍ୟୁ ସଂବାଦ ମୋତେ ସ୍ତମ୍ଭୀଭୂତ କରିଦେଲା । ସଂଗ୍ରାମ ତ ସରି ନାହିଁ । ହଠାତ୍ ବିଦାୟ ନେଇଗଲ କାହିଁକି ? କିଏ ଦେବ ଏହାର ଉତ୍ତର ?

ମୋର ମନେ ପଡୁଛି । ଜୀବନର ବହୁ ବିଭାବକୁ ତାଙ୍କର କର୍ମ ପରିବ୍ୟାପ୍ତ ଥିଲା । ସେ ସାହି କମିଟିର ଜଣେ ମୁଖ୍ୟ ଥିଲେ ଏବଂ କଟକ ନଗରର ଅନ୍ୟତମ ମୁରବୀ ପାଲଟିଥିଲେ । କଟକ ନଗରର ସହସ୍ର ବାର୍ଷିକୀ ପାଳନଠାରୁ ଆରମ୍ଭ କରି ସହରର ଐକ୍ୟ ରକ୍ଷା କରିବାରେ ଏହି କମିଟିମାନଙ୍କର ଭୂମିକା ପର୍ଯ୍ୟନ୍ତ କେତେ ଆଲୋଚନା ତାଙ୍କ ଉପରେ ! ସେ ଯେତିକି ଗର୍ବିତ ଏହି ସହରର ଐତିହ୍ୟ ଗାରିମା ପାଇଁ ସେତିକି ବ୍ୟଥିତ ଭାଇଚାରା ନଷ୍ଟ ହୋଇଯିବା ଯୋଗୁଁ । ଦେଖାହୋଇଥିଲା ରଘୁନାଥଜୀଉ କଲେଜରେ । ବିକାଶ ପାଇଁ କେତେ ପ୍ରସ୍ତାବନା ତାଙ୍କର ! ମନେ ପଡିଲେ ଆଖି, ମନ ସବୁ ଭୁଛି

ହୋଇଯାଏ । ଶ୍ରମଜୀବୀ ନେତୃତ୍ୱ କହିଲେ ଆମେ ଯାହା ବୁଝୁ ଜଗନ୍ନାଥଙ୍କୁ ଦେଖିଲେ, ତାଙ୍କ ସହିତ କାମ କଲେ ସେଇଆ ମନେପଡ଼େ । ଇମିତି ଏକ ବ୍ୟକ୍ତି ଥିଲେ ଯଦୁନନ୍ଦନ ବିଶ୍ୱାଳ ।

ଜଗନ୍ନାଥ କ୍ରୀଡା, ସଂସ୍କୃତି, ଶିକ୍ଷା ସବୁ ବିଭାଗରେ ଆପଣାର ଆଲେଖ୍ୟ ରଖିଯାଇଛନ୍ତି । ସମାଜର ସବୁ ବିଭାଗର ଲୋକଙ୍କୁ ନେତୃତ୍ୱ ଦେବାର ଯୋଗ୍ୟତା ଥିଲା ତାଙ୍କର । ସେ ଜୀବିକାରେ ଥିଲେ ପ୍ରେସ୍ ଶ୍ରମିକ । ଶ୍ରମ ତାଙ୍କୁ ଶିକ୍ଷା ଦେଉଥିଲା ସଙ୍କୋଚ୍, ଦକ୍ଷ ଏବଂ ଶାଣିତ ନେତୃତ୍ୱର ।

ଜଗନ୍ନାଥ, ତମେ ଗଲ କୁଆଡେ ? ତମର ଚାଲିଯିବା ଚିଟ୍ଟେଉ ନେଇ ଆସିଥିବା ବନ୍ଧୁମାନଙ୍କୁ ଅନେଇଥିଲି ଅବିଶ୍ୱାସ ଭରା ଆଖିରେ । ତମେ ନାହିଁ ଏକଥା ବିଶ୍ୱାସ କରିବା କଠିନ ଥିଲା । ତଥାପି ତାହା ହିଁ ସତ୍ୟ । ତମେ ଆଉ ଫେରିବ ନାହିଁ ତମର ଆଧ୍ୟାତ୍ମିକ କାମକୁ ତମର ଉତ୍ତରାଧିକାରୀ ମାନେ ନେଇ ଚାଲିବେ ଆଗକୁ । ସମୟର ବାଲିରେ ତମେ ଉଜ୍ଜ୍ୱଳି ରହିବ । ସେଇ ତମ ଜୀବନର ସାର୍ଥକତା ।

ଲାଲ୍ ସଲାମ, କମ୍ରେଡ୍ ତୁମକୁ ଲାଲ୍ ସଲାମ । ବନ୍ଧ ମୁଠାରେ ପୂରାଇ ରକ୍ତ ପତି, ଶପଥ କରୁଛି ସାଥୀ ।

ତୁମେ ଥିଲ ମୋର ସହଯୋଦ୍ଧା, କମ୍ରେଡ୍ । ତୁମକୁ ହରାଇ ମୁଁ ଆହୁରି ଏକାକୀ ହୋଇଯାଇଛି ।

□□□

# ସବୁରି ଉପରେ ମଣିଷ ସତ୍ୟ

## (ଂ ଜୋ ସ୍ଲୋଭେ)

ଶୁଣରେ ମଣିଷ ଭାଇ,          ସବୁରି ଉପରେ ମଣିଷ ସତ୍ୟ,
ତାହାର ଉପରେ ନାହିଁ ।

ମହାତ୍ମା ଚଣ୍ଡୀ ଦାସଙ୍କରଏହି ଉଦାର ବାଣୀ ସେଦିନ ଧ୍ୱନିତ ହୋଇଥିଲା ଆମରି ଦେଶରେ । ଜାତିଭେଦ, ଧର୍ମଭେଦ ବିରୁଦ୍ଧରେ ଏହି ବାଣୀ ବହୁ ବ୍ୟକ୍ତିଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଠିକ୍ ଏଇପରି ସାମ୍ୟର ବାଣୀ, ମଣିଷର ବାଣୀ ଯୁଗେ ଯୁଗେ ଧ୍ୱନିତ ହୋଇଛି ବିଭିନ୍ନ ଦେଶରେ । କଳା ଗୋରା ଭେଦ, ଖ୍ରୀଷ୍ଟିଆନ ଇହୁଦୀ ଭେଦ, କ୍ୟାଥଲିକ୍ ପ୍ରୋଟେଷ୍ଟାଣ୍ଟ ଭେଦ ଭୁଷୁଡ଼ି ପଡିଛି ।

ଏଇପରି ଏକ ମଣିଷ ଥିଲେ ଜୋ ସ୍ଲୋଭେ । (Joe Slove) ଘର ଦକ୍ଷିଣ ଆଫ୍ରିକାରେ । ବର୍ଣ୍ଣ ଗୋରା । କିନ୍ତୁ ବର୍ଣ୍ଣଭେଦ ବିରୁଦ୍ଧରେ ତାଙ୍କର ଅଯୁତ ସଂଗ୍ରାମ । ସାଲିସହୀନ ସଂଗ୍ରାମ ତାଙ୍କୁ କଳା ଗୋରା ଉଭୟଙ୍କର ପ୍ରିୟ କରିଥିଲା । ଗୋରା ଶାସକଗୋଷ୍ଠୀ ଅବଶ୍ୟ ତାଙ୍କୁ ଦେଖୁଥିଲା ବିଷ ଦୃଷ୍ଟିରେ । ତାଙ୍କୁ ସେମାନେ ଆଖ୍ୟା ଦେଇଥିଲେ ଦେଶଦ୍ରୋହୀ ବୋଲି । ବର୍ଣ୍ଣରେ ଗୋରା ଅଥଚ ସଂଗ୍ରାମ କରିବ ଗୋରା ସରକାର ବର୍ଣ୍ଣଭେଦ ବିରୁଦ୍ଧରେ ? ଏହା ଅସହ୍ୟ ଶାସକ ଗୋଷ୍ଠୀ ପାଇଁ । ଶାସକ ଗୋଷ୍ଠୀ ଯେତିକି କ୍ଷୁବ୍ଧ କ୍ରୋଧାନ୍ୱିତ କୃଷ୍ଣକାୟ ନେତାମାନଙ୍କ ବିରୁଦ୍ଧରେ, ତା'ଠାରୁ ବେଶି କ୍ଷୁବ୍ଧ ଏବଂ କ୍ରୋଧାନ୍ୱିତ ଜୋ ଏବଂ ତାଙ୍କର ସହଯୋଦ୍ଧାମାନଙ୍କ ବିରୁଦ୍ଧରେ । କାରଣ ମଧ୍ୟ ସ୍ୱାଭାବିକ । ଯେଉଁ ଇଂରେଜମାନେ ବ୍ରିଟିଶ-ଭାରତରେ ଉପନିବେଶିକତାବାଦ, ସାମ୍ରାଜ୍ୟବାଦ ବିରୁଦ୍ଧରେ ଭାରତୀୟ ମୁକ୍ତି ସଂଗ୍ରାମ ସହିତ ଐକ୍ୟ ସ୍ଥାପନ କରି ସଂଗ୍ରାମ କରୁଥିଲେ ସେମାନଙ୍କୁ ଦେଶଦ୍ରୋହୀ ବୋଲି ବ୍ରିଟିଶ ସରକାର ଇଂଲଣ୍ଡରେ ପ୍ରଚାର କରୁଥିଲା ଏବଂ ସେମାନଙ୍କୁ ଦଣ୍ଡ ଦେବାପାଇଁ ଅଧିକ ଉତ୍ସାହ ପ୍ରଦାନ କରୁଥିଲା । ଠିକ୍ ସେଇପରି ଘଟଣା ଘଟିଥିଲା ନାଜୀ ଜର୍ମାନୀରେ । ହିଟଲରର ଏକଛତ୍ରବାଦୀ ଶାସନ, ଇହୁଦୀମାନଙ୍କ ଉପରେ ଅତ୍ୟାଚାର, ପର ରାଜ୍ୟ ଲୁଣ୍ଠନ ଏବଂ ଅଧିକାର ବିରୁଦ୍ଧରେ ଯେଉଁ ଜର୍ମାନ୍ ବୁଦ୍ଧିଜୀବୀ, ଶ୍ରମଜୀବୀ ଜନସାଧାରଣଙ୍କର ନେତା, ପ୍ରଗତିଶୀଳ ଚିନ୍ତାନାୟକମାନେ

ପ୍ରତିବାଦର ସ୍ୱର ଉତ୍ତୋଳନ କଲେ ସେମାନଙ୍କୁ ମଧ୍ୟ ହିଟଲର ଦେଶଦ୍ରୋହୀ ବୋଲି ଆଖ୍ୟା ଦେଇ ଫାଶି କାଠରେ ଝୁଲାଇଥିଲା । ଆମ ଦେଶରେ ମଧ୍ୟ ସିଂହଳର ତାମିଲମାନଙ୍କୁ ଏକଦା ସବୁ ପ୍ରକାର ଅସ୍ତ୍ରଶସ୍ତ୍ର, ସମର୍ଥନ ଦେଇ ଦିନେ ସେମାନଙ୍କୁ ଦମନ କରିବା ପାଇଁ ସିଂହଳକୁ ତଥାକଥିତ ଭାରତୀୟ ଶାନ୍ତିରକ୍ଷା ବାହିନୀ ପ୍ରେରଣକୁ ଯେଉଁମାନେ ବିରୋଧ କଲେ ସେମାନଙ୍କୁ ମଧ୍ୟ ତତ୍କାଳୀନ ସରକାର ଦେଶଦ୍ରୋହୀ ବୋଲି ନାମିତ କରୁଥିଲା ।

ଇତିହାସ ପୃଷ୍ଠାରେ ଏଇପରି ଭୂରି ଭୂରି ପ୍ରମାଣ ରହିଛି । ଦକ୍ଷିଣ ଆଫ୍ରିକା ସେଥିର ବ୍ୟତିକ୍ରମ ନଥିଲା । ଜୋ ଥିଲେ ଦକ୍ଷିଣ ଆଫ୍ରିକାର ସୁଦୀର୍ଘ ମୁକ୍ତି ସଂଗ୍ରାମର ଅନ୍ୟତମ ସଂଗ୍ରାମୀ ମହାରଥୀ । ସେ ଥିଲେ ଆଫ୍ରିକା ଜାତୀୟ କଂଗ୍ରେସର ମୁଖ୍ୟ ସଂଗଠକ । ବର୍ଣ୍ଣବୈଷମ୍ୟ ନୀତି ବିରୁଦ୍ଧରେ ସାଲିସହୀନ ସଂଗ୍ରାମୀ ଏବଂ ଦକ୍ଷିଣ ଆଫ୍ରିକା କମ୍ୟୁନିଷ୍ଟ ପାର୍ଟିର ଚେୟାରମ୍ୟାନ୍ । ଜୀବନରେ ବହୁ କଷାଘାତ ସହ୍ୟ କରିବାକୁ ପଡିଛି । ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ ତାଙ୍କର ବ୍ୟକ୍ତିଗତ ଜୀବନ ପାଇଁ ଆଣି ଦେଇଛି ଅବର୍ଣ୍ଣନୀୟ କଷଣ । କିନ୍ତୁ ଜୋ ଭାଙ୍ଗି ପଡିନାହାନ୍ତି । ଶାଣିତ ହେଇଛନ୍ତି । କଠୋର ଅଗ୍ନି ପରୀକ୍ଷାରେ ଲୁହା ଇସ୍ପାତରେ ପରିଣତ ହୋଇଛି । ମୃତ୍ୟୁର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ତାଙ୍କର ପରିକଳ୍ପିତ ସାମ୍ୟର ଦକ୍ଷିଣ ଆଫ୍ରିକା ଗଠନର ଯୋଜନାରେ ଲିପ୍ତ ରହିଛନ୍ତି । ଦୁରାରୋଗ୍ୟ କ୍ୟାନସର ରୋଗରେ ସେ ପୀଡିତ । ଜାଣନ୍ତି ଯେ ମୃତ୍ୟୁ ଆଉ ଡେରି ନାହିଁ । ଦେହ ଏକ ବସ୍ତୁ । ଏହାର କ୍ଷୟ ଅବଶ୍ୟମ୍ଭାବୀ । ତେଣୁ ସେଥିରେ ଭୀତ ହେବାର କ'ଣ ଅଛି ? ମୃତ୍ୟୁର ପଦଧ୍ୱନି କ'ଣ ତାଙ୍କୁ କାର୍ଯ୍ୟରୁ ବିରତ କରିଦେବ ? ଅସମ୍ଭବ । ଜୋ ଏହା ସ୍ୱପ୍ନରେ ମଧ୍ୟ ଭାବି ନାହାନ୍ତି ।

ବର୍ଣ୍ଣବୈଷମ୍ୟ ନୀତି ବିରୁଦ୍ଧରେ ମୁକ୍ତି ସଂଗ୍ରାମରେ ଏଇ ଅନମନୀୟ ସେନାପତି ଥିଲେ ମୁକ୍ତି ପିପାସୁ ଜନତାର ନୟନପିତୁଳା, ଏକ ହିରୋ । ନିଶ୍ଚିତ ଭାବରେ ସେ ଥିଲେ ଏଇ ଯୁଗର ଏକ ମହାନ ପୁରୁଷ । କିନ୍ତୁ ଆପଣା ଦେଶ ପାଇଁ, ଆପଣା ଦେଶବାସୀଙ୍କ ପାଇଁ ନିଜ ଜୀବନକୁ ବହୁ ବର୍ଷ ଧରି ବିପନ୍ନ କରିଥିବା, ବହୁ ବର୍ଷ ଧରି ନିର୍ବାସିତ ଜୀବନଯାପନ କରିଥିବା ଏଇ ମଣିଷ କିନ୍ତୁ ଥିଲେ ଏକ ସ୍ୱତନ୍ତ୍ର ଧରଣର ମଣିଷ । ଆମ ଦେଶର ନେତାମାନେ ଯିମିତି ସାଧାରଣ ମଣିଷଠାରୁ ଅଲଗା ରହନ୍ତି, ଗମ୍ଭୀର ପ୍ରକୃତିର ହୁଅନ୍ତି ସେ ସେମିତି ନଥିଲେ । ଜୀବନ ପାଇଁ ତାଙ୍କର ଥିଲା ପ୍ରବଳ ସ୍ପନ୍ଦନ, ଉଦ୍ଦୀପନା ଏବଂ ରସାଳ ଥିଲା ତାଙ୍କର ଜୀବନ । ହସର ଏକ ଖଣି ଥିଲେ ସେ । ହ୍ୟୁମର ବା ରସାଳ କଥା ବସା ବାନ୍ଧିଥିଲା ତାଙ୍କର ତୁଣ୍ଡରେ । ଯାହା ସାଙ୍ଗରେ ତାଙ୍କର ସାକ୍ଷାତ ହେଉଥିଲା, ସେ ତାଙ୍କୁ କେବେ ଆପଣାର କରି ନେଉ ନଥିଲେ ନୁହେଁ, ତାହା ସହିତ ସମାଲୋଚନା ହୋଇ ଆଲୋଚନାରେ ମଗ୍ନ ହୋଇ ଯାଉଥିଲେ ସେ । ଆଳାପକାରୀଙ୍କୁ ସେ ସମ୍ମାନ ଜଣାଉଥିଲେ

ତାଙ୍କରି ସମାସ୍କନ୍ଧ ସହଯୋଦ୍ଧା ଭଳି । ନେତାର ଗର୍ବ ନଥିଲା ନା ନଥିଲା ନେତୃତ୍ୱର ଆଭିଜାତ୍ୟ । ନିଜକୁ ସେ ସବୁଥିରେ ଏକ କମ୍ରେଡ, ସହଯୋଦ୍ଧା ଭାବରେ ଏବଂ ତା'ପରେ ସେ ନେତା ବା ଅନ୍ୟକିଛି । ନଥିଲା କୌଣସି ଭେଦଭାବ, ନଥିଲା କିଛି ଅହମିକା ବା ଛଳନା । ହାଡରେ କ୍ୟାନସର, ଅସହ୍ୟ ଯନ୍ତ୍ରଣା । ମୃତ୍ୟୁ ସହିତ ସଂଗ୍ରାମ । ତଥାପି ଉଜ୍ଜ୍ୱଳ ହସ । ତଥାପି ତୀବ୍ର ଉତ୍ତେଜନା, ଉଦ୍ଦାମ ସ୍ପନ୍ଦନ ଏବଂ ଏକ ନୂତନ ଆଫ୍ରିକା ଗଢ଼ିଯିବାର ସ୍ୱପ୍ନ । ଏଇ ଥିଲା ଜୋ'ଙ୍କର ବିଶେଷତ୍ୱ । ସତରେ ସେ ଥିଲେ ଅନନ୍ୟ ସାଧାରଣ । ଅନ୍ୟମାନଙ୍କ ପାଖରୁ ସେ ବାରି ହୋଇ ପଡୁଥିଲେ ।

ବହୁକାଳ ଧରି ଜୋ ପଳାତକ ସାଜନ୍ତି । ତାଙ୍କୁ ଧରିବା ପାଇଁ ହତ୍ୟା କରିବା ପାଇଁ ହୁଲିଆ ଜାରି ହୁଏ । ଦକ୍ଷିଣ ଆଫ୍ରିକାରେ କୃଷ୍ଣକାୟମାନଙ୍କ ସହିତ ସେ ଲିପ୍ତ ହୁଅନ୍ତି ସଶସ୍ତ୍ର ସଂଗ୍ରାମରେ । କାରଣ ବର୍ଣ୍ଣଆ ଅତ୍ୟାଚାରର କଷଣ ଆଉ ସହ୍ୟ କରିବା ଆଫ୍ରିକୀୟମାନଙ୍କ ପାଇଁ ସମ୍ଭବ ନଥିଲା । ବହୁକାଳ ଧରି ସେ ଇଂଲଣ୍ଡରେ ନିର୍ବାସିତ ଜୀବନ କଟାଇଛନ୍ତି ଏବଂ କ୍ୟାନସର ରୋଗର ଆକ୍ରମଣ ପରେ ଚିକିତ୍ସା ପାଇଁ ଯାଇଛନ୍ତି ଇଂଲଣ୍ଡ । କ୍ୟାନସର ରୋଗ ତାଙ୍କୁ ଖାଇ ଚାଲିଛି । ଏହା ସତ୍ତ୍ୱେ ସେ ଆଫ୍ରିକା ସରକାର ଏବଂ ସବୁ ରାଜନୈତିକ ଦଳମାନଙ୍କ ମଧ୍ୟରେ ଆଫ୍ରିକାର ନୂତନ ସାମ୍ବିଧାନିକ ବ୍ୟବସ୍ଥାର ରୂପରେଖ ସମ୍ପର୍କରେ ଆଲୋଚନାରେ ନେତୃତ୍ୱ ନେଇଛନ୍ତି ।

ଜୋ କେବଳ ସଂଗ୍ରାମର ନେତା ନଥିଲେ । ଆଲୋଚନାରେ ମଧ୍ୟ ତାଙ୍କର ପାରଦର୍ଶିତା ଥିଲା ପ୍ରଭୂତ । ସବୁ ସାଲିସ ଅଲୋଚନା, ସବୁ ସାମ୍ବିଧାନିକ ଅଲୋଚନା, ନୂଆ ସମ୍ବିଧାନ ପାଇଁ ଆଲୋଚନାରେ ନେତୃତ୍ୱ ନେଇଛନ୍ତି ଜୋ । ଏଥିପାଇଁ ଆଫ୍ରିକୀୟ ଉଗ୍ରଚଣ୍ଡା ନେତାମାନଙ୍କୁ ମନେଇବାର କଠୋର ଦାୟିତ୍ୱ ପଡିଛି ତାଙ୍କ ଉପରେ । ସେ ସଫଳ ହୋଇଛନ୍ତି କାରଣ ସମସ୍ତେ ତାଙ୍କୁ ମାନନ୍ତି ଏବଂ ତାଙ୍କର ଆଲୋଚନା କୌଶଳ ମଧ୍ୟ ସ୍ୱତନ୍ତ୍ର ଧରଣର । ଏକ ଗଣତାନ୍ତ୍ରିକ ସମୃଦ୍ଧିଶାଳୀ ଆଫ୍ରିକା ଗଢ଼ିଯିବା ପାଇଁ ଏବଂ ସେଥିପାଇଁ ଉପଯୁକ୍ତ ସଂବିଧାନ ଗଠନ ପାଇଁ ସେ ସ୍ୱପ୍ନ ଦେଖୁଥିଲେ ଏବଂ ବହୁ ପରିମାଣରେ ତାକୁ ରୂପାୟିତ କରିଯାଇଛନ୍ତି ।

ରୋଗ ଆକ୍ରମଣ କରିଥିଲା । ଶ୍ୱେତାଙ୍ଗ ଉଚ୍ଛୃଙ୍ଖଳ ଯୁବକମାନେ ତାଙ୍କୁ ଖୋଜୁଥିଲେ ହତ୍ୟା କରିବା ପାଇଁ । ଜୀବନ ଦୁଇ ପଟରେ ସୂତା ଖିଅରେ ଝୁଲୁଥିଲା । ତଥାପି ଭଲ ଖାଇବା ପାଇଁ ତାଙ୍କର ସଉକ କମିନଥିଲା ବା କମି ନଥିଲା ଜୀବନର ସ୍ୱାଦ, ସାମ୍ୟବାଦୀ ଦର୍ଶନ ପ୍ରତି ଅନୁରକ୍ତି ।

ସେ ଏବଂ କ୍ରିସହାନୀ ଜନସାଧାରଣଙ୍କ ଭିତରେ ଯେମିତି ପ୍ରିୟ, ଦକ୍ଷିଣ ଆଫ୍ରିକା ଜାତୀୟ କଂଗ୍ରେସର ସଭ୍ୟମାନଙ୍କ ଭିତରେ ସେଇପରି ପ୍ରିୟ । କୁହାଯାଏ ଯେ ନେଲସନ୍

ମାଣ୍ଡେଲାଙ୍କ ପରେ ଦକ୍ଷିଣ ଆଫ୍ରିକା ଜାତୀୟ କଂଗ୍ରେସରେ ଜନପ୍ରିୟତାରେ ଜୋ ଏବଂ କ୍ରିସ୍ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ ।

ମୁକ୍ତିର ଉପକଣ୍ଠରେ ଆଫ୍ରିକା । କିନ୍ତୁ ଠିକ୍ ସୂର୍ଯ୍ୟୋଦୟ ପୂର୍ବର କାଳିମା ବେଶ୍ ନିରନ୍ଧ୍ର । ସୂର୍ଯ୍ୟୋଦୟ ପାଇଁ ଶେଷ ମୂଲ୍ୟ ଦେବାକୁ ପଡିବ । କ୍ରିସହାନୀଙ୍କୁ ହତ୍ୟା କରନ୍ତି ଶ୍ୱେତାଙ୍ଗ ଫାସିଷ୍ଟମାନେ ଏବଂ ଜୋ' ଆଉ ରହି ପାରିନାହାନ୍ତି ସ୍ୱାଧୀନତାର ପ୍ରକୃତ ସ୍ୱାଦ ପାଇବା ପାଇଁ । ସୋଭିଏଟ ୟୁନିଅନର ବିଲୋପ ତାଙ୍କୁ ଆଘାତ ଦେଇଥିଲା । ମାର୍କସବାଦ-ଲେନିନବାଦର ପାରମ୍ପରିକ ତତ୍ତ୍ୱର ନୂତନ ବୟାନ ସେ ଖୋଜୁଥିଲେ କିନ୍ତୁ ମୌଳିକ ଦର୍ଶନ ପ୍ରତି ତାଙ୍କର ଶ୍ରଦ୍ଧା, ବିଶ୍ୱାସ ଥିଲା ଅତୁଟ । ବରଂ ମାର୍କସବାଦୀ ବୁଦ୍ଧିଜୀବୀ ଏବଂ ତାତ୍ତ୍ୱିକମାନଙ୍କ ପାଖରେ ବିଶ୍ଳେଷଣର ଅବକ୍ଷୟ, ତାତ୍ତ୍ୱିକ ଅବକ୍ଷୟ ତାଙ୍କୁ ବ୍ୟଥିତ କରୁଥିଲା ।

ମୃତ୍ୟୁର ମୁହୂର୍ତ୍ତ ଉପସ୍ଥିତ । ଦୀପ ଲିଭିଲା ପୂର୍ବରୁ ଦପ୍ କରି ଜଳିଉଠେ । ଜୋ'ଙ୍କର ସେଇ ଅବସ୍ଥା ପହଞ୍ଚିଛି । ଜୋ'ଙ୍କୁ ବେଶ୍ ଭଲଲାଗୁଛି । ସେ ଫେରିପାଇଛନ୍ତି ତାଙ୍କର କୌତୁକଭରା ଭାଷା । କହୁଛନ୍ତି ସମସ୍ତ ସଂଗ୍ରାମ ବେଳର ରୋମାଞ୍ଚକର କାହାଣୀ । ସ୍ୱପ୍ନ ଦେଖୁଛନ୍ତି ନୂତନ ଆଫ୍ରିକାର । ପାର୍ଲ୍ୟାମେଣ୍ଟରେ ବହୁ ସଂଖ୍ୟକ କୃଷ୍ଣକାୟମାନଙ୍କୁ ଦେଖି ଅନେକ ଗୋରା ଡରିଯିବେ ନାହିଁ ତ ? କୌତୁକରେ କହୁଛନ୍ତି ଜୋ' । ଏଇ କୃଷ୍ଣକାୟମାନଙ୍କ ପାଇଁ ଶ୍ୱେତାଙ୍ଗ ଜୋ' ସଂଗ୍ରାମ କରି ଯାଇଛନ୍ତି ସାରା ଜୀବନ ।

ଚୀନ ପରିଭ୍ରମଣରୁ ଏବେ ଫେରିଛନ୍ତି । ଭାରତ ପରିଭ୍ରମଣରେ ଯିବାପାଇଁ ବଳବତୀ ଇଚ୍ଛା । କିନ୍ତୁ ସ୍ୱାସ୍ଥ୍ୟ ଏବଂ ଅର୍ଥ ଉଭୟ ପ୍ରତିକୂଳ । ୧୯୯୪ ମସିହା ଶୀତଦିନ ଏଥିପାଇଁ ହେବ ଉତ୍କୃଷ୍ଟ ସମୟ । କିଛି ଅର୍ଥ, ଯାତାୟତର ଖର୍ଚ୍ଚ ହୁଏତ ବନ୍ଦୋବସ୍ତ ହୋଇଯିବ ଆଫ୍ରିକାରେ ଏବଂ ଭାରତରେ । କିନ୍ତୁ ଜୋ' ସେତେଦିନ ବଞ୍ଚି ପାରିବେ ତ ? ଭାରତ ଦେଖିଯିବା ପାଇଁ ତାଙ୍କର ଅସୀମ ଇଚ୍ଛା । ତାହା ପୂରଣ ହୋଇ ପାରିବ ନାହିଁ କି ?

ସତକୁ ସତ ସେଇଆ ହେଲା । ମୁକ୍ତିକାମୀ ମଣିଷର ଏଇ ଜନନାୟକ ଆଖିବୁଜି ଦେଇଛନ୍ତି । ତାଙ୍କର ମହାନ୍ ଜୀବନ ଶେଷ ହୋଇଯାଇଛି ମଣିଷ ଜାତିର ମୁକ୍ତିପାଇଁ –

''ମୋ ଜୀବନ ପଛେ ନର୍କେ ପଡିଥାଉ,
ଜଗତ ଉଦ୍ଧାର ହେଉ'' ।

ଭୀମ ଭୋଇଙ୍କର ଏହି ବାଣୀ ରୂପାୟିତ ହୋଇଛି ଜୋଙ୍କର ଜୀବନରେ । ମଣିଷ ଜାତି ପତାକା ଅର୍ଦ୍ଧନମିତ କରିଛି ତାଙ୍କରି ଉଦ୍ଦେଶ୍ୟରେ ।

□□□

# ଚତୁର୍ଥ ଇଷ୍ଟେଟର ପିତାମହ - ତୁଷାରକାନ୍ତି

*(ଁ ତୁଷାରକାନ୍ତି ଘୋଷ)*

୧୮୯୮ ରୁ ୧୯୯୪ । ତୁଷାରକାନ୍ତିଙ୍କର ଜନ୍ମ ଓ ମୃତ୍ୟୁ । ପ୍ରାୟ ଏକ ଶତାବ୍ଦୀ ଭାରତବର୍ଷର ଇତିହାସରେ କୌଣସି ବ୍ୟକ୍ତି ଏତେ ଦୀର୍ଘଦିନ ଧରି ଏକ ସମ୍ବାଦପତ୍ରର ସମ୍ପାଦକ ରହି ନାହାନ୍ତି । ବୁକ୍ ଅଫ୍ ଗିନିସରେ ତାଙ୍କ ନାଁ ରହିବା ଉଚିତ । ସମସାମୟିକ ଭାରତବର୍ଷରେ କେବଳ 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ ହିଁ ତାଙ୍କରି ବୟସର, ବର୍ଷର ।

ସେତେବେଳେ ଭାରତବର୍ଷ ଥିଲା ପରାଧୀନ । ଖବରକାଗଜ ଥିଲା ସ୍ୱାଧୀନତା ପାଇଁ ଆୟୁଧ । ଅମୃତ ବଜାର ପତ୍ରିକାର ଜନ୍ମ ହୁଏ ସେଇ ଆୟୁଧ ଭାବରେ । କିନ୍ତୁ ଆୟୁଧ ହେବା ସହିତ ଯେ ଖବରକାଗଜ ଏକ ସମୃଦ୍ଧିଶାଳୀ ଶିଳ୍ପରେ ପରିଣତ ହୋଇପାରେ ତାହା ପ୍ରମାଣ କରିଗଲେ ତୁଷାରକାନ୍ତି ଘୋଷ । ପିତା ମହାତ୍ମା ଶିଶିର କୁମାର ଘୋଷ ଏବଂ ଦାଦା ମୋତିଲାଲ ଘୋଷଙ୍କଠାରୁ ସେ ଖବରକାଗଜର ଦାୟିତ୍ୱ ଗ୍ରହଣ କରନ୍ତି ମାତ୍ର ୩୦ ବର୍ଷ ବୟସରେ ।

ତାଙ୍କରି ସମୟରେ ଅମୃତ ବଜାର ପତ୍ରିକା ଆଉ ଏକକ ହୋଇ ରହେ ନାହିଁ । ଯୁଗାନ୍ତର, ନର୍ଦନ ଇଣ୍ଡିଆ ପତ୍ରିକା ଏହି ପରିବାରର ଅନ୍ତର୍ଭୁକ୍ତ ହୁଏ ଏବଂ କଲିକତା ବ୍ୟତୀତ ଆଲ୍ଲାହାବାଦ, କଟକ ପ୍ରଭୃତିରେ ଏହାର ବିଭିନ୍ନ ସଂସ୍କରଣ ପ୍ରକାଶିତ ହୁଏ । 'ଅମୃତ ବଜାର ପତ୍ରିକା' ଏକ ଜାତୀୟ ପତ୍ରିକାରେ ପରିଣତ ହୁଏ ଏବଂ ସ୍ୱାଧୀନତା ସଂଗ୍ରାମର ବାହକ ହୁଏ । ସମ୍ପାଦକ ଆପଣାର କଲମରେ ଶାଣିତ ଛୁରିକା ଭଳି ସମାଲୋଚନା କରନ୍ତି ବ୍ରିଟିଶ ସରକାରଙ୍କର । ତୁଷାରକାନ୍ତିଙ୍କୁ ଏହାର ଫଳ ଭୋଗ କରିବାକୁ ପଡେ ତିନିମାସ କାରାବାସ ଭୋଗରେ । କାହାକୁ ସେ ଛାଡିନାହାନ୍ତି ବିଚାରପତିମାନେ ବିଶେଷତଃ ହାଇକୋର୍ଟର ବିଚାରପତିମାନେ ଶାସନାରୂଢ଼ ବ୍ୟକ୍ତି ଏବଂ ଅଫିସରମାନଙ୍କ ସହିତ ଋଜଘସ ହେବା ଉଚିତ ନୁହେଁ । ଏହା ସେମାନଙ୍କର ନିରପେକ୍ଷତା ଉପରେ ସନ୍ଦେହ ଆଣିବ । କାରଣ

ଶାସନାରୂଢ଼ ବ୍ୟକ୍ତିମାନେ ହିଁ ହେଉଛନ୍ତି ବିଭିନ୍ନ ମୋକଦ୍ଦମାମାନଙ୍କରେ ଅଭିଯୁକ୍ତମାନଙ୍କର ପ୍ରତିପକ୍ଷ ।

ତୁଷାରକାନ୍ତି ବେଶ୍ ଗଳ୍ପ ଜମାଇ ପାରନ୍ତି । କାହାଣୀ, ଉପକଥା, ଶାଣିତ ବ୍ୟଙ୍ଗରେ ସେ ଶ୍ରୋତାମାନଙ୍କୁ ମଜାଇ ରଖିପାରନ୍ତି ଘଣ୍ଟା ଘଣ୍ଟା ଧରି । ସମ୍ରାଟ ଆସିଛନ୍ତି ଭାରତ ଗସ୍ତରେ । ତୁଷାରକାନ୍ତିଙ୍କ ସହ ତାଙ୍କର ସାକ୍ଷାତ ହୁଏ । ମହାମହିମ ସମ୍ରାଟଙ୍କୁ ପଚାରିଲେ ତୁଷାରକାନ୍ତି । ଆପଣ ଖବରକାଗଜ ପାଉଛନ୍ତି ? ସମ୍ରାଟ ଉତ୍ତର ଦେଲେ ଯେ ହଁ,ସେ ଷ୍ଟେଟ୍ସମ୍ୟାନ କାଗଜ ପାଉଛନ୍ତି । ଭାରତର ଜନଜୀବନକୁ ଜାଣିବାକୁ ହେଲେ ଆପଣଙ୍କୁ ଅମୃତ ବଜାର ପତ୍ରିକା ପଢ଼ିବାକୁ ହେବ । କାରଣ ଏଇ କାଗଜରେ ହିଁ ପ୍ରତିଫଳିତ ହେଉଛି ଜନତାର ଭାବାବେଗ, ସ୍ପନ୍ଦନ । ତୁଷାରକାନ୍ତିଙ୍କର ସ୍ପଷ୍ଟ ବକ୍ତବ୍ୟ ।

ତୁଷାରକାନ୍ତିଙ୍କର ବ୍ୟକ୍ତିଗତ ପରିଚୟ ଥିଲା ଭାରତବର୍ଷର ସବୁ ମହାରଥୀମାନଙ୍କ ସହିତ । ଜାତିରପିତା ମହାତ୍ମା ଗାନ୍ଧୀ, ଜବାହରଲାଲ ନେହେରୁ, ରାଜଗୋପାଳାଚାରୀ, ସୁଭାଷ ଚନ୍ଦ୍ର ବୋଷ, ଡାକ୍ତର ବିଧାନ ଚନ୍ଦ୍ର ରାୟ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ । କିନ୍ତୁ ତୁଷାରକାନ୍ତି ତାଙ୍କର ନୀତିରେ ଅଟଳ ଥିଲେ । ଗାନ୍ଧିଜୀଙ୍କ ସହିତ ସୁଭାଷ ଚନ୍ଦ୍ର ବୋଷଙ୍କର ମତଭେଦ ଇତିହାସ ପ୍ରସିଦ୍ଧ । ସମଗ୍ର ଭାରତବର୍ଷ ଉଦ୍‌ବେଳିତ । ବିଶେଷତଃ ବଙ୍ଗଦେଶ । ବଙ୍ଗ ଯୁବକମାନଙ୍କୁ ସୁଭାଷ ଚନ୍ଦ୍ର ବୋଷଙ୍କ ଉଦାତ୍ତ ସଂଗ୍ରାମୀ ଆହ୍ୱାନ ଉନ୍ମାଦ କରିଥିଲା । ଏହା ସତ୍ତ୍ୱେ ତୁଷାରକାନ୍ତି ରହିଥିଲେ ମହାତ୍ମା ଗାନ୍ଧିଙ୍କ ପକ୍ଷରେ । ସାମୟିକ ଉଦ୍‌ବେଳନ ଅପେକ୍ଷା ବିଚାରପୁଷ୍ଟ ନୀତି ଥିଲା ତାଙ୍କର ଆଦର୍ଶ ।

ତୁଷାରକାନ୍ତି ଜୀବନର ବହୁ ବିଭାବକୁ ସ୍ପର୍ଶ କରିଯାଇଛନ୍ତି । ଫୁଟବଲ ଖେଳ ପ୍ରତି ତାଙ୍କର ଆଗ୍ରହ ଭୀଷଣ । ତାଙ୍କର ପ୍ରିୟ ଫୁଟବଲ ଟିମ୍ ହେଲା ମୋହନ ବାଗାନ । କିନ୍ତୁ ଯେତେଥର ସେ ପଡିଆକୁ ଗଲେ ଖେଳ ଦେଖିବାପାଇଁ ମୋହନ ବାଗାନ୍ ହାରିଲା । ନା, ମୁଁ ଆସିବା ହେତୁ ବୋଧହୁଏ ମୋ ପ୍ରିୟ ଟିମ୍‌ର ଖରାପ ଭାଗ୍ୟ ପହଞ୍ଚୁଛି । ତେଣୁ ସେ ଖେଳଦେଖିବା ଛାଡିଦେଲେ । କଲେଜରେ ତାଙ୍କର ଆଡ୍‌ଡା ଜମିବ ନିଶ୍ଚିତ ଭାବରେ ପ୍ରତ୍ୟେକ ଦିନ, ଯାହାହେଉନା କାହିଁକି ଆଡ୍‌ଡା ଜମିବ ପ୍ରତ୍ୟେକ ଦିନ ଘଣ୍ଟା ଘଣ୍ଟା ଧରି ।

ସମଗ୍ର ବଙ୍ଗଳା ଯାଇଥାନ୍ତା ଚାଲି ପାକିସ୍ଥାନକୁ । ଯେଉଁମାନେ ଏହାର ବିଭାଜନ କରି ଗୋଟିଏ ଅଞ୍ଚଳ ପଶ୍ଚିମବଂଗକୁ ଭାରତବର୍ଷରେ ରଖିପାରିଲେ, ସେମାନଙ୍କ ମଧ୍ୟରେ ତୁଷାରକାନ୍ତି ସ୍ମରଣୀୟ ହୋଇ ରହିବେ । ଅମୃତ ବଜାର ପତ୍ରିକାର ସ୍ତମ୍ଭରେ ଯେଉଁ ଜନମତ ସର୍ଭେ ହେଲା ତାହାର ଫଳ ହେଲା ବ୍ରିଟିଶ ସରକାର ମାନିବାକୁ ବାଧ ହେଲେ ଯେ ସମଗ୍ର ବଙ୍ଗଳା ପ୍ରଦେଶ ପାକିସ୍ଥାନକୁ ଯାଇପାରିବ ନାହିଁ ।

ତୁଷାରକାନ୍ତି ଖୁବ୍ ଭଲ କୀର୍ତ୍ତନ କରନ୍ତି । ରବୀନ୍ଦ୍ର ସଙ୍ଗୀତ ଗାଇବା ମଧ୍ୟ ତାଙ୍କର ପ୍ରିୟ । ଅନେକ ସମୟରେ ସେ ବନ୍ଧୁମାନଙ୍କୁ ତାହା ଶୁଣାନ୍ତି । ଖବରକାଗଜରେ ଲେଖି ସେ ଆଉ ସ୍ୱତନ୍ତ୍ର ପୁସ୍ତକ ଲେଖିପାରି ନାହାନ୍ତି । ଆପଣାର ଜୀବନର ଅଭିଜ୍ଞତାରୁ ସେ ଦୁଇଟି ମାତ୍ର ପୁସ୍ତକ ଲେଖି ଯାଇଛନ୍ତି ।

ଓଡ଼ିଶା ସହିତ ତାଙ୍କର ସମ୍ପର୍କ ଥିଲା ନିବିଡ଼ । ତାଙ୍କର ନାତିଟିଏ ବିଭା ହୋଇଛି ଅନୁଗୋଳରେ ବସନ୍ତ ଭାଇନା (ମିଶ୍ର)ଙ୍କ ଝିଅକୁ । ଜୀବନର ପରିଣତ ବୟସରେ ସେ ଦେଖିଛନ୍ତି ଯେ ଆର୍ଥିକ ସଙ୍କଟରେ ତାଙ୍କର ପ୍ରିୟ ଖବରକାଗଜ ବନ୍ଦ ହୋଇଯାଇଛି ବର୍ଷ ବର୍ଷ ଧରି । ପରାଧୀନ ଭାରତରେ ଯାହା ସମ୍ଭବ ହୋଇପାରି ନଥିଲା ତାହା ଘଟିଛି ସ୍ୱାଧୀନ ଭାରତରେ । ତଥାପି ସାନ୍ତ୍ୱନା ଏତିକି ଯେ ଆଖି ବୁଜିବା ପୂର୍ବରୁ ସେ ଦେଖି ଯାଇଛନ୍ତି ଏହାର ପୁନଃପ୍ରକାଶନ ।

ପରିଣତ ବୟସରେ ପରଲୋକ ହୋଇଛି । ମୃତ୍ୟୁ ପୂର୍ବରୁ ସେ ଅଜ୍ଞାନ ଅବସ୍ଥାରେ ରହିଲେ କିଛି ଦିନ । ଆଉ କଷ୍ଟ ସହନ୍ତେ କାହିଁକି ? ଇତିହାସରେ ତାଙ୍କର ଭୂମିକା ସରିଯାଇଛି । ରହିବାର ତ ଆଉ କୌଣସି ଆବଶ୍ୟକତା ନାହିଁ । ଏଣିକି ବୁଝିବେ ଉତ୍ତର ପୁରୁଷ । କିନ୍ତୁ ଇତିହାସର ଏକ ଅଧ୍ୟାୟର ସମାପ୍ତି ଘଟିଛି । ସେଇ ଅଧ୍ୟାୟ ଉପରେ ଆପଣାର ଉଜ୍ଜ୍ୱଳ ଆଲେଖ୍ୟ ରହିଛି ତୁଷାରକାନ୍ତିଙ୍କର ।

□□□

# ଅନ୍ଧାରି ମୁଲକର ଦିହୁଡ଼ି

*(ସ୍ୱ ଦୟାନନ୍ଦ ଶତପଥୀ)*

ସେତେବେଳେ ଇମିତି ଅନ୍ଧାର ନଥିଲା । ଅନ୍ଧାର ଥିଲା ଅଫିମିଆ, ଆଇଁଷିଆ, ନିରନ୍ଧ୍ର ଅନ୍ଧକାର । କିନ୍ତୁ ଦିହୁଡି ଥିଲା ବି ଅନେକ । ବହୁ ଯୁବକ ଯୁବତୀ ଆପଣାକୁ ଦିହୁଡି କରିଦେଇ ଆଲୋକ ଯୋଗାଇଥିଲେ- ଆଶାର ଆଲୋକ ।

ଦେଶରେ ଥିଲା ଗୋରା ସାଇବଙ୍କ ରାଜୁତି । ତା' ସହିତ ଗଡଜାତମାନଙ୍କରେ ଥିଲା ଅନ୍ଧାରି ଶାସନ । ଏପରି ଅନେକ ରାଜା ଥିଲେ ଯେଉଁମାନେ ହୁକୁମ ଦେଇଥିଲେ ଯେ ସେମାନଙ୍କ ରାଜ୍ୟରେ 'ଦିନ'କୁ 'ରାତି' କୁହାଯିବ ଏବଂ 'ରାତି' କୁ 'ଦିନ' କୁହାଯିବ । ତେଣୁ ତାଙ୍କ ରାଜ୍ୟରେ ସନ୍ଧ୍ୟାବେଳେ ଲୋକେ ନିଦରୁ ଉଠି ଦାନ୍ତ ଘଷିବେ, ନିତ୍ୟକର୍ମ ସାରିବେ ଏବଂ କାର୍ଯ୍ୟକ୍ରମ ଆରମ୍ଭ ହେବ । ରାଜଦରବାର ବସିବ ମଧ୍ୟରାତ୍ରିରେ । ତାଙ୍କ ରାଜ୍ୟରେ ସେଇଟା ଗଣନା କରାହେବ ମଧ୍ୟାହ୍ନ ଭଳି । ଅନ୍ୟ ଦେଶମାନଙ୍କରେ ଯାହା ହେଉଛି 'ଆମ' ରାଜ୍ୟରେ କ'ଣ ସେଇଆ ହେବ ? ଆମ ରାଜ୍ୟ ସ୍ୱତନ୍ତ୍ର । ଏମିତି ମଧ ରାଜ୍ୟ ଥିଲା ଯେଉଁଠି ଝିଅ ବୋହୂମାନେ ରାଜାଙ୍କ ଗାଡ଼ି ଦେଖିଲେ ପ୍ରାଣ ବିକଳରେ ଦୌଡି ପଳାଉଥିଲେ ବନସ୍ତ ଭିତରକୁ । ଗଡ଼ରେ କେହି ଝିଅ ବୋହୂ ଘରୁ ବାହାରୁ ନଥିଲେ । ରାଜାଙ୍କ ହାବୁଡରେ ପଡିଲେ ରକ୍ଷା ନାହିଁ । କେତେ ଝିଅ ବୋହୂଙ୍କର ଇଜ୍ଜତ ଯାଇଛି, କେତେ ଝିଅ ବୋହୂ ଲଜ୍ଜାରେ ଆତ୍ମହତ୍ୟା କରିଛନ୍ତି । କେତେ ଝିଅ ବୋହୂ ଅତ୍ୟାଚାରିତା, ଧର୍ଷିତା ହୋଇ ପ୍ରାଣ ହରାଇଛନ୍ତି ତା'ର ହିସାବ କିଏ ରଖିଚି ? ଅନ୍ଧାରି ମୁଲକ ଥିଲା ପ୍ରକୃତରେ ଅନ୍ଧାର, ନିବୁଜ, ନିରନ୍ଧ୍ର ଅନ୍ଧକାର ।

ଏଇପରି ଏକ ରାଜ୍ୟ ଥିଲା ବାମଣ୍ଡା ରାଜ୍ୟ । ପ୍ରକୃତି ମେଖଳା, ପର୍ବତ ଘେରା, ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରା ବାମଣ୍ଡା ରାଜ୍ୟ ଥିଲା ଦିନେ ଓଡିଶାର ଅଲୋକ ବର୍ତ୍ତିକା । ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ରାଜୁତିରେ ବାମଣ୍ଡା ରାଜ୍ୟ ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ବହୁ ରାଜ୍ୟର ପଥ ପ୍ରଦର୍ଶକ ଥିଲା । ଓଡିଶାର ବହୁ ଅଞ୍ଚଳରୁ କବି, ଲେଖକ, ବ୍ରାହ୍ମଣ ପଣ୍ଡିତମାନେ ନିମନ୍ତ୍ରିତ ହୋଇ ଆସୁଥିଲେ ବାମଣ୍ଡାକୁ । ପ୍ରଧାନପାଟରେ ରମଣୀୟ ଦୃଶ୍ୟରେ

ମୁଗ୍ଧ କବି ଲେଖକ 'ବସନ୍ତ ନିବାସ'ରେ ଲେଖୁଥିଲେ କାବ୍ୟ, କବିତା, ଉପନ୍ୟାସ । ଗ୍ରୀକ୍ ସାମ୍ରାଜ୍ୟର ଉପକଥା ପରି ଉପବନରେ ଭରି ରହିଥିଲା ଅଗଣିତ ମାର୍ବଲ ମୂର୍ତ୍ତି । ଆଜି ମଧ୍ୟ ଏହାର ଭଗ୍ନାବଶେଷ ପଡିରହିଛି ଇତସ୍ତତଃ ହୋଇ ସେଇଠି । ପୁରାତନ ଯୁଗର ଉଚ୍ଛିଷ୍ଟ ପରି ।

ସାର୍ ବାସୁଦେବ ସୁଦ୍ଧଳ ଦେବ ଗଞ୍ଜାମ ଜିଲ୍ଲା ଜଗନ୍ନାଥ ପ୍ରସାଦରୁ ନିମନ୍ତ୍ରଣ କରି ଆଣିଥିଲେ ଆପଣାର ରାଜ ପୁରୋହିତ ଭାବରେ ଜଣେ ବେଦଜ୍ଞ ପଣ୍ଡିତଙ୍କୁ । ଉକ୍ତ ପଣ୍ଡିତଙ୍କୁ ସେ ଜମି, ବାଡି, ଘର ଦେଇଥିଲେ, ସମ୍ମାନ ମଧ୍ୟ ଦେଇଥିଲେ । କୁଳ ପୁରୋହିତ ଶତପଥୀ ମହାଶୟ ସଂସାର ପାତିଲେ ବାମଣ୍ଡାରେ । ଯଥା ସମୟରେ ତାଙ୍କର ଏକ ପୁତ୍ର ଜନ୍ମ ହୁଏ । ଆଦରରେ ସେ ନାଁ ଦେଲେ ଦୟାନନ୍ଦ । ଦୟାର ସାଗର ହେବ ସେ । ଆନନ୍ଦ ଆଣିଦେବ ତାଙ୍କ ପାଇଁ । ଦୟାନନ୍ଦ ବଢ଼ିଲେ ଏବଂ ପଢ଼ିଲେ ବାମଣ୍ଡାରେ ।

ରାଜୁଡା ଶାସନ ବିରୁଦ୍ଧରେ ବିଦ୍ରୋହର ଅଗ୍ନି ଜଳି ଉଠିଲା । ଗାଁରେ ଗାଁରେ ଡାକ ଶୁଭିଲା କିଏ କେଉଁଠି ଅଛ, ଏକ ହୁଅ । ରାଜମହଲରେ ଆତଙ୍କର ଛାୟା । ଅତ୍ୟାଚାରର ସୁଅ ଛୁଟିଲା ।

କିନ୍ତୁ ଅଗ୍ନି ଲିଭୁ ନାହିଁ । ଦାବାଗ୍ନି ଭଳି ବ୍ୟାପି ଗଲାଣି ବିଦ୍ରୋହ । ଅରଣ୍ୟର ଅଗ୍ନି ଜଳୁଛି । ଜଳୁଛି ମଣିଷ ଭିତରେ ରୋଷର ଅଗ୍ନି । କୁଳବାଳାର ଅରଣ୍ୟର ରୋଦନ ଅଗ୍ନିର ଝଲକରେ ପରିଣତ ହୋଇଛି । କିଏ ଅଛି ଏହା ପଛରେ ? ଏହାର ନାୟକ କିଏ ? ଖୋଜା ପଡିଲା ତାକୁ ।

ନାୟକ ଏହାର ଖବର ପାଇ ଆତ୍ମଗୋପନ କରି ସାରିଲେଣି । ହୁଲିଆ ଜାରି ହେଲା । ଧରି ଆଣ ତାକୁ । ଫାଶିକାଠ ତା' ପାଇଁ ପ୍ରସ୍ତୁତ । ଗାଁ ଗାଁରେ ସେ ବୁଲୁଛି । କେହି ଧରେଇ ଦେଉ ନାହାନ୍ତି । କି ଆଶ୍ଚର୍ଯ୍ୟ ! ପଳାତକ ନାୟକ ହେଉଛନ୍ତି କୁଳ ପୁରୋହିତଙ୍କର ପୁତ୍ର ଦୟାନନ୍ଦ ଶତପଥୀ । କି ଆସ୍ପର୍ଦ୍ଧା ! ଚାଲିଲା ଖୋଜା । ଘାତକ ତାକୁ ଖୋଜି ବୁଲିଲେ । ଗାଁ ଗାଁରେ ତାକୁ ଖୋଜା ଚାଲିଲା । ପଲିଟିକାଲ ଏଜେଣ୍ଟଙ୍କ ପର୍ଯ୍ୟନ୍ତ କଥା ଗଲା । ସମ୍ବଲପୁରରେ ପଲିଟିକାଲ ଏଜେଣ୍ଟ ରହନ୍ତି । ତାରି ଅଦୂରରେ ବାମଣ୍ଡା ରାଜାଙ୍କ କୋଠି, ତାଙ୍କ ନାଟକର ଅନ୍ୟତମ କେନ୍ଦ୍ର । ଦୟାନନ୍ଦ, ପଳାତକ ଦୟାନନ୍ଦ ପଲିଟିକାଲ ଏଜେଣ୍ଟଙ୍କ ପାଖରେ ରାଜ ଅତ୍ୟାଚାରର କାହାଣୀ ଲିପିବଦ୍ଧ କରି ଉପସ୍ଥାପନ କଲେ । ସାରା ଦେଶରେ ଚହଳ ପଡିଗଲା । ଦୟାନନ୍ଦ ଆଉ ବାମଣ୍ଡାକୁ ଫେରି ନାହାନ୍ତି ଦଳେଇପଡାର ଏକ ଘରେ ତାଙ୍କର ବସତି ସ୍ଥାପନ କଲେ । କଂଗ୍ରେସ ଦଳର ଏକ ଜଣାଶୁଣା ନେତା ଭାବରେ ପରିଚିତ ହେଲେ ।

ଭାରତଛାଡ ଆନ୍ଦୋଳନ । ଦୟାନନ୍ଦ ବନ୍ଦୀ ହୁଅନ୍ତି ଏବଂ କାରାଗାର ଭିତରେ ସାମ୍ୟବାଦର ମହାମନ୍ତ୍ରରେ ଦୀକ୍ଷିତ ହୁଅନ୍ତି । ଜେଲଖାନାରୁ ଫେରି ସେ କମ୍ୟୁନିଷ୍ଟ ପାର୍ଟି ଗଠନରେ ବ୍ରତୀ ହୁଅନ୍ତି । ବହୁ ଦୁଃଖ ସହିଛନ୍ତି । ପାରିବାରିକ ଜୀବନ ଆର୍ଥିକ ଦୁର୍ଗତିରେ ବୁଡିଯାଇଛି । କିନ୍ତୁ ଦୟାନନ୍ଦ ଭାଙ୍ଗି ଯାଇନାହାନ୍ତି । ଲୁହା ଇସ୍ପାତରେ ପରିଣତ ହୋଇଛି ।

ସମୟ ଅତିକ୍ରାନ୍ତ ହୋଇଛି । ଦୟାନନ୍ଦ ଶତପଥୀ କମ୍ୟୁନିଷ୍ଟ ପାର୍ଟିର ନେତା । କିନ୍ତୁ ସବୁ ଦଳ ମତ ଗୋଷ୍ଠୀର ଶ୍ରଦ୍ଧାଭାଜନ, ସମ୍ମାନାସ୍ପଦ । ଦୟାନନ୍ଦ ବାବୁଙ୍କୁ ଦେଖିଆସିଛି ପିଲାଦିନରୁ । ଯେମିତି ଥିଲେ ସେମିତି ରହିଛନ୍ତି । ଆଦର, ସ୍ନେହ ସେମିତି ଅତୁଟ ରହିଛି । ଜୀବନରେ ଯେଉଁମାନେ ତ୍ୟାଗ ପାଇଁ, ଆତ୍ମୋତ୍ସର୍ଗ ପାଇଁ, ସାମ୍ୟବାଦର ମହାମନ୍ତ୍ରରେ ଦୀକ୍ଷିତ ପାଇଁ ପ୍ରେରଣା ଦେଇଥିଲେ ସେଇ ଆଦ୍ୟ ଗୁରୁଙ୍କ ମଧ୍ୟରେ ଦୟାନନ୍ଦ ଅନ୍ୟତମ ।

ସେ ଆଉ ନାହାନ୍ତି । ବିଗତ ସପ୍ତାହରେ ତାଙ୍କର ପରଲୋକ ହୋଇଯାଇଛି । କିନ୍ତୁ ସେ ସ୍ମୃତ ହୋଇ ରହିବେ ଅଗଣିତ ଜନ ମାନସରେ ବହୁକାଳ ଧରି ।

□□□

## ଭିନ୍ନ ଏକ ଦୀନବନ୍ଧୁ

### (୰ ଦୀନବନ୍ଧୁ ସାହୁ)

କାଲି ଦୀନବନ୍ଧୁ ସାହୁଙ୍କର ପରଲୋକ ହୋଇଗଲା । ବାଙ୍ଗାଲୋରରେ ତାଙ୍କର କନ୍ୟା ପାଖରେ । ସେତେବେଳେ ଆମେ ବିଭିନ୍ନ ବିଭାବର ଦଳେ ବ୍ୟକ୍ତି ଏକାଠି ହୋଇଥିଲୁ ଦୀନବନ୍ଧୁ ସାହୁଙ୍କର ମରଦେହକୁ କଟକ ଓ କେନ୍ଦ୍ରାପଡା ଆଣିବା ପାଇଁ । କାଲି ସମଗ୍ର ରାତି ଚେଷ୍ଟା ଚାଲିଲା । ପରିଶେଷରେ ଆମ ସମସ୍ତଙ୍କୁ ନିରାଶ ହେବାକୁ ପଡ଼ିଲା । ତାଙ୍କର ମରଦେହ ସେଇଠି ପୋଡ଼ି ପାଉଁଶ ହୋଇଯାଇଛି । ଆମ ସମସ୍ତଙ୍କର ଇଚ୍ଛାର ଜୁଆରରେ ଭଟ୍ଟା ପଡିଗଲା ।

ଦୀନବନ୍ଧୁ ସାହୁ ଗଲା କେତେବର୍ଷ ହେଲା ଜନଜୀବନରୁ ଅପସରି ଯାଇଥିଲେ ବା ନିଜକୁ ଅପସରେଇ ନେଇଥିଲେ । ସେଇଯୋଗୁଁ ସେ କ୍ରମଶଃ ବିସ୍ମୃତ ହୋଇ ଆସୁଥିଲେ ଜନମାନସରୁ । ଜୀବନ ପ୍ରତି ତାଙ୍କର କିମିତି ଏକ ବିତୃଷ୍ଣା ଭାବ ଜନ୍ମଲାଭ କରିଥିଲା । ଜୀବନ, ଯଶ, ସୁନାମ, ପ୍ରତିପତ୍ତି ସବୁ ପ୍ରତି ତାଙ୍କର କିମିତି ଏକ ବୈରାଗ୍ୟ ଦେଖା ଦେଇଥିଲା । ତାଙ୍କର ବିଶାଳ ଲାଇବ୍ରେରୀକୁ ସେ ବିକ୍ରୀ କରିଦେଉଛନ୍ତି ଶୁଣି ମୁଁ ତାଙ୍କୁ ଭେଟିବାକୁ ଯାଇଥିଲି । ଲାଇବ୍ରେରୀ ? ମୁହଁରେ ହସର ଏକ ମ୍ଳାନ ରେଖା ଉକୁଟି ଉଠି ନିଭି ଯାଇଥିଲା । ଜୀବନର ସବୁ ସଞ୍ଚିତ ପଦାର୍ଥକୁ ତ ବିକ୍ରୀ କରିହେବ ନାହିଁ । ତେଣୁ ଲାଇବ୍ରେରୀଟା ଉପରେ ହିଁ ଦୃଷ୍ଟି ପଡିଚି । କ'ଣ ମିଳିବ ଏ ସବୁଥିରୁ, କୌଣସି କଥାର ତ କେହି ଉତ୍ତରାଧିକାରୀ ନାହିଁ, ଖାଲି କ'ଣ ମୋର, ଏ ଦେଶର ଅବସ୍ଥା କ'ଣ ସେଇଆ ନୁହେଁ । ଅନେଇ ଦେଖୁଥିଲି ପ୍ରଥିତଯଶା କୁଶଳୀ ଆଡଭୋକେଟ, ଦକ୍ଷ, ଧୂର୍ତ୍ତ ମନ୍ତ୍ରୀ ଓ କଂଗ୍ରେସ ଦଳର ନେତା ଦୀନବନ୍ଧୁ । ସେଇ ଦୀନବନ୍ଧୁ ନା ଭିନ୍ନ ଏକ ଦୀନବନ୍ଧୁ ବିଦ୍ୟମାନ । ସେଦିନ 'ସମାଜ' ଅଫିସରେ ଆମେ ଯେଉଁମାନେ ଦୀନବନ୍ଧୁ ସାହୁଙ୍କୁ ଖୋଜୁଥିଲୁ ବା ହେଜୁଥିଲୁ ସେମାନେ ଭିନ୍ନ ଭିନ୍ନ ଦୀନବନ୍ଧୁଙ୍କୁ ଖୋଜିଥିଲୁ ବୋଲି ମୋର ମନେ ହେଉଥିଲା ।

ଦୀନବନ୍ଧୁ ସାହୁ ସେଦିନ 'ସମାଜ' ଅଫିସକୁ ଆସିଥିଲେ ବନ୍ଧୁ, ସହକର୍ମୀ ରାଧାନାଥ ବାବୁଙ୍କୁ ଭେଟିବା ପାଇଁ । କହି ଯାଇଥିଲେ ତାଙ୍କୁ । କାହିଁକି ଆପଣ ଏତେ

ବ୍ୟସ୍ତ ? ଏଇ ଯେତେଲୋକ ଆପଣଙ୍କ ପାଖକୁ ଆସିଛନ୍ତି, ଆପଣଙ୍କୁ ପ୍ରଶଂସା କରୁଛନ୍ତି, ସେମାନେ କେହି ଆପଣଙ୍କୁ ଭକ୍ତି ବା ଶ୍ରଦ୍ଧା କରନ୍ତି ନାହିଁ । ସେମାନେ କରନ୍ତି 'ସମାଜ' କାଗଜକୁ । ଲୋକସେବକ ମଣ୍ଡଳର ପର୍ଯ୍ୟାପ୍ତ ଅର୍ଥକୁ । ସେମାନଙ୍କ କବଳରୁ ଆପଣ ଯେତେ ଶୀଘ୍ର ମୁକ୍ତ ହୋଇପାରିବେ ସେତେ ଭଲ । ରାଧାନାଥ ବାବୁଙ୍କୁ ଚମକ ଲାଗିଥିଲା । ସତରେ ତ ! ସେଇକଥା ରାଧାନାଥବାବୁ ବାରମ୍ବାର ବହୁ ଲୋକଙ୍କୁ କହିବାକୁ ଲାଗିଲେ ଏବଂ ସେଇ ରାତିରେ ମଧ୍ୟ ସେ ସ୍ମରଣ କରୁଥିଲେ ସେଇ କଥାକୁ ।

ଦୀନବନ୍ଧୁ ସାହୁ ଜଣେ ପ୍ରସିଦ୍ଧ ମନ୍ତ୍ରୀ ଥିଲେ । କିନ୍ତୁ କେତେ ଦିନ ସେ ମନ୍ତ୍ରୀ ଭାବରେ ସ୍ମରଣୀ ହେବେ ତା' କହିବା କଠିନ । କାରଣ ମନ୍ତ୍ରୀପଦ ସହିତ କ୍ଷମତାଟା ଏପରି ଭାବେ ଜଡିତ ଯେ କ୍ଷମତା ଗଲାପରେ ଆଉ ମନ୍ତ୍ରୀତ୍ୱର କୌଣସି ମୂଲ୍ୟ ରହେ ନାହିଁ । ଦୀନବନ୍ଧୁ ବାବୁ ଜଣେ ପାରଙ୍ଗମ ମନ୍ତ୍ରୀ ଥିଲେ । ପାଇଲଟ ପ୍ରୋଜେକ୍ଟ ହେଉଛି ତାଙ୍କର ଓଡିଶାର ଶିଳ୍ପ ଜଗତକୁ ଦାନ । ଯେଉଁମାନଙ୍କ ହାତରେ ପୁଞ୍ଜି ନାହିଁ ସେମାନେ କିପରି ଶିଳ୍ପ ପ୍ରତିଷ୍ଠା କରି ପାରିବେ ଏବଂ ଓଡିଶାର ଶିଳ୍ପାୟନରେ ସାହାଯ୍ୟକାରୀ ହେବେ ତାହା ହିଁ ଥିଲା ପାଇଲଟ ପ୍ରୋଜେକ୍ଟର ଉଦ୍ଦେଶ୍ୟ । ତା ସଫଳ ହେଲା ନାହିଁ କାହିଁକି ସେ କଥା ସ୍ୱତନ୍ତ୍ର । ଦୀନବନ୍ଧୁ ସାହୁ ଧୂର୍ତ୍ତ, ବାଙ୍ଗରା, ଛୋଟିଆ ମଣିଷଟିଏ । କିନ୍ତୁ ବୁଦ୍ଧି ବିଚକ୍ଷଣ । ଗୋଟାଏ ମନ୍ତ୍ରିମଣ୍ଡଳରେ ସେ ମନ୍ତ୍ରୀ ଥିଲେ । ମନ୍ତ୍ରିମଣ୍ଡଳ ଇସ୍ତଫା ଦେବା କଥା ଶନିବାର ଦିନ । ତା' ଘୁଞ୍ଚିଗଲା ମଙ୍ଗଳବାରକୁ । ଦୀନବନ୍ଧୁବାବୁ କିନ୍ତୁ ସୋମବାର ପାଇଁ କେଶ୍ ନେଇ ସାରିଥିଲେ । ତାଙ୍କର ଡିମାଣ୍ଡର ପରିମାଣ ଏଇଥିରୁ ଅନୁମାନ କରାଯାଇ ପାରେ । ମୁଁ ନିଜେ ଶୁଣିଚି ସେ ବିରେନ୍ ମିତ୍ରଙ୍କୁ କହିଲେ ମୁଁ ବଡ଼ ଅସୁବିଧାରେ ପଡିଲି । ମୁଁ ସୋମବାର ପାଇଁ କେଶ୍ ନେଇ ସାରିଛି । ବିରେନ୍ ମିତ୍ର ତାଙ୍କର ସ୍ୱଭାବ ସୁଲଭ ଭଙ୍ଗୀରେ କହିଲେ କ'ଣ ଲୋଭ ଏତିକି ? ଦୀନବନ୍ଧୁ ବାବୁ ତ ସାଟାୟାର୍ କରିବାରେ ଓସ୍ତାଦ୍ । ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ । ଟାଉଟରି ବ୍ୟବସାୟ ପାଇଁ ତାରିଖ ଦରକାର ନାହିଁ କିନ୍ତୁ ଓକିଲାତି ପାଇଁ ତାରିଖ ଦରକାର ।

ଦୀନବନ୍ଧୁ ସାହୁ ବିଚକ୍ଷଣ ଓକିଲ । ସେ କେବଳ କଂଗ୍ରେସ ଦଳର ଓକିଲ ନୁହନ୍ତି । ସେ କମ୍ୟୁନିଷ୍ଟ ପାର୍ଟିର ମଧ୍ୟ ଓକିଲ । ଅର୍ଦ୍ଧାଉଳିଆ ଚାଷୀମାନଙ୍କର ସଂଗ୍ରାମରେ ତାଙ୍କୁ ମୁଁ ଦେଖିଚି ସାଇକେଲରେ ଯିବାର ଚାଷୀମାନଙ୍କ ତରଫରୁ ମୋକଦ୍ଦମା ଲଢ଼ିବା ଲାଗି । ଶୁଣିଚି ଦୀନବନ୍ଧୁ ସାହୁଙ୍କ କମ୍ୟୁନିଷ୍ଟ ଷଡଯନ୍ତ୍ର ମୋକଦ୍ଦମାରେ ଅଭିଯୁକ୍ତ ଆସାମୀମାନଙ୍କ ପାଇଁ ସାହାଯ୍ୟ କୋର୍ଟ ଭିତରେ ଏବଂ କୋର୍ଟ ବାହାରେ । ପ୍ରସିଦ୍ଧ ବେଜେଲଗେଟ୍ ହତ୍ୟା ମୋକଦ୍ଦମାରେ ତାଙ୍କର ଯୁକ୍ତି ତ ଏକ ଲିଜେଣ୍ଡ୍ । ଗୋଟାଏ ପଟରେ ବିଶାଳକାୟ ଚିନ୍ତାମଣି

ଆଚାର୍ଯ୍ୟ । କଣ୍ଠରୁ ଶବ୍ଦ ବାହାରୁଛି ମେଘ ଘଡ଼ଘଡ଼ି ପରି । ଅନ୍ୟ ପଟରେ ବାଙ୍ଗରା ଛୋଟିଆ ଦୀନବନ୍ଧୁ ସାହୁ । କଥା କହୁଚନ୍ତି ବିନୀତ ଭାବରେ । ଦେଖୁଚି ଦୀନବନ୍ଧୁ ବାବୁଙ୍କୁ ଫଟୋରେ । ସତୀଚଉରା ଶ୍ମଶାନରେ । ଶବ ହେଉଛି ତାଙ୍କର ସହପାଠୀ ଓଡିଶାରେ ସାମ୍ୟବାଦୀ ଆନ୍ଦୋଳନର ଭଗୀରଥ ଭଗବତୀ ଚରଣ ପାଣିଗ୍ରାହୀଙ୍କର । ତାଙ୍କରି ପାଖରେ ବସିଛନ୍ତି ଗଭୀର ଦୁଃଖରେ ଅବନତ ଦୀନବନ୍ଧୁ ସାହୁ । ଦୀନବନ୍ଧୁ ସାହୁଙ୍କର ପୈତୃକ ଘର କେନ୍ଦ୍ରାପଡ଼ା । ଦୀନବନ୍ଧୁ ସାହୁ ଅସିଥିଲେ ଧନାଢ୍ୟ ବ୍ୟବସାୟୀ ପରିବାରରୁ । ତଥାପି ସାଧାରଣ ମଣିଷ ପାଇଁ ଥିଲା ତାଙ୍କର ଦରଦ । ଭାରତବର୍ଷର ମୁକ୍ତି ପାଇଁ ତାଙ୍କର ଥିଲା ଦୁରନ୍ତ କାମନା । କେନ୍ଦ୍ରାପଡ଼ାର ସାମାଜିକ, ରାଜନୈତିକ ଏବଂ ସାଂସ୍କୃତିକ ଜୀବନରେ ତାଙ୍କର ଅଭିଲେଖ ସୁସ୍ପଷ୍ଟ । ତେଣୁ ସେଦିନ ଧାଇଁଥିଲେ ବହୁ ବ୍ୟକ୍ତି କେନ୍ଦ୍ରାପଡ଼ାରୁ ସମାଜ ଅଫିସକୁ, ଦୀନବନ୍ଧୁ ସାହୁଙ୍କର ମର ଦେହକୁ କେନ୍ଦ୍ରାପଡା ନେବା ସକାଶେ ସାହାଯ୍ୟ କରିବା ପାଇଁ ।

ସହଯୋଦ୍ଧା ପ୍ରାଣନାଥ ପଟ୍ଟନାୟକଙ୍କ ପରି ତାଙ୍କ ମରଦେହ ଓଡିଶା ମାଟିକୁ ଆଉ ଆସି ପାରିଲା ନାହିଁ । ଯେଉଁ ମାଟି ପାଇଁ ସେମାନେ ଜୀବନକୁ ଦେଇଗଲେ ସେଇ ମାଟିକୁ ସେମାନେ ଫେରି ପାରିଲେ ନାହିଁ । ଇତିହାସ ପାଲଟିଗଲେ ସେମାନେ ସେଇ ଅନ୍ୟ ରାଜ୍ୟରେ । କେହି ରହିବେ ନାହିଁ । ଏହା ହିଁ ଏକମାତ୍ର ସତ୍ୟ । କିନ୍ତୁ ଦୀନବନ୍ଧୁ ସାହୁଙ୍କୁ ହେଜିଲା ବେଳେ ଆମେ ଖୋଜୁଥିଲୁ ଭିନ୍ନ ଏକ ଦୀନବନ୍ଧୁ ସାହୁଙ୍କୁ ଯିଏ ସ୍ମୃତ ହୋଇ ରହିବେ ବହୁକାଳ । ମନ୍ତ୍ରୀତ୍ୱ ଓ ପ୍ରତିଷ୍ଠାର ମହଲଣ ତାଙ୍କୁ ମଳିନ କରି ପାରିବ ନାହିଁ ।

□□□

## ସ୍ମୃତିରୁ ଖିଏ

*(ଂ ଦୁଃଶାସନ ଜେନା)*

ରାୟଗଡ଼ା ଜିଲ୍ଲାର ଗହନ ଅରଣ୍ୟାନୀ ଭିତରେ । ଶାଳଗଛଗୁଡାକ ଠିଆହୋଇଛନ୍ତି ଆଦିବାସୀ କୁଆଁରୀ ଝିଅ ପରି । ସିଧା, ସଳଖ, ତୀଖ । ଗଲା କେତେଦିନ ହେଲା ଖବରକାଗଜ, ରେଡିଓ, ଟି.ଭି. ସହିତ ସମ୍ପର୍କ ନାହିଁ । ସଭ୍ୟତାର ଏକମାତ୍ର ସନ୍ତକ ପିଚୁରାସ୍ତା ଲମ୍ବିଯାଇଛି ଶାଢ଼ୀର ବର୍ଡର ପରି ପାହାଡ଼ ଦିହରେ । ସେଇଠି ରାସ୍ତାକଡରେ ଚା' ଦୋକାନଟିଏ । ଚା' ହେଉଛି ସଭ୍ୟତାର ଆଉ ଏକ ସନ୍ତକ ଯାହା ପ୍ରବେଶ କରିଛି ଏଇ ନିଷିଦ୍ଧ ମୁଲକରେ । ଚା' ଆଣୁ ଆଣୁ ଆଖି ପଡିଗଲା ଏକ ପୁରୁଣା ଖବରକାଗଜରେ । ସମ୍ବାଦବିହୀନ ରାଜ୍ୟରେ ପୁରାତନ ସମ୍ବାଦ ବି ଆମ ପାଇଁ ନୂତନ । କାଗଜଟି ଉପରେ ଆଖି ପକଉ ପକଉ ଦେଖିଲି ଏକ ସମ୍ବାଦ । ହଠାତ୍ ଚମକ ଲାଗିଲା । ଦୁଃଶାସନ ଜେନା ଆଉ ନାହାନ୍ତି ।

ସଂସାରକୁ ଆସିଲେ ସମସ୍ତଙ୍କୁ ଯିବାକୁ ବାଧ । ମୃତ୍ୟୁକୁ ଏଡିଦେବ କିଏ ? ଦୁଃଶାସନ ଜେନା ସେଇ ନିୟମର ଶିକାର । ବୟସ ଖୁବ୍ ଗୁଡାଏ ହୋଇ ନଥିଲା । ସତୁରୀ ବର୍ଷ କିଛି ଗୋଟାଏ ବୟସ ନୁହେଁ ଅଧୁନାତନ ଯୁଗରେ । ତଥାପି ଦୁଃଶାସନ ବାବୁଙ୍କ ପରଲୋକ କିମିତି ଚମକ ସୃଷ୍ଟି କଲା ।

କାରଣ ଦୁଃଶାସନ ଜେନା ଇମିତି ଏକ ଟ୍ରାଇବ ବା ଗୋଷ୍ଠୀର ମଣିଷ ଯେ ସେମାନଙ୍କ ପରଲୋକ ପରେ ସେଇଭଳି ମଣିଷ ଆଉ ମିଳିବେ ନାହିଁ ।

ଗଲା କେତେ ବର୍ଷ ହେଲା ସେ ରାଜନୈତିକ ଜୀବନ କେବଳ ନୁହେଁ ସାମାଜିକ ଜୀବନରୁ ମଧ୍ୟ ସନ୍ନ୍ୟାସ ନେଇ ଯାଇଥିଲେ । ତାଙ୍କ ଘରେ ତାଙ୍କୁ ଭେଟିବାକୁ ଯିବା ବ୍ୟକ୍ତି ମଧ୍ୟ ଏଇପରି ଏକ ଅନୁଭବ ନେଇ ଆସୁଥିଲେ ଯେ ସେ କାହାରି ସହିତ ସାକ୍ଷାତ କରିବାକୁ ଚାହାନ୍ତି ନାହିଁ । ଚାହାନ୍ତି ଶୋଇ ରହିବାକୁ । କୌଣସି ନିମନ୍ତ୍ରଣକୁ ସେ ଗ୍ରହଣ କରିବାକୁ ଅନିଚ୍ଛୁକ । କୌଣସି ଆଡେ, ଏପରିକି ବୁଲିଯିବା ପାଇଁ ମଧ୍ୟ ନାରାଜ । ଯେଉଁ ପାର୍ଟି ଲାଗି ସେ ସମଗ୍ର ଜୀବନ ବିତାଇଦେଲେ ତାର ନିମନ୍ତ୍ରଣ ମଧ୍ୟ ଘେନିବାକୁ ସେ କୁଣ୍ଠିତ । କାରଣ

ତ ନିଶ୍ଚୟ ଶାରୀରିକ ଅସୁସ୍ଥତା କିନ୍ତୁ ତା' ସହିତ ମାନସିକ ଅସୁସ୍ଥତା ମଧ୍ୟ ଜଡିତ କି ନୁହେଁ ? ମୋ ମନରେ ବି ଏଇ ପ୍ରଶ୍ନ ଉଠିଚି ବାରମ୍ବାର । ସ୍ନାୟୁ ରୋଗର ଅସୁସ୍ଥତା ବୃଦ୍ଧି ପାଇଚି ମାନସିକ ଅସୁସ୍ଥତା ଯୋଗୁଁ । ଏହାର କାରଣ ମୁଁ କହିପାରିବି ନାହିଁ । ତାଙ୍କର ବର୍ତ୍ତମାନର ସହଯୋଦ୍ଧାମାନେ କହିପାରିବେ ।

ଦୁଃଶାସନ ଜେନା ଜଣେ ପ୍ରବୀଣ ଯୋଦ୍ଧା ଥିଲେ । କିନ୍ତୁ ବେଶି ପବ୍ଲିସିଟିର ପ୍ରିୟ ନଥିଲେ । ତାଙ୍କର ସହଯୋଦ୍ଧା ଗଗନ ବିହାରୀ ଜେନାଙ୍କ ପରି । କାମଟା ହେଲା କି ନାହିଁ ସେଇଟା ପ୍ରଥମ କଥା । କିଏ କେତେ ପବ୍ଲିସିଟି ପାଇଲା ସେଇଟା ଗୌଣ । କଟକ ଜିଲ୍ଲାର ମୂଳବସନ୍ତ ଗ୍ରାମ । ସ୍ୱାଧୀନତା ସଂଗ୍ରାମ ଢେଉ ପିଟୁଛି । ଏଇ ଗାଁରୁ ଚାରୋଟି 'ଜେନା' ବାହାରି ଆସିଥିଲେ ଜୀବନର ରାଜପଥକୁ ଭାରତବର୍ଷର ମୁକ୍ତି ପାଇଁ । ସେମାନେ ହେଲେ ନବଘନ ଜେନା, ପ୍ରହ୍ଲାଦ ଜେନା, ଗଗନବିହାରୀ ଜେନା ଏବଂ ଦୁଃଶାସନ ଜେନା ।

ଚାରି ଜେନାଙ୍କ ମଧ୍ୟରୁ ନବଘନ ରାଜନୈତିକ ଦୁଆରକୁ ପୂରା ଓହ୍ଲାଇ ଆସିପାରିଲେ ନାହିଁ । କିନ୍ତୁ ବାକି ତିନିଜଣ ୧ ୯ ୪ ୨ ମସିହା ଭାରତଛାଡ଼ ଆନ୍ଦୋଳନରେ କାରାବରଣ କଲେ । ବ୍ରହ୍ମପୁର ଜେଲ । ସେଇଠି କମ୍ୟୁନିଷ୍ଟ ପାର୍ଟିର ଭିତ୍ତିଭୂମି ଗଢ଼ା ହେଲା । ଅନେକ କଂଗ୍ରେସ କର୍ମୀ ଜେଲଖାନାକୁ ଯାଇଥିଲେ କଂଗ୍ରେସ କର୍ମୀ ହୋଇ କିନ୍ତୁ ଫେରିଲେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇ । ଭାରତର ମୁକ୍ତି କେବଳ ରାଜନୈତିକ ମୁକ୍ତି ନୁହେଁ, ସମାଜବାଦ ଗଢ଼ା ହେଲେ ହିଁ ପ୍ରକୃତ ମୁକ୍ତି, କାରଣ ଅର୍ଥନୈତିକ ମୁକ୍ତି ହିଁ ପ୍ରକୃତ ମୁକ୍ତି । ପ୍ରସିଦ୍ଧ ଅକ୍ଟୋବର ବିପ୍ଳବ ତାଙ୍କୁ ଦେଇଥିଲା ପ୍ରେରଣା । ଫାସିବାଦ ବିରୋଧରେ ସୋଭିଏଟ୍ ଜନସାଧାରଣଙ୍କର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ଏବଂ ବଳିଦାନ ତାଙ୍କୁ ଅନୁପ୍ରାଣିତ କରିଥିଲା ।

ଜେଲରୁ ଖଲାସ ହୋଇ ଦୁଃଶାସନ, ଗଗନବିହାରୀ ଏବଂ ପ୍ରହ୍ଲାଦ କଟକ ଜିଲ୍ଲାର କମ୍ୟୁନିଷ୍ଟ ପାର୍ଟି ଗଠନରେ ଏବଂ କିଷାନ ସଭା ଗଠନରେ ବ୍ୟାପୃତ ହେଲେ । ଏହି ସମୟରେ ହିଁ ଐତିହାସିକ ପଟିଆ ବନ୍ଧ ନିର୍ମାଣ । ଆଜି କମ୍ୟୁନିଷ୍ଟ ପାର୍ଟି ବଡ଼ ହୋଇଥାଇପାରେ; କିନ୍ତୁ ସେତେବେଳେ ଏକ କ୍ଷୁଦ୍ର କମ୍ୟୁନିଷ୍ଟ ପାର୍ଟିର ଏଇ ଯୁବକମାନଙ୍କର ସାଧୁ ଏବଂ ସଚ୍ଚୋଟ କାମ ଯୋଗୁଁ ପଟିଆବନ୍ଧ ନିର୍ମିତ ହୋଇଥିଲା । ପଟିଆ କିଲ୍ଲାରେ କମ୍ୟୁନିଷ୍ଟ ପାର୍ଟି ଯେଉଁ ପ୍ରଭାବ ବିସ୍ତାର କଲା, ତାହାକୁ ଧୋଇ ଶୁଖେଇ କମ୍ୟୁନିଷ୍ଟ ପାର୍ଟି ସରକାରୀ ଆକ୍ରମଣକୁ ପ୍ରତିହତ କରିପାରିଛି, ଭୁବନେଶ୍ୱରରେ ଆପଣା ପ୍ରାର୍ଥୀକୁ ନିର୍ବାଚିତ କରାଇ ପାରିଛି । ଏଇ ପଟିଆ କିଲ୍ଲା ଯୋଗୁଁ ତାହା ସମ୍ଭବ ହୋଇପାରିଛି । ପଟିଆ କିଲ୍ଲା ହୋଇଛି କମ୍ୟୁନିଷ୍ଟ ପାର୍ଟିର ଡାଲ । ଆଜି ଏକ ପଟିଆ ବନ୍ଧ ନିର୍ମାଣ ସମ୍ଭବ କି ? ଠିକ୍ ସେଇପରି ଶଙ୍କରପୁର କଥା । ଏଇ ସବୁର ବିନ୍ଧାଣୀମାନଙ୍କ ଭିତରେ ଅନ୍ୟତମ ଦୁଃଶାସନ ଜେନା ।

ଦୁଃଶାସନ ବାବୁ ମୋର ଜେଲ ସାଥୀ । ଆମେ କାରାଗାର ଭିତରେ ଏକାଠି କାଟିଛୁ ବର୍ଷ ବର୍ଷ । ଦୁଃଶାସନ ଜେନା ଜଣେ ଇଣ୍ଟେଲେକ୍ଚୁଆଲ ଜ୍ୟାଣ୍ଟ ନଥିଲେ କି ସଂଗଠନରେ ପ୍ରବଳ ଶକ୍ତିଶାଳୀ ମଧ୍ୟ ନଥିଲେ । କିନ୍ତୁ ଏଇ ଦୁଇଟିର ମିଶ୍ରଣ ଥିଲେ ସେ । ଏକ ନିଷ୍ଠାପର ନେତା ବା କର୍ମୀ ବିଚଳିତ ସହଜରେ ହୁଅନ୍ତି ନାହିଁ । ତାହେଲେ ଏଇ ମଣିଷ କିପରି ଏତେ ନିରୁଦ୍‌ବେଗ ହୋଇଗଲା ଜୀବନ ପାଖରୁ ?

ଦୁଃଶାସନ ବାବୁ କମ୍ୟୁନିଷ୍ଟ ପାର୍ଟିର ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇଛନ୍ତି ବିଧାନସଭାକୁ । ବିଧାନସଭାରେ ତାଙ୍କର କୃତିତ୍ୱ କେତେ ତା' ମୁଁ କହିପାରିବି ନାହିଁ । କିନ୍ତୁ ବିଧାନସଭା ବାହାରେ ସେ ଜୀବନର ବିଭିନ୍ନ ବିଭାବର ବ୍ୟକ୍ତିଙ୍କୁ ଆପଣାର କେବଳ କର୍ମନିଷ୍ଠା ବଳରେ ଆକୃଷ୍ଟ କରିପାରୁଥିଲେ । ସେମାନଙ୍କ ଭିତରେ ନିଜର ସହକର୍ମୀ ଯେପରି ଅନ୍ତର୍ଭୁକ୍ତ, ଆପଣାର ବିରୋଧୀମାନେ ମଧ୍ୟ ସେଇପରି ଅନ୍ତର୍ଭୁକ୍ତ । ଅଫିସରଙ୍କଠାରୁ ଆରମ୍ଭ କରି କିରାନୀ, ପିଅନ ମଧ୍ୟ ସେ ପରିସରରୁ ମୁକ୍ତ ନୁହନ୍ତି ।

ବିପ୍ଳବ ଏକ ପ୍ରବାହ । ଏହା ପ୍ରବାହିତ ହେଲେ ମଣିଷର ବ୍ୟକ୍ତିଗତ ଦୁଃଖ, କ୍ଲେଶ, ବାଧା, ପ୍ରତିବନ୍ଧକ, ଦୋଷ ଦୁର୍ବଳତା ସବୁ ଆଡ଼େଇ ହୋଇଯାଏ । ପ୍ରଖର ସ୍ରୋତକୁ ବାଟ ଛାଡିଦିଏ ଜୀବନର ଅଳନ୍ଦୁ ବା ଗ୍ଳାନି । କିନ୍ତୁ ପ୍ରବାହ ବନ୍ଦ ହୋଇଗଲେ ତାହା ମ୍ୟୁନିସ୍‌ପାଲିଟିର ନର୍ଦ୍ଦମା ପାଲଟିଯାଏ ।

ଏହି ଅବକ୍ଷୟ ଭାରତବର୍ଷର ସବୁ ରାଜନୈତିକ ଦଳ, ସବୁ ସାମାଜିକ, ରାଜନୈତିକ ଜୀବନକୁ ଗ୍ରାସ କରିଛି । ସମାଜବାଦ ଏକ ମଜୁରୀ ବଢ଼ିବାର ସମାଜ ନୁହେଁ, ଉନ୍ନତ ମଣିଷ ହେବାର୍ ଏକମାତ୍ର ନିଶ୍ଚିତ ପାଥେୟ ହେଉଛି ସମାଜବାଦ । କିନ୍ତୁ ତାହା ତ ହେଉ ନାହିଁ । କର୍ମୀମାନଙ୍କୁ ଅବସାଦ ଘେରିଆସୁଛି ଧୀରେ ଧୀରେ । ନିଜର ପରିବାର, ପୁଅ, ଝିଅ, ଜ୍ୱାଇଁ, ବୋହୂଙ୍କ ଜୀବନ କିପରି ଚାଲିବ ସେଇ ଚିନ୍ତା ଘାରିଛି ବିପ୍ଳବୀମାନଙ୍କୁ । ସମାଜର ସାମୂହିକ, ଗୁଣାତ୍ମକ ପରିବର୍ତ୍ତନ ପାଇଁ ଅଣ୍ଟା ଭିଡିଥିବା ବିପ୍ଳବୀମାନେ କାଳକ୍ରମେ 'ଭଦ୍ରଲୋକ' ପାଲଟିଲେଣି । ସମାଜବାଦର ସର୍ବଶ୍ରେଷ୍ଠ ପରୀକ୍ଷା ସୋଭିଏଟ୍ ୟୁନିୟନ ଭୁଷୁଡି ପଡ଼ିଛି ନିଜର ଭାରାରେ । କ୍ଳାନ୍ତ ଲାଗୁଚି ଜୀବନ । ସ୍ପୃହା ଆଉ ନାହିଁ । ଜୀବନ ସରି ସରି ଆସୁଚି । ଆଗରେ ଦୁଇ ତିନୋଟି ନିର୍ବାଚନକୁ ଗଣି ହେଉଛି । ଆଉ ଆଗକୁ ଆଖି ପାଉ ନାହିଁ । ଆମି କ୍ଳାନ୍ତ, ଆମି ଶ୍ରାନ୍ତ । ସାଥୀ ଦୁଃଶାସନ ସେଥିରୁ ମୁକ୍ତ ନୁହନ୍ତି କି ଆଉ ?

ସେଦିନର ଚାରୋଟି ଜେନାଙ୍କ ମଧ୍ୟରୁ ହଠାତ୍ ପ୍ରହ୍ଲାଦ ଜେନା ଚାଲିଗଲେ । ଖାଲି ଖାଲି ଲାଗିବା ଆରମ୍ଭ ହେଲା । ତାପରେ ଗଗନ ବିହାରୀ । ଜୀବନରେ ସଂଗଠନକୁ ଯିଏ ଆପଣାର ପ୍ରାଣଠାରୁ ବେଶି ଭଲ ପାଉଥିଲା, ସେଇ ଗଗନ ବିହାରୀ ଅନ୍ୟ କେଉଁଠି

ସଂଗଠନ ଗଢ଼ିବାକୁ ଚାଲିଗଲେ କି ଆଉ ? ଜୀବନ ଫାଙ୍କା ଲାଗିବାକୁ ଆରମ୍ଭ କଲା । ତାପରେ ଗଲେ ନବଘନ ଜେନା । ତାଙ୍କ ଶବ ପାଖରେ ଠିଆହୋଇ ମହାଶୂନ୍ୟକୁ ଲକ୍ଷ୍ୟକରି କହୁଥିଲେ, ' ନବଘନ ମୋଠାରୁ ବଡ଼, ସେ ଚାଲିଗଲା । ମୋର ଆଉ କେତେ ଦିନ ?' ଦୁଃଶାସନ ଜେନା ଧୀରେ ଧୀରେ ଅବଶ ହୋଇପଡ଼ିଲେ ଶାରୀରିକ, ମାନସିକ ଏବଂ ରାଜନୈତିକ ତିନି ଦିଗରୁ ।

ପୁଅ ଝିଅଙ୍କୁ ମଣିଷ କରି ସଂସାରରେ ଥଇଥାନ କରିଯାଇଛନ୍ତି । କିନ୍ତୁ ନିଜର ଘର ଖଣ୍ଡିଏ ନାହିଁ ରହିବାପାଇଁ କଟକରେ । ସୁବେଦାର ଲେନ୍‌ରେ ଏକ ଭଡ଼ାଘର । ସେଇଠି ମହାଯୋଦ୍ଧା ଦୁଃଶାସନ ଶୋଇ ରହିଥିଲେ ଆସନ୍ନ ମୃତ୍ୟୁକୁ ଅପେକ୍ଷା କରି କରି । ପାର୍ଟି ନିଷ୍ପତ୍ତି କରିଛି । ସେ ହେଉଛି ବଡ଼ ଭାଇ ଏବଂ ତାର ନିଷ୍ପତ୍ତି କାର୍ଯ୍ୟକାରୀ କରିବାରେ ଦୁଃଶାସନ, ମହାଭାରତର ଦୁଃଶାସନ ପରି ।

୧୯୫୫ ମସିହା, ୧୯୬୦ ମସିହା ବନ୍ୟାବେଳେ ତାଙ୍କୁ ଦେଖିଚି । ଏକ ତ୍ରିକୋଣଭୂମି ଅଞ୍ଚଳ ତାଙ୍କୁ ଦିଆଯାଇଥିଲା । ଚାରି ଦିଗରେ ବନ୍ୟାର ଘୂର୍ଣ୍ଣି । ଦୁଃଶାସନ ସେଠାକୁ ଯାଇଛନ୍ତି । ଆଉ ଫେରି ନାହାନ୍ତି କାର୍ଯ୍ୟ ଶେଷ ନହେଲା ପର୍ଯ୍ୟନ୍ତ । ତାଙ୍କୁ ଦେଖିଚି ୧୯୫୬ ସୀମା ଆନ୍ଦୋଳନ ବେଳେ । କାର୍ଯ୍ୟକ୍ରମର ବ୍ରାସ୍‌ଟାକ୍‌କୁ କାର୍ଯ୍ୟକାରୀ କରିବାରେ ଧୂରନ୍ଧର ବୀର ଦୁଃଶାସନ କିମିତି ଏତେ ଦିନ ଶୋଇ ରହିପାରିଲେ ?

ଜୀବନର ସୂର୍ଯ୍ୟ ଅସ୍ତମିତ । ତା'ପରେ ? କିଛି କାନ୍ଦ, କିଛି ଲୁହ, କିଛି ନିଆଁ ଏବଂ କିଛି ପାଉଁଶ । ଦୁଃଶାସନ କିନ୍ତୁ ସୁହୃଦୟ । ମୃତ୍ୟୁର ଶୀତଳ ସ୍ପର୍ଶରେ ସେ କେତେଦିନ ବଞ୍ଚି ରହିବେ ଜନସ୍ମୃତିରେ କହିହେବ ନାହିଁ । କିନ୍ତୁ ଉତ୍ତର ପୁରୁଷ ତାଙ୍କୁ ହେଜିବେ । ହେଜିବେ ଯେତେବେଳେ ବନ୍ୟା, ବାତ୍ୟା ପ୍ରାକୃତିକ ବିପତ୍ତି ଦେଖାଦେବ, ଯେତେବେଳେ ସଂଗଠନ ଗଢ଼ିବାକୁ ହେବ ଆଗାମୀ ପାଇଁ, ଯେତେବେଳେ ଯୋଦ୍ଧା ଦରକାର ପଡ଼ିବେ ବଳିଦାନ ପାଇଁ ।

□□□

# ସାଧକର ସ୍ମୃତିରେ

## (୰ ଦ୍ୟୁମନ ଭାଇ)

ବୟସ ହୋଇଥିଲା । ନବେ ବର୍ଷ ହୋଇଥିଲା । କିନ୍ତୁ ମାନସିକ ଓ ଶାରୀରିକ ଉଭୟ ଦୃଷ୍ଟିରୁ ସେ ସଂପୂର୍ଣ୍ଣ ସକ୍ଷମ ଥିଲେ । ହଠାତ୍ ବେରାମ ଓ ଦୁଇ ତିନି ଦିନପରେ ମହାଯାତ୍ରା ଦ୍ୟୁମନ ଭାଇ ଆଉ ନାହାନ୍ତି । ଦ୍ୟୁମନ ଭାଇ ଭଳି ଲୋକ ନଥିଲେ ପଣ୍ଡିଚେରୀରେ ଶ୍ରୀ ଅରବିନ୍ଦ ଆଶ୍ରମ ଗଢ଼ା ହୋଇ ପାରି ନଥାନ୍ତା । ଏହି ଆଶ୍ରମରେ ସେ ହେଉଛନ୍ତି ଅନ୍ୟତମ ମୁଖ୍ୟ ସଂଗଠକ । ଯେଉଁମାନେ ବିଶ୍ୱାସ କରନ୍ତି ସେମାନଙ୍କ ମତରେ ଦ୍ୟୁମନ ଭାଇ ଜଣେ ଅଭିପ୍ରେତ ପୁରୁଷ । ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ଆଖିରେ ସେ ଜଣେ ବିଚକ୍ଷଣ ସଂଗଠକ । ଶ୍ରୀ ଅରବିନ୍ଦ ଆଶ୍ରମର ବିରାଟ କମ୍ପ୍ଲେକ୍ସ ଯେଉଁମାନେ ଦେଖିଛନ୍ତି ସେମାନେ ଅନୁଭବ କରିଥିବେ ଏହାର ପୂର୍ଣ୍ଣାଙ୍ଗ ସ୍ୱରୂପ । କଳ୍ପନା ବା କଳ୍ପନା କରାଯାଇଥିଲା ଯେ କିଛି ହଜାର ଅନ୍ତେବାସୀ ଏଇଠି ରହିବେ । ସେମାନଙ୍କର ସବୁ ଆବଶ୍ୟକତା ମେଣ୍ଟାଇବା ପାଇଁ ବ୍ୟବସ୍ଥା ରହିଛି । ରହିବା ପାଇଁ ବିଭିନ୍ନ ପ୍ରକାରର ଗୃହ ରହିଛି । ଖେଳିବା ପାଇଁ ପଡିଆ ରହିଛି । ଖାଇବା ପାଇଁ ଡାଇନିଂ ହଲ ରହିଛି । ରୋଷେଇ ପାଇଁ ଜଗନ୍ନାଥ ମନ୍ଦିର ମହାପ୍ରସାଦ ପ୍ରସ୍ତୁତି ପ୍ରଣାଳୀର ଆଧୁନିକ ଢାଞ୍ଚାରେ ପ୍ରେସର କୁକର ରହିଛି । ଗୋଟିଏ ଗୋଟିଏ ପ୍ରେସର କୁକରରେ ୫୨ କେ.ଜି. ଚାଉଳ ରନ୍ଧା ଯାଇପାରିବ । କସରତ ପାଇଁ ଜିମ୍ନାସିଅମ ଅଛି । ବହି ଛାପାହେବା ପାଇଁ ଆଧୁନିକ ଧରଣର ହାତ ତିଆରି କାଗଜ ବ୍ୟବସ୍ଥା, ସର୍ବାଧୁନିକ ଅଫ୍‌ସେଟ୍ ପ୍ରିଣ୍ଟିଂର ବ୍ୟବସ୍ଥା ରହିଛି । ଅନ୍ତେବାସୀମାନଙ୍କର ସାଇକେଲ ଥିବ, ମୋଟରଗାଡି ଥିବ । ସେଥିପାଇଁ ସାଇକେଲ ମରାମତି ବ୍ୟବସ୍ଥା, ଆଧୁନିକ ମୋଟର ଗ୍ୟାରେଜ ରହିଛି । ବାସନ ଧୋଇବା ପାଇଁ ଗରମ ପାଣି, ଥଣ୍ଡା ପାଣି ବୋହି ଯାଉଛି । ପ୍ଲେଟ୍ ଧୁଆ ହେଉଛି ସଂପୂର୍ଣ୍ଣ ବୈଜ୍ଞାନିକ ପଦ୍ଧତିରେ । ଧୂପକାଠି ଦରକାର ହେବ । ସେଥିପାଇଁ ଧୂପକାଠି କାରଖାନା, ବାସନ ଦରକାର ହେବ, ସେଥିପାଇଁ ବାସନ ତିଆରି କାରଖାନା,ଶାଢ଼ୀ ଦରକାର ହେବ, ସେଥିପାଇଁ ଶାଢ଼ୀ ଉତ୍ପାଦନ କେନ୍ଦ୍ର ସଂଗଠିତ ହୋଇଛି । କଦଳୀ, ଧାନ ଦରକାର ସେଥିପାଇଁ 'ଗ୍ଲୋରିଆ'

ରହିଛି । ଫୁଲ ଦରକାର ସେଥିପାଇଁ ଫୁଲ ବଗିଚା ରହିଛି । ଅତିଥି, ଭକ୍ତମାନେ ଆସିବେ ଦେଶ ବିଦେଶରୁ । ସେଥିପାଇଁ ବିଭିନ୍ନ ଧରଣର, ବିଭିନ୍ନ କିସମର ଗେଷ୍ଟ ହାଉସ ରହିଛି । ମୋଟ ଉପରେ ସମସ୍ତଙ୍କ ପାଇଁ ଆବଶ୍ୟକୀୟ ସବୁ ସାମଗ୍ରୀର ବ୍ୟବସ୍ଥା ରହିଛି । ଏହା କ'ଣ ଦିନକରେ ସମ୍ଭବ ହେଲା ? ବିନା ପରିଶ୍ରମ, ବିନା ତ୍ୟାଗରେ ସମ୍ଭବ ହେଲା ? ନା, ଅନେକ ଲୋକଙ୍କର ତ୍ୟାଗ, ନିଷ୍ଠା, ପରିଶ୍ରମ ଯୋଗୁଁ ହିଁ ଏହା ସମ୍ଭବ ହୋଇ ପାରିଛି । ତାହାର ଶୀର୍ଷରେ ଯେପରି ଶ୍ରୀମା, ସେଇପରି ଏହାର ମୂଳରେ ହେଉଛନ୍ତି ଦ୍ୟୁମନ ଭାଇ ।

ଦ୍ୟୁମନ ଭାଇ, ସମସ୍ତଙ୍କର ଦ୍ୟୁମନ ଭାଇ । ନିରଳସ, ଲମ୍ବା ମଣିଷଟିଏ । ଏକଦା ଗୁଜରାଟରେ ତାଙ୍କର ନିବାସ ଥିଲା । କ'ଣ କରୁଥିଲେ ବୋଲି ପଚାରିଲେ ହସନ୍ତି ସେସବୁ ପଚାରି ଲାଭ କ'ଣ ? ସେସବୁ ତ ହଜି ଯାଇଛି । ସବୁ ଛାଡ଼ି ଆସିଚି ।

ଶ୍ରୀ ଅରବିନ୍ଦ ଆଶ୍ରମ ଗଢ଼ା ହୋଇ ସାରିଲା ପରେ ରହୁଥିବା ଅନ୍ତେବାସୀମାନେ ସ୍ୱର୍ଗୀୟ ଅବଦାନ ଇତ୍ୟାଦି କଥା କହନ୍ତି । ଏହା ଗଠନ ହେବା ପାଇଁ ଯେତେ ଯେପରି ମର୍ତ୍ତ୍ୟ ଅପେକ୍ଷା ସ୍ୱର୍ଗର ଅବଦାନ ବେଶି ।

କିନ୍ତୁ ଶ୍ରୀ ଅରବିନ୍ଦ ଆଶ୍ରମର ସଂଗଠନ ଇତିହାସ ପଢ଼ିଲେ ବିସ୍ମିତ ହେବାକୁ ପଡେ । ଶ୍ରୀମା ଆପଣାର ଗହଣା ବିକିଛନ୍ତି । ଉପବାସ ରହିଛନ୍ତି । ଦ୍ୟୁମନ ଭାଇ ତାର ସବୁ ଗଚ୍ଛିତ ଧନକୁ ବ୍ୟୟ କରିଛନ୍ତି । ଆପଣାର କଠୋର, କ୍ରମାଗତ, ନିଷ୍ଠାପର ପରିଶ୍ରମର ଫଳ ହେଉଛି ଶ୍ରୀ ଅରବିନ୍ଦ ଆଶ୍ରମ । ଦ୍ୟୁମନ ଭାଇ ହେଉଛନ୍ତି ତାହାର ସଂଯୋଜକ ।

ଦ୍ୟୁମନଭାଇଙ୍କୁ କିଛୁ ପଚାରିଲେ ସେ ବିନୀତ ଭାବରେ କହନ୍ତି ଯେ ସେ ନିମିତ୍ତ ମାତ୍ର । ସବୁ ସେଇ ଶ୍ରୀମାଙ୍କର ଇଚ୍ଛା ଓ ନିର୍ଦ୍ଦେଶ ।

ମୋତେ ସେଦିନ ସାଙ୍ଗରେ ନେଇ ବାହାରିଛନ୍ତି ଶ୍ରୀ ଅରବିନ୍ଦ ଆଶ୍ରମ ଦେଖାଇବା ପାଇଁ । କିନ୍ତୁ ନା ଅଛି ଅହମିକା, ନା ଅଛି ଗର୍ବ । ସ୍ରଷ୍ଟା ସେ ନୁହନ୍ତି, ଶକ୍ତି ତାଙ୍କର ନାହିଁ । ସବୁର ସ୍ରଷ୍ଟା ସେଇ, ଶକ୍ତି ବି ତାଙ୍କର । ଏଇ ହେଉଛି ଦ୍ୟୁମନ ଭାଇର ବିଶ୍ୱାସ । ଡାଇନିଂ ହଲରୁ ଆରମ୍ଭ ହେଲା ଆମର ଯାତ୍ରା । ସରିଲା ଗ୍ଲୋରିଆରେ । ପ୍ରଚଣ୍ଡ ଖରା । ପଣ୍ଡିଚେରୀରେ ଭୀଷଣ ଗରମ । କିନ୍ତୁ ଦ୍ୟୁମନ ଭାଇ ଅବିଚଳ । ବୟସ ଯେପରି ତାଙ୍କୁ ଛୁଇଁ ନାହିଁ । ମୁଣ୍ଡରେ ଏକ ପୁରୁଣା ସୋଲ ଟୋପି । ହାତରେ ଗୋଟାଏ ବ୍ୟାଗ । ସାଥୀ ଆମେ ଦୁଇଜଣ । ବନ୍ଧୁ ବିଶ୍ୱମ୍ଭର ସାମନ୍ତ ଏବଂ ମୁଁ । ଦିନ ୧୧ଟାରୁ ଯାତ୍ରା । ସରିଲା ସନ୍ଧ୍ୟାକୁ । ସେ ଆସିଲେ ସିଧା ଜିମନାସିଅମ୍ ପଡିଆକୁ । ସବୁ ଯାଗାରେ ଅଟକିଛନ୍ତି ଦ୍ୟୁମନ ଭାଇ, ସବୁ ଉତ୍ପାଦନ କେନ୍ଦ୍ର, ହଷ୍ଟେଲ,ଗେଷ୍ଟ ହାଉସ । ଗୋଟିଏ ବି ବାଦ ପଡ଼ିଲା ନାହିଁ । କ୍ଲାନ୍ତି ବି ଛୁଇଁ ନାହିଁ ତାଙ୍କୁ ।

ଆପଣ ଏଇ ବୟସରେ କିମିତି ଏତେ କାମ ପରି ପାରୁଛନ୍ତି ? ମୋର ପ୍ରଶ୍ନ । ସବୁ ତା'ର ଇଚ୍ଛା । ଦ୍ୟୁମନ ଭାଇଙ୍କ ଉତ୍ତର । ମୁଁ ପ୍ରତ୍ୟେକ ଦିନ ହଜାର ହଜାର ମନିଅର୍ଡର ଗ୍ରହଣ କରେ । ଗୋଟିଏ ମନିଅର୍ଡର ପାଇଁ ଯଦି ପାଞ୍ଚମିନିଟ୍ ସମୟ ଲାଗେ । ତା'ହେଲେ ମଧ୍ୟ ଦିନକରେ ତ ତାହା ସରିବ ନାହିଁ । ତେବେ ମୁଁ ସମୟ ପାଏ କେଉଁଠୁ ? ମୋ ଆଖିରେ ଜିଜ୍ଞାସାର ଚିହ୍ନ ଦେଖି ସେ କହିଲେ ଯେ ମା'ର ଇଚ୍ଛାରେ ମୁଁ ସବୁ କାମ ସାରିଦିଏ । ମାତ୍ର କେଇ ଘଣ୍ଟାରେ ।

ଦ୍ୟୁମନ ଭାଇ ଆସିଥିଲେ ଏରସମା ଏକାଧିକ ଥର । ଚିଠି ଲେଖିଥିଲେ ପାଞ୍ଚ ଛଅଟି । ସଂକ୍ଷିପ୍ତ ଚିଠି । କିନ୍ତୁ ପ୍ରତ୍ୟେକଟିରେ ଏକ ବାର୍ତ୍ତା ରହିଛି । ହାତରେ ଲେଖା ।

ଆମ ବନ୍ଧୁ ଏ ପର୍ଯ୍ୟନ୍ତ ଶ୍ରୀମାଙ୍କ କୋଠରୀକୁ ଯାଉନାହାନ୍ତି । କାହିଁକି ତାହା ଆପଣ ତାଙ୍କୁ ପଚାରନ୍ତୁ ବିଶ୍ୱମ୍ଭର କହିଲେ ଦ୍ୟୁମନ ଭାଇକୁ । ଦ୍ୟୁମନ ଭାଇ ମୋତେ ଅନେଇଲେ । ମୁଁ କଥାଟା ବାଆଁରେଇ ଦେବାକୁ ଚେଷ୍ଟା କଲି । କାଳେ ଏମ୍ବାରାସିଙ୍ଗ ହେବ ବୋଲି । ସେ କହୁଛନ୍ତି ଶ୍ରୀମାଙ୍କ ପ୍ରକାଶ ଦେଖିବା ପାଇଁ ତାଙ୍କ କୋଠରୀକୁ ଯିବା ଦରକାର ନାହିଁ । ଆଶ୍ରମର ପ୍ରତିଟି ଯାଗାରେ ତା'ର ପ୍ରକାଶ ଦେଖିବାକୁ ମିଳେ । ଦ୍ୟୁମନ ଭାଇର ଆଖିରେ ଲୁହ । ତମେ ଠିକ୍ କହିଛ । ଶ୍ରୀମାଙ୍କୁ ଦେଖିବା ପାଇଁ, ଜାଣିବା ପାଇଁ, ଅନୁଭବ କରିବା ପାଇଁ ତାଙ୍କ କୋଠରୀକୁ ଯିବା ଦରକାର ନାହିଁ ।

ଦ୍ୟୁମନ ଭାଇ ଆଉ ନାହିଁ । ସମୟର ରଥଚକ୍ର ତାର ସ୍ମୃତିକୁ ପୋଛି ଦେବାକୁ ଚେଷ୍ଟା କରିବ । ସେ ଇତିହାସର ବସ୍ତୁ ହୋଇଯିବ । କିନ୍ତୁ ଶ୍ରୀ ଅରବିନ୍ଦ ଆଶ୍ରମରେ ତାର ସ୍ମୃତି ରହିବ ଚିରକାଳ । କାରଣ ସେ ଏହାକୁ ଗଢ଼ିଛି ଆପଣାର ଲୁହ ଲହୁ ଏବଂ ଝାଳରେ ।

❑❑❑

# ପ୍ରତିଭାର ବିସ୍ମୃତ କୁଙ୍କୁମ

## (୰ ଦେବ ମହାପାତ୍ର)

ଦେବ ମହାପାତ୍ର ଆଉ ନାହାନ୍ତି । ଲେଖକ, ଶିଳ୍ପୀ, ଅଭିନେତା ଦେବ ମହାପାତ୍ର ଓଡ଼ିଶାରେ ବର୍ତ୍ତମାନ ଏକ ବିସ୍ମୃତ ଚରିତ୍ର । ଗଲା ବହୁବର୍ଷ ଧରି ସେ ଦିଲ୍ଲୀରେ ଅବସ୍ଥାନ କରୁଥିଲେ । ସଙ୍ଗୀତ ନାଟକ ଏକାଡେମୀରୁ ଅବସର ନେଲା ପରେ ସେ ଆଉ ଓଡିଶା ଫେରିନାହାନ୍ତି । ଗ୍ରେଟର କୈଳାଶରେ ସେ ଆପଣାର ସ୍ତ୍ରୀ, ପୁତ୍ର ଏବଂ ଦୁଇ କନ୍ୟାଙ୍କ ସହିତ ରହୁଥିଲେ । ସେଇଠି ତାଙ୍କ ସାଙ୍ଗରେ ଶେଷ ସାକ୍ଷାତ୍ । ଯୌବନରେ ସେ ଯେମିତି ସ୍ପନ୍ଦିତ ଥିଲେ ବାର୍ଦ୍ଧକ୍ୟରେ ମଧ୍ୟ ସେ ସେହିପରି ସ୍ପନ୍ଦିତ ଥିଲେ । ଜରା ତାଙ୍କୁ ଛୁଇଁ ନଥିଲା । ଦୁଇ ଝିଅ, ପୁଅ, ପତ୍ନୀ ଚାରିପଟରେ ଘେରି ବସିଥିଲେ । ଯାଇଥିଲି ଅଳ୍ପ ସମୟ ପାଇଁ । କିନ୍ତୁ ରହିଯିବାକୁ ହେଲା ଅନେକ ସମୟ । ବହୁଦିନ ପରେ ଦେଖା । ଦେବବାବୁ ଉଖାରୁଥିଲେ ଅତୀତ ଦିନର କାହାଣୀ । ଗପ ଜମିଥିଲା । ପରିବାରର ଅନ୍ୟମାନେ ତାକୁ ବେଶ୍ ଉପଭୋଗ କରୁଥିଲେ । କାରଣ ସେ ଅତୀତ ସହିତ ସେମାନଙ୍କର ପରିଚୟ ନଥିଲା । ପତ୍ନୀ ନିରୂପମା ତିଆରି କରୁଥିଲେ ପିଠା ଏବଂ ଚାହା । ଝିଅ କୃଷ୍ଣା, ଜ୍ୟୋତ୍ସ୍ନା ପୁତ୍ର ସତ୍ୟେନ୍ ଘେରି ବସିଥିଲେ ଏବଂ ଶୁଣୁଥିଲେ ଗଳ୍ପ ।

ଦେବ ବାବୁଙ୍କର ପିତୃ ପିତାମହ ବୋଧହୁଏ ଜଗତସିଂହପୁର ଅଞ୍ଚଳର । କିନ୍ତୁ ପିତା ଭାଗୀରଥୀ ଦାସ ଯାଇ ଅନୁଗୋଳରେ ବସତି ସ୍ଥାପନ କରିଥିଲେ । ଅନୁଗୋଳ ଟାଉନ ଅମଲାପଡ଼ାରେ ତାଙ୍କର ଘର । ଅଭିନେତା ଗୋବିନ୍ଦ ତେଜଙ୍କ ପରିବାର ତାଙ୍କର ପଡ଼ୋଶୀ । ଦେବ ବାବୁ ପୁଅ ହୋଇ ଯାଇଥିଲେ ପିଲାଦିନେ । ସେଇଯୋଗୁଁ ତାଙ୍କର ସାଙ୍ଗିଆ ମହାପାତ୍ର ।

ବଡ଼ ଭାଇ ଅନୁଗୋଳରେ ଶିକ୍ଷକ । ସାନ ଭାଇ ଧୀରେନ୍ ଦାସ ଓଡିଶାର ପ୍ରସିଦ୍ଧ ଲୋକନାଟର ଗବେଷକ । କିଛି ଦିନ ତଳେ ତାଙ୍କର ପରଲୋକ ହୋଇଯାଇଛି ଭୁବନେଶ୍ୱରରେ । ଓଡିଶାର ଲୋକ-ନାଟକ ଦରିଦ୍ର ହୋଇଯାଇଛି ତାଙ୍କର ବିୟୋଗରେ । ସବା ସାନଭାଇ ରବି ଜୀବନବୀମା ବିଭାଗରୁ ଅବସର ନେଇ ଭୁବନେଶ୍ୱରରେ । ବୈଚିତ୍ର୍ୟମୟ ଦେବ ମହାପାତ୍ରଙ୍କର ପ୍ରତିଭା, ସେହିପରି ବୈଚିତ୍ର୍ୟମୟ ତାଙ୍କର ଜୀବନ ।

ଏଇପରି ଏକ ଜୀବନ ଯାହା ଦୁଇଥର ମୃତ୍ୟୁମୁଖରୁ ଉବୁରି ନୂତନ ଜୀବନ ପାଇଥିଲା ତାହା ବିନା ବୈଚିତ୍ର୍ୟରେ ବିଦାୟ ନେଲା କିମିତି ?

ଦେବ ମହାପାତ୍ର ମାଟ୍ରିକ୍ ପାସ୍ କରି ବନ୍ୟ ବିଭାଗରେ ଡ୍ରାଫ୍ଟସ୍‌ମ୍ୟାନ ଭାବରେ ଯୋଗ ଦିଅନ୍ତି । ରସେଲ କୋଣ୍ଡା (ବର୍ତ୍ତମାନର ଭଞ୍ଜନଗର) ରେ ତାଙ୍କର ପୋଷ୍ଟିଂ ହୁଏ । ଦରମା ବୋଧହୁଏ ମାସକୁ କୋଡିଏ ଟଙ୍କା । ଅବଶ୍ୟ ସେତେବେଳେ ପାଇଁ ଯଥେଷ୍ଟ ଥିଲା । ସୁନା ଭରି ମଧ ସେଇ ସମୟରେ ଗଞ୍ଜାମରେ କୋଡିଏ ଟଙ୍କା । ଦେବ ବାବୁ ସୁଟ୍ ପିନ୍ଧନ୍ତି ଏବଂ ମୁଣ୍ଡରେ ଦିଅନ୍ତି ଫେଲ୍ଟକ୍ୟାପ୍ । ଚେହେରା ସୁଦର୍ଶନ । ବନ୍ୟ ବିଭାଗରେ ତଳିଆ କର୍ମଚାରୀ, କିନ୍ତୁ ତାଙ୍କର ଦୋସ୍ତି କାହା ସହିତ ସବୁ ? ଦେବ ବାବୁ ଅଭିନୟ କରନ୍ତି । ପୁଣି ଫିମେଲ ରୋଲ୍ କରିବାରେ ସେ ଧୁରନ୍ଧର । ସେତେବେଳେ ନାରୀମାନେ ଅଭିନୟକୁ ଓହ୍ଲେଇ ନାହାନ୍ତି । ତେଣୁ ଏଇ 'ଫିମେଲ' ମାନଙ୍କର କାଟ୍‌ତି ବହୁତ । ଡ୍ରାମା ହେବ ଭଞ୍ଜନଗରରେ, ଆସିକାରେ, ଛତ୍ରପୁରରେ ଏବଂ ବ୍ରହ୍ମପୁରରେ । ଦେବବାବୁଙ୍କୁ ଡାକରା ପଡ଼େ । ଡାକରା ଦିଅନ୍ତି କମିଶନର୍, କଲେକ୍ଟର୍ ପ୍ରଭୃତି । ନ ହେଲେ ତ୍ରୁଟି ମିଳିବ କୁଆଡୁ ? ଦେବ ବାବୁ ବଢ଼ିଆ ତାସ୍ ଖେଳନ୍ତି । ବ୍ରିଜ୍, ଅକ୍ସନ୍ ଏବଂ କଣ୍ଟ୍ରାକ୍ଟ ଉଭୟ । ଭଞ୍ଜନଗରକୁ ଆସନ୍ତି ବଡ଼ ବଡ଼ ଅଫିସର । ସନ୍ଧ୍ୟା ନଇଁ ଆସେ । ଖେଳ ପାଇଁ ପାର୍ଟନର ଦରକାର ପଡ଼େ । କିଏ ଖେଳିବାକୁ ବସିବ ? ଦେବ ମହାପାତ୍ରଙ୍କୁ ଡାକରା ପଡ଼େ । ଡ୍ରାଫ୍‌ଟସମ୍ୟାନ୍‌ର ପାର୍ଟନର କମିଶନର । ଭଞ୍ଜନଗରରେ ଥାଏ ଏକ ଟେନିସ କୋର୍ଟ, ବ୍ୟାଡ୍‌ମିଣ୍ଟନ କୋର୍ଟ । ଅତିଥିମାନେ ଆସିଛନ୍ତି । ଖେଳିବେ ଟେନିସ୍ ବ୍ୟାଡ୍‌ମିଣ୍ଟନ । ତାଙ୍କର ସ୍ତ୍ରୀମାନେ ଖେଳିବେ ବ୍ୟାଡ୍‌ମିଣ୍ଟନ । କିଏ ଖେଳିବ ସେମାନଙ୍କ ସାଙ୍ଗରେ ? ଡାକ ଦେବ ମହାପାତ୍ରଙ୍କୁ । ଦେବବାବୁ ଥିଲେ ଜଣେ ଉଚ୍ଚକୋଟୀର ଫଟୋଗ୍ରାଫର । ଅଫିସରଙ୍କ ଝିଅ ପାଇଁ ବିବାହ ପ୍ରସ୍ତାବ ଆସିଛି । ଫଟୋ ଦରକାର । ଡାକ ଦେବବାବୁଙ୍କୁ । ଡାକରା ପଡେ ବହୁ ପିତାମାତାଙ୍କ ଠାରୁ ।

ସେଇଯୋଗୁଁ ଦେବ ମହାପାତ୍ର ଏକ ଦିଗରେ ଖୁବ୍ ଜନପ୍ରିୟ ଏବଂ ଅନ୍ୟ ଦିଗରେ ଅନେକଙ୍କର ଈର୍ଷାର ଶିକାର । ବହୁ ତରୁଣୀଙ୍କର ହୃଦସ୍ପନ୍ଦନ ମଧ । ସେତିକିବେଳେ ସେଇ ଭଞ୍ଜନଗରଠାରୁ ଅଦୂରରେ କୁଲାଡ ଗ୍ରାମର ଏକ ଫରେଷ୍ଟ ଗାର୍ଡ । ଭଞ୍ଜନଗର ଆସିଲେ ରହିବା ପାଇଁ । ଚାଉଲ୍‌ଟ୍ରି (ଧର୍ମଶାଳା) ବା ଆଜିର ଭଞ୍ଜକ୍ଲବ ଆଗରେ ଯାଇଥିବା ରାସ୍ତାରେ ଥିଲା କିଛି ବାରବନିତାଙ୍କର ଘର । ସେଇଠି ସେ ରହେ ଏବଂ ପରିଚିତ ହୁଏ ଏକ ବାରବନିତାର ଅପୂର୍ବ ସୁନ୍ଦରୀ କନ୍ୟା କୃଷ୍ଣା ସହିତ । ଦେବ ବାବୁଙ୍କର ମଧ ସେଇ ସମୟରେ କୌଣସି ଏକ ଅଫିସରଙ୍କ କନ୍ୟା ସହିତ ପରିଚିତ ହୁଏ । ଦେବ ମହାପାତ୍ରଙ୍କ ତରଫରୁ ତାହା ପ୍ରଣୟ ବା ପ୍ରେମ ଥିଲା କି ନାହିଁ କହିହେବ ନାହିଁ, କିନ୍ତୁ ଉକ୍ତ କନ୍ୟାର ଉନ୍ମାଦନା

ଥିଲା ବେଶି । ଏହା ଫଳରେ ଦେବ ମହାପାତ୍ର ହେଲେ ଉପରିସ୍ଥ ହାକିମମାନଙ୍କର ଚକ୍ଷୁଶୂଳ, ଶରବ୍ୟ ।

ଦିନେ ଦେବ ମହାପାତ୍ର ଅନ୍ତର୍ଦ୍ଧାନ ହୋଇଗଲେ ଭଞ୍ଜନଗରରୁ । କୁଆଡ଼େ ଗଲେ କହିହେବ ନାହିଁ । ଦୈବଯୋଗକୁ ଠିକ୍ ସେତିକିବେଳେ ଉପରଲିଖିତ ଫରେଷ୍ଟ ଗାର୍ଡ ଉକ୍ତ କୃଷ୍ଣାଙ୍କ ସହିତ ମଧ୍ୟ ଉଭାନ ହୋଇଗଲେ । ସେ ସିଦ୍ଧିଲାଭ କରି ପରେ ଅଭିରାମ ପରମହଂସ ନାମରେ ବିଦିତ ହେଲେ ଏବଂ କରମଙ୍ଗାରେ ଆପଣାର ଆଶ୍ରମ ପ୍ରତିଷ୍ଠା କଲେ । ବନ୍ୟ ବିଭାଗ ସହିତ ସିଦ୍ଧିଲାଭ ପୂର୍ବ ଜୀବନ ଜଡିତ ଥିବାରୁ ବନ୍ୟ ବିଭାଗର ଅନେକ ଅଫିସର ତାଙ୍କର ଭକ୍ତ ପାଲଟିଗଲେ ।

ଦେବ ମହାପାତ୍ରଙ୍କର ସନ୍ଧାନ ମିଳିଲା କିଛି ବର୍ଷପରେ । ସେ ସିନ୍ଧିଆ ନାଭିଗେଶନ କମ୍ପାନୀରେ ଯୋଗ ଦେଇଥାନ୍ତି । ହାସ୍ୟରସାତ୍ମକ ଗଳ୍ପ ଲେଖିବାରେ ସେ ଓଡିଶାରେ ଖ୍ୟାତି ଅର୍ଜନ କରନ୍ତି । 'ଡଗର' ପରିବାରର ସେ ଅନ୍ତର୍ଭୁକ୍ତ ହୋଇଯାଆନ୍ତି । ବ୍ୟଙ୍ଗାତ୍ମକ ନିର୍ଘୋଷ କିନ୍ତୁ ଶାଣିତ ଲେଖା ଲେଖିବାରେ ସେ କୁଶଳତା ଅର୍ଜନ କରନ୍ତି । ଲେଖକ ଭାବରେ ତାଙ୍କର ଖ୍ୟାତି ଓଡିଆ ସାହିତ୍ୟରେ ନୂତନ ଯୁଗର ସଂଚାର କରେ । କାରଣ ଏହି ପ୍ରକାର ଲେଖା ଓଡିଆ ସାହିତ୍ୟରେ ବହୁତ କମ୍, ବିଶେଷତଃ ଅଧୁନାତନ ଯୁଗରେ । ଫତୁରାନନ୍ଦ, ଚୌଧୁରୀ ହେମକାନ୍ତ ମିଶ୍ର, ସୁନୀଲ ମିଶ୍ର ଇମିତି କେତେଜଣଙ୍କ ନାମ ଆଙ୍ଗୁଠି ପବରେ ଗଣି ହୋଇଯିବ ।

ଦେବ ମହାପାତ୍ର ବମ୍ବେରେ ଖ୍ୟାତି ଅର୍ଜନ କରନ୍ତି । ସେଠାରେ ଓଡିଆ ସମାଜ ପ୍ରତିଷ୍ଠା କରନ୍ତି । ଭାଇ ଧୀରେନଙ୍କର ନାଟ୍ୟ ପ୍ରତିଭା ଦେଖି ତାଙ୍କୁ ନେଇଯାଆନ୍ତି ବମ୍ବେ ତାଲିମ ଦେବା ପାଇଁ । ଦେବ ବାବୁଙ୍କ ଦୃଷ୍ଟିକୋଣ ଥିଲା ପ୍ରଗତିଶୀଳ । ସେଇଯୋଗୁଁ ସେ ଇପଟା (ଇଣ୍ଡିଆନ ପିପୁଲସ୍ ଥିଏଟର ଆସୋସିଏସନ), ପ୍ରଗତିଶୀଳ ଲେଖକ ସଂଘ ସହିତ ସାମିଲ ହୋଇଥିଲେ । ପ୍ରେମଚାନ୍ଦଙ୍କଠାରୁ ଆବାସ, ଦୁର୍ଗାଖୋଟେଙ୍କଠାରୁ ବଲରାଜ ସାହନୀ, ଅମ୍ରିତ ଶେରଜିଲ୍‌ଙ୍କ ଠାରୁ ଆରମ୍ଭ କରି ରବିଶଙ୍କରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ତାଙ୍କର ପରିଚିତି ଥିଲା ।

ସେ 'କୁଙ୍କୁମ' ନାମରେ ଏକ ପତ୍ରିକା ପ୍ରକାଶ କରନ୍ତି । ଏଇ ପତ୍ରିକା ଅନନ୍ୟ ସାଧାରଣ । ଏହାର ଲେଖା ଯେପରି ସ୍ୱତନ୍ତ୍ର, ପରିପାଟୀ ବି ସେଇପରି ସ୍ୱତନ୍ତ୍ର । ଏହା ଓଡିଆ ଲିପିରେ ଲିଥୋ ହୋଇ ପ୍ରକାଶ ପାଉଥିଲା । ହାତ ଲେଖା ଭଳି ଦେଖାଯାଏ । ସେଇଥିରେ ଥାଏ ହାସ୍ୟରସାତ୍ମକ, ବିଦ୍ରୂପାତ୍ମକ କବିତା, ଗଳ୍ପ, ଅନୁବାଦ । ଓଡିଶାରେ ତଥା ଓଡିଆ ସାହିତ୍ୟର ପାଠକମାନଙ୍କ ପାଖରେ ଏହା ବେଶ୍ ଆଦୃତ ଲାଭ କଲା । ବିକ୍ରୀଲବ୍ଧ କେତେ ଟଙ୍କା ମିଳିଲା ତାହା କହିବା କଠିନ କାରଣ ଓଡିଶାରେ ପାଠକ କମ୍

ଏବଂ କ୍ରେତା ଖୁବ୍ ନଗଣ୍ୟ । ମାଗଣା ପଢ଼ିବା ପାଇଁ ସମସ୍ତଙ୍କ ଆଗ୍ରହ । ପତ୍ନୀ ନିରୂପମା ଆଙ୍କନ୍ତି ଚିତ୍ର ଦେବ ବାବୁ ଏବଂ ଅନ୍ୟମାନଙ୍କର ଲେଖା ଉପରେ । ରେଖାଚିତ୍ର ।

ତଥାପି । ଦେବ ବାବୁ ଲେଖନ୍ତି । ଦିନେ ରାତିରେ ସେ ଏକ ଗଳ୍ପ ଲେଖିଥିଲେ । ଗଳ୍ପଟିର ବିଷୟବସ୍ତୁ ଏଇପରି ଥିଲା । ରାତିରେ ଚୋର ପଶିଛି ଘରେ । ଘରଣୀ ନାହାନ୍ତି । କେବଳ ଦେବ ବାବୁ ଅଛନ୍ତି । ଲାଇନ କଟି ଯାଇଛି । ଘରେ ଆସବାବ ବା ସମ୍ପତ୍ତି ତ କିଛି ନାହିଁ । ସ୍ତ୍ରୀଙ୍କର କିଛି ମଇଳା ଲୁଗା ମାତ୍ର ଅଛି । ଦେବ ବାବୁ ଏବଂ ଚୋରର ଗପ ଆରମ୍ଭ ହେଲା । ଚୋରକୁ ଦୂରରେ ଥିବା ଏକ ଚୌକୀରେ ବସିବାକୁ କହି ଦେବ ବାବୁ କହିବାକୁ ଲାଗିଲେ । ଚୋର ମହାଶୟ, ଆପଣଙ୍କର ଆଜି କ୍ୟାପିଟାଲସ୍ । ମୋ ସ୍ତ୍ରୀଙ୍କର କିଛି ମଇଳା ଲୁଗା ଛଡା ଆଉ କିଛି ନାହିଁ ଘରେ । କ୍ଷାନ୍ତ୍ରାଗ୍ରତାକ କିନ୍ତୁ ମାସିକ ରତୁ ବେଳର ଲୁଗା । ଆପଣ କ'ଣ ତାକୁ ନେବେ ? ଇତ୍ୟାଦି । ଗପ ଆଉ ପୂରା ମନେ ପଡୁନାହିଁ ।

ଗପ ଲେଖି ଦେବ ବାବୁ ଶୋଇବାକୁ ଗଲେ । ସେଇ ରାତିରେ ରିଭଲ୍‌ଭର ହାତରେ ଏକ ଡାକୁ ଦଳ ଦେବ ବାବୁଙ୍କ ଘରେ ପଶିଲେ । ସବୁ ଚୋରି ହୋଇଗଲା । ଦେବ ବାବୁ ରିଭଲ୍‌ଭର ଗୁଳିରେ ଆହତ ହେଲେ । ତାଙ୍କ ଛାତି ଭିତରେ ତିନୋଟି ଗୁଳି ପଶିଥିଲା । ଦୈବାତ୍ ସେଗୁଡିକ ଆଉ ପଟକୁ ଭେଦି ନଥିଲା । ଅସ୍ତ୍ରୋପଚାରରେ ଗୋଟିଏ ଗୁଳି ବାହାରି ଗଲା । କିନ୍ତୁ ବାକି ଦୁଇଟି ରହିଗଲା ଛାତି ଭିତରେ ଏକ୍ସରେରେ ଧରାପଡ଼େ । କିନ୍ତୁ ଅସ୍ତ୍ରୋପଚାରରେ ମିଳେନା । ପରିଶେଷରେ ଡାକ୍ତର ନିଷ୍ପତ୍ତି କଲେ ଯେହେତୁ ଉକ୍ତ ଦୁଇଟି ଗୁଳି କୌଣସି କ୍ଷତି ଆପାତତଃ କରୁ ନାହିଁ ସେହିହେତୁ ସେଗୁଡ଼ିକୁ ଛାଡ଼ି ଦିଆଯାଉ ସେଇପରି । ଦେବ ମହାପାତ୍ରଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ସେଇଭଳି ଗୁଳି ଦୁଇଟି ଛାତିରେ ରଖିଯିବାକୁ ପଡ଼ିଲା ।

ଦେବ ବାବୁ ଆହତ । ସ୍ତ୍ରୀ ମଧ୍ୟ ଆହତ । ଚିକିତ୍ସା ଚାଲିଲା ଅନେକ ଦିନ ଧରି । ସ୍ତ୍ରୀ ହେଉଛନ୍ତି ଐତିହାସିକ ପରମାନନ୍ଦ ଆଚାର୍ଯ୍ୟଙ୍କର କନ୍ୟା । ପୂର୍ବତନ ଭୂଗୋଳ ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଅଧ୍ୟାପକ ସତ୍ୟେନ୍ଦ୍ର ନାଥ ଆଚାର୍ଯ୍ୟଙ୍କର ଭଉଣୀ । ଦେବ ବାବୁଙ୍କର ଜୀବନରେ ଏକ ବିପର୍ଯ୍ୟୟ ଦେଖାଗଲା । ବହୁ ଦିନଧରି ଚିକିତ୍ସା । ଅର୍ଥାଭାବ । ବନ୍ଧୁମାନେ ଆଉ ଦେଖା ମିଳୁ ନାହାନ୍ତି । କୁଙ୍କୁମ ବନ୍ଦ । ସେ ବାବଦର ପ୍ରାପ୍ୟ ମଧ୍ୟ କେହି ଦେଉ ନାହାନ୍ତି । ଆଶାବାଦରେ ପରିପୂର୍ଣ୍ଣ ହାସ୍ୟବସଳ ଦେବ ମହାପାତ୍ର ହଠାତ୍ ଆସ୍ତିକ ପାଲଟିଗଲେ । ପରାଜୟବାଦ ତାଙ୍କୁ ଗ୍ରାସ କଲା । ଆପଣାର ଉପବୀତକୁ ସେ କାନ୍ଧରେ ନପକାଇ ଟୋପି ଭିତରେ ରଖୁଥିଲେ କେବଳ ବାପାଙ୍କୁ ଦେଖିଲେ ପଇତା ପକେଇ ଦେବା ପାଇଁ । ସେଇ ଦେବ ମହାପାତ୍ର ବର୍ତ୍ତମାନ ?

ହଠାତ୍ ଦେଖାଯାଏ ଦେବ ମହାପାତ୍ରଙ୍କୁ କରମଳା ମଠରେ । ଅଭିରାମ ପରମହଂସଙ୍କ ସହିତ ତାଙ୍କର ପରିଚିତି ଥିଲା ପୂର୍ବରୁ । ତାହା ହିଁ ବୋଧହୁଏ ତାଙ୍କୁ ଅଭିରାମ-ଆଶ୍ରିତ ହେବା ପାଇଁ ସାହାଯ୍ୟ କଲା । ଦେବ ମହାପାତ୍ର ଏକ ଭିନ୍ନ ମଣିଷ ହୋଇଗଲେ । କରମଳା ମଠରେ କିଛିକାଳ କଟିଗଲା । ଦେବ ବାବୁଙ୍କର ସମୟ ଜଟେ ଧ୍ୟାନରେ, ପଠନରେ । ଦିନେ ହଠାତ୍ । ଦେବ ମହାପାତ୍ର ଘୋଷଣା କଲେ ଯେ ତାଙ୍କର କାଲି ଭଗବାନଙ୍କ ସହ ସାକ୍ଷାତ ହୋଇଛି । ସେ ଅଭିରାମ ପରମହଂସଙ୍କୁ ଅନୁରୋଧ କଲେ ତାଙ୍କୁ ପରମହଂସ ଭାବରେ ଘୋଷଣା କରିବା ପାଇଁ । ଭଗବାନଙ୍କର ସାକ୍ଷାତ ପାଇଥିବା ବ୍ୟକ୍ତିମାନଙ୍କୁ ପରମହଂସ ନାମରେ ନାମିତ କରାଯାଏ । କିନ୍ତୁ ଅଭିରାମ ପରମହଂସ ତାହା କରିବା ପାଇଁ ନାରାଜ । ତାଙ୍କର ଯୁକ୍ତି ହେଲା ସେ ହିଁ ଏକମାତ୍ର ବ୍ୟକ୍ତି ଯେ କି ଠାକୁରଙ୍କର ଦର୍ଶନ ପାଇବା ପାଇଁ ଉପଯୁକ୍ତ । ସେ ସିଦ୍ଧି ତାଙ୍କର ଅଛି । ଅନ୍ୟ କାହାରି ନାହିଁ । ଦେବ ବାବୁଙ୍କ ସହ ଅଭିରାମ ପରମହଂସଙ୍କର ମତଭେଦ ହେଲା । ସେ କରମଳା ଛାଡ଼ିଲେ ।

ଏତେବେଳକୁ ପତ୍ନୀ ଭୁବନେଶ୍ୱର ଲକ୍ଷ୍ମୀସାଗର ପାଖରେ ଥିବା ହୋମ୍ ଇକନମିକ୍ ସେଣ୍ଟରରେ କାମ କରି ପରିବାର ପୋଷଣ କରୁଛନ୍ତି ।

ଦେବ ବାବୁ ଆପଣାକୁ ପରମହଂସ ନାମରେ ନାମିତ କରି ଜଗତସିଂହପୁର ଅଞ୍ଚଳରେ ତୁଳସୀପତ୍ର ମାଧ୍ୟମରେ ଅଟୋ-ସଜେସନ୍ ଜରିଆରେ ରୋଗ ଭଲ କରିବାକୁ ଲାଗିଲେ । ଭିଡ଼ ଜମିଲା । ଭଗବାନଙ୍କୁ ବିଶ୍ୱାସ କରୁଥିଲେ କୁହ ଯେ ଭଗବାନଙ୍କ ଆଶୀର୍ବାଦରୁ ମୁଁ ଭଲ ହୋଇ ଯାଉଛି । ଭଗବତ୍ ବିଶ୍ୱାସ ନଥିଲେ କୁହ ଯେ ପ୍ରକୃତିର ଦୟାରୁ ମୁଁ ଭଲ ହୋଇଯାଉଛି । ସବୁ ରୋଗରୁ ତମେ ମୁକ୍ତି ପାଇଯିବ । କିଛି କିଛି ସାଇକୋସୋମାଟିକ୍ ରୋଗ ଏଥିରେ ଭଲ ହେବା ମୁଁ ଜାଣେ । କିନ୍ତୁ ଅନ୍ୟମାନେ ତ ମାନସିକ ଶାନ୍ତି ପାଇବେ ।

ହଠାତ୍ ପୁଣି ଦିନେ ଦେବ ବାବୁ ସେଠାରୁ ଉଭାନ ହୋଇଗଲେ । ଏବଂ ପ୍ରାୟ ଦେଢ଼ ବର୍ଷ ପରେ କଟକ ସହରରେ ତାଙ୍କୁ ଏକ କମର୍ସିଆଲ୍ ଆର୍ଟିଷ୍ଟ ଭାବରେ ଦେଖାଗଲା । ରାଜାବଗିଚା ଲେବର କଲୋନୀ ନୂଆ ନୂଆ ଗଢ଼ା ହୋଇଥାଏ । ସେଇଠାରେ ଘରଟିଏ ଭଡ଼ା ନେଇ ସେ ରହିଥାନ୍ତି । ସ୍ତ୍ରୀ କନ୍ୟାଙ୍କ ସହିତ ପୁନର୍ମିଳନ ହୋଇଥାଏ ।

ଏଇ ସମୟରେ ଭାରତୀୟ ସଙ୍ଗୀତ ନାଟକ ଏକାଡେମୀ ଜଣେ ଷ୍ଟେଜକ୍ରାଫ୍ଟର ଅଧ୍ୟାପକ ପାଇଁ ବିଜ୍ଞାପନ ଦିଅନ୍ତି ଏବଂ ଦେବ ମହାପାତ୍ର ସେଥିପାଇଁ ମନୋନୀତ ହୁଅନ୍ତି, ବିନା ସୁପାରିଶରେ କେବଳ ଆପଣାର ପ୍ରତିଭା ବଳରେ । ସର୍ବଭାରତୀୟ ପ୍ରତିଯୋଗିତାରେ ପ୍ରଥମ ହୁଅନ୍ତି । ଦିଲ୍ଲୀ ତାଙ୍କର ଗୃହ ପାଲଟିଯାଏ ସେଇଦିନୁ ।

ସେଇଠାରେ ସେ ମନୋନୀତ ହୁଅନ୍ତି ଜାପାନ ଯିବା ପାଇଁ ଉଚ୍ଚ ଶିକ୍ଷା ସକାଶେ । ଜାପାନରେ ଏକ ଦ୍ୱୀପରେ ସେ ରହି ତାଲିମ ପାଉଥାନ୍ତି । 'ଭେରା' (Vera) ନାମକ ଏକ ଭୟାନକ ଝଡ଼ ଫଳରେ ଉକ୍ତ ଦ୍ୱୀପଟି ପୂରା ବୁଡିଯାଏ ସାଗର ତରଙ୍ଗରେ । ବହୁ ବ୍ୟକ୍ତି ମୃତ୍ୟୁବରଣ କରନ୍ତି । ଦେବ ମହାପାତ୍ର ନିଖୋଜ । ସମସ୍ତେ ଧରି ନିଅନ୍ତି ଯେ ସେ ଆଉ ଜୀବିତ ନାହାନ୍ତି । କିନ୍ତୁ କିଛି ଦିନ ପରେ ସାଗର ବକ୍ଷରେ ଅଚେତ ଅବସ୍ଥାରେ ତାଙ୍କୁ ଏକ କାଠପଟା ଉପରେ ଭାସୁଥିବା ଅବସ୍ଥାରେ ଉଦ୍ଧାର କରାଯାଏ । ସେ ଉଦ୍ଧାର ପାଇ କଣ୍ଟେଇ ନୃତ୍ୟରେ ତାଲିମ ଶେଷ କରି ଫେରନ୍ତି ଭାରତବର୍ଷକୁ । ୟୁନେସ୍କୋ ତରଫରୁ ସେ ଏଇ ବୃତ୍ତି ପାଇଥିଲେ ।

ଜୀବନର ବିପର୍ଯ୍ୟୟ କେବଳ ତାଙ୍କ ପାଖରେ ସୀମିତ ରହେ ନାହିଁ କନ୍ୟାକୁ ବିବାହ ଦିଅନ୍ତି ସିଂହଭୂମିର ଏକ ନୌ ଇଂଜିନିଅର ସହିତ । ସ୍ୱାମୀ ସ୍ତ୍ରୀ ହନିମୁନ୍ ଯାପନ କରନ୍ତି ସାଗର ବକ୍ଷରେ । ବିବାହ ସଦ୍ୟ ମାତ୍ର । ହଠାତ୍ ସାଗର ବକ୍ଷରେ ଜାମାତା ମୃତ୍ୟୁବରଣ କରନ୍ତି ଏବଂ କନ୍ୟା ଜାମାତାର ମୃତ ଦେହକୁ କୋଳରେ ରଖି ପହଞ୍ଚେ କିଛିଦିନ ପରେ କଲିକତାରେ । କି ଭୟାନକ ଦୃଶ୍ୟ ! ଦେବବାବୁ, ତାଙ୍କର ସମୁଦି ଅପେକ୍ଷା କରନ୍ତି କଲିକତାରେ । ପୁତ୍ରର ମୃତ ଦେହକୁ ନେଇ ସମୁଦି ଯାଆନ୍ତି ନିଜ ଘରକୁ ଶେଷକ୍ରିୟା ପାଇଁ । ଦେବବାବୁ କନ୍ୟାକୁ ନେଇ ଫେରିଆସନ୍ତି ଦିଲ୍ଲୀକୁ ଛାତିକୁ ପଥର କରି । କନ୍ୟାକୁ ସେ ଆଉ ଦୁଃଖରେ ସଢ଼ିବାକୁ ଦେବା ପାଇଁ ପ୍ରସ୍ତୁତ ନୁହନ୍ତି । ସେଇ କନ୍ୟା ବଢ଼ିଲା ତାଙ୍କ ପାଖରେ । ଏବେ ସେ ଦୂରଦର୍ଶନରେ ଇଂରାଜୀ ସମ୍ବାଦର ଉଦ୍‌ଘୋଷିକା । ଦି'ଚାରି ବର୍ଷ ତଳେ ସେ ବିବାହ କରିଛି । ଦେବବାବୁଙ୍କର ପୁତ୍ର ସତ୍ୟେନ ଜଣେ ସାମ୍ବାଦିକ । ଦେବବାବୁ ଥିଲେ ଷଷ୍ଠ ଆନ୍ତର୍ଜାତିକ ଏବଂ ୨୪ ତମ ଜାତୀୟ ଚଳଚ୍ଚିତ୍ର ଉତ୍ସବରେ ଅନ୍ୟତମ ବିଚାରକ ।

ଦେବ ମହାପାତ୍ରଙ୍କ ସମ୍ପର୍କରେ କାହାଣୀ ସରିଯାଇଚି । ପତ୍ନୀ ବଢ଼ାଇ ଦେଉଛନ୍ତି ଚା କପ୍, ଏହାପରେ ବିଦାୟ ନେବି । ଦେବବାବୁ ଛାଡିବାକୁ ନାରାଜ । ପାକୁ, (ମୋ ଡାକ ନାଁ । ଏଇ ନାଁରେ ଆଉ ଖୁବ୍ କମ ଲୋକ ଡାକିବାକୁ ଅଛନ୍ତି ପୃଥିବୀରେ) । ତୁ ରହିଯାଉନୁ । ପତ୍ନୀ ପ୍ରତିବାଦ କଲେ । କ'ଣ ତାଙ୍କୁ ତମେ ତୁ ବୋଲି ଡାକୁଚ ।

ଦେବବାବୁ ଅନେଇଲେ ଆକାଶକୁ, ଅତୀତକୁ । ତାକୁ ମୁଁ କ'ଣ ବୋଲି ଡାକିବି ? ତାକୁ ପରା କାନ୍ଧରେ ପକାଇ ଚାଲିଛି ମୁଁ । ତମେ କ'ଣ ଜାଣିଚ ସେ ଦୁରାରୋଧ ଜୀବନର କାହାଣୀ !

ସେଇ ଦେବ ମହାପାତ୍ର ଆଉ ନାହାନ୍ତି ।

ꟷꟷꟷ

# ଅଭିନେତାର ଶେଷ ଅଭିନୟ

*(ଧୀର ବିଶ୍ୱାଳ)*

ଧୀର ନାହିଁ । ଚମକ ଲାଗିଲା ଦିହରେ, ମନରେ । ଏଇ ଏବେ ଦେଖା ହୋଇଥିଲା ଏକ ବନ୍ଧୁମିଳନରେ । ଝଡି ଯାଇଥିଲା, କିନ୍ତୁ ଚିଣ୍ଣାଳ ବଡିଫ୍ରେମ୍ ଥିଲା ସେଇପରି । କାଲି କୁଆଡେ ଦିନଯାକ ସେ ନନ୍ଦନକାନନରେ କଟାଇଥିଲେ, ପିଲାପିଲିଙ୍କ ସହିତ, ନାତି ନାତୁଣୀଙ୍କ ସହିତ । ତାପରେ ଖାଇ ପିଇ ଦେଖୁଥିଲା ଟି.ଭି । ହଠାତ୍ ଛାତିରେ ଯନ୍ତ୍ରଣା । ଆଉ ତା'ପର ମୁହୂର୍ତ୍ତକୁ ନାହିଁ । ଅଭିନେତା ତାର ଶେଷ ଅଭିନୟ ସାରି ବାହୁଡ଼ିଗଲା । ସେକ୍ସପିଅରଙ୍କର All the world is a stage where men are actors and women are actresses. ସତେ ଯେମିତି ଧୀର ଭଳି ମଣିଷ ପାଇଁ ଲେଖା ଯାଇଥିଲା ଏଇ ବାକ୍ୟ ।

ଧୀର ସୟଦ ସେମିନାରୀରେ ପଢୁଥିଲା । ଆଜି କେହି ବିଶ୍ୱାସ କରିବେ ନାହିଁ ଧୀର, କବି ମୁରାରୀ ମୋହନ ଜେନା ଏବଂ ପ୍ରହ୍ଲାଦ ସେଠୀ ମିଶି ଆମ ସାଙ୍ଗରେ ବାମପନ୍ଥୀ ମୁଖପତ୍ର ' ମୁକ୍ତିଯୁଦ୍ଧ' ବିକ୍ରୀ କରୁଥିଲେ ରାଜରାସ୍ତାରେ । ମୁରାରୀ ମୋହନ ଗଲେଣି । ଏବେ ଧୀର ଚାଲିଗଲା । ପହଲି ସେଠୀ ରହିଯାଇଛନ୍ତି ରାଜନୀତିର ଲୁତାଜାଲରେ କେଉଁ ଗାଁ କଣରେ । ଧୀରର ରକ୍ତରେ ଥିଲା ଅଭିନୟ । ନିଖିଳ ଭାରତ ଛାତ୍ରସଂଘର ସାଂସ୍କୃତିକ କାର୍ଯ୍ୟକ୍ରମରେ ଧୀର ଅଂଶଗ୍ରହଣ କରୁଥିଲେ ସେଇ ସ୍କୁଲ ଜୀବନରୁ ।

ଧୀର ମୋ'ଠାରୁ ଦୁଇ ବର୍ଷ ତଳେ ପାଠ ପଢୁଥିଲେ । ମୁଁ ରେଭେନ୍ସା କଲେଜକୁ ଆସିଲା ବେଳକୁ ସେ ସୟଦ ସେମିନାରୀର ଛାତ୍ର । ତାପରେ ସେ ଆସନ୍ତି ରେଭେନ୍ସା କଲେଜକୁ । ସେଇ କଲେଜ ତାଙ୍କ ପାଇଁ ନୂତନ ଦିଗନ୍ତ ଉନ୍ମୋଚିତ କରେ । ସେ ରେଭେନ୍ସା କଲେଜର ଡ୍ରାମାଟିକ୍ ସେକ୍ରେଟାରୀ ହୁଅନ୍ତି । ସେତେବେଳେ ଡ୍ରାମାଟିକ ସୋସାଇଟି ପ୍ରତିବର୍ଷ ନାଟକ ଆୟୋଜନ କରୁଥିଲା ଏବଂ ସେଥିରେ ତରୁଣ ଅଭିନେତା ଅଭିନେତ୍ରୀମାନେ ଅଭିନୟର ପହିଲି ପାହାଚ ଦେଇ ଯାଉଥିଲେ ସାଫଲ୍ୟ, ଭବିତବ୍ୟର ପ୍ରତିଷ୍ଠା ପାଇଁ । ଧୀର ତ ଅଭିନୟ ଆରମ୍ଭ କରିଥିଲେ ଆଗରୁ । ବର୍ତ୍ତମାନ ତାହା ପାକଳ

ହେଲା । ସେ ନିର୍ଦ୍ଦେଶନା ଦେବା ଆରମ୍ଭ କଲେ । ରେଭେନ୍‌ସା କଲେଜ ବହୁ ଛାତ୍ରଙ୍କର ଭବିତବ୍ୟକୁ ରୂପାୟିତ କରିଥିଲା । ଧୀର ସେମାନଙ୍କ ମଧ୍ୟରେ ଅନ୍ୟତମ । ଏଇ ସମୟରେ ଧୀର 'ସପ୍ତଶଯ୍ୟା' ଚଳଚ୍ଚିତ୍ରରେ ଅଭିନୟ କରିବାପାଇଁ ଇଣ୍ଟରଭିଉ ଦେବାକୁ ଯାଆନ୍ତି ଢେଙ୍କାନାଳ । ବେଶ୍ ଗପ ଜମାନ୍ତି ଧୀର ସବୁବେଳେ ଏଇ ଇଣ୍ଟରଭିଉର ରୋମାଞ୍ଚକର ଅଭିଜ୍ଞତା ବର୍ଣ୍ଣନା କରି । ଢେଙ୍କାନାଳର ତତ୍‌କାଳୀନ ଟିକି ସାହେବ ଏଇ ଚଳଚ୍ଚିତ୍ର ନିର୍ମାଣ କରୁଥିଲେ । ସେଦିନ କଟକର ପରିତ୍ୟକ୍ତ ଦୂରଦର୍ଶନ କେନ୍ଦ୍ରର ବନ୍ଧୁମିଳନରେ କାମାକ୍ଷା ପ୍ରସାଦ ସିଂହଦେ ଓ ଧୀର ବିଶ୍ୱାଳଙ୍କୁ ନିମନ୍ତ୍ରଣ କଲାବେଳେ ମୁଁ ସେଇ ପୁରୁଣା ଗପଟି କହିବାରେ ଉଭୟ କାମାକ୍ଷା ଏବଂ ଧୀର ହସି ଉଠିଲେ । ଚମକ ଲାଗିଥିଲା । କାରଣ ଧୀରର ସେଇ ଉଦାତ୍ତ କଣ୍ଠର ହସ ନଥିଲା । କ'ଣ ହେଲା ଧୀରର ? ପଚାରିଥିଲି । ସେ ହସିଲା କେବଳ ।

ଧୀରର ପରବର୍ତ୍ତୀ ଜୀବନ ସାଫଲ୍ୟ ଏବଂ ପ୍ରତିଷ୍ଠାର କାହାଣୀ । ତାହା ସମସ୍ତେ ଜାଣନ୍ତି । ଓଡିଆ ଚଳଚ୍ଚିତ୍ରର ଦ୍ରୋଣାଚାର୍ଯ୍ୟ ଧୀର । ଚଳଚ୍ଚିତ୍ରର ଅଭିନୟ, ନିର୍ଦ୍ଦେଶନା ଏବଂ ପ୍ରଡ୍ୟୁସର ସବୁ ବିଭାବକୁ ସେ ସ୍ପର୍ଶ କରିଯାଇଛି ଏବଂ ସବୁଥିରେ ଆପଣାର ଆଲେଖ୍ୟ ରଖିଯାଇଛି । ଉତ୍ପଳ ଦତ୍ତ, ରାଜକପୁରଙ୍କ ଭଳି ସେ ଗମ୍ଭୀର ଚରିତ୍ରରେ ଯେପରି ନିଖୁଣ ଅଭିନୟ କରିଛି ହାସ୍ୟୋଦ୍ଦୀପକ ଚରିତ୍ରରେ ମଧ୍ୟ ସେଇପରି ସାଫଲ୍ୟ ଅର୍ଜନ କରିଛି । ଏହା ବୋଧହୁଏ ତା' ପାଇଁ ଏକ ସ୍ୱତନ୍ତ୍ର ସମ୍ମାନ ଆଣି ଦେଇଛି, ଯାହା ଅନ୍ୟମାନେ ପାଇନାହାନ୍ତି । ଧୀର ସାଙ୍ଗରେ କୁଆଡକୁ ଗଲେ ସମସ୍ତଙ୍କ ଆଖିରେ ପଡିବାଟା ନିଶ୍ଚିତ ହୋଇଯାଏ । କାରଣ ସବୁ ପୁଅ ଝିଅ ନିଶ୍ଚୟ ଧୀରକୁ ଅନେଇବେ, ଏହା ସ୍ୱତଃସିଦ୍ଧ । ମନେପଡୁଚି । ଥରେ ଏକ ଭୋଜିକୁ ଆମେ ଦୁହେଁ ସାଙ୍ଗ ହୋଇ ଯାଉଥିଲୁ । ସେ ଏକ ଭୋଜି ନଥିଲା, ଥିଲା ବିରାଟ ସମାବେଶ । ଭିଡ ଥିଲା ବେଶ୍ । ମୁଁ ଧୀରକୁ କହିଲି, ଧୀର ତମେ ଚାଲ ଆଗରେ । ତମ ପଛରେ ଚାଲି ମୁଁ ଏ ଭିଡ ପାର ହୋଇଯିବି । ତମକୁ ସମସ୍ତେ ଅନେଇ ବାଟ ଛାଡିଦେବେ । ତମର ବିରାଟ ଫ୍ରେମ୍‌ର ପଛପଟେ ମୁଁ ବାଙ୍ଗରା ମଣିଷଟା ଗଳି ପାର ହୋଇଯିବି । ପାର ହୋଇଗଲୁ । କିନ୍ତୁ ତାପରେ ହଠାତ୍ ଧୀର ମୋତେ ଟେକି ଏକ ଟେବୁଲ୍ ଉପରେ ଠିଆ କରିଦେଇ ତାର ବଜ୍ରନିର୍ଘୋଷ କଣ୍ଠରେ କହିଲା – ଆଜି ମୁଁ ଧନ୍ୟ ହେଲି । ଯାହା ପଛରେ ମୁଁ ଯାଉଥିଲି, ସେ ଆଜି ମୋ ପଛରେ ଚାଲିଲେ । ହସ ରୋଳ ଉଠିଲା ।

'ଗପ ହେଲେ ବି ସତ' ଚଳଚ୍ଚିତ୍ରର ସୁଟିଙ୍ଗ ପାଇଁ ଆମ ଘର ଦରକାର ହେଲା । ଧୀର ମାଗେ ନାହିଁ, ଦାବୀ କରେ । ତାର ମାଗିବା ବା ଦାବୀକୁ ଏଡାଇବା ସହଜ ନୁହେଁ ।

ମୋ ସ୍ତ୍ରୀ ଏବଂ ମୁଁ ଉଭୟ ହଁ ଭରିଲୁ । ତାର ଚିରାନୁଚରିତ ହାସ୍ୟଭରା କଣ୍ଠରେ କହିଲା — ଭାଉଜ, ବାରଣ୍ଡା ମାଗିଛି । କିନ୍ତୁ ଘରେ ପଶିଗଲେ କିଛି ମନେ କରିବ ନାହିଁ । ଯାହା ଭାଙ୍ଗିବ ମୁଁ ଭରଣା କରିଦେବି । କିନ୍ତୁ କିଛି ନାହିଁ କରିବ ନାହିଁ । ସତକୁସତ ସେଇଆ ହେଲା । ପାଞ୍ଚ ଛଅ ରାତି ବାରଣ୍ଡା, ଘର, ବଗିଚା ସବୁ ତା' ଦଖଲକୁ ଚାଲିଗଲା । ହସିଦେଇ କହେ, ଭାଉଜ, କ'ଣ କହିଥିଲି ?

ଧୀର ଆଉ ନାହିଁ । ଧୀରର ସାଫଲ୍ୟଭରା ଜୀବନ ଉପରେ ମୁଁ ଲେଖିବି ନାହିଁ । ଅନ୍ୟମାନେ ମୋ'ଠାରୁ ଭଲ ଲେଖି ପାରିବେ । ଭଲ ମୂଲ୍ୟାୟନ କରିବେ । ମୁଁ ଲେଖିଚି ସେଇ ସ୍ମୃତିର କାହାଣୀ, ଯାହା ଅନ୍ୟମାନେ ଜାଣିବାର ସୁଯୋଗ ନାହିଁ । ପ୍ରତିଷ୍ଠିତ ହୋଇଗଲେ, ସେଇ ପ୍ରତିଷ୍ଠାରୁ ଜୀବନୀ ଲେଖାଯାଏ । ରହିଯାଏ ଅନେକ କଥା ଅକୁହା, ଯା' ତିଆରି କରିଛି ସେଇ ମଣିଷର ସାଫଲ୍ୟକୁ । ବିଶାଳ ହର୍ମ୍ମ୍ୟ ଦେଖିଲେ ଲୋକେ ଅନାନ୍ତି ତା'ର ଶିଖରକୁ, କେହି କ'ଣ ଅନାଏ ତା'ର ଭିତ୍ତିଭୂମି ବା ଫାଉଣ୍ଡେସନ୍‌କୁ ? ମୁଁ ସେଇ ଫାଉଣ୍ଡେସନ୍ କଥା କହିଲି । କାରଣ ଅଭିନେତା ଧୀରର, ତାହା ରଙ୍ଗମଞ୍ଚର ଅଭିନୟ ନୁହେଁ, ଜୀବନ-ମଞ୍ଚର ଅଭିନୟ । ଲୁହ, ଲହୁ ସ୍ୱେଦରେ ଭରା ସେଇ ସ୍ମୃତି ।

ଧୀରର ପୁରୁଣା ଘର, କୈବଲ୍ୟ କୁଟୀର ସୟଦ ସେମିନାରୀ,ରେଭେନ୍‌ସା କଲେଜ, ଛାତ୍ରସଂଘ ଅଛି କିନ୍ତୁ ଧୀର ଆଉ ନାହିଁ ।

''କେହି ରହି ନାହିଁ ରହିବେ ନାହିଁଟି
ଭବରଙ୍ଗ ଭୂମି ତଳେ,
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।''

ଧୀରର ଅଭିନୟ ସରିଯାଇଛି । ଷ୍ଟେଜ୍ ଖାଲି । କେବଳ ଶୁଭୁଛି ସ୍ମୃତିର ପ୍ରତିଧ୍ୱନି ।

□□□

# ଧୂଳିରୁ ଆସି ସେହୁ ମିଶିଲା ଧୂଳିରେ

*(୰ ଧୂଳୀଶ୍ୱର ବସ୍ତିଆ)*

ଧୂଳୀଶ୍ୱର ବସ୍ତିଆ ଆଉ ନାହାନ୍ତି । ମେହନତୀ ମଣିଷର ଏଇ ଏକନିଷ୍ଠ ସେବକଙ୍କର ଗଲାକାଲି ଏକ ମୋଟର ଦୁର୍ଘଟଣାରେ ପରଲୋକ ହୋଇଗଲା । ମସ୍କୋ ଯିବାପାଇଁ ସ୍ଥିର ହୋଇଥିଲା । ସେଇ ସଂକ୍ରାନ୍ତରେ ପାସପୋର୍ଟ ପାଇଁ ଦରଖାସ୍ତ କରିବା ସକାଶେ ଯାଇଥିଲେ ସୁନ୍ଦରଗଡ ।  ମୋଟର ସାଇକେଲ ପଛରେ ବସି ଫେରୁଥିଲେ । ଅନ୍ୟତ୍ର ଯିବାପାଇଁ ଯେ ପାସପୋର୍ଟ-ଭିସା ସବୁ ହୋଇସାରିଛି ଏକଥା କିଏ ଜାଣିଥିଲା ? ସେ ପାସପୋର୍ଟ-ଭିସା ପାଇଁ ସମୟ ସେଆଡୁ ସ୍ଥିର ହୋଇଥାଏ, ଯିବା ଲୋକର ସମ୍ମତିକୁ ଅପେକ୍ଷା କରନ୍ତି ନାହିଁ । ମଣିଷ ଅଦୃଶ୍ୟବାଦୀ ହୋଇଯାଏ । ମଣିଷର ବଞ୍ଚିବା-ମରିବା କ'ଣ ଆକସ୍ମିକ ନା ଅଭିପ୍ରେତ ? ଏ ସମ୍ପର୍କରେ ଅନୁସନ୍ଧାନ, ବିତର୍କ, ଜିଜ୍ଞାସା ଚିରନ୍ତନ । ତଥାପି ମଣିଷ ସେଇଠି ଠିଆ ହୋଇଛି ।

ଧୂଳୀଶ୍ୱର ଛାତ୍ର ଜୀବନରୁ ହିଁ ସମାଜବାଦ ପ୍ରତି ଆକୃଷ୍ଟ ହୋଇଥିଲେ । କିନ୍ତୁ ସାମ୍ୟବାଦ ବା ସମାଜବାଦ ଅପେକ୍ଷା ସୋସାଲ ଡିମୋକ୍ରାସୀ ତାଙ୍କୁ ବେଶି ଆକୃଷ୍ଟ କରିଥିଲା । ତାଙ୍କର ବିଶ୍ୱାସ କେବଳ ବୃତ୍ତିଗତ ନୁହେଁ ମେଧାଗତ ମଧ୍ୟ । ସେ ସୋସାଲ ଡିମୋକ୍ରାଟ ଏବଂ ସେ ଦୃଷ୍ଟିରୁ କମ୍ୟୁନିଜମ୍ ବା କମ୍ୟୁନିଷ୍ଟମାନଙ୍କର ବିରୋଧୀ । କିନ୍ତୁ ସେତେବେଳେ ମତାନ୍ତର ବହୁ କ୍ଷେତ୍ରରେ ସେତିକିରେ ସୀମିତ ଥିଲା ।

ଧୂଳୀଶ୍ୱର ତାର ବ୍ୟତିକ୍ରମ ନଥିଲେ । ଶ୍ରମିକ ବା ମେହନତୀ ମଣିଷକୁ ସଙ୍ଗଠିତ ଏବଂ ସଚେତନ କରିବା ପାଇଁ ସେ ଜୀବନର ବ୍ରତ କରି ନେଇଥିଲେ । କଟକରେ କିଛି କିଛି ଟ୍ରେଡ ୟୁନିଅନ କାର୍ଯ୍ୟ କରିବା ପରେ ସେ ତାଳଚେର କୋଇଲା ଖଣି ଶ୍ରମିକଙ୍କୁ ସଙ୍ଗଠିତକରିବା ପାଇଁ ତାଳଚେରକୁ ଆପଣାର କର୍ମସ୍ଥଳୀ ଭାବରେ ବାଛି ନେଇଥିଲେ । ତାଳଚେରରୁ ରାୟରଙ୍ଗପୁର ଏବଂ ରାୟରଙ୍ଗପୁରରୁ ରାଉରକେଲା । ରାଉରକେଲାରେ ଇସ୍ପାତ କାରଖାନା ପ୍ରତିଷ୍ଠା ହୋଇଛି । ଓଡିଶାର ସର୍ବବୃହତ୍ ପବ୍ଲିକ ସେକ୍ଟର ଶିଳ୍ପ । ସମାଜବାଦୀ ଭାବରେ ଧୂଳୀଶ୍ୱର ପବ୍ଲିକ୍ ସେକ୍ଟରର ବାବଦୂକ । କିନ୍ତୁ ତା' ସହିତ ପବ୍ଲିକ ସେକ୍ଟର ଶିଳ୍ପମାନଙ୍କରେ ଶ୍ରମିକ ଶୋଷଣ, ପବ୍ଲିକ ସେକ୍ଟର ଶିଳ୍ପରେ ମଜୁରିର ବିଶାଳ ବ୍ୟବଧାନ ତାଙ୍କୁ ବ୍ୟଥିତ, ବ୍ୟାକୁଳ କରିଥିଲା । ସେ ରାଉରକେଲାକୁ ହିଁ ଆପଣାର କର୍ମସ୍ଥଳୀ ରୂପରେ ବାଛି ନେଇଥିଲେ । ସ୍ତ୍ରୀ ଶିକ୍ଷୟିତ୍ରୀ । ସଂସାର ବନ୍ଧନ ବେଶି କିଛି ନାହିଁ । ଧୂଳୀଶ୍ୱର

ସଂଗଠନରେ ବ୍ରତୀ । ରାଉରକେଲା ମଜଦୁର ସଭା ଗଠିତ ହେଲା । ସ୍ୱୀକୃତି ଆସିଲା ବହୁ ସମୟ ପରେ, ବହୁ ପରିଶ୍ରମ ପରେ । ଧୂର୍ଜଟୀଶ୍ୱର ରାଉରକେଲାରୁ କାଂସବାହାଲ, ରାୟରଙ୍ଗପୁର ଏବଂ ବ୍ରଜରାଜନଗର ତଥା ସମ୍ବଲପୁରର ହୀରାକୁଦ ବନ୍ଧ ଚତୁଃପାର୍ଶ୍ୱର ଶିଳ୍ପମାନଙ୍କରେ ଆପଣାର ପ୍ରଭାବ ବିସ୍ତାର କରିବାକୁ ଆରମ୍ଭ କଲେ । କିନ୍ତୁ ତା' ବେଶି ଦିନ ରହିଲା ନାହିଁ । ବୋଧହୁଏ ସମୟ କୁଳାନ ହେଲା ନାହିଁ । ସେ ରାଉରକେଲାକୁ ହିଁ କେନ୍ଦ୍ର କରି ଆପଣାର ଶ୍ରମିକ ସଂଗଠନକୁ ଶକ୍ତିଶାଳୀ କରି ଚାଲିଲେ ।

ଝାରସୁଗୁଡା ରେଳବାଇ ଷ୍ଟେସନ । ଏଇ ଷ୍ଟେସନ ସହିତ ମୋର ପରିଚିତି ପିଲାଦିନୁ । ଏହାର ପାଖରେ ଥିବା କାଠ ସ୍ଲିପର ଗଦା ଉପରେ ଶୋଇ ଶୋଇ କେତେ ରାତି ନ କଟିଛି । ଏଇଠି ଦେଖିଚି ଯୁଦ୍ଧ ସମୟରେ ସାମରିକ ବାହିନୀକୁ ନେଇ ଯାଉଥିବା ରେଳଗାଡି । ଏଇଠି ଦେଖିଚି ଶହ ଶହ ନିଗ୍ରୋ ସୈନ୍ୟଙ୍କର ଅବତରଣ । ଏଇଠି ଅଦ୍ୟାପି ସ୍ମୃତ ହୋଇରହିଛି ଆତ୍ମାରାମଙ୍କର ସର୍ବତ ଲସି ଦୋକାନ । ନଗେନ୍ଦ୍ର ଚୌଧୁରୀ, ହୀରେନ୍ ଘୋଷ ବାପାଙ୍କର ବନ୍ଧୁ ସବୁ । କେହି ଆଉ ନାହାନ୍ତି । ସେମାନଙ୍କର ସ୍ମୃତି ଖେଳୁଛି ତଥାପି । ଷ୍ଟେସନରେ ବୁଲୁଥିଲି ଏପଟରୁ ସେପଟ । ମୁଁ ଯିବି ରାୟଗଡ । ଟ୍ରେନ୍ ଆସିବା ପାଇଁ ବହୁତ ଡେରି । ବହି ଦୋକାନଟା ବି ବନ୍ଦ ହୋଇଯାଇଛି । ଦେଖିଲି ପ୍ଲାଟଫର୍ମ ଉପରେ ଏକ ଉଜ୍ଜ୍ୱଳ ଆଲୋକ ତଳେ କେହି ଜଣେ ବସିଛନ୍ତି । ଚାରିପଟରେ ବହି ଓ ଫାଇଲ । ସାଙ୍ଗରେ କିଏ ସବୁ ଦୁଇ ଚାରି ଜଣ । ହଠାତ୍ ମନେହେଲା କେହି ଜଣେ ମୋ ନାଁ ଧରି ଡାକୁଚି । ଚମକି ପଡିଲି । କିଏ ଡାକୁଚି ? ଦେଖିଲି ଧୂର୍ଜଟୀଶ୍ୱର ବାବୁ ।

ଆରମ୍ଭ ହେଲା ବିତର୍କ, ଆଲୋଚନା । ଲେନିନଙ୍କ ଅପେକ୍ଷା ଟ୍ରଟ୍‌ସ୍କି ତାଙ୍କୁ ବେଶି ମୁଗ୍ଧ କରିଚି । ଟ୍ରଟ୍‌ସ୍କି ପଢ଼ିଲେ ତାଙ୍କର ଶିହରଣ ହୁଏ । କ'ଣ ଡିଟେକ୍‌ଟିଭ ଉପନ୍ୟାସ ପଢ଼ିଲେ ଯେମିତି ଲାଗେ ? ନା,ଠିକ୍ ସେଇଆ ନୁହେଁ । ତେବେ ଲେନିନ ଡ୍ରାଇ ବା ଶୁଷ୍କ କିନ୍ତୁ ଟ୍ରଟ୍‌ସ୍କି ରୋମାଞ୍ଚକର, ଜୀବନ୍ତ, ରସାଢ଼୍ୟ । କିନ୍ତୁ ବାସ୍ତବତା କେଉଁଟା ? ଧୂର୍ଜଟୀଶ୍ୱରଙ୍କ ଆଖି ସ୍ୱପ୍ନାବିଷ୍ଟ ହୋଇଗଲା । ହୁଏତ ଲେନିନ ବାସ୍ତବ, କିନ୍ତୁ ମଣିଷ ତ ପୁଣି ରୋମାଣ୍ଟିକ୍ । ମଣିଷ ତ ବଞ୍ଚିବ କିଛି ସ୍ୱପ୍ନ ଆଉ କିଛି ବାସ୍ତବତା ଭିତରେ । ତେଣୁ ଲେନିନ୍ ମୋ ପାଇଁ ଶୁଷ୍କ, କିନ୍ତୁ ଟ୍ରଟ୍‌ସ୍କି ମୋ ପାଇଁ ସ୍ୱପ୍ନାବିଷ୍ଟ । ମୁଁ ଅନେଇ ଦେଖୁଥିଲି ଏଇ ଟ୍ରେଡ ୟୁନିୟନ ନେତାଙ୍କୁ । ସେଦିନ କଥା ଅସମାପ୍ତ ରହିଥିଲା । ଜୀବନର ସବୁ ତ ଅସମାପ୍ତ । ଶେଷ କେଉଁଠି ? ସବୁ ଅସମାପ୍ତ ଥିଲାବେଳେ ହିଁ ତ ମଣିଷ ବିଦାୟ ନେଇଯାଏ । ତାହା ହିଁ ତ ଜୀବନ ।

ଧୂର୍ଜଟୀଶ୍ୱର ବାବୁ କହିଥିଲେ ଯେ କଟକ ଆସିଲେ ଆମ ଆଡ଼େ ଆସିବେ । ସେ କଟକ ଆସି ନାହାନ୍ତି କି ଆଉ ଆସିବେ ନାହିଁ ; କିନ୍ତୁ ଧ୍ୱନିତ ରହିବ ତାଙ୍କର କଣ୍ଠସ୍ୱର ବହୁକାଳ ଧରି ।

□□□

# ପ୍ରବୁଦ୍ଧର ପରଲୋକ

*(୵ ନରସିଂହ ତ୍ରିପାଠୀ)*

ନଭେମ୍ବର ୧୪, ୧୯୯୫ର ସକାଳ ଦେଖିବାକୁ ସେ ଆଉ ରହିଲେ ନାହିଁ । ସୁରନନ୍ଦିନୀ ଉଷା ରୂପସୀର ଉଜ୍ଜ୍ୱଳ ହିମରେଖା ତାଙ୍କୁ ଆଉ ଦେଖି ପାରିଲା ନାହିଁ । ଅଗ୍ନିମୁଖ ନରସିଂହ ତ୍ରିପାଠୀ ନାମକ ଆଗ୍ନେୟଗିରି ନୀରବିତ ହୋଇଗଲା । ସେ ଇତିହାସର ପୃଷ୍ଠାକୁ ଚାଲିଗଲେ । ତାଙ୍କର କଣ୍ଠରୁ ଯେପରି ଉତପ୍ତ ଲାଭା ନିର୍ଗତ ହେଉଥିଲା, କଲମରୁ ମଧ୍ୟ ସେମିତି ଭାଷା ବାହାରୁଥିଲା । ସେ ସବୁ ହଠାତ୍ ବନ୍ଦ ହୋଇଗଲା, ଚିରଦିନ ପାଇଁ । ୭୩ ବର୍ଷ ବୟସରେ ଯୋଦ୍ଧା ସୈନିକ ନରସିଂହ ତ୍ରିପାଠୀ ଆଖି ବୁଜିଦେଲେ । ମଲେ ରୋଗଶଯ୍ୟାରେ, ଦୁଃଖରେ, ନିଃସଙ୍ଗରେ । ଏ ରୋଗ କେବଳ ଶାରୀରିକ ନଥିଲା, ଥିଲା ମଧ୍ୟ ମାନସିକ । ସବୁ ଭାଜି ପଡୁଥିଲା ଚାରି ପଟରେ । ସବୁ ସ୍ୱପ୍ନ ହଜି ଯାଉଥିଲା । ସେ ଅସ୍ଥିର ହୋଇ ଉଠୁଥିଲେ । କ'ଣ ଚାହିଁଥିଲେ, କ'ଣ ସ୍ୱପ୍ନ ଦେଖିଥିଲି । ହେଲା କ'ଣ ?

ନରସିଂହ ତ୍ରିପାଠୀ ଆଜନ୍ମ ବିପ୍ଳବୀ । ନବମ ଶ୍ରେଣୀରେ ପୁରୀ ହାଇସ୍କୁଲରେ ପଢୁଥିବା ଛାତ୍ର ସେଦିନ ପୁରୀ ମାହାରମାନଙ୍କର ଧର୍ମଘଟ କରି ସାରା ଓଡ଼ିଶାରେ ଚମକ ସୃଷ୍ଟି କରିଥିଲା । ଓଡ଼ିଶାରେ ବୋଧହୁଏ ଏହା ପ୍ରଥମ ଶ୍ରମିକ ଧର୍ମଘଟ ଏବଂ ପୁରୀ ମାହାରମାନଙ୍କର ୟୁନିଅନ । ଗୋପୀ ବ୍ରହ୍ମଚାରୀ, ଗୌରହରି ନାୟକ ଥିଲେ ତାଙ୍କର ସହଯୋଦ୍ଧା । ଚଳିତ ଶତାବ୍ଦୀର ତୃତୀୟ ଦଶନ୍ଧିର କଥା । ଏଇ ୟୁନିଅନ ଓ ଧର୍ମଘଟ ଯେଉଁମାନଙ୍କୁ ଆକୃଷ୍ଟ କରି ଆଣିଥିଲା ସଂଗ୍ରାମର ମହୁ ଚାଖିବା ପାଇଁ, କାରାବାସର ସ୍ୱାଦ ଚାଖିବା ପାଇଁ ସେମାନଙ୍କ ମଧ୍ୟରେ ପ୍ରଖ୍ୟାତ ବିପ୍ଳବୀ, କବି ମନମୋହନ ମିଶ୍ର ଅନ୍ୟତମ । ଶ୍ରମିକ ଶ୍ରେଣୀର ସଂଗ୍ରାମ କିପରି ବୁଦ୍ଧିଜୀବୀ ମାନବକୁ ଟାଣିଆଣେ ତାହାର ଜ୍ୱଳନ୍ତ ଉଦାହରଣ ପୁରୀ ମାହାର ୟୁନିଅନ ଓ ଆନ୍ଦୋଳନ । ଗୋକୁଳ ମୋହନ ରାୟ ଚୂଡାମଣି, ବ୍ରଜବନ୍ଧୁ ମିଶ୍ର ତ ଆଖିରେ ପଡ଼ନ୍ତି । ଏହାଛଡା ପ୍ରସିଦ୍ଧ ଲେଖକ ଅଖିଳ ମୋହନଙ୍କଠାରୁ ଆରମ୍ଭ କରି ଶିବ ମିଶ୍ରଙ୍କ ପର୍ଯ୍ୟନ୍ତ ଅଜସ୍ର ବୁଦ୍ଧିଜୀବୀ ଏହି ମହାଯଜ୍ଞରେ ନିବେଦିତ ହୋଇଛନ୍ତି । ନରସିଂହ ତ୍ରିପାଠୀ ଏହି ମହାନାଟକର ଆଦ୍ୟ ସଂଗଠକ ।

ନରସିଂହ ତ୍ରିପାଠୀଙ୍କ କାର୍ଯ୍ୟକ୍ଷେତ୍ର ପୁରୀରୁ କଟକକୁ ଆସେ । ସ୍ୱାଧୀନତା ଆନ୍ଦୋଳନ ଡାକରାରେ ନରସିଂହ ତ୍ରିପାଠୀ କାରାବରଣ କରନ୍ତି ଏବଂ ପରବର୍ତ୍ତୀ କାଳରେ ମାର୍କସ୍‌ବାଦ-ଲେନିନ୍‌ବାଦ ପ୍ରତି ଆକୃଷ୍ଟ ହୁଅନ୍ତି । କିନ୍ତୁ ରାଜନୈତିକ ମତଭେଦ ବ୍ୟକ୍ତିଗତ ସମ୍ପର୍କକୁ ଆଚ୍ଛାଦିତ କରି ନାହିଁ । ସଖ୍ୟ ଥିଲା କଂଗ୍ରେସ ଦଳର କୁନି ମିଶ୍ରଙ୍କ ସହିତ ଯେପରି ସେଇପରି କମ୍ୟୁନିଷ୍ଟ ପାର୍ଟିର ରାମଚନ୍ଦ୍ର ରାମଙ୍କ ସହିତ । ନରସିଂହ ତ୍ରିପାଠୀ କାରାଗାରରୁ ମୁକ୍ତିଲାଭ କରି ଛାତ୍ର ଆନ୍ଦୋଳନରେ ଝାସ ଦିଅନ୍ତି । ତାଙ୍କର ଉଦାତ୍ତ କଣ୍ଠର ଆହ୍ୱାନରେ ବହୁ ତରୁଣ ତରୁଣୀ ଛାତ୍ରସଂଘର ପତାକା ତଳେ ଏକାଠି ହୁଅନ୍ତି । ସେ ଘୁରି ବୁଲନ୍ତି ସାରା ଓଡ଼ିଶା । ମନେପଡୁଛି ଐତିହାସିକ ଆଇ.ଏନ୍.ଏ. ବନ୍ଦୀମାନଙ୍କର ବିଚାର । ନିଷ୍ପତ୍ତି ହେଲା ଧର୍ମଘଟ ହେବ ସେମାନଙ୍କ ମୁକ୍ତି ପାଇଁ । ସମୟ ଅଳ୍ପ, ସାଫଲ୍ୟ ଉପରେ ଅନେକ ସନ୍ଦିହାନ । କିନ୍ତୁ ନରସିଂହ ତ୍ରିପାଠୀଙ୍କର ଦୁର୍ବାର ଆହ୍ୱାନ, ମାଇକରୁ ଯେପରି ତରଳ ଲୁହା ଗଳି ପଡୁଛି ଶବ୍ଦ ସହିତ । ଗୋଟାଏ ରାତି । ସମଗ୍ର ରାତି ତାଙ୍କର କଣ୍ଠରୁ ବୋହି ଚାଲିଛି ଶବ୍ଦର ଜୁଆର । ସକାଳ ପାହିଲା ବେଳକୁ କଟକ ସହରର ସବୁ ଛାତ୍ର ରାଜପଥରେ ! ମାଦକତା ଥିଲା ତାଙ୍କର ଓଜସ୍ୱିନୀ ଭାଷଣରେ ।

ନରସିଂହ ତ୍ରିପାଠୀ ବିବାହ କରିଥିଲେ କ୍ଷେତ୍ରମଣୀ ଦେବୀଙ୍କୁ । ସେତେବେଳେ କ୍ଷେତ୍ରମଣୀ ଦେବୀଙ୍କ ଶିକ୍ଷା କମ୍ । ତାଙ୍କୁ ପାଠ ପଢ଼ାଇ, ଡାକ୍ତରାଣୀ କରି, ସ୍ୱାଧୀନ ଜୀବିକାର ପନ୍ଥା ଉନ୍ମୋଚନ କରି, ଏକ ସଦାବେଳିଆ ରାଜନୈତିକ କର୍ମୀ ହେବାର ସ୍ୱପ୍ନ ଦେଖିଥିଲେ ବିପ୍ଳବୀ ନରସିଂହ ତ୍ରିପାଠୀ । ଏଇପରି ସ୍ୱପ୍ନ ଦେଖିଥିଲେ ଶରତ ପଟ୍ଟନାୟକ । ସେଥିପାଇଁ ସେମାନଙ୍କର ପରିଶ୍ରମ ଓ ତ୍ୟାଗର ପଟାନ୍ତର ଖୁବ୍ କମ୍ । କିନ୍ତୁ ସେ ସ୍ୱପ୍ନ ସାର୍ଥକ କେତେଦୂର ହେଲା ତା' ସ୍ୱତନ୍ତ୍ର କଥା । ନରସିଂହ ତ୍ରିପାଠୀ ସାମ୍ବାଦିକ ହେଲେ, ପ୍ରଥମେ ସମାଜରେ, ପରେ କଳିଙ୍ଗରେ ଏବଂ ତା'ପରେ ଯେତେଦୂର ମନେହୁଏ ଜନଶକ୍ତିରେ । 'ସମାଜ' ଏବଂ ସମ୍ପାଦକ ରାଧାନାଥ ରଥଙ୍କ ପ୍ରତି ତାଙ୍କର ଅନୁରକ୍ତି ଥିଲା ପ୍ରଗାଢ଼ ଯଦିଓ ପ୍ରବଳ ମତଭେଦରେ ରସାଣିତ ଥିଲା ଏଇ ସମ୍ପର୍କ । ବୀରେନ୍ ମିତ୍ରଙ୍କ ପ୍ରତି ତାଙ୍କର ଦରଦ ଛାତ୍ର ଜୀବନରୁ । ପରବର୍ତ୍ତୀ କାଳରେ ବୀରେନ୍ ମିତ୍ରଙ୍କ ସହିତ ତାଙ୍କର ମତଭେଦ ଶାଣିତ । କିନ୍ତୁ ବ୍ୟକ୍ତିଗତ ସମ୍ପର୍କରେ ନିବିଡ଼ତା ଜଣା ପଡିଲା, ଯେତେବେଳେ ବୀରେନ୍ ମିତ୍ରଙ୍କ ଲାଗି ମେଡିକାଲ କଲେଜ ହସ୍‌ପିଟାଲରେ ଏକ ସ୍ଥାନ ସକାଶେ ନରସିଂହ ତ୍ରିପାଠୀଙ୍କୁ ବିଭିନ୍ନ ଡାକ୍ତରଙ୍କ ଦ୍ୱାରସ୍ଥ ହେବାକୁ ପଡିଲା । ବୀରେନ୍ ମିତ୍ର କ୍ଷମତାରେ ନାହାନ୍ତି । ଆସିବାର ଆଉ କୌଣସି ଆଶା ବା ଆକାଂକ୍ଷା ନାହିଁ । କ୍ଷମତାରେ ଥିଲାବେଳେ ପଚାରିବା ତ ଆମ ଦେଶର ସ୍ୱଭାବରେ ପରିଣତ ହୋଇଛି । କିନ୍ତୁ କ୍ଷମତାରୁ ଗଲା ପରେ ପଚାରେ

କିଏ ? ନରସିଂହ ତ୍ରିପାଠୀ କିନ୍ତୁ ଠିକ୍ ଓଲଟା । ବୀରେନ୍ଦ୍ର ମିତ୍ର ବର୍ତ୍ତମାନ ଦୁସ୍ଥ । ବୀରେନ୍ଦ୍ର ମିତ୍ରଙ୍କ ନର୍ସିଂହୋମ ପାଇଁ ଦରଖାସ୍ତ ଧରି ସୁପାରିଶ ସକାଶେ ସେ ବୁଲୁଛନ୍ତି ଏ ଡାକ୍ତର ପାଖରୁ ସେ ଡାକ୍ତର । ଦେଶରେ ଜରୋରୀ ଅବସ୍ଥା ଜାରି ହୋଇଛି । ମହତାବବାବୁ ଗିରଫ ହୋଇଛନ୍ତି । ସାଙ୍ଗରେ କିଏ ଯିବ ଜେଲଖାନା ପର୍ଯ୍ୟନ୍ତ ? ଦେଖାଗଲା ନରସିଂହ ତ୍ରିପାଠୀଙ୍କର । ସେ ଯାଇ ଜେଲରଙ୍କୁ କହିଲେ ଡକ୍ଟର ମହତାବ ଆସୁଛନ୍ତି, ଉଠନ୍ତୁ ଯାଇ ତାଙ୍କୁ ରିସିଭ୍ କରନ୍ତୁ । ଅନୁରୋଧ କିନ୍ତୁ ହୁକୁମ ଭଳି ଅନୁରୋଧ । ଏଭଳି ଅନୁରୋଧ ନରସିଂହ ତ୍ରିପାଠୀ ହିଁ କରିପାରନ୍ତି ।

ନରସିଂହ ତ୍ରିପାଠୀ ଶ୍ୱାସ ରୋଗାକ୍ରାନ୍ତ । ଆଉ କିଛି କରିବାକୁ ବଳ ପାଉନି । ତଥାପି ଜୀବନର ଶେଷ ଅଧ୍ୟାୟରେ 'ସତ୍ୟ' ନାମରେ ଏକ ପତ୍ରିକା ପ୍ରକାଶ ପାଇଁ ତାଙ୍କର ପୂର୍ବତନ ସହଯୋଦ୍ଧାମାନଙ୍କ ସହିତ ପ୍ରାକ୍ତନ ବିପ୍ଳବୀମାନଙ୍କ ସହିତ ଉଦ୍ୟମ । କିନ୍ତୁ ଯେଉଁମାନେ ବିରଥ, ସେମାନେ ଆଉ ଏକାଠି ହେଲେ କରିବେ କ'ଣ ? ଏକାଠି ବିଳାପ ମଧ କରିପାରିବେ ନାହିଁ । ଖବରକାଗଜଟିଏ ବାହାର କରିବା ଥିଲା ତାଙ୍କର ନିଶା, ସ୍ୱପ୍ନ । କିନ୍ତୁ ଚରିତାର୍ଥ କରିବାପାଇଁ ଆଉ ବଳ, ବପୁ ନଥିଲା । ରାଜନୀତି, ମାର୍କସବାଦ, ଲେନିନ୍‌ବାଦ, ସାମ୍ୟବାଦିକତା, ସବୁ ହଜି ଯାଇଥିଲା ଚୋରାବାଲିରେ । ମଣିଷ ହାରିଗଲେ ଯେମିତି ବିକ୍ଷୁବ୍ଧ ହୁଏ ଠିକ୍ ସେଇପରି ସେ ବିକ୍ଷୁବ୍ଧ ହେଉଥିଲେ ସବୁବେଳେ । କିନ୍ତୁ କାଳକ୍ରମେ ସେ ଏକାକୀ ଏବଂ ନିଃସଙ୍ଗ ହୋଇଉଠୁଥିଲେ । ସେ ଯେଭଳି ପରିବାର ଭିତରେ, ସମାଜରେ ଅନାବଶ୍ୟକ ଏକ ଜୀବ, ଏହିଭଳି ଏକ ମନୋଭାବ ତାଙ୍କୁ ଗ୍ରାସ କରିଥିଲା । ସେ ମିଷ୍ଟିକ ହୋଇ ଉଠୁଥିଲେ । ପୁଣି ଥରେ ଫେରିଯିବାକୁ ଚାହୁଁଥିଲେ ଗ୍ରାମକୁ, ଜଗନ୍ନାଥଙ୍କ ପାଖକୁ । ମୋତେ ମୋ ଗାଁକୁ ନେଇଯିବ, ତାଙ୍କର ଇଚ୍ଛା । ଶେଷବେଳକୁ ମୋତେ ପୁରୀ ନେଇଯିବ, ତାଙ୍କର ଇଚ୍ଛା । ସେ ପିଲାଙ୍କ ଭଳି ହୋଇ ଉଠିଥିଲେ । ଗଲେ ତାଙ୍କ ପାଖରେ ବହୁ ସମୟ ଧରି ରହିବାକୁ ପଡୁଥିଲା । ଶୁଣିବାକୁ ପଡୁଥିଲା ସମସ୍ତଙ୍କ ବିରୁଦ୍ଧରେ ଅଭିଯୋଗ । ଅବହେଳିତ, ଅନାବଶ୍ୟକର ଏକ କ୍ଷୁଧିତ ଆର୍ତ୍ତନାଦ ତାଙ୍କର କଣ୍ଠରେ । ଆଉ ଥରେ ମୁଁ ଉଠିବା ପାଇଁ ସକ୍ଷମ ହୋଇପାରନ୍ତି କି ଦେଖିନିଅନ୍ତି ସମସ୍ତଙ୍କୁ ପୁଣି ଥରେ ! ସମାଜର ଅବହେଳା, କଳୁଷ ସହିତ ବ୍ୟକ୍ତିଗତ ଅବହେଳା, କଳୁଷ ବିରୁଦ୍ଧରେ ପୁଣି ଥରେ ପରଖ ହୋଇଯାଆନ୍ତା ଶକ୍ତିର ! କିନ୍ତୁ ସେ ଖସି ଯାଉଥିଲେ ଧୀରେ ଧୀରେ । ରାଧାନାଥ ରଥ, ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ସମସ୍ତଙ୍କର ତାଙ୍କ ପ୍ରତି ଦରଦ ଥିଲା । ଜୀବନରେ ଯିଏ ବିଶେଷ କିଛି ଲୋଡି ନାହିଁ, ତା'ପ୍ରତି ସମସ୍ତଙ୍କର ଦରଦ ରହିବା ସ୍ୱାଭାବିକ । ସେଇଯୋଗୁଁ ତାଙ୍କ ନାଁ ଶୁଣିଲାକ୍ଷଣି ବିଜୁ ପଟ୍ଟନାୟକ ତାଙ୍କ ସ୍ତ୍ରୀଙ୍କୁ ଅବସର ନେବା ପୂର୍ବରୁ

ପ୍ରଫେସର କରି ଦେଇଥିଲେ 'କମ୍ପାସନେଟ୍ ଗ୍ରାଉଣ୍ଡ'ରେ । ଡକ୍ଟର ମହତାବ ବ୍ୟଥିତ ହୋଇ ଫୋନ କରିଥିଲେ ତାଙ୍କର ବଦଳି ଶୁଣି । ଲକ୍ଷ୍ମଣ ପଟ୍ଟନାୟକ ବା କେଶବାନନ୍ଦ ଦାସ ଦୌଡୁଥିଲେ ଦିନେ ଅନ୍ତରେ ଦିନେ ତାଙ୍କୁ ଦେଖିବାକୁ । ମହାଯୋଦ୍ଧା ଏକ ଆକସ୍ମିକ ଦୁର୍ଘଟଣାରେ ଅଚଳ ହୋଇପଡିଲେ ଏବଂ ଆଉ ସେଥିରୁ ଉବୁରି ପାରିଲେ ନାହିଁ । ବୟସ ତାଙ୍କୁ ହଠାତ୍ ଗ୍ରାସ କରି ବସିଲା, ଯେଉଁ ବୟସ ତାଙ୍କର ଦୁର୍ଦ୍ଧର୍ଷ ମାନସିକ ଶକ୍ତି ଆଗରେ ହାର ମାନିଥିଲା ।

ଅଫୁରନ୍ତ ଶାରୀରିକ ଶକ୍ତି ମାନସିକ ଶକ୍ତିର ଅବକ୍ଷୟ ଆଗରେ ହାରିବା ଆରମ୍ଭ କଲା । ମାନସିକ ଶକ୍ତି ହାର ମାନିଗଲା, କାରଣ ଚାରିପଟରେ ସବୁ ସ୍ୱପ୍ନ ଭାଙ୍ଗିଗଲା ଟିକି ଟିକି ହୋଇ । ଝିଅ ଛାଡି ଚାଲିଗଲା ବାପା ଆଗରେ । ସ୍ୱର୍ଣକାତର ବାପା ସେ ଧକ୍କା ସହ୍ୟ କରିପାରିଲା ନାହିଁ । ସ୍ୱପ୍ନ ଦେଖିଥିଲା ସମାଜବାଦର । ସମାଜବାଦ ଗଲା କୁଆଡେ ? ସବୁ ଭାଙ୍ଗିଗଲା । ପରିବାର, ଦଳ, ସମାଜ, ବନ୍ଧୁ । ସେ ଏକାକୀ, ନିଃସଙ୍ଗ ପଦାତିକ ।

ସେଇ ଜୀବନର ଶେଷ ଯବନିକା ପଡିଲା । ସେ ଯାତ୍ରା କଲେ ପୁରୀ । ଆସିଥିଲେ କିଛି ବନ୍ଧୁ । ସଂଖୋଳିବା ପାଇଁ । ତା'ପରେ ଘର ଖାଲି, ଶୂନ୍ଶାନ୍ । ସେ କଣ୍ଠ ଆଉ ଶୁଭୁ ନାହିଁ । ଶୁଭିବ ନାହିଁ ।

ooo

## ପ୍ରଥିତଯଶାର ପରଲୋକ
### (ଁ ନବକିଶୋର ପଟ୍ଟନାୟକ)

ଇତିହାସର କଥା । ଭାରତବର୍ଷ ପରାଧୀନ । ଆଗରେ ତିକ୍ତ ଅଂଧକାର । ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧି । କଟକର ମେଡିକାଲ ସ୍କୁଲ । ମେଡିକାଲ କଲେଜ ହୋଇ ନାହିଁ । ବ୍ରିଟିଶ ଶାସନ । ତାହା ମେଡିକାଲ ସ୍କୁଲକୁ ମଧ୍ୟ ପରିବ୍ୟାପ୍ତ । ତାହାରି ବିରୁଦ୍ଧରେ ଆରମ୍ଭ ହେଲା ଐତିହାସିକ ମେଡିକାଲ ସ୍କୁଲ ଧର୍ମଘଟ । ମାସ ମାସ ଧରି ଏଇ ସଂଗ୍ରାମ ଚାଲିଲା । ସେତେବେଳେ ଓଡିଶାରେ କଲେଜ ସଂଖ୍ୟା କମ । କିନ୍ତୁ ସତ୍ୟାଗ୍ରହ ପାଇଁ ଆସିଲେ ଦଳ ଦଳ ସତ୍ୟାଗ୍ରହୀ ଓଡିଶାର ସବୁ ସ୍କୁଲରୁ । କଟକ ଜେଲ ଭର୍ତ୍ତି ହୋଇଗଲା । ତତ୍କାଳୀନ ପ୍ରସିଦ୍ଧ ଛାତ୍ରନେତା ବିଶ୍ୱନାଥ ମୁଖର୍ଜୀ ଆସିଲେ ଉଦ୍‌ବୋଧନ ଦେବା ପାଇଁ ସତ୍ୟାଗ୍ରହୀମାନଙ୍କୁ, କଟକ ଜେଲରେ ଥିବା ବନ୍ଦୀମାନଙ୍କୁ । ଦରଘାବଜାରର ଭେଡା ଚୌଧୁରୀଙ୍କର ଦୁଇ ମହଲା କୋଠାରୁ ସେ ଭାଷଣ ବହୁଦିନ ପର୍ଯ୍ୟନ୍ତ ଜନ ମୁଖରେ ପ୍ରସାରିତ ଥିଲା । ଏହି ଆନ୍ଦୋଳନର ତିନି ମହାରଥୀ ନବ, ହରିଶ, ଉପେନ୍ଦ୍ର ବହିଷ୍କୃତ ହେଲେ ମେଡିକାଲ ସ୍କୁଲରୁ । ମହାତ୍ମା ଗାନ୍ଧୀଙ୍କର ହସ୍ତକ୍ଷେପ ଫଳରେ ତିନିବର୍ଷ ପରେ ସେମାନେ ପୁଣି ନାମ ଲେଖାଇବା ପାଇଁ ସମର୍ଥ ହୋଇ ପାରିଥିଲେ ।

ସେଇ ପ୍ରଥିତଯଶା ନବକିଶୋର ପଟ୍ଟନାୟକ ଆଉ ନାହାନ୍ତି । ତାଙ୍କର ସମସାମୟିକମାନଙ୍କ ମଧ୍ୟରୁ ବୋଧହୁଏ ବିବୁଧେନ୍ଦ୍ର ମିଶ୍ର, ଗଂଗାଧର ମହାପାତ୍ର ଏବଂ ଗୁରୁଚରଣ ପଟ୍ଟନାୟକ ଅଛନ୍ତି । ଅନ୍ୟମାନେ ବାହୁଡ଼ି ସାରିଲେଣି । ନବକିଶୋର କେବଳ ପ୍ରଖ୍ୟାତ ଛାତ୍ରନେତା ନଥିଲେ; ସେ ଥିଲେ ମଧ୍ୟ ଦକ୍ଷ ଫୁଟବଲ ଖେଳାଳୀ । ତତ୍କାଳୀନ ପ୍ରସିଦ୍ଧ ମୋହନବାଗାନ ଟିମ୍‌କୁ ଯେଉଁମାନେ ଟକ୍କର ଦେଉଥିଲେ ସେଇ ଟିମ୍‌ର ଅନ୍ୟତମ ଖେଳାଳୀ ଥିଲେ ନବକିଶୋର ।

ତାଙ୍କର ବାପାଙ୍କ ନାମ ଗୋବିନ୍ଦ ପଟ୍ଟନାୟକ । ସେ ଆଠଗଡ ଖୁଣ୍ଟକଟା ଗ୍ରାମର ଅଧିବାସୀ । କିନ୍ତୁ ଘଟଣାକ୍ରମେ ସେ ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥଙ୍କର ବାଲ୍ୟ ଶିକ୍ଷକ । ରାଧାନାଥ ରଥଙ୍କ ପରିବାରର ସେ ଥିଲେ ପାରିବାରିକ ବଂଧୁ ଏବଂ ଶୁଭେଚ୍ଛୁ ।

ନବକିଶୋରଙ୍କର ଅନ୍ୟ ଦୁଇ ଭାଇ ହେଉଛନ୍ତି ୰ ରାଜକିଶୋର ପଟ୍ଟନାୟକ ଏବଂ ୰ ଗଣେଶ୍ୱର ପଟ୍ଟନାୟକ । ରାଜକିଶୋର 'ସମାଜ'ର ସମ୍ପାଦକ, ରାଧାନାଥ ରଥଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଥିଲେ ଏବଂ ସେଇଯୋଗୁଁ ତାଙ୍କୁ ବହୁକାଳ ପର୍ଯ୍ୟନ୍ତ ଆଠଗଡ଼ କଲେଜର ସଂପାଦକ ଦାୟିତ୍ୱ ତୁଲାଇବାକୁ ପଡ଼ିଥିଲା ।

ଏହିଭଳି ପରିବାରରେ ଜନ୍ମ ନବକିଶୋର ଥିଲେ ନିର୍ଭୀକ, ସଚ୍ଚୋଟ ଏବଂ ଅଫୁରନ୍ତ ଶାରୀରିକ ଶକ୍ତିସମ୍ପନ୍ନ । ସେ ଡାକ୍ତର ହୋଇ ଓଡିଶାର ବହୁ ଡାକ୍ତରଖାନାରେ କାମ କରିଛନ୍ତି ସଫଳତାର ସହିତ । ଦୁର୍ଗମ କଳାହାଣ୍ଡି ଜିଲ୍ଲାରେ ସେ କାମ କରିଛନ୍ତି ନିଷ୍ଠାର ସହିତ, ଯେତେବେଳେ ଥୁଆମୂଳ ପରି ଅଗମ୍ୟ ସ୍ଥାନକୁ କେହି ଡାକ୍ତର ଯାଉନଥିଲେ । ମୋ ଭଳି ବହୁ ପଳାତକମାନଙ୍କର ସେ ଚିକିତ୍ସା କରିଛନ୍ତି ଗୁପ୍ତରେ, ପୁଲିସକୁ ଏଡ଼ାଇ । ତତ୍‌କାଳୀନ ସାମ୍ୟବାଦୀ ନେତା ମନମୋହନ ମିଶ୍ର, ଦୁର୍ଗାଚରଣ ମହାନ୍ତି ପ୍ରମୁଖ ତାଙ୍କର ଛାତ୍ର ଜୀବନରୁ ବନ୍ଧୁ, ସହଯୋଦ୍ଧା । ସେମାନଙ୍କର ମଧ୍ୟ ଚିକିତ୍ସା କରିଛନ୍ତି, ଆଶ୍ରୟ ଦେଇଛନ୍ତି ନବକିଶୋର, ଯେତେବେଳେ ପୁଲିସ ସେମାନଙ୍କୁ ଧରିବା ପାଇଁ ଖୋଜି ବୁଲୁଥିଲା ।

ସେ ଜଣେ ଭଲ ଅଭିନେତା ମଧ୍ୟ ଥିଲେ । ମଞ୍ଚରେ ଅଭିନୟ ପାଇଁ ସେ ଖ୍ୟାତି ଅର୍ଜନ କରିଥିଲେ । ରାଜ ସୁନାଖଳାର ପ୍ରସିଦ୍ଧ ରାସୋତ୍ସବ ତାହାର ଆଲେଖ୍ୟ ବହନ କରେ ।

ପରବର୍ତ୍ତୀ ଜୀବନରେ ଅରବିନ୍ଦଙ୍କ ଦର୍ଶନରେ ଅନୁପ୍ରାଣିତ ହୋଇଥିଲେ । ରାଉରକେଲା ପରି ବିଭିନ୍ନ ସହରରେ ତଥା ତାଙ୍କ ଗ୍ରାମରେ ଶ୍ରୀ ଅରବିନ୍ଦ ଶ୍ରୀମାଙ୍କ ଉଦ୍ଦେଶ୍ୟରେ ନିବେଦିତ ଚେତନାକେନ୍ଦ୍ର ଏବଂ ସ୍କୁଲ ଗଠିତ ହେବାରେ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ।

ବିଗତ କେତେବର୍ଷ ହେବ ସେ ଆଲଜିମର ବା ବିସ୍ମରଣ ରୋଗରେ ଆକ୍ରାନ୍ତ ଥିଲେ । ସାଇକେଲ ନେଇ କୁଆଡେ ଚାଲିଯାଆନ୍ତି କିନ୍ତୁ ଫେରନ୍ତି ଠିକ୍ ।

ଫେବୃଆରୀ ଦ୍ୱିତୀୟ ସପ୍ତାହ ସନ୍ ୨୦୦୪ ମସିହା । ନବ କିଶୋରଙ୍କୁ ୮୭ ବର୍ଷ ହେଲାଣି । ପୁଅ, ଝିଅ, ଜ୍ୱାଇଁ ସମସ୍ତେ ପ୍ରତିଷ୍ଠିତ ।

ଭାଇ ରାଜକିଶୋର, ଗଣେଶ୍ୱର ବାହୁଡ଼ି ଗଲେଣି ଅନେକ ଦିନରୁ । ସରକାରୀ ଚାକିରି ସମସ୍ତେ କରିଥିଲେ; କିନ୍ତୁ ସମସ୍ତଙ୍କର ଥିଲା ସାମାଜିକ ଅଙ୍ଗୀକାର ।

ହଠାତ୍ ନବକିଶୋର ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ କୋମାରେ ରହିଗଲେ । କଳିଙ୍ଗ ହସ୍‌ପିଟାଲରେ ତାଙ୍କର ଚିକିତ୍ସା ହେଲା । ପରେ ତାଙ୍କୁ ଆପଣାର ଝିଅ ଘରକୁ ଅଣାଗଲା । ସେଇଠି ଫେବୃଆରୀ ୧୯,୨୦୦୪ରେ ସେ ଆଖିବୁଜି ଦେଲେ

ଚିରଦିନ ପାଇଁ । ଶ୍ରୀମାଙ୍କ ଜନ୍ମଦିନ ଫେବୃଆରୀ ୨୦ ତାରିଖର ପୂର୍ବଦିନ ଏଇ ଶ୍ରୀମାଙ୍କର ଭକ୍ତଙ୍କର ଜୀବନ ଦୀପ ଲିଭିଗଲା, ଯାଇ ମିଶିଗଲା ସେଇ ଅନନ୍ତରେ ।

ଗ୍ରାମ ଖୁଣ୍ଟକଟାରେ ଲୋକ ଭିଡ଼ ଜମିଛି ଶେଷ ଦର୍ଶନ ପାଇଁ ।

ଚିତା ଜଳୁଛି ।

ଜ୍ୟେଷ୍ଠପୁତ୍ର ଅଧ୍ୟାପକ ଜ୍ୟୋତିପ୍ରକାଶ ମୁଖାଗ୍ନି ଦେଉଛନ୍ତି । ପାଖରେ ଠିଆହୋଇଛନ୍ତି ମଧ୍ୟମ ପୁତ୍ର ରାଉରକେଲା ଷ୍ଟିଲ୍‌ପ୍ଲାଣ୍ଟର ଜେନେରାଲ ମ୍ୟାନେଜର ସତ୍ୟପ୍ରକାଶ, ଭ୍ରାତୃଷ୍ପୁତ୍ର ଭକ୍ତବତ୍ସଳ ଏବଂ ଅରୁଣ, ଜାମାତା ଯୋଗେଶ । ଗ୍ରାମବାସୀମାନଙ୍କର ଭିଡ଼ ।

ନବକିଶୋର ଏକ ବିସ୍ମୃତ ଚରିତ୍ର; କିନ୍ତୁ ଇତିହାସ ପୃଷ୍ଠାରେ ସେ ଦିନର ମେଡ଼ିକାଲ ସ୍କୁଲ ଧର୍ମଘଟ, ମୋହନ ବାଗାନ ଟିମ୍ ସହିତ ଫୁଟବଲ ଖେଳ ଅପାସୋରା ।

ଇତିହାସ ଲୁହ ପୋଛୁଚି ।

□□□

## ଉତ୍କଳୀୟ ସ୍ୱାଭିମାନର ପ୍ରତୀକ ନମିତା

*(୰ ନମିତା ପଟ୍ଟନାୟକ)*

ସେଇ ରାତି ଥିଲା କାଳରାତ୍ରି । ଜୁଲାଇ ମାସ ତିନି ତାରିଖ ୨୦୦୫ ମସିହା । ଆକାଶରେ ବର୍ଷାର ପ୍ରଥମ ମେଘର ଆହବ । ମଧ୍ୟରାତ୍ରି ଅତିକ୍ରାନ୍ତ ହୋଇଛି । ଆଖିବୁଜି ଦେଇଛନ୍ତି ନମିତା ପଟ୍ଟନାୟକ, ତୁଳସୀପୁର ଆନନ୍ଦ ଭବନରେ ।

ଏଇ ଘରକୁ ସେ ଆସିଥିଲେ ବୋହୂହୋଇ ୧୯୩୯ ମସିହା ନଭେମ୍ବର ୨୦ ତାରିଖରେ । ଓଡିଶା ପ୍ରଦେଶ ଗଠନର ଅନ୍ୟତମ ମହାରଥୀ, ଓଡିଆ ଭାଷାର ଅନ୍ୟତମ ବାବଦୂକ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କର ବୋହୂ ହୋଇ, ଓଡ଼ିଶାର ପ୍ରଥମ ଦନ୍ତ ଚିକିତ୍ସକ, ଓଡିଶାର ଫୁଟବଲର ପ୍ରବାଦପୁରୁଷ ଜର୍ଜ ପଟ୍ଟନାୟକଙ୍କର ପତ୍ନୀ ହୋଇ ଶାଶୁ ଶ୍ୱଶୁରଙ୍କ ଛଡ଼ା ସ୍ୱାମୀ, ଦିଅର ବିଜୁ ପଟ୍ଟନାୟକ, ସିଜୁ ପଟ୍ଟନାୟକ, ନଣନ୍ଦ ସୁକୃତି (ମହାପାତ୍ର)ଙ୍କର ଦାୟିତ୍ୱ ପଡିଥିଲା ତାଙ୍କ ଉପରେ ।

ଲକ୍ଷ୍ମୀନାରାୟଣ ପଠାଇ ଦେଇଥିଲେ ଖଣ୍ଡିଏ ତ୍ରିଭାଷୀ ବହି । ନମିତା ଓଡ଼ିଆ ପଢ଼ିବ, ଲକ୍ଷ୍ମୀନାରାୟଣଙ୍କୁ ଚିଠି ଲେଖିବ ଓଡ଼ିଆରେ ଆଉ ବୋହୂ ହୋଇ ଆସିବ ତାଙ୍କ ଘରକୁ । ନମିତା ଦେବୀଙ୍କ ଘର ବଙ୍ଗଳାରେ (ପିତୃ ପୁରୁଷ ନୋଆଖାଲିର) ନମିତା, ପଢୁଥିଲେ ବି. ଏସ୍‌ସି ଅନର୍ସ, ଉଦ୍ଭିଦ ବିଜ୍ଞାନରେ ଅନର୍ସ ସହିତ । ପାଠ ଅଧାରେ ରହିଗଲା, ଓଡ଼ିଆ ପଢ଼ି ଓଡ଼ିଆ ଘରର ବୋହୂ ହୋଇ ସେ ସମ୍ଭାଳିବାକୁ ଆସିଲେ ଏକ ପରିବାରକୁ । ଆନନ୍ଦ ଭବନର ବିଶାଳ ବଗିଚା ତାଙ୍କର ଉଦ୍ଭିଦ ବିଜ୍ଞାନର ପ୍ରାକ୍ଟିକାଲ କ୍ଲାସ ପାଲଟିଲା ।

ସେ ଆସିଥିଲେ ବ୍ରାହ୍ମ ପରିବାରରୁ, ବ୍ରାହ୍ମ ପରିବାରର ବୋହୂ ମଧ୍ୟ । ପର୍ଦ୍ଦା ନାହିଁ କି ଯୌତୁକ ନାହିଁ । ଅଛି କେବଳ ନିଚ୍ଛକ ସ୍ୱାଭିମାନ ।

ସେଇ ସ୍ୱାଭିମାନର ପ୍ରତୀକ ନମିତା ପଟ୍ଟନାୟକ ଆଖି ବୁଜି ଦେଇଛନ୍ତି ପ୍ରାୟ ୮୪ ବର୍ଷ ବୟସରେ । ଜନ୍ମ ହୋଇଥିଲେ ୧୯୨୧ ମସିହା ଅକ୍ଟୋବର ଏକ ତାରିଖରେ । ସ୍ୱାଭିମାନକୁ ସେ ଜୀବନର ଏକମାତ୍ର ପାଥେୟ କରି ଯାଇଛନ୍ତି ।

ଆନନ୍ଦ ଭବନର ନିର୍ମାଣ ସମ୍ପୂର୍ଣ୍ଣ ହୁଏ ୧୯୩୮ ମସିହାରେ । ଆନନ୍ଦ ଭବନ ହେଉଛି ଓଡିଶାର ଇତିହାସର ଏକ ଅଂଶ । କେତେ ଧାର ବୋହି ଯାଇଛି, କେତେ ରଥୀ ମହାରଥୀଙ୍କର ମିଳନ ପୀଠ ଏଇ ଆନନ୍ଦ ଭବନ ।

ଓଡିଶା ପ୍ରଦେଶ ଗଠିତ ହୋଇଛି; କିନ୍ତୁ ଓଡିଆ ଭାଷାକୁ ବଞ୍ଚାଇ ରଖିବାର ସଂଗ୍ରାମ ଚାଲୁ ରହିଛି । ଏଇ ଆନନ୍ଦ ଭବନର ଗୋଟିଏ ଅଂଶରେ ଗଢ଼ା ହୋଇଛି ଓଡିଶାର ପ୍ରଥମ ବ୍ୟାଙ୍କ । ଏଇଠି କମ୍ୟୁନିଷ୍ଟ ଷଡଯନ୍ତ୍ର ମୋକଦ୍ଦମାର ଏକ ଅଂଶର ନାଟକ । ସାକ୍ଷୀ ସ୍ୱାମୀ ଡାକ୍ତର ଜର୍ଜ ପଟ୍ଟନାୟକ । ଏଇଠି ସ୍ୱାଧୀନତା ଆନ୍ଦୋଳନର ମହାରଥୀଙ୍କର ସାହସ ଏବଂ ଦୁଃସାହସର ପ୍ରଥମ ଅଙ୍କ-ଓଡିଶା ଟ୍ରେକ୍ଟ୍ରାଇଲ୍ସ ଏବଂ କଳିଙ୍ଗ ଟ୍ୟୁବସ ଗଠନର ପର୍ବ । ଏଇଠି ନିର୍ବାଚନ ଯୁଦ୍ଧ ବିଜୁ ପଟ୍ଟନାୟକଙ୍କର । ନମିତା ପଟ୍ଟନାୟକ ସବୁ ନାଟକର ମୂକସାକ୍ଷୀ; କିନ୍ତୁ ସେ ନୀରବ, ସହନଶୀଳ ଏବଂ କରୁଣାର ପ୍ରତୀକ । ସବୁ ଦାଉର ଧାସ ସହିଛନ୍ତି । ଦାରିଦ୍ର୍ୟର ଯେମିତି, ପ୍ରାଚୁର୍ଯ୍ୟର ବି ସେମିତି । ଦେଖିଛନ୍ତି ଖାଲି ରୁଟି ଆଉ ମାଂସର ଆହାର । ଦେଖିଛନ୍ତି ଟଙ୍କାର ହୋରି ଖେଳ । ସେ କିନ୍ତୁ ନିର୍ଲିପ୍ତ, ନୀରବ, ସ୍ୱାଭିମାନୀ ସବୁଦିନ ପରି ।

ମରଦେହକୁ ଘେରି ରହିଛନ୍ତି ଦୁଇ କନ୍ୟା ବାଚୁ, ମଞ୍ଜୁ, ଏକମାତ୍ର ପୁତ୍ର ବାବଲୁ, ପୁତୁରା ନବୀନ, ଭଣଜା ଦିଲୁ, ବୁଲୁ, ଭାଣିଜୀ କମଳ, ଭଣଜା ଅଶୋକ ଏବଂ ଅନ୍ୟମାନେ । ଯିଏ ଖବର ପାଉଛି ଛୁଟି ଆସୁଛି । ଭିଡ଼ ଜମିଛି । ଲୁହ ଆଉ ଆହା ଶବ୍ଦର ଭିଡ଼ । ନବୀନର ଜନ୍ମ ପରେ ପରେ ବାପା ବିଜୁ ଏବଂ ମାଆ ଜ୍ଞାନକୁ ଯିବାକୁ ପଡ଼ିଥିଲା ବିଦେଶକୁ, ଟ୍ୟୁବରେ ରଖି ସେଇ ଛୁଆକୁ ବଞ୍ଚାଇ ଥିଲେ ନମିତା ଦେବୀ । ସେଇ ନବୀନ ଆଜି ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସମୟ ଅତିକ୍ରାନ୍ତ ହୋଇଛି ।

ସ୍ୱାମୀ ଜର୍ଜ, ଦିଅର ବିଜୁ, ଦିଅର ସିଜୁ, ନଣନ୍ଦ ସୁକୃତି ସମସ୍ତେ ଛାଡ଼ି ଚାଲିଯାଇଛନ୍ତି । ସେ ଏକାକିନୀ ହୋଇ ଯାଇଛନ୍ତି । ଅତ୍ୟନ୍ତ ଏକାକିନୀ । ତଥାପି ସେ ଭାଙ୍ଗି ପଡ଼ିନାହାନ୍ତି । ହଠାତ୍ ଅସୁସ୍ଥ ହୋଇ ପଡ଼ିବା ପର୍ଯ୍ୟନ୍ତ ସେ ଥିଲେ ସକ୍ରିୟ । ସୁଇଜରଲାଣ୍ଡ, ଆମେରିକାରେ ଥିବା ନାତୁଣୀ (ମଞ୍ଜୁର ଝିଅ), ଜର୍ମାନୀରେ ଥିବା ନାତି (ବାଚୁର ଝିଅ) ସମସ୍ତଙ୍କର ଖବର ବୁଝିବାଠାରୁ ଆରମ୍ଭ କରି ଖାଦ୍ୟ ପ୍ରସ୍ତୁତି ପର୍ଯ୍ୟନ୍ତ ସବୁ କଥା ସେ ବୁଝୁଥିଲେ ।

ସ୍ୱାଭିମାନ, ଉତ୍କଳୀୟ ସ୍ୱାଭିମାନର ଏଇ ପ୍ରତୀକ ହଠାତ୍ ଆଉ ନାହିଁ, ସେ ଚାଲି ଯାଇଛନ୍ତି ସେଇଠାକୁ ଯେଉଁଠୁ ଆଉ କେହି କେବେ ଫେରି ନାହାନ୍ତି; କିନ୍ତୁ ଯେଉଁଠାକୁ ଯିବା ହେଉଛି ଜନ୍ମ ପରେ ଏକମାତ୍ର ସତ୍ୟ ।

ଇତିହାସର ସେ ପୃଷ୍ଠା କେବେ ଖୋଲିବ ନାହିଁ । ସେଥିରେ ରହିଯିବେ ଅନେକ ସାକ୍ଷୀ ଯେଉଁମାନେ ଦେଖିଛନ୍ତି, ସହିଛନ୍ତି କିନ୍ତୁ କହି ନାହାନ୍ତି । ସେଇଭଳି ଜଣେ ଅନନ୍ୟା ଥିଲେ ନମିତା ।

ପୁଅ ବାବୁଲୁ କାନ୍ଦୁଛି ତୁହାକୁ ତୁହା । ସମସ୍ତେ ଆଖିରୁ ଲୁହ ପୋଛୁଛନ୍ତି । କାନ୍ଧ ଦେଇଛନ୍ତି କୋକେଇରେ ପୁତ୍ର, ପୁତୁରା ଏବଂ ଭଣଜାମାନେ । ମହାଯାତ୍ରାର ଶେଷ ପର୍ବ । ଖାନନଗର ବୈଦ୍ୟୁତିକ ଚୁଲ୍ଲୀ । ଆଉ କ୍ଷଣକୁ ଦାନୁ ପାଉଁଶ । ଇତିହାସର ନୀରବ ଅଧ୍ୟାୟର ସମାପ୍ତି ।

□□□

# ଅନନ୍ୟ ପ୍ରତିଭା

## (ଂ ନବକୁମାର ଦାସ)

ଏପରି ମଣିଷ ଖୁବ୍ କମ ଜନ୍ମ ହୁଅନ୍ତି । ଜୀବନର ବହୁ ବିଭାବ ଉପରେ ଆପଣାର ଆଲେଖ୍ୟ ରଖିଯାଇଥିବା ଏଇପରି ଅନନ୍ୟ ପ୍ରତିଭା ଥିଲେ ଜଷ୍ଟିସ୍ ନବକୁମାର ଦାସ । ୧୯୨୦ ମସିହା ମଇ ମାସ ୪ ତାରିଖରେ ଜନ୍ମ ନବକୁମାର ଆଖି ବୁଜିଦେଲେ ମାର୍ଚ୍ଚ ୧୧ ତାରିଖ, ୨୦୦୫ରେ ।

ମାର୍ଚ୍ଚ ୧୧ ତାରିଖ ସକାଳର ସୂର୍ଯ୍ୟୋଦୟ ସହିତ ନବକୁମାରଙ୍କର ଜୀବନ ସୂର୍ଯ୍ୟ ନିର୍ବାପିତ ହୋଇଗଲା ଚିରଦିନ ପାଇଁ ।

ପିତା ରାମଚନ୍ଦ୍ର ଦାସ ଥିଲେ ପ୍ରଖ୍ୟାତ ଆଇନଜୀବୀ । ତାଙ୍କରି ପ୍ରେରଣାରେ ସେ ଆଇନ ପଢ଼ା ଓ ପରେ ଆଇନ୍ ବ୍ୟବସାୟ ପାଇଁ ପ୍ରେରଣା ପାଇଥିଲେ । ସେ ପାଟଣା ବିଶ୍ୱବିଦ୍ୟାଳୟରୁ ଆଇନ ପାଶ କରି ପ୍ରଥମେ ମୁନସଫ୍ ହୋଇଥିଲେ । ଓଡ଼ିଶା ହାଇକୋର୍ଟ (୧୯୪୮) ପ୍ରତିଷ୍ଠା ହେଲା ପରେ ସେ ଚାକିରିରୁ ଇସ୍ତଫା ଦେଇ ସ୍ୱାଧୀନ ଭାବରେ ଓକିଲାତି ଆରମ୍ଭ କଲେ । ଟାକ୍ସ ଓ ଦେଓ୍ୱାନୀ ମାମଲାରେ ଜଣେ ପ୍ରତିଷ୍ଠିତ ଆଇନଜୀବୀ ଭାବରେ ସୁନାମ ଅର୍ଜନ କରିଥିଲେ । ନିଷ୍ଠା ଓ କାର୍ଯ୍ୟଦକ୍ଷତା ହେତୁ ସେ ଓଡ଼ିଶା ତଥା ଭାରତ ସରକାରଙ୍କର ପ୍ରତିନିଧି ଭାବରେ ବହୁ ମୋକଦ୍ଦମା ସଫଳତାର ସହିତ ପରିଚାଳନା କରିଥିଲେ । ୧୯୭୫ ମସିହାରେ ସେ ଓଡ଼ିଶା ହାଇକୋର୍ଟର ବିଚାରପତି ନିଯୁକ୍ତ ହୋଇ ୧୯୮୨ ମସିହାରେ ଅବସର ଗ୍ରହଣ କରିଥିଲେ । ଅବସର ନେଲା ପରେ ବି ସେ ବୁର୍ଲା ଇଂଜିନିୟରିଂ ଛାତ୍ର ମୃତ୍ୟୁ ମାମଲା, ମଣ୍ଡଳ କମିଶନ ରିପୋର୍ଟ ଅନ୍ୟ ପଛୁଆ ଜାତି ସଂରକ୍ଷଣ ମାମଲା ପ୍ରଭୃତି ଗୁରୁତ୍ୱପୂର୍ଣ୍ଣ ଘଟଣାର ତଦନ୍ତକାରୀ କମିଶନ ରୂପେ କାର୍ଯ୍ୟ କରିଥିଲେ । ଏହାଛଡ଼ା ରାଜ୍ୟ କୋଅପରେଟିଭ ବ୍ୟାଙ୍କ, ରାଜ୍ୟ ହସ୍ତତନ୍ତ ସମବାୟ ସମିତି, କେନ୍ଦ୍ର ସମବାୟ ବ୍ୟାଙ୍କର ନିର୍ଦ୍ଦେଶକ ରୂପେ ସେ ସମବାୟ କ୍ଷେତ୍ରରେ ମଧ୍ୟ ଆପଣାର ଗୁରୁତ୍ୱପୂର୍ଣ୍ଣ ଅବଦାନ ପାଇଁ ସ୍ମରଣୀୟ ହୋଇ ରହିବେ । ସମବାୟ ଆନ୍ଦୋଳନ ପ୍ରତି ତାଙ୍କର ଥିଲା

ଅହେତୁକ ଦୁର୍ବଳତା । ସମବାୟ କ୍ଷେତ୍ରରେ କାମ କରୁଥିବା କର୍ମୀଙ୍କ ପାଇଁ ତାଙ୍କର ଦ୍ୱାର ଥିଲା ଉନ୍ମୁକ୍ତ । ତାଙ୍କର ସଂପାଦନାରେ ତିନୋଟି ଆଇନ୍ ପତ୍ରିକା ମଧ୍ୟ ପ୍ରକାଶ ପାଉଥିଲା ।

ଏତ ଗଲା ତାଙ୍କର ଜୀବନର ମାତ୍ର ଗୋଟାଏ ଦିଗ । ଆଇନ୍ ବ୍ୟବସାୟ ଏବଂ ସଂପାଦନା । କିନ୍ତୁ ତାଙ୍କର ପ୍ରତିଭା ଥିଲା ଅନନ୍ୟ ଏବଂ ବହୁ ବିଭାବକୁ ପରିବ୍ୟାପ୍ତ ।

ସେ ଥିଲେ ଜଣେ ନାଟ୍ୟକାର । ଓଡିଶାର ନବନାଟ୍ୟ ଆନ୍ଦୋଳନର ଅନ୍ୟତମ ପୁରୋଧା । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ସହିତ ତାଙ୍କର ସହଯୋଗ ଥିଲା ।

ଜଷ୍ଟିସ୍ ନବକୁମାର ବହୁ ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ । ତା ଭିତରେ କଳାବିକାଶ କେନ୍ଦ୍ର ଅନ୍ୟତମ । ଦି' ୟୁନିଭର୍ସ ପ୍ରତିଷ୍ଠା କରିଥିବା କାଉନସିଲ ଅଫ୍ କଲଚରାଲ ଗ୍ରୋଥ ଏଣ୍ଡ କଲଚରାଲ ରିଲେସନ୍ସର ସେ ଥିଲେ ପ୍ରତିଷ୍ଠା କରିଥିବା ସଭ୍ୟମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କର ବିୟୋଗରେ ଏକ ବହୁମୁଖୀ ପ୍ରତିଭାର ଅବସାନ ହୋଇଛି ।

କାଳଚକ୍ରର ଆବର୍ତ୍ତନରେ ସେ କେତେଦିନ ସ୍ମୃତହୋଇ ରହିବେ ସେ ଅଲଗା କଥା । କିନ୍ତୁ ଚଳନ୍ତି ସମୟରେ ଜୀବନର ବହୁ ବିଭାବକୁ ଛୁଇଁ ଯାଇଥିବା ଏବଂ ସବୁଥିରେ ଆଲେଖ୍ୟ ରଖିଯାଇଥିବା ଏଇ ମଣିଷକୁ କଳା, ସାହିତ୍ୟ, ସଂସ୍କୃତି, ଆଇନ୍ ବିଭବ ଝୁରିବ ବହୁକାଳ ପାଇଁ ।

ମଣିଷ ଭାବରେ ସେ ଥିଲେ ଦରଦୀ, କୋମଳ ଏବଂ ବନ୍ଧୁବତ୍ସଳ । ତାଙ୍କର ପରଲୋକରେ ମୋ ଭଳି ବହୁ ବ୍ୟକ୍ତି ଆପଣାର ପରିବାରର ଜଣକୁ ହରାଇ ବସିଛନ୍ତି ।

❑❑❑

# ଗୃହସ୍ଥ ସନ୍ନ୍ୟାସୀ

*(ସ୍ୱ ନିତ୍ୟାନନ୍ଦ ସାମନ୍ତରାୟ)*

ଲୋକଟିକୁ ଦେଖିଲେ ମନେହୁଏ ବାବାଜୀ ଜଣେ । କିନ୍ତୁ ସେ ବାବାଜୀ ନୁହନ୍ତି, ଗୃହସ୍ଥ । ବିଷୟାବିଷ ପାଇଁ ବୈରାଗ୍ୟ । ସମୂହର କଲ୍ୟାଣ ପାଇଁ ଦରଦ । ବାପା ତହସିଲଦାର ଥିଲେ । ପୁଅର କିନ୍ତୁ ସ୍କୁଲ ପାଠପଢ଼ା ପ୍ରତି ମନ ନଥିଲା । ମନ ଥିଲା ଯୁବକ ସଂଘ ଗଢ଼ିବାରେ, ଅସ୍ପୃଶ୍ୟତା ନିବାରଣରେ । ଗାଁର ନାମ ପାଟକୋଳିପଙ୍କ । ମହାନଦୀ ସେଇଠି ଛୁଆଖାଇ ଡାହାଣୀ ପାଲଟେ । ବନ୍ୟା ଖାଇ ଯାଉଛି ଗାଁକୁ । ଆଉ କେତେ ବର୍ଷ ପରେ ଭୂଗୋଳ ପୋଥିରୁ ଲୋପ ପାଇଯିବ ଗାଁର ନାମ । ଆଉ ରହିଯିବ ଇତିହାସର ପୃଷ୍ଠାରେ । ଯୁବକ ନିତ୍ୟାନନ୍ଦ କିନ୍ତୁ ପ୍ରକୃତିର ଭୀମ ମୂର୍ତ୍ତି ଆଗରେ ହାର ମାନିବାକୁ ନାରାଜ । ନଈରେ ବନ୍ଧ ତିଆରି ହେବ । ଗାଁ ବୁଡିଯାଏ ବନ୍ୟାରେ ଲୋକେ ଆଶ୍ରୟ ନିଅନ୍ତି ନଈବନ୍ଧରେ । ସେଇଠି ବି ରିଲିଫ୍ ଚାଉଳ ବାଣ୍ଟିବା କାମରେ ତାଙ୍କୁ ଦେଖାଯାଏ । କଳା ଚେହେରା । ଦେଖାଯାଏ ଅନନ୍ତ ଆକାଶର ପଟଭୂମିରେ ଏକ ସିଲହଟ୍ ଛବି ଭଳି । ଦଶମ କ୍ଲାସରୁ ପୋଥିରେ ଡୋର ବନ୍ଧା ହେଲା । ସେ ଚାଲିଲେ ଜୀବନର ଚାଟଶାଳୀରେ ପଢ଼ିବା ପାଇଁ ।

୧୯୮୨ ମସିହା । ବନ୍ୟା, ବାତ୍ୟା ସାଙ୍ଗରେ ମରୁଡି । ପ୍ରକୃତିର ହିଂସ୍ର ରୂପ ଆଗରେ ମଣିଷ ଛାର ! ପାଣି ଘୂର୍ଣ୍ଣି ଖାଉଛି । ମହାନଦୀ କାୟା ବିସ୍ତାର କରିଛି ଦିଗନ୍ତ ପର୍ଯ୍ୟନ୍ତ । ନଈରେ ଉତ୍ତାଳ ତରଙ୍ଗ । କିନ୍ତୁ ନିତ୍ୟାନନ୍ଦ ସାମନ୍ତରାୟ ନଛୋଡବନ୍ଧା । ଏଇ ପାଣିକୁ କାଟି ସେ ଆସିବେ କଟକ, ନେବେ ରିଲିଫ । ଗାଁବାଲା ଭୋକରେ ମରିଯିବେ ନା କ'ଣ ? ଅସମ୍ଭବ ।

ବସନ ଗେରୁଆ । ମୁହଁରେ ଲମ୍ବା ଦାଢ଼ି । ଅକାଳରେ ପାଚିଗଲାଣି । ମୁଣ୍ଡବାଳ ଅଯତ୍ନରେ ଜଟା ହୋଇଗଲାଣି । କିନ୍ତୁ ସେଥିକି ଖାତର ନାହିଁ । ଦେଖାହୁଏ ସବୁ ଯାଗାରେ । ଲୋକଙ୍କ ପାଇଁ ସେବା ଏକ ନିଶା ପାଲଟିଛି । ଜୀବନରେ କେବେ ଏକ ଆକସ୍ମିକ ଘଟଣା ଘଟିଥିଲା । ତା' ହେଉଛି ବିବାହ । ସ୍ତ୍ରୀ, ପୁଅ, ଝିଅଙ୍କୁ ଅନେଇବା ପାଇଁ ବେଳ ନାହିଁ ।

ଆଗରେ ସମ୍ମୁଖରେ ବିରାଟ ଆହ୍ୱାନ । ନିଦ ହୁଏନା, କ୍ଳାନ୍ତ ଲାଗେନା । ଚାଲ, ଚାଲ ଚାଲ ଆଗେଇ ଚାଲ । ଚରୈବେତି, ଚରୈବେତି । ସମୟ ଦ୍ରୁତ ଗତିରେ ଧାଇଁଛି । ତାରି ସହିତ ତାଳ ଦେଇ ଚାଲିବାକୁ ହେବ । ନଈବନ୍ଧରେ ମା'ଟିଏ ଝିଅଟିକୁ ଜନ୍ମ ଦେଇଛି । ପାଖରେ ଠିଆ ହୋଇଛନ୍ତି ନିତ୍ୟାନନ୍ଦ । ଡର ନାଇଁ ମା' ମୁଁ ଅଛି । ମୁଁ ଅଛି । ମୁଁ ଅଛି । ମୁଁ ଅଛିର ପ୍ରତିଧ୍ୱନି ଶୁଭୁଛି ନଈର ବିଶାଳ ବକ୍ଷରେ । ଝିଅଟିର ଜନ୍ମ । ନିତ୍ୟାନନ୍ଦ ସବୁ କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ । ପ୍ରସୂତୀ ଧାତ୍ରୀ ଶୁଶ୍ରୁଷା ଧାତ୍ରୀ । ଝିଅର ନାଁ ଦିଆଯାଇଛି ବନ୍ୟା ।

ଏଇ ଗ୍ରାମ ପୁଞ୍ଜ ପ୍ରକୃତିର ବିରାଟ ଉପହାସ । ମହାନଦୀ ବୋହି ଯାଉଛି ତାର ବିଶାଳ ବକ୍ଷରେ ଅକାତକାତ ପାଣି ନେଇ । କିନ୍ତୁ ପିଇବା ପାଇଁ ଟୋପାଏ ପାଣି ନାହିଁ । ସବୁ ପାଣି ଲୁଣିଆ ପାଲଟିଛି । ଅଦୂରରେ ଏକ୍‌ସପ୍ରେସ୍ ରାଜପଥ । ଭାରତର ଅଟୋ-ଭାନ୍ । କିନ୍ତୁ ଏଇ ଗ୍ରାମ ପୁଞ୍ଜକୁ ଆସିବା ପାଇଁ ରାସ୍ତା ନାହିଁ । ଦୁରାରୋଧ୍ୟ ଗତି ପଥ । କି ବିଚିତ୍ର ! ଅନତି ଦୂରରେ ପାରାଦ୍ୱୀପ ବନ୍ଦର । ବିଜୁଳି ଆଲୁଅରେ ଜଳୁଛି । କିନ୍ତୁ ଏଇ ଗ୍ରାମପୁଞ୍ଜରେ ଆଲୁଅ ନାହିଁ ।

ଏବଂ ଏଇ ଅଞ୍ଚଳ ଓଡିଶାର ପ୍ରବାଦ ପୁରୁଷ ରାଜନୀତିଜ୍ଞ ବିଜୁ ପଟ୍ଟନାୟକଙ୍କୁ ସାତଥର ନିର୍ବାଚିତ କରିଛି ।

ନିତ୍ୟାନନ୍ଦ କିନ୍ତୁ ଗର୍ବିତ ବିଜୁ ପଟ୍ଟନାୟକଙ୍କ ପାଇଁ । ହୁଏତ ଆମ ଗାଁ ପୁଞ୍ଜର ପରିବର୍ତ୍ତନ ହୋଇନାଇଁ କିନ୍ତୁ ଏକ୍‌ସପ୍ରେସ ହାଇ ୱେ (High Express Way) ଏବଂ ପାରାଦ୍ୱୀପ ବନ୍ଦର ତ କେନ୍ଦ୍ରାପଡା, ରାଜନଗର, ପଟ୍ଟାମୁଣ୍ଡାଇ, ପାଟକୁରାର ମାନଚିତ୍ର ବଦଳାଇ ଦେଇ ପାରିଛି । କିଏ କରିଚି ଏ ସବୁ ? କା' ପାଇଁ ସମ୍ଭବ ହୋଇଚି ଏ ସବୁ ? ନିତ୍ୟାନନ୍ଦ କିଛି ଶୁଣିବାକୁ ନାରାଜ ।

୧୯୮୨ ମସିହା । କାଳରାତ୍ରୀ ଘୋଟି ଆସୁଛି । ନିତ୍ୟାନନ୍ଦ ଅଣ୍ଟାଭିଡି ବାହାରିଛନ୍ତି । କିଛି ଗୋଟାଏ କରିବାକୁ ହେବ । ସେଦିନର ଝଡ଼ରାତିର ବୁକୁଚିରି ଜନ୍ମ ହୋଇଥିଲେ ଶ୍ରୀକୃଷ୍ଣ । ଯୁଗାବସାନ ଏବଂ ନୂତନ ଯୁଗର ସୂଚନା । ୧୯୮୨ର କାଳରାତ୍ରି ଭିତରୁ ଜନ୍ମ ନେଲା ଲୁଥେରାନ ମହିଳା ସମିତି, ନିବେଦିତା ହୋମ୍ । କୁମାରୀ ପ୍ରମିଳା ତ୍ରିପାଠୀଙ୍କର ସଂସାର ହୋଇଗଲା ସେଇ ଅନୁଷ୍ଠାନ । ଆଉ ସଂସାର ସେ ପାତିଲେ ନାହିଁ । ଗୋଟିଏ ପୁତ୍ର ବଦଳରେ ସେ ଅନେକ ଅନାଥ ଶିଶୁର ମାଆ ହୋଇଗଲେ । କିଏ ଦେବ ସାହସ ? କିଏ ଦେବ ବଳ ? ପାଖରେ ଠିଆ ହୋଇଛନ୍ତି ବିଶାଳ ପୁରୁଷ ନିତ୍ୟାନନ୍ଦ ସାମନ୍ତରାୟ । ଡର ନାହିଁ ମା', ଡର ନାହିଁ । ଡର କାହାକୁ, ଭୟ କାହାକୁ, ଠାକୁର ଅଛନ୍ତି

ଚଉବାହାକୁ । ସବୁ ବାଧା ବନ୍ଧନ, ସବୁ ବାଦ ପ୍ରତିବାଦର ଢେଉ କାଟି ଠିଆହେଲା ନିବେଦିତା ହୋମ୍‌ର ଘର 'ଉଷା' । କେତେ ବଡ଼ ସାନ ମଣିଷ, କେତେ ଦେଶ ବିଦେଶର ମଣିଷ ସେଠି ପାଦ ଦେଲେ । ମାଟି ଧନ୍ୟ ହୋଇଗଲା । ଗର୍ବିତ ନିତ୍ୟାନନ୍ଦଙ୍କ ବୁକୁ ଆଉରି ଓସାରିଆ ହୋଇଗଲା ।

` ପଞ୍ଚାୟତ ପାଇଁ ନିର୍ବାଚନ । ନିତ୍ୟାନନ୍ଦ ସାମନ୍ତରାୟ ପ୍ରାର୍ଥୀ । ପ୍ରତିଦ୍ୱନ୍ଦ୍ୱିତା କରିବାକୁ କେହି ନାହାନ୍ତି । କାହା ସହିତ ଲଢ଼ିବେ ? ଏଇ ବାବାଜୀଟା ସହିତ । କିଏ ଲଢ଼ିବ ? ସରପଞ୍ଚ ହେଲେ । ପଞ୍ଚାୟତ ସମିତିର ଉପସଭାପତି ହେଲେ । କିନ୍ତୁ ରହିଗଲେ ସେଇପରି । ଉଦ୍ମନା, ଭବଘୁରା ଏବଂ ନିର୍ବିକାର ।

ରକ୍ତଚାପ ରୋଗ ଗ୍ରାସ କଲା । ରୁଦ୍ରାକ୍ଷମାଳା ତାଙ୍କୁ ରକ୍ଷା କରି ପାରିଲା ନାହିଁ । କିନ୍ତୁ ଔଷଧ ଖାଇଲେ ନାହିଁ ନିୟମିତ । କ'ଣ ଗୋଟାଏ ରୋଗର ଅପରେସନ୍ ପାଇଁ ନିତ୍ୟାନନ୍ଦ ଆସିଲେ ଆଚାର୍ଯ୍ୟ ହରିହର କ୍ୟାନ୍‌ସର ଇନିଷ୍ଟିଚ୍ୟୁଟ୍‌କୁ । କ୍ୟାନସର ହୋଇନଥିଲା । କିନ୍ତୁ କେତେକ ବନ୍ଧୁ ଅଧିକ ଯତ୍ନ ପାଇବାର ସୁଯୋଗ ନେବା ସକାଶେ ସେଠାକୁ ନେଇ ଯାଇଥିଲେ । କିନ୍ତୁ ତାହା ହିଁ କାଳ ପାଲଟିଲା । ଅପରେସନ୍ ସରିଗଲାଣି ୩/୪ ଦିନ ହେବ । ନିତ୍ୟାନନ୍ଦ ଖୁବ୍ ଖୁସି । ଶୀଘ୍ର ଚାଲିଯିବେ ଗାଁକୁ । କେତେ କାମ ବାକି ରହିଗଲାଣି । ତେଣେ ଯେ ଅନ୍ୟ କୁଆଡ଼କୁ ଚାଲିଯିବାପାଇଁ ଡାକରା ଆସିଲାଣି ଏକଥା କ'ଣ ସେ ଜାଣିଥିଲେ ? ସବୁ କାମ ଅଧା ରହିଯିବ । ମଣିଷ ଚାଲିଯିବ ସେଇଠିକୁ ଯେଉଁଠୁ କେହି ଫେରି ନାହାନ୍ତି । ଜୀବନ ଦୀର୍ଘ ହୋଇ ନାହିଁ । କିନ୍ତୁ ମରଣ ଦୀର୍ଘ ହୋଇଯିବ । ଚିତା ଜଳିବ । ତଥାପି ସେ ଫେରିବ ନାହିଁ । ତାହାରି ନାଁ ତ ଜୀବନ ।

ମ୍ଲାନ ଅପରାହ୍ନ । ହଠାତ୍ ହୃଦ୍‌ରୋଗରେ ଆକ୍ରାନ୍ତ ନିତ୍ୟାନନ୍ଦ । କ୍ୟାନ୍‌ସର ଇନ୍‌ଷ୍ଟିଚ୍ୟୁଟ । କିନ୍ତୁ ମେଡିସିନ ବିଭାଗର ଡାକ୍ତର ନାହାନ୍ତି । ଡାକ୍ତର ଡାକିବାକୁ ଲୋକ ଦୌଡ଼ିଛନ୍ତି ।

କିନ୍ତୁ ।

ସେତେବେଳକୁ ସବୁ ଶେଷ ।

ତା' ପରେ ?

କିଛି ଆହା, କିଛି କାନ୍ଦ, କିଛି ଲୁହ, ଜନତାର ଭିଡ ଜମିଛି ।

ଯାତ୍ରା ।

କଟକରୁ ପାଟକିପଙ୍କ ।

ସେଇଠି ମହାନଦୀ କୂଳରେ ଚିତା ଜଳୁଛି ।

ଗୃହସ୍ଥ ସନ୍ନ୍ୟାସୀର ନିର୍ବାଣ ।

ମୁଠାଏ ପାଉଁଶ ।

ଏବଂ ଲୁହବୋଳା ସ୍ମୃତି ।

ସେଇଠି ରାସ୍ତା କଡରେ । ଏକ୍ସପ୍ରେସ ହାଇୱେରେ ମୂର୍ତ୍ତିଟିଏ ତିଆରି ହୋଇଛି । କେବେ ଧୂପ, କେବେ କେବେ ଫୁଲମାଳ ।

ନିର୍ଜନ ରାତି । ଚନ୍ଦ୍ରଧୌତ ଆକାଶ । କ୍ରନ୍ଦସୀ ଯେପରି ସୁରାସକ୍ତ ନିଦ୍ରାରେ । ଦୂରରେ କାଶତଣ୍ଡୀଫୁଲ । ସେତିକିବେଳେ ଡାକ ଶୁଭେ କୁଆଡେ ସେଇ ମୂର୍ତ୍ତିରୁ । ଲୋକେ ଚମକନ୍ତି । କିଏ ଡାକୁଚି ? ଜନରବ ଯେ ନିତ୍ୟାନନ୍ଦ ଆଜି ବି ଡାକନ୍ତି ଲୋକଙ୍କୁ ।

ଏହା ହେଉଛି ଓ୍ଵକ୍ତ କି ଆଓ୍ଵାଜ, ସମୟର ଡାକ ।

❑❑❑

# ମନୀଷୀ ନୀଳକଂଠଙ୍କ ମହାପ୍ରୟାଣ

*(୰ ନୀଳକଂଠ ଦାସ)*

ଆଜି ୧୯୬୭ ମସିହା ନଭେମ୍ବର ମାସ ଛଅ ତାରିଖ । ଆଜି ସକାଳୁ ଓଡ଼ିଶା ହଠାତ୍ ଦରିଦ୍ର ହୋଇଗଲା । ମହାପଣ୍ଡିତ ମହର୍ଷି ନୀଳକଣ୍ଠ ମହାନିଦ୍ରାରେ ଶୋଇଗଲେ ଚିରକାଳ ପାଇଁ । ନୀଳକଣ୍ଠ ଥିଲେ ପ୍ରବାଦ ପୁରୁଷ । ସେ ଏକାଧାରରେ ଥିଲେ ପଣ୍ଡିତ, ବାଗ୍ମୀ, ରାଜନୀତିଜ୍ଞ, ଲେଖକ, ବ୍ୟାଖ୍ୟାକାର ତଥା ସମାଜ ସଂସ୍କାରକ । ରାଜନୀତିଜ୍ଞ ହିସାବରେ ନୀଳକଣ୍ଠଙ୍କ ଖ୍ୟାତି ବେଶ୍ ଥିଲା । କିନ୍ତୁ ଆଜିଠାରୁ ବହୁବର୍ଷ ପରେ ହୁଏତ ରାଜନୀତିଜ୍ଞ ନୀଳକଣ୍ଠ ଜନସ୍ମୃତିରୁ ଅପସରିଯିବେ; କିନ୍ତୁ ସମାଜ ସଂସ୍କାରକ, ଲେଖକ ଓ ବ୍ୟାଖ୍ୟାକାର ଭାବରେ ତାଙ୍କର ଖ୍ୟାତି ଅମଳିନ ରହିଯିବ ଓଡିଆ ଜାତି, ଓଡିଆ ସାହିତ୍ୟ ବଞ୍ଚିଥିଲା ପର୍ଯ୍ୟନ୍ତ ।

ସେ ଥିଲେ ଅନନ୍ୟ ସାଧାରଣ । ଏପରି ବ୍ୟକ୍ତି ମିଳିବା କଠିନ । ୧୮୮୪ ମସିହା ଅଗଷ୍ଟ ୫ ତାରିଖରେ ପୁରୀ ଜିଲ୍ଲା ସତ୍ୟବାଦୀ ଥାନାର ଶ୍ରୀରାମଚନ୍ଦ୍ରପୁର ଗ୍ରାମରେ ଏକ ନୈଷ୍ଠିକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ପଣ୍ଡିତ ନୀଳକଣ୍ଠଙ୍କର ଜନ୍ମ । ବାଲ୍ୟକାଳରୁ ସେ ମେଧାବୀ ଛାତ୍ର ଥିଲେ । ବୃତ୍ତି ପାଉଥିଲେ ସବୁ ପରୀକ୍ଷାରେ । ୧୯୦୨ ମସିହାରେ ତାଙ୍କର ଜୀବନର ମୋଡ଼ ବଦଳିଗଲା । ସେ ଗୋପବନ୍ଧୁ ଦାସଙ୍କ ସଂସ୍ପର୍ଶରେ ଆସିଲେ ଏବଂ ଦେଶ ପାଇଁ କିଛି କରିଯିବାର ଶପଥ ନେଲେ । ୧୯୦୩ ମସିହାରେ ସେ ଉତ୍କଳ ସମ୍ମିଳନୀରେ ଯୋଗଦେଲେ । ୧୯୦୪ ମସିହାରେ ପୁରୀରେ ଜାତୀୟ-ଗୌରବ ମଧୁସୂଦନ ଦାସଙ୍କ ସଭାପତିତ୍ୱରେ ହୋଇଥିବା ସଭାରେ 'ବିଦେଶୀ ବସ୍ତ୍ର ବର୍ଜନ'ର ଶପଥ ପତ୍ରରେ ଦସ୍ତଖତ କରିବାରେ ସେ ହେଉଛନ୍ତି ପ୍ରଥମ । ୧୯୦୯ ରେ ସେ ବି.ଏ.ପାଶ୍ କରନ୍ତି । ସେଇବର୍ଷ ବକୁଳବନରେ ବନ ବିଦ୍ୟାଳୟ ଆରମ୍ଭ ହୁଏ । ନୀଳକଣ୍ଠ ତହିଁରେ ଯୋଗ ଦିଅନ୍ତି, କିନ୍ତୁ କିଛିଦିନ ପରେ କଲିକତା ଯାଆନ୍ତି ଏମ.ଏ.ପଢ଼ିବା ପାଇଁ । ୧୯୧୧ ମସିହାରେ ଏମ.ଏ.ପାଶକରି ସେ ଫେରିଆସନ୍ତି ସତ୍ୟବାଦୀ ବନବିଦ୍ୟାଳୟକୁ । ୧୯୧୮ ମସିହାରେ ସେ ବନ ବିଦ୍ୟାଳୟର କୁଳପତି ହେଲେ ।

ଏହି ସମୟରେ ହିଁ ନୀଳକଣ୍ଠ ଓ ସତ୍ୟବାଦୀ ବନ ବିଦ୍ୟାଳୟର ଅନ୍ୟ ମହାରଥୀ ଗୋଦାବରୀଶ ମିଶ୍ରଙ୍କର ଇତିହାସ ପ୍ରସିଦ୍ଧ 'ନିଶ' ଆନ୍ଦୋଳନ । ପୁରୀ ଜିଲ୍ଲାର ଶାସନୀ

ବ୍ରାହ୍ମଣମାନେ ନିଶ ରଖନ୍ତି ନାହିଁ, ପଇତା ପକାନ୍ତି, ଅନ୍ତ୍ୟଜମାନଙ୍କ ସହିତ ଖାଆନ୍ତି ନାହିଁ । ହଳ କରନ୍ତି ନାହିଁ । ସତ୍ୟବାଦୀ ଯୁଗର ଏଇ ମହାରଥୀମାନେ ଶେଷୋକ୍ତ ତିନୋଟି ଲଂଘନ କରିପାରିଥିଲେ । ଅନ୍ତ୍ୟଜମାନଙ୍କ ସହିତ ଖାଇବା ଯୋଗୁଁ ସତ୍ୟବାଦୀ ବନ ବିଦ୍ୟାଳୟକୁ ପୋଡ଼ିଦିଆଗଲା । ଆରମ୍ଭ ହେଲା ବକୁଳ, କ୍ଷୁରୀଅନା ଗଛମୂଳରେ ପାଠପଢ଼ା । ବର୍ତ୍ତମାନ ଉଭୟ ନୀଳକଣ୍ଠ ଏବଂ ଗୋଦାବରୀଶ ନିଶ ରଖିଲେ । ହୁଲସ୍ଥୁଲ ପଡ଼ିଗଲା । ପଣ୍ଡିତ ନୀଳକଣ୍ଠ କିନ୍ତୁ ନିର୍ବିକାର । ଦେଖାଅ କେଉଁଠି ଏହା ବୈଦିକ ନିୟମର ବହିର୍ଭୂତ । ପୁରୋହିତବାଦ, ପଣ୍ଡାବାଦ, ବ୍ରାହ୍ମଣବାଦକୁ ଏଇ ବ୍ରାହ୍ମଣମାନେ ଗ୍ରହଣ କରିବାକୁ ନାରାଜ । ବ୍ରାହ୍ମଣବାଦ ହିନ୍ଦୁଧର୍ମ ନୁହେଁ, ଏହା ହେଉଛି ସେମାନଙ୍କ ମତ ।

ଯେଉଁମାନେ ମାୟାଧର ମାନସିଂହଙ୍କର 'ପୂଜାରିଣୀ' ପଢ଼ିଥିବେ ସେମାନେ ଜାଣନ୍ତି ଯେ ଲକ୍ଷ୍ମୀ ଏକ କାଳ୍ପନିକ ଚରିତ୍ର, ଏକ କିମ୍ବଦନ୍ତୀ । ଲକ୍ଷ୍ମୀ ଏକ ବ୍ରାହ୍ମଣ କନ୍ୟା । ତା'ର ପ୍ରେମରେ କୁଆଡ଼େ ଶ୍ରୀକୃଷ୍ଣ ପଡିଯାଆନ୍ତି । ସେ ଅନ୍ତଃସତ୍ତ୍ୱା ହୁଏ । ପୁରୋହିତମାନେ ଏହା ଜାଣି ଲକ୍ଷ୍ମୀଙ୍କର ଏକ ମୂର୍ତ୍ତି ଗଢ଼ନ୍ତି । ମୂର୍ତ୍ତି ଗଢ଼ାହେଲା ଦିନଠାରୁ ଲକ୍ଷ୍ମୀ ଜ୍ୱର ରୋଗରେ ଆକ୍ରାନ୍ତ ହୁଏ ଏବଂ ମୂର୍ତ୍ତି ସରିବା ଦିନ ତା'ର ମୃତ୍ୟୁ ହୁଏ । ଶ୍ରୀକୃଷ୍ଣ ଆସି ତାକୁ ନେଇଯାଆନ୍ତି । ଗଳ୍ପଟି ଏଇପରି ଭାବରେ ପ୍ରଚାରିତ । ଏ ଗଳ୍ପଟିକୁ ସହପାଠୀ ଡକ୍ଟର ସଦାଶିବ ମିଶ୍ର ମାୟାଧର ମାନସିଂହଙ୍କୁ କହନ୍ତି । କବିଙ୍କର ଚମକ ଲାଗେ ଏବଂ ସୃଷ୍ଟି ହୁଏ ବିଖ୍ୟାତ 'ପୂଜାରିଣୀ' କାବ୍ୟ, ପ୍ରେମର ଏକ ଅବିସ୍ମୃତ କାହାଣୀ ଭାବରେ । ବହିର ମୁଖବନ୍ଧରେ ଲେଖକ ଏହି ଗଳ୍ପଟିକୁ ସଦାଶିବ ମିଶ୍ରଙ୍କଠାରୁ ଶୁଣିଛନ୍ତି ବୋଲି ଲେଖିଛନ୍ତି । ଦିନେ ପଣ୍ଡିତ ନୀଳକଣ୍ଠଙ୍କର ହାବୁଡ଼ରେ ପଡିଗଲେ ସଦାଶିବ ବାବୁ । ହଇରେ, ତୁ ଏଇ ଗୁଲି ଗଳ୍ପକୁ ମାୟାଧରକୁ କହିଲୁ । ଗୋଟାଏ କେଉଁ ପଣ୍ଡା ବ୍ରାହ୍ମଣ ଝିଅର ପାପଗର୍ଭକୁ ଲୁଚାଇବା ପାଇଁ ଶେଷକୁ ଠାକୁରଙ୍କ ନାଁରେ ବୋଳି ଦିଆଗଲା ଅପବାଦ । ତୁ ତାକୁ ସ୍ଥାୟୀ କରିବା ପାଇଁ ସାହାଯ୍ୟ କଲୁ । ପଣ୍ଡିତ ନୀଳକଣ୍ଠଙ୍କ କଣ୍ଠରୁ ନିର୍ଗତ ହୁଏ ଶବ୍ଦ, ବେଦର ମହିମ୍ନ ଶ୍ଲୋକ ପରି ।

୧୯୧୯ ମସିହାରେ ପଣ୍ଡିତ ନୀଳକଣ୍ଠ ପୁରୀ ଜିଲ୍ଲାର ମରୁଡ଼ି ଅଞ୍ଚଳରେ କାମ ସାରି କଲିକତା ବିଶ୍ୱବିଦ୍ୟାଳୟରେ ଓଡିଆ ତଥା ତୁଳନାତ୍ମକ ଦର୍ଶନରେ ଅଧ୍ୟାପକ ହେବା ପାଇଁ ଯାଆନ୍ତି । ଏହା ହେଉଛି ୧୯୨୦ ମସିହାର କଥା । ବନବିଦ୍ୟାଳୟ ଧୀରେ ଧୀରେ ଭାଙ୍ଗିଗଲା । ଜାତୀୟ ଆନ୍ଦୋଳନ ବଡ଼ କଥା । ମୁକ୍ତି ଥରେ ଆସିଲେ ଇମିତି ଅନେକ ସ୍କୁଲ ଗଢ଼ିହେବ । ବର୍ତ୍ତମାନ ସ୍ୱାଧୀନତା ହେଉଛି ମୁଖ୍ୟ । ସତ୍ୟବାଦୀ ବନବିଦ୍ୟାଳୟର ନେତୃବୃନ୍ଦ ସ୍ୱାଧୀନତା ଆନ୍ଦୋଳନରେ ଝାସଦେଲେ । ସେତିକିବେଳେ ଶାନ୍ତିନିକେତନ ଗଢ଼ା ହୋଇଥିଲା । ରବୀନ୍ଦ୍ରନାଥ କିନ୍ତୁ ତାକୁ ବଞ୍ଚାଇ ରଖିଲେ । ତାହା ବିଶ୍ୱଭାରତୀ

ବିଶ୍ୱବିଦ୍ୟାଳୟରେ ପରିଣତ ହେଲା । ସ୍ୱାଧୀନତା ଆସିଲା; କିନ୍ତୁ ସତ୍ୟବାଦୀ ବନବିଦ୍ୟାଳୟ ସେଇପରି ରହିଗଲା । ତାହା ବର୍ତ୍ତମାନ ପର୍ଯ୍ୟନ୍ତ ସେମିତି ରହିଛି । କିନ୍ତୁ ନେତୃବୃନ୍ଦଙ୍କ ଭାଷଣ ଦେବାରେ ସୀମା ନାହିଁ । ସେଥିପାଇଁ କୁମ୍ଭୀର କାନ୍ଦଣା ମଧ୍ୟ ପ୍ରଚୁର । ଗୋପବନ୍ଧୁ ଦାସ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ କାଉନ୍‌ସିଲକୁ ନିର୍ବାଚିତ ହେବା ପରେ ବନବିଦ୍ୟାଳୟ ପାଇଁ ବେଶି ଦୃଷ୍ଟି ଦେଇ ପାରିଲେ ନାହିଁ ଏବଂ ଶିକ୍ଷକ-ଛାତ୍ର ସମସ୍ତେ ଅନ୍ୟତ୍ର ଯିବାକୁ ଆରମ୍ଭ କଲେ ।

ଗାନ୍ଧିଜୀଙ୍କ ହରିଜନ ଆନ୍ଦୋଳନ ଆରମ୍ଭ ହେବାର ଦୁଇ ଦଶନ୍ଧି ପୂର୍ବରୁ ସତ୍ୟବାଦୀରେ ବ୍ରାହ୍ମଣ-ଅବ୍ରାହ୍ମଣ ସମସ୍ତେ ଏକାଠି ପଂକ୍ତିଭୋଜନ କରିବା ଆରମ୍ଭ କରିଥିଲେ । ପଣ୍ଡିତ ନୀଳକଣ୍ଠ କେନ୍ଦ୍ର ଆସେମ୍ବ୍ଲିକୁ ନିର୍ବାଚିତ ହେଲେ ଏବଂ ଚିତ୍ତ ରଞ୍ଜନ ଦାସଙ୍କ ସ୍ୱରାଜ ପାର୍ଟିରେ ଯୋଗଦେଲେ । ୧୯୩୦ ମସିହାରେ ପୁଣି ଯୋଗଦେଲେ ଲୁଣମରା ଆନ୍ଦୋଳନରେ ଏବଂ ୪ ବର୍ଷ ଜେଲଖାନାରେ ରହିଲେ । ୧୯୩୫ ରେ ସେ ପୁଣି କେନ୍ଦ୍ର ଆସେମ୍ବ୍ଲିକୁ ନିର୍ବାଚିତ ହେଲେ ଏବଂ ସଭ୍ୟ ହୋଇ ରହିଲେ ୧୯୪୫ ପର୍ଯ୍ୟନ୍ତ ।

ପଣ୍ଡିତ ନୀଳକଣ୍ଠ ହିଁ ପ୍ରଥମେ କେନ୍ଦ୍ର ଆସେମ୍ବ୍ଲିରେ ଓଡ଼ିଆ ଭାଷାଭାଷୀମାନଙ୍କୁ ଏକାଠି କରି ଏକ ପ୍ରଦେଶ ଗଢ଼ିବା ପାଇଁ ପ୍ରସ୍ତାବ ଆଣିଥିଲେ ୧୯୨୭ ମସିହାରେ ଏବଂ ତାହା ସଫଳ ହେଲା ୧୯୩୬ ମସିହାରେ ।

ନୀଳକଣ୍ଠଙ୍କର କଂଗ୍ରେସ ସହିତ ମତଭେଦ ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଏବଂ ନୀଳକଣ୍ଠ ଦାସ ସୁଭାଷ ବୋଷଙ୍କ ଫରୱାର୍ଡ ବ୍ଲକ୍‌ରେ ଯୋଗଦେଲେ । ନେତାଜୀଙ୍କୁ ସେ 'ଚୈତନ୍ୟ' ନାମରେ ଅଭିହିତ କରିଥିଲେ । — ନାରଦ ଦିନେ ପଚାରିଲେ ଶ୍ରୀକୃଷ୍ଣଙ୍କୁ । ଭଗବାନ, ଆପଣଙ୍କୁ ସମସ୍ତେ ମାୟାବୀ ବୋଲି କହନ୍ତି । ମୁଁ ତ କାଇଁ ଆପଣଙ୍କ ମାୟା ଜାଣିପାରିଲି ନାହିଁ । ଶ୍ରୀକୃଷ୍ଣଙ୍କ ମୁହଁରେ ସ୍ମିତହାସ୍ୟର ଏକ ରେଖା ଉକୁଟି ଲିଭିଗଲା । ସେ କହିଲେ, ମୋତେ ଶୋଷ କରୁଚି ନାରଦ, ପାଣି ଦିଅନ୍ତ ନାହିଁ । ନାରଦ ଧାଇଁଲେ ପାଣି ଆଣିବା ପାଇଁ । ଦେଖାଗଲା ଛୋଟ ଏକ ନାଳ । ତା' ଆରପଟରେ ଏକ କୂଅ । ନାରଦ ପାଣି ଆଣିବାପାଇଁ କୂଅ ପାଖକୁ ଗଲେ । ଦେଖିଲେ ଏକ ସୁନ୍ଦରୀ ଝିଅ ପାଣି କାଢୁଛି । ନାରଦ ପାଣି ଆଣିବା ପରିବର୍ତ୍ତରେ ସେଇ ଝିଅଟିର ପ୍ରେମରେ ପଡ଼ି ତାକୁ ବିବାହ କଲେ, ସଂସାର ପାତିଲେ । କାଳକ୍ରମେ ଛୁଆପିଲା ହେଲେ । ବହୁ ବର୍ଷ ବିତିଗଲା । ଦିନେ ସେଇ ଛୋଟିଆ ନାଳଟି ବନ୍ୟାରେ ଉଚ୍ଛୁଳିଲା । ନାରଦଙ୍କ ଘର ଦୁଆର ଭାସିଗଲା । ନାରଦ ପିଲାଛୁଆ ଧରି ନାଳ ପାର ହେବାକୁ ବସିଲେ । ଜୁଆର ପ୍ରଖର ସ୍ରୋତରେ ଗୋଟିକ ପରେ ଗୋଟିଏ ପିଲା ଭାସିଗଲେ । ସ୍ତ୍ରୀ ଭାସିଗଲା । ନାରଦଙ୍କ ନାକରେ ପାଣି ପଶିଗଲା । ନାରଦଙ୍କର ଚୈତନ୍ୟୋଦୟ ହେଲା । ସେ ଡାକିଲେ, ହେ ଭଗବାନ୍, ରକ୍ଷାକର । ନାଳ

ଶୁଖିଗଲା । ଭଗବାନ ପଚାରିଲେ, ନାରଦ, ତୁମକୁ ପରା ମୁଁ ପାଣି ଆଣିବାକୁ କହିଥିଲି । ନାରଦ ବୁଝିଗଲେ ଭଗବାନଙ୍କ ମାୟା ! ନାରଦଙ୍କର ସେଇ ଚୈତନ୍ୟ ହେଉଛି କଂଗ୍ରେସର ସୁଭାଷ ଚନ୍ଦ୍ର ବୋଷ ।

ନୀଳକଣ୍ଠଙ୍କର ଗୀତା ଭାଷ୍ୟ ସ୍ୱତନ୍ତ୍ର ଧରଣର । ବୋଧହୁଏ ଏଭଳି ଭାଷ୍ୟ ଅନ୍ୟ କାହାରି ନାହିଁ । ଗୀତାର ଐତିହାସିକ ବିଶ୍ଳେଷଣ ପାଇଁ ଏହା ଅନନ୍ୟ । ନୀଳକଣ୍ଠ କାବ୍ୟ ଲେଖକ । ତାଙ୍କର 'କୋଣାର୍କ' କାବ୍ୟ ପାଇଁ ସେ ସ୍ମୃତ ହୋଇ ରହିବେ ଚିରକାଳ ।

''ରହ ରହ ବାଆ ବତାସି ରହ ବରଷା ଧାରା,
କୁଆଁର ପୂନେଇ ହେଉହେ ଏଇ ଜୀବନ ସାରା ।''

ଠିକ୍ ସେଇପରି '' ଦାସ ନାଏକ' ତାଙ୍କର ଏକ ସଫଳ ଏବଂ ମୌଳିକ ଅନୁବାଦ । କେଉଁଟା ମୂଳ, କେଉଁଟା ଅନୁବାଦ ଜାଣିବା କଠିନ ।

ନୀଳକଣ୍ଠ ଅଣପାରମ୍ପରିକ । ଜଗନ୍ନାଥ ଧର୍ମ ତାଙ୍କ ପାଇଁ ସଂସ୍କୃତି । କିନ୍ତୁ ନବଭାରତରେ ଥରେ ଏକ କବିତା ପ୍ରକାଶିତ ହେଲା ଅନନ୍ତ ପଟ୍ଟନାୟକଙ୍କର ।

''ଜଗନ୍ନାଥ ପଂଗୁ ଦେଖ୍, ତଥାପି ତାର ପତାକା ଟେକୁ ।''

ସମସ୍ତେ ଆଶ୍ଚର୍ଯ୍ୟ ! ପଚରାଗଲା ନୀଳକଣ୍ଠଙ୍କୁ । ଆପଣ ଜଗନ୍ନାଥ ସଂସ୍କୃତିର ବାବଦୂକ । ଆପଣ ଏପରି ଏକ କବିତା ଛାପିଲେ କିମିତି ? ହସି ହସି ସେ କହିଲେ, ଜଣେ ଯୁବକ ନୂଆ କଥା ଚିନ୍ତା କରୁଛି । ତାକୁ ତାହା ପ୍ରକାଶ କରିବାପାଇଁ ସୁଯୋଗ ଦିଆଯିବା ଉଚିତ ।

ନୀଳକଣ୍ଠ ଜୟଦେବଙ୍କର କ୍ରିଟିକ୍, ତୀବ୍ର ସମାଲୋଚକ । ତାଙ୍କ ମତରେ, ସଖା, କୁଟନୀତିଜ୍ଞ, ବିଚକ୍ଷଣ ଶ୍ରୀକୃଷ୍ଣଙ୍କୁ ସେ ନାରୀର କିଙ୍କର କରିଦେଇଛି । ସେଇଟାକୁ ବଙ୍ଗାଳୀଏ ମାଗୁଛନ୍ତି, ତାଙ୍କୁ ଦେଇଦିଅ । ସେଇଟା ଶ୍ରୀକୃଷ୍ଣଙ୍କୁ ନାରୀର କିଙ୍କର, ମାଇଚିଆ କରିଦେଇଛି ।

ନୀଳକଣ୍ଠ ମାଛ ପ୍ରିୟ । ଥରେ ମୁଁ ତାଙ୍କ ଭୁବନେଶ୍ୱର ଘରେ ପହଞ୍ଚି ବାଲେଶ୍ୱରରେ ଅନୁଷ୍ଠିତ ଛାତ୍ରସଂଘ ସମ୍ମିଳନୀରେ ଉଦ୍‌ବୋଧନ ଦେବାପାଇଁ ଅନୁରୋଧ କଲି । ସେ କହିଲେ, ଗାଡିରେ ବସ । ମାଛ କିଣିବାକୁ ଯିବା, ଫେରିଲେ ସେ କଥା ଆଲୋଚନା କରିବା । ମାଛ କିଣିବାକୁ ବାଲୁଗାଁ ପର୍ଯ୍ୟନ୍ତ ଯିବାକୁ ହେବ, ଏକଥା କ'ଣ ମୁଁ ଜାଣିଥିଲି ? ଭୁବନେଶ୍ୱରରୁ ବାଲୁଗାଁ । ମାଛ କିଣା ଚାଲିଛି । ଶୁଣିଛି ତାଙ୍କ ମାଛ ଖାଇବା ସମ୍ପର୍କରେ କାହାଣୀ ।

ନୀଳକଣ୍ଠ ଆଉ ନାହାନ୍ତି । ଏପରି ଜଣେ ମନୀଷୀ ସହଜରେ ଜନ୍ମହେବେ ନାହିଁ ।

□□□

# ଯୁଗାବସାନ

## (ଁ ନୀଳମଣି ରାଉତରାୟ)

ଅକ୍ଟୋବର ୪ ତାରିଖ, ୨୦୦୪ ସକାଳଟା ଥିଲା ବର୍ଷାତୁର । ସମୟ ସକାଳ ସାତଟା ବାଜି ପଚିଶ ମିନିଟ । ବର୍ଷାମୁଖର ଏଇ ସକାଳରେ ଆଖି ବୁଜିଦେଲେ ନୀଳମଣି ରାଉତରାୟ । ୧୯୨୦ ମସିହା ମଇ ମାସ୨୪ ତାରିଖରେ ସେ ବାଲେଶ୍ୱର ଜିଲ୍ଲା (ବର୍ତ୍ତମାନ ଭଦ୍ରକ ଜିଲ୍ଲା)ର ମୁକୁନ୍ଦପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ବର୍ଷାକୁ ସେ ଖୁବ୍ ଭଲ ପାଉଥିଲେ । ଉପରକୁ ନୀରସ ଦେଖାଯାଉଥିବା ନୀଳମଣି ବାବୁ ଅନେକ ସମୟରେ ବିଭୋର ହୋଇଯାଆନ୍ତି, ଏହା ମୋର ପ୍ରତ୍ୟକ୍ଷ ଅନୁଭୂତି । କଟକ ଥିଲା ତାଙ୍କର କର୍ମଭୂମି, ମୁକୁନ୍ଦପୁର ଥିଲା ଜନ୍ମଭୂମି, ଭୁବନେଶ୍ୱର ଥିଲା ବିଶ୍ରାମ ଭୂମି । ତଥାପି କଟକ ସହର ବାସୀ ତାଙ୍କୁ ଶ୍ରଦ୍ଧାସୁମନ ଜଣାଇବା ପାଇଁ ସୁଯୋଗ ପାଇଲେ ନାହିଁ । ଏହା ଏକ କଠୋର ବିଡମ୍ବନା ।

ଓଡିଶାର ରାଜନୀତିରେ ୧୯୪୬ ମସିହାରୁ ୧୯୮୦ ମସିହା ପର୍ଯ୍ୟନ୍ତ ନୀଳମଣି ବାବୁ ଆପଣାର ସ୍ୱାକ୍ଷର ରଖିଯାଇଛନ୍ତି । ବିଧାନସଭାର ସଭ୍ୟ, ଉପମନ୍ତ୍ରୀ, ମନ୍ତ୍ରୀ, ଉପ ମୁଖ୍ୟମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, କେନ୍ଦ୍ର ମନ୍ତ୍ରୀ କ୍ଷମତାର ସବୁ ବିଭାବକୁ ସେ ସ୍ପର୍ଶ କରିଛନ୍ତି । ଚଳନ୍ତି ଇତିହାସରେ ଏପରି ଭାଗ୍ୟ ଆଉ କାହାରି ଘଟିନାହିଁ । କିନ୍ତୁ ସାଧାରଣ ମଣିଷ ଠାରୁ ସେ କଦାପି ଦୂରେଇ ଯାଇ ନାହାନ୍ତି ମୋର ମନେ ପଡୁଛି । ସେ ମୁଖ୍ୟମନ୍ତ୍ରୀ ଥାଆନ୍ତି । ସକାଳୁ ଭିଡ଼ ଲାଗିଛି । ନିତ୍ୟକର୍ମ କିଛି ହୋଇନାହିଁ । ବ୍ୟସ୍ତହୋଇ ସେ ବାଥ୍ରୁମ୍ ଭିତରେ ପଶିଗଲେ । କିନ୍ତୁ ଛାଡୁଚି କିଏ ? ବାଥରୁମ୍‌ର କବାଟ ଅଧା ଖୋଲା ନୀଳମଣିବାବୁ କଥା ହେଉଛନ୍ତି କିଛି ଲୋକଙ୍କ ସହିତ । ଏ ଦୃଶ୍ୟ ଆଜି କଳ୍ପନା କରିବା କଠିନ । ମୋର ମନେ ପଡୁଛି । ଜରୋରୀ ପରିସ୍ଥିତି ସମୟ । ବୋଧହୁଏ କର୍ପୂରୀ ଠାକୁର ଆସିଥାନ୍ତି ତାଙ୍କ ଘରକୁ । ସେତେବେଳେ ସେ ପଳାତକ । ନୀଳମଣି ବାବୁ ମୋତେ ଡାକି ଜଣେ ଉଚ୍ଚପଦସ୍ଥ ପୁଲିସ ଅଫିସରଙ୍କ ପାଖକୁ ପଠାଇଲେ । ମୁଁ କିଛିଟା ଆଶ୍ଚର୍ଯ୍ୟ ହେଲି କାରଣ ଉକ୍ତ ଅଫିସର ତତ୍‌କାଳୀନ ମୁଖ୍ୟମନ୍ତ୍ରୀଙ୍କର ଖୁବ୍ ନିବିଡ । କିନ୍ତୁ ଉକ୍ତ ଅଫିସର କାମଟି କରିଦେଲେ, ଖାଲି ମୋତେ କହିଲେ ଯେ ମୁଁ ଯେପରି ଏଇ ସାକ୍ଷାତ୍ କଥା କାହାକୁ ନ କହେ ।

ନୀଳମଣିବାବୁଙ୍କର ଡିପାର୍ଟମେଣ୍ଟ ଏବଂ ଫାଇଲ ଉପରେ ଥିଲା ସଂପୂର୍ଣ୍ଣ କଣ୍ଟ୍ରୋଲ । ମୋର ମନେପଡୁଚି । ଜଣେ ଦକ୍ଷ ସିନିଅର ଅଫିସର (ଘରୋଇ ବିଭାଗର) ମୋତେ ଦିନେ କହିଲେ ବୁଝିଲେ ନୀଳମଣି ବାବୁ ଯାହା କରନ୍ତି ସେଥିରୁ ଅନେକରେ ମୁଁ ଏକମତ ନୁହେଁ କିନ୍ତୁ ମୋତେ ମାନିବାକୁ ପଡେ ଯେ ନୀଳମଣି ବାବୁ ନଜାଣି ଫାଇଲକୁ ନେଇ ଟିକିଏ ଏପଟ ସେପଟ କରି ପାରିବେ ନାହିଁ । ବିଶେଷତଃ ସପ୍ଲାଇ ଏବଂ ହୋମ ଡିପାର୍ଟମେଣ୍ଟ ଉପରେ ତାଙ୍କର ଥିଲା ଅଦ୍‌ଭୂତ କଣ୍ଟ୍ରୋଲ । ଏହି ବିଭାଗମାନ ସଂପର୍କରେ କେବଳ ନୁହେଁ ଏହାର ଅନେକ ଅଫିସର ( ଏମରି କି ତଳିଆ ଅଫିସରମାନଙ୍କ) ସଂପର୍କରେ ତାଙ୍କର ପରିଚିତି ଥିଲା ନିବିଡ । କ୍ଷମତାରୁ ସନ୍ୟାସ ନେଲା ପରେ ମଧ୍ୟ ଅନେକ ବ୍ୟକ୍ତି ( ଛୋଟ ବଡ ଅଫିସର) ତାଙ୍କୁ ଆସି ଗୁପ୍ତ ଏବଂ ଗୁମର କଥା କହିବା ମୁଁ ଜାଣିଛି, ଦେଖିଛି । ଅଫିସରମାନଙ୍କୁ ପ୍ରୋଟେକ୍ସନ୍ ଦେବାରେ ମଧ୍ୟ ସେ ଥିଲେ ବିଚକ୍ଷଣ । ମୋର ମନେ ପଡୁଚି । ଜଣେ ଅଫିସରଙ୍କୁ ଟ୍ରାନ୍ସଫର କରିବା ପାଇଁ ମୁଖ୍ୟମନ୍ତ୍ରୀ ଚାପ ପକାଉଥାନ୍ତି ସେକ୍ରେଟେରୀଙ୍କ ଉପରେ । ବିଭାଗୀୟ ମନ୍ତ୍ରୀ ହେଉଛନ୍ତି ନୀଳମଣି ବାବୁ । ତାଙ୍କୁ ଏଡ଼ାଇ ଦିଆଯିବା ସମ୍ଭବ ନୁହେଁ ସେତେବେଳେ । ବିଭାଗୀୟ ସେକ୍ରେଟେରୀ ଆସି ଦେଖା କଲେ ନୀଳମଣି ବାବୁଙ୍କୁ ଉକ୍ତ ଅଫିସରଙ୍କୁ ବଦଳି କରିବା ପାଇଁ ନୀଳମଣି ବାବୁ ଭାବି ନାହାନ୍ତି । ସେ ଶୁଣିଲେ ଏବଂ ସେକ୍ରେଟେରୀଙ୍କୁ କହିଲେ ମୁଖ୍ୟମନ୍ତ୍ରୀ ଯେଉଁ ଆଦେଶ ଦେଇଛନ୍ତି, ତମେ ତାକୁ ପାଳନ କର ଅର୍ଡର କରି ଫାଇଲ ମୋତେ ଦିଅ । ଅର୍ଡର ହେଲା । ଫାଇଲଟିକୁ ନୀଳମଣିବାବୁ ଆପଣା ଲକର୍‌ରେ ରଖି ତାଲା ପକାଇଦେଲେ । ସେକ୍ରେଟେରୀ ନିରାପଦ, ଅଫିସର ବି ନିରାପଦ ।

ନୀଳମଣିବାବୁ ପିଲାଦିନରୁ, ସ୍କୁଲରେ ପଢ଼ିବା ଦିନଠାରୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଉଥିଲେ । ଅବିଭକ୍ତ ନିଖିଳ ଭାରତ ଛାତ୍ର ସଂଘର ସେ ଥିଲେ କର୍ମକର୍ତ୍ତା । ରେଭେନ୍ସା କଲେଜ ୟୁନିଅନର ସେ ପ୍ରଥମ ଉପ-ସଭାପତି, ୰ମନମୋହନ ମିଶ୍ର ସଭାପତି । ରେଭେନ୍ସା କଲେଜରୁ ବହିଷ୍କୃତହୋଇ ସେ ଗଲେ କୋଲକାତା ପଢ଼ିବା ପାଇଁ ୰ ଶ୍ୟାମାପ୍ରସାଦ ମୁଖର୍ଜୀଙ୍କ ଯୋଗୁଁ ।

ନୀଳମଣି ବାବୁ ପ୍ରସିଦ୍ଧ ମେଡିକାଲ ସ୍କୁଲ ଧର୍ମଘଟର ଅନ୍ୟତମ ନେତା ଥିଲେ ଏବଂ ଗଡଜାତ ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ମୋର ମନେ ପଡୁଛି । ସେ ଲେଖୁଥାଆନ୍ତି ''ସ୍ମୃତିଅନୁଭୂତି'', ତାଙ୍କର ଆତ୍ମଜୀବନୀ । ଦିନେ ଫୋନ କଲେ । କହିଲେ ଅନନ୍ତ, ବୈଦ୍ୟନାଥ ରଥ ଏବଂ ମୁଁ ଯାଉଥିଲୁ । ବଳଦିଆ ବନ୍ଧଠାରେ ଆମକୁ ଢେଙ୍କାନାଳ ପୋଲିସ୍ ଆକ୍ରମଣ କଲେ । ମୋର ଯାହା ମନେପଡୁଚି ବୈଦ୍ୟନାଥ ଏବଂ ମୁଁ ପଳାଇ ଆସିଲୁ ଡେଇଁ କରି ଅନନ୍ତ (କବି ୰ ଅନନ୍ତ ପଟ୍ଟନାୟକ) ରହିଗଲା । ଟିକିଏ

ତା'ଠାରୁ ବୁଝି ଖବର ଦିଅନ୍ତ ନାହିଁ ? ମୁଁ ଅନନ୍ତ ବାବୁଙ୍କୁ ପଚାରିଲି । ସେ ଆଶ୍ଚର୍ଯ୍ୟ ହୋଇ କହିଲେ ତୁ କିମିତି ଜାଣିଲୁ ଏକଥା ?

ନୀଳମଣି ବାବୁ ନୀଳଗିରି ପ୍ରଜାଆନ୍ଦୋଳନରେ ମଧ୍ୟ ଅଂଶ ଗ୍ରହଣ କରିଥିଲେ । ନୀଳଗିରି ହେଉଛି ପ୍ରଥମ ଗଡଜାତ ଯାହାର ମିଶ୍ରଣ ହୋଇଥିଲା । ଗଡଜାତ ମିଶ୍ରଣ (ଡିସେମ୍ବର, ୪୭) ର ବହୁ ପୂର୍ବରୁ । ନୀଳମଣି ବାବୁ ତାଙ୍କର ସହଯୋଦ୍ଧାମାନଙ୍କୁ ଭୁଲି ନଥିଲେ । ସେମାନଙ୍କ ପ୍ରତି ଦରଦ ମଧ୍ୟ ଥିଲା ପ୍ରଭୂତ ।

ମୋର ମନେପଡୁଛି । ପ୍ରସିଦ୍ଧ ସାମ୍ୟବାଦୀ ନେତା ବନମାଳୀ ଦାସ ଥାଆନ୍ତି ବନ୍ଦୀ । ତାଙ୍କର ଦେହ ଖରାପ ହେଲା । ବୈଦ୍ୟନାଥ ରଥ ପ୍ରମୁଖ ମୋତେ ପଠାଇଲେ ନୀଳମଣି ବାବୁଙ୍କ ପାଖକୁ । ସେ ବନମାଳୀ ଦାସ ଅସୁସ୍ଥ ଜାଣି ବିବ୍ରତ ହୋଇଉଠିଲେ ଏବଂ ସାଙ୍ଗେ ସାଙ୍ଗେ ଆଦେଶ ଦେଲେ ତାଙ୍କୁ କଟକ ବଡ଼ ଡାକ୍ତରଖାନାକୁ ପଠାଇବା ପାଇଁ ଏବଂ ଜେଲ ବିଭାଗର ନିର୍ଦ୍ଦେଶକଙ୍କୁ ପଚାରିଲେ ବିରକ୍ତ ହୋଇ, '' ବନମାଳୀ ଦାସ ଅସୁସ୍ଥ ଅଥଚ ମୋତେ ତୁମେ ଜଣାଇନ କିମିତି ।'' ତାପରେ ଡାକ୍ତରଖାନା, ଓ୍ୱାର୍ଡରୁ କନିକା କଟେଜ, କନିକା କଟେଜ ଭିତରେ ପୁଲିସ ବଂଧୁକ ନରଖିବା ପାଇଁ ନିର୍ଦ୍ଦେଶ ଏବଂ ପରିଶେଷରେ ପାରୋଲ । ନୀଳମଣି ବାବୁଙ୍କୁ ମୋତେ ବାରମ୍ବାର ଭେଟିବାକୁ ହେଲା । ପାରୋଲରେ ଛାଡିବା ପାଇଁ ଅର୍ଡର ଦେଇ ସାରିଲାପରେ, ସେ ମୋତେ ପଚାରିଲେ ଯେ ମୁଁ କାହିଁକି ବନମାଳୀଙ୍କ ପ୍ରତି ଏତେ ଆଗ୍ରହୀ । ଏତେ କଷ୍ଟ ତ୍ୟାଗ ଖୁବ୍ କମ୍ ସ୍ୱାଧୀନତା ସଂଗ୍ରାମୀ ସହ୍ୟ କରିଛନ୍ତି ବୋଲି ମୋର ଉତ୍ତର ଶୁଣି ତାଙ୍କ ଆଖିରୁ ଲୁହ ବୋହି ପଡିଲା । ବନମାଳୀ ଏବଂ ମୋର ହାତ ଏକାଠି ପୁଲିସ ଅନେକଥର ବାନ୍ଧିଛି, ମୋର ତା ପ୍ରତି ଦରଦ ସେଇଯୋଗୁଁ ।

ନୀଳମଣି ବାବୁ ପଥୁରିଆ ନିରସ ଦେଖାଯାଆନ୍ତି । କିନ୍ତୁ ତାଙ୍କ ଆଖିରୁ ପାଣି ଗଡିବା ଦେଖି ମୁ ବିସ୍ମିତ ହୋଇ ଯାଇଥିଲି ।

ଜରୋରୀ ପରିସ୍ଥିତିର ପରବର୍ତ୍ତୀ ସମୟ । ନନ୍ଦିନୀ ଦେବୀ ଗିରଫ ହେବେ । ନୀଳମଣି ବାବୁଙ୍କ ଘରେ ପ୍ରବଳ ଭିଡ଼ । ସେମାନଙ୍କର ଦାବୀ ନନ୍ଦିନୀ ଦେବୀଙ୍କୁ ସନ୍ଧ୍ୟାବେଳେ ଗିରଫ କର, ହାତକଡି ପକାଅ ଏବଂ ରାତିରେ ତାଙ୍କୁ ଥାନା ହାଜତରେ ରଖି ଜେଲକୁ ପଠାଅ ସକାଳେ । ଖୁବ୍ ପାଟି । ନୀଳମଣି ବାବୁ ବିଲ୍‌କୁଲ୍ ନାରାଜ । ନନ୍ଦିନୀ, କାଳିନ୍ଦୀବାବୁଙ୍କ ଝିଅ ଭଗବତୀ ପାଣିଗ୍ରାହୀଙ୍କ ଝିଆରୀ, ପୂର୍ବତନ ମୁଖ୍ୟମନ୍ତ୍ରୀ ଏବଂ ସର୍ବୋପରି ଜଣେ ନାରୀ ମୁଁ ଏହା କରିପାରିବି ନାହିଁ କଦାପି । ଅପର ପଟରୁ ପ୍ରବଳ ପାଟି । ନୀଳମଣି ବାବୁ ପ୍ରାୟ ପାଟି କରନ୍ତି ନାହିଁ । ସେଦିନ କିନ୍ତୁ ସେ ଖୁବ୍ ଉଚ୍ଚପାଟିରେ ତାଙ୍କ ମତ ଜଣାଇଦେଲେ ଥରେ ନିଷ୍ପତ୍ତି କଲେ ସେ ସେଥିରେ ଅଟଳ ରହନ୍ତି ।

ମୋର ମନେ ପଡୁଛି । ଇନ୍ଦିରା ଗାନ୍ଧୀ ଆସିଥାନ୍ତି ଓଡ଼ିଶା । ଜରୋରୀକାଳୀନ ପରିସ୍ଥିତି ପରେ । ଭାରତର ପ୍ରାକ୍ତନ ରାଷ୍ଟ୍ରପତି ଏବଂ ପ୍ରାକ୍ତନ ପ୍ରଧାନମନ୍ତ୍ରୀମାନଙ୍କ ପାଇଁ ନୂତନ ବିଧି ପ୍ରୟଣନ (ପ୍ରୋଟୋକଲ ବ୍ୟବସ୍ଥା) ରହିଛି । ଏହା ଦଳମତ ନିର୍ବିଶେଷରେ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ । ଇନ୍ଦିରାଙ୍କୁ ରାଷ୍ଟ୍ର ଅତିଥି କରାଯାଇଥିଲା ସେଇ ନିୟମ ଅନୁଯାୟୀ । ଗୋଟିଏ ଗୋଷ୍ଠୀ ଏହାକୁ ବିରୋଧ କରୁଥିଲେ । ସେମାନେ ଆକ୍ରମଣ କଲେ ଇନ୍ଦିରା ଗାନ୍ଧୀଙ୍କ ଶୋଭାଯାତ୍ରା ଉପରେ । କାଠଯୋଡ଼ି - ଖପୁରିଆ ମଝିରେ । ବହୁ କଂଗ୍ରେସ ନେତା ଆହତ ହେଲେ । ଅନେକଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରାଗଲା । ଅନେକଙ୍କ ନିରାପତ୍ତା ପ୍ରତି ବିପଦ ସୃଷ୍ଟି ହେଲା । ମୋର ମନେପଡୁଛି କ୍ଷତ ବିକ୍ଷତ ମତଲୁବ ଅଲ୍ଲୀଙ୍କଠାରୁ ସବୁ ଶୁଣି ନୀଳମଣି ବାବୁ ନିଜେ ଡାକ୍ତରଖାନା ଆସିଲେ, ଜାନକୀବାବୁଙ୍କ ନିରାପତ୍ତା କଥା ବୁଝିଲେ ଏବଂ ଆହତମାନଙ୍କର ଚିକିତ୍ସାର ବନ୍ଦୋବସ୍ତ ତଥା ନିରାପତ୍ତା କଥା ବୁଝିଲେ । ସେମାନଙ୍କ ଭିତରେ ଲକ୍ଷ୍ମଣ ମଲ୍ଲିକ, ୰ଅଜୟ ଭୂୟାଁଙ୍କ କଥା ମନେ ପଡୁଛି । ଆପଣଙ୍କର ମତକୁ ମୁଁ ବିରୋଧ କରିବି, କିନ୍ତୁ ଆପଣଙ୍କ ମତ ପ୍ରକାଶକୁ କେହି ବିରୋଧ କଲେ ମଧ ମୁଁ ତାର ନିର୍ଦ୍ଦେଶ ମାନିବି । ଗଣତନ୍ତ୍ରର ଏଇ ନିୟମକୁ ମାନିଥିଲେ ନୀଳମଣି ବାବୁ ।

ସେ ଦିଲ୍ଲୀ ଯାଇଥାନ୍ତି । ତାଙ୍କ ସ୍ତ୍ରୀ ଅସୁସ୍ଥ ହୋଇ ପଡ଼ିଲେ । ମୁଁ ଡାକ୍ତର ବିଭୂତି ବାବୁ ଏବଂ ଡାକ୍ତର ମିତ୍ରଙ୍କୁ ଡାକି ଆଣିଲି ଏବଂ ସେମାନଙ୍କର ଉପଦେଶାନୁଯାୟୀ ତାଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରିଦେଲି । ନୀଳମଣି ବାବୁଙ୍କ ସହିତ ନଳିନୀ ଦେବୀଙ୍କ ସମ୍ପର୍କ ଥିଲା ଫର୍ମାଲ୍ । ଏବେ ପ୍ରସିଦ୍ଧ ଲେଖକ ମୁଲକରାଜ ଆନନ୍ଦଙ୍କ ପରଲୋକ ହୋଇଗଲା । ସେ ଥିଲେ ପୁନେ ସହରରେ, ତାଙ୍କ ସ୍ତ୍ରୀ ରହୁଥିଲେ ମୁମ୍ବାଇରେ । ବିଜୁ ପଟ୍ଟନାୟକଙ୍କ କ୍ଷେତ୍ରରେ ମଧ ସେଇଆ । ନୀଳମଣି ବାବୁ ନାହାନ୍ତି, ତାଙ୍କୁ ନପଚାରି ଡାକ୍ତରଖାନାରେ ଭର୍ତ୍ତି କରିବା ଉଚିତ ହେବ କି ? ସବୁ ବିରୋଧକୁ ଏଡ଼ାଇ ବ୍ରଜ ଏବଂ ମୁଁ ନିଷ୍ପତ୍ତି ନେଇଥିଲୁ ଆଶଂକା ଭିତରେ । ନୀଳମଣି ବାବୁ କିଛି କହି ନାହାନ୍ତି କିନ୍ତୁ ଯେପରି ଭାବରେ ସେ ସ୍ତ୍ରୀଙ୍କ ସେବା କରିଗଲେ ତାହା ଆଶ୍ଚର୍ଯ୍ୟ କଲା ସଭିଙ୍କୁ । କି ପ୍ରକାର ପ୍ରଚେଷ୍ଟା କରି ନାହାନ୍ତି ସେ ! ଆଧୁନିକ ଚିକିତ୍ସା, ହୁକୁମ, ସତ୍ୟସାଇ ବାବା, ଡାକ୍ତର ପେ ମାଷ୍ଟର, ସୁଇଡ଼େନର ଅତ୍ୟାଧୁନିକ କର୍କଟ ରୋଗ ଚିକିତ୍ସା କେନ୍ଦ୍ରର ପରାମର୍ଶ, ତନ୍ତ୍ରବିଦ୍ୟା- କିଛି ବାଦ ଯାଇ ନାହିଁ ।

ନୀଳମଣି ବାବୁ ଥିଲେ ନିଷ୍ପତ୍ତିମୂଳକ । ମୁଁ ମଂଗୋଲିଆରୁ ତାଙ୍କୁ ଚିଠି ଲେଖିଲି । ମଂଗୋଲିଆ ଏକ ଦରିଦ୍ର ରାଜ୍ୟ । କିନ୍ତୁ ପର୍ଯ୍ୟଟନରୁ ବିପୁଳ ଆୟ କରନ୍ତି ସେମାନେ । ଓଡ଼ିଶାରେ ଗୋଟାଏ ପର୍ଯ୍ୟଟନ କର୍ପୋରେସନ ହୁଅନ୍ତା ନାହିଁ ? ଫେରିଲା ବେଳକୁ ଲିଖିତ

ଅର୍ଡର ହୋଇ ଯାଇଛି ଯେ ଓଡିଶାରେ ପର୍ଯ୍ୟଟନ କର୍ପୋରେସନ ଗଢ଼ାହେବ ଏବଂ ତାର ଚିଠା ନିୟମ ଇତ୍ୟାଦି । ଶ୍ରୀ ଅକ୍ଷୟ ବିଶ୍ୱାଳ ଏବଂ ମୁଁ କରିବୁ । ଓଡିଶାରେ ପର୍ଯ୍ୟଟନ କର୍ପୋରେସନ ଗଢ଼ାହେଲା ।

କେରଳ, ପଞ୍ଜାବ ପ୍ରଭୃତି ରାଜ୍ୟରୁ ବହୁ ଲୋକ ବିଦେଶରେ ଚାକିରି କରୁଛନ୍ତି । ଭାରତ ସରକାରଙ୍କର ଏଥିପାଇଁ ଏକ ବିଭାଗ ରହିଛି । ତାର ଦାୟିତ୍ୱରେ ସେତେବେଳେ ଥାଆନ୍ତି ଶ୍ରୀ ଅଗ୍ରବାଲ । ଇରାନ, ଆଫ୍ରିକାର ବହୁ ଦେଶକୁ ଲୋକ ଯାଉଥାନ୍ତି । ଉଭୟ ଶ୍ରୀ ଅଗ୍ରବାଲ ଏବଂ ବିଭିନ୍ନ ବୈଦେଶିକ ଦୂତାବାସ ସହିତ କଥାବାର୍ତ୍ତା କରି ଦିଲ୍ଲୀରୁ ନୀଳମଣି ବାବୁଙ୍କୁ ଚିଠି ଲେଖିଲି । ସେ ସାଂଗେ ସାଂଗେ ଇପିକଲକୁ ଏହାର ଦାୟିତ୍ୱ ଦେଲେ ଏବଂ ଶ୍ରୀ ବିବେକ ପଟ୍ଟନାୟକଙ୍କ ଯୋଗୁଁ କିଛି ଲୋକ ମଧ୍ୟ ଗଲେ । ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା, ବିବେକ ଅନ୍ୟତ୍ର ବଦଳି ହୋଇଗଲେ । ବହୁ ଚେଷ୍ଟା ସତ୍ତ୍ୱେ ଏହା ବଂଦ ହୋଇଗଲା । ଚାଲୁ ରହିଥିଲେ କ'ଣ ହୋଇଥାନ୍ତା, ତାହା କହି ଲାଭ କ'ଣ ?

ନୀଳମଣି ବାବୁ ସାମ୍ବାଦିକ ଥିଲେ । ଦୈନିକ ପ୍ରଜାତନ୍ତ୍ରର ସଂପାଦକ ଥିଲେ । ତା'ପରେ ଲେଖିବା ଛାଡି ଦେଇଥିଲେ ଅନେକଦିନ । କିନ୍ତୁ ସାମ୍ବାଦିକତା, ଖବରକାଗଜ ପାଇଁ ତାଙ୍କର ଦରଦ ଥିଲା ପ୍ରଭୂତ । ବିଧାନସଭାରେ ସେ ଉତ୍ତରଦେଲେ ଯେ ଏକ ନିର୍ଦ୍ଦିଷ୍ଟ ଖବରକାଗଜର କାଟ୍‌ତି ଖୁବ୍ କମ୍ । କିନ୍ତୁ ଉକ୍ତ ଖବରକାଗଜକୁ ଉପଯୁକ୍ତ ବିଜ୍ଞାପନ ଦେବାରୁ ବଂଚିତ ନ କରିବାକୁ ସେ ଅଫିସରଙ୍କୁ ନିର୍ଦ୍ଦେଶ ଦେଇଥିଲେ, ଯଦିଓ ଉକ୍ତ ଖବର କାଗଜ ତାଙ୍କର ବିରୋଧୀ ଥିଲା ।

ନୀଳମଣିବାବୁଙ୍କ ପୁଅ ବିଭାହୋଇଥାଏ ଗୋବିନ୍ଦ ସେନାପତିଙ୍କ ଝିଅକୁ । ସେନାପତି ସେତେବେଳେ ଭିଜିଲାନ୍ସ ବିଭାଗ ମୁଖ୍ୟ । ଉଭୟ ପଟରୁ ନିମନ୍ତ୍ରଣ ପତ୍ର ବଣ୍ଟା ଚାଲିଥାଏ । ଦିନେ ଗୋବିନ୍ଦ ବାବୁ ମୋତେ ଆସି କହିଲେ ମହାମୁସ୍କିଲ କଥା । ନୀଳମଣି ବାବୁ କନେଷ୍ଟବଲ ପର୍ଯ୍ୟନ୍ତ କାର୍ଡ ଦେଉଛନ୍ତି । ମୁଁ ଦେଇପାରୁ ନାହିଁ । କଣ କରିବି ? ମୁଁ କହିଲି ଯେ ନୀଳମଣି ବାବୁ ଆପଣଙ୍କଠାରୁ ବେଶିଦିନ ଅଛନ୍ତି ହୋମ୍ ଡିପାର୍ଟମେଣ୍ଟରେ ଏବଂ ସେ ବିଧାନସଭା ସଭ୍ୟ ପଦବୀରୁ ଉଠିଛନ୍ତି ଉପରକୁ । ଆପଣ ତାଙ୍କଠାରୁ କମ ସମୟ ଚାକିରି କରିଛନ୍ତି ଏବଂ ସିଧା ଆଇ.ପି.ଏସ.ରୁ ଉପରକୁ ଉଠିଛନ୍ତି । ଉକ୍ତ ଡିପାର୍ଟମେଣ୍ଟ ସହିତ ଆପଣଙ୍କ ପରିଚିତି ତାଙ୍କ ସହିତ ସମାନ କିମିତି ହେବ ? ତାକେ ହସ ହେଲା ।

ନୀଳମଣି ବାବୁଙ୍କ ସହିତ ମୋର ପରିଚିତି ଅନେକଦିନରୁ । ଅନେକ ଦିନ ଧରି ସେ ମୋର ଜେଲର(ଗୃହମନ୍ତ୍ରୀ)ଏବଂ ମୁଁ ତାଙ୍କ ପ୍ରିଜନର । ଏହାସତ୍ତ୍ୱେ ତାଙ୍କ ସହିତ ଆତ୍ମୀୟତା ମୋର ଥିଲା ନିବିଡ । ତାଙ୍କର ସ୍ମୃତିଅନୁଭୂତିର ପ୍ରଥମ ଖଣ୍ଡରେ ଏହାର ସୂଚନା ମିଳେ ।

ସମୟ ଅତିକ୍ରାନ୍ତ ହୋଇଛି । ନୀଳମଣି ବାବୁ ଭୁବନେଶ୍ୱର ଚାଲି ଯାଆନ୍ତି କଟକ ଘରେ ଖାଲି ସ୍ମୃତି ରହିଯାଏ । ନୂଆ ଅନୁଭୂତିର ସ୍ଥାନ ପାଲଟେ ଭୁବନେଶ୍ୱର । ସେଇଯୋଗୁଁ ସ୍ମୃତିଅନୁଭୂତିର ଦ୍ୱିତୀୟ ଖଣ୍ଡରେ ସେ ଆତ୍ମୀୟତାର ଉଷ୍ଣତା କମିଯାଏ ।

ନୀଳମଣି ବାବୁ ମୁଖ୍ୟମନ୍ତ୍ରୀ ହେବେ କି ନହେବେ କିଛି ଠିକଣା ନଥାଏ । ସବୁ କଥା ନିର୍ଭରକରେ ନବକୃଷ୍ଣ ଚୌଧୁରୀଙ୍କ ଉପରେ । ନୀଳମଣି ବାବୁଙ୍କୁ ମୁଁ କହିଲି ଯାଇ ନବବାବୁଙ୍କୁ ଦେଖାକରିବାକୁ । ନବବାବୁଙ୍କୁ ବି କହିଲି । ନବ ବାବୁଙ୍କୁ ମୁଖ୍ୟମନ୍ତ୍ରୀତ୍ୱରୁ ବିଦା କରିବା ପାଇଁ ବିଜୁ, ବିରେନ୍, ନୀଳମଣି ଦାୟୀ । କିନ୍ତୁ ନବବାବୁ ସେ ସବୁ ଭୁଲିଗଲେଣି । ନବବାବୁ ତାଙ୍କୁ ଅଭ୍ୟର୍ଥନା ଜଣାଇଲେ ଯେପରି ସେ ମୁଖ୍ୟମନ୍ତ୍ରୀ ହୋଇଗଲେଣି । ନୀଳମଣି ବାବୁଙ୍କ ଆଖିରେ ସେ ଦିନ ବି ମୁଁ ଲୁହ ଦେଖିଥିଲି ।

ଛାଡ ସେସବୁ କଥା । ମୋର ଜଣେ ବଂଧୁ ଆଇ.ପି.ଏସ୍. ଅଫିସର ଅସୁବିଧାରେ ପଡିଥାନ୍ତି । ଏକ ଆକସ୍ମିକ ଘଟଣା, ଯେଉଁଥିପାଇଁ ସେ ଆଦୌ ଦାୟୀ ନୁହନ୍ତି । ଏପରି ଏକ ଘଟଣାରେ ତାଙ୍କୁ ଯୋଡି ଦିଆଯାଏ ଏବଂ ଯେହେତୁ ଘଟଣାଟି ଆଦିବାସୀ ସଂକ୍ରାନ୍ତୀୟ ସେଥିପାଇଁ ମାଳତୀ ଦେବୀ ନିଜେ ଗୃହମନ୍ତ୍ରୀକୁ ପଦକ୍ଷେପ ନେବାପାଇଁ କହିଥାନ୍ତି । ରାଜୁଭାଇନା (ମିଶ୍ର), ରମେଶନନା(ପଟ୍ଟନାୟକ) ମୋତେ ଏ ଘଟଣାଟି କହି ନୀଳମଣି ବାବୁଙ୍କୁ ଯାଇ ଅନୁରୋଧ କରିବା ସକାଶେ ଅନୁରୋଧ କଲେ । ଗଲି, ସବୁ କହିଲି, ଉକ୍ତ ଆଇ.ପି.ଏସ. ଅଫିସରଙ୍କୁ ରକ୍ଷା କରିବା ପାଇଁ କହିଲି । ନୀଳମଣି ବାବୁ ଶୁଣିଲେ । ସେତେବେଳେ ସେ ଚୁରୁଟ ଖାଉଥିଲେ । ଟାଣିଲେ ଜୋରରେ ପାଟିଏ ଧୂଆଁ, କଳରେ ଧରିଲେ, କିଛି ସମୟ ପରେ ଛାଡିଦେଇ କହିଲେ, ଯାଅ, ଦେଖୁଚି । କରିଦେଲେ କାମ ।

ଚୁରୁଟ ତାଙ୍କୁ ଏଇ ସୁବିଧା ଦେଇଛି ବୋଲି କହନ୍ତି । ଚୁରୁଟ ଟାଣି ଜୋରରେ କଳରେ ଜାକ, ତା'ପରେ ଛାଡିଦିଅ । ସବୁ ସମସ୍ୟା ତୁଟିଯିବ ।

ସମସ୍ୟା ସବୁ ତୁଟି ଯାଇଛି । ଦେହ ବୋଲ ମାନୁନି । ଔଷଧ କାମ କରୁନି । ଚାଲିଛି ମୃତ୍ୟୁ ସହିତ ସଂଗ୍ରାମ । କେତେଦିନ ଆଉ ଚାଲିପାରେ ଏଇ ସଂଗ୍ରାମ ?

୪ ଅକ୍ଟୋବର, ୨୦୦୪ ସକାଳ ସାତଟା ପଚିଶ ମିନିଟ । ଇତିହାସର ନାୟକ, ଇତିହାସର ପୃଷ୍ଠାରେ ।

ooo

## ଆଣ୍ଠୁ ନ ଲୁଚା ସେଇ ଛୋଟିଆ ମଣିଷଟି

### (୰ ନୃସିଂହ ପ୍ରସାଦ ଗୁରୁ)

ବାପା ମୋର ଥିଲେ ସମ୍ବଲପୁରରେ ବନ୍ୟ ବିଭାଗରେ କର୍ମଚାରୀ ଅନେକ ବର୍ଷ ଧରି । ସେଇଠି ବାପାଙ୍କ ଅଫିସକୁ ସେ ଆସନ୍ତି । ଛୋଟିଆ ମଣିଷଟିଏ । ପାଦରେ ଚାଲି ଚାଲି । ଆଣ୍ଠୁ ଲୁଚୁ ନଥିବା ଖଦଡ ଧୋତି ଉପରେ ଖଣ୍ଡିଏ ଖଦଡ ଚାଦର । କାନ୍ଧରେ ନେଳିଆ ଖଦଡ ବ୍ୟାଗଟିଏ । ପାଦ କେବେ ଖାଲି । କେବେ ହଳେ ଚପଲ । ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତି । ବିଶେଷତଃ ପ୍ରଜାର ଜଙ୍ଗଲଜାତ ଦ୍ରବ୍ୟ ଉପରେ ଅଧିକାର ଉପରେ । ପୋଷ୍ଟକାର୍ଡ ଖଣ୍ଡିଏ ବାହାର କରନ୍ତି । ସମ୍ବାଦଟି ଲେଖି ପଠାନ୍ତି 'ସମାଜ'କୁ । ତାଙ୍କୁ ଦେଖାଯାଏ ନିଲାମ ଦିନ ବେଶି । ଜଙ୍ଗଲ ନିଲାମ ହେବ କିନ୍ତୁ ଚାଷୀ ତାର ଆବଶ୍ୟକୀୟ ଜିନିଷ ପାଇବ କି ନା ଉଚିତ ମୂଲ୍ୟରେ ? ଏହା ତାଙ୍କୁ ଘାରୁଥିଲା । ବାପାଙ୍କୁ ଲୋକଟିର ପରିଚୟ ପଚାରିଲେ କହନ୍ତି ସମାଜ କାଗଜର ପ୍ରତିନିଧି ।

ତାଙ୍କ କାର୍ଯ୍ୟ କିନ୍ତୁ ସେତିକିରେ ସରେ ନାହିଁ । ସେ ଆଉ ପଟେ ବୁଲି ଆସନ୍ତି ଆମ ଘରକୁ । ଭେଟନ୍ତି ମୋର ଦାଦା ସ୍ୱାଧୀନତା ସଂଗ୍ରାମୀ ବିରଞ୍ଚି ନାରାୟଣ ପଟ୍ଟନାୟକଙ୍କୁ । କଥାର ସ୍ୱର, ବସ୍ତୁ ସବୁ ବଦଳିଯାଏ । ଦାଦାଙ୍କୁ ପଚାରିଲେ କହନ୍ତି ସ୍ୱାଧୀନତା ସଂଗ୍ରାମୀ ।

ଏଇ ଛୋଟିଆ ମଣିଷଟି ହେଉଛନ୍ତି ନୃସିଂହ ଗୁରୁ । ମୋ ଦାଦାଙ୍କର ସେ ସମବୟସ୍କ । ସମ୍ବଲପୁରର ଗୁରୁପାଲି ଗାଁରେ ତାଙ୍କର ଜନ୍ମ । ଆପଣା ଗାଁ ଏବଂ ପରେ ଅଜାଙ୍କ ଗାଁ ବାମଣ୍ଡାରେ ପାଠ ପଢ଼ା । ତା'ପରେ ପଟ୍ଟନାୟକପଡା ଏମ.ଇ.ସ୍କୁଲ । ଦଶମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ଏକାଦଶ ଶ୍ରେଣୀରେ ପ୍ରବେଶ । ୧୯୨୧ ମସିହା । ନୃସିଂହ ଗୁରୁ ଆସିଗଲେ ଜାତୀୟ ଆନ୍ଦୋଳନର ପ୍ରବାହ ଭିତରକୁ । ୰ ମହାବୀର ସିଂହଙ୍କ ନାମ ବର୍ତ୍ତମାନ ବିଲୁପ୍ତ ପ୍ରାୟ । ସେ କିନ୍ତୁ ୧୯୨୧ ମସିହାରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି । ତାଙ୍କରି ପ୍ରଭାବରେ ଆସିଲେ ନୃସିଂହ । ସମ୍ବଲପୁର ଜାତୀୟ ବିଦ୍ୟାଳୟରେ କିଛି ଦିନ ଅଧ୍ୟୟନ ଏବଂ ତା'ପରେ କଂଗ୍ରେସର ସଦାବେଳିଆ କର୍ମୀ ।

ସ୍ୱନାମଧନ୍ୟ ଚନ୍ଦ୍ରଶେଖର ବେହେରା ସମ୍ବଲପୁର ମ୍ୟୁନିସପାଲିଟିର ଚେୟାରମ୍ୟାନ୍ । ନୃସିଂହ ଗୁରୁ କିଛି ଦିନ ପାଇଁ ମ୍ୟୁନିସିପାଲ କାଉନ୍‌ସିଲର ଏବଂ ୧୯୩୨ରେ ପ୍ରଥମ କାରାବରଣ ।

୧୯୩୨ ଅଗଷ୍ଟ ମାସରେ ପ୍ରାଦେଶିକ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ । ଅସ୍ପୃଶ୍ୟତା ନିବାରଣ ପାଇଁ କାର୍ଯ୍ୟରେ ଝାସ ।

୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ । ଦୟାନନ୍ଦ ଶତପଥୀ, ନୃସିଂହ ଗୁରୁଙ୍କୁ ମିଥ୍ୟା ଅଭିଯୋଗରେ ଗିରଫ । କିନ୍ତୁ ସେଥିରୁ ଖଲାସ ହେଲା ପରେ ପୁଣି ଅଟକବନ୍ଦୀ । ୧୯୪୪ ଜୁଲାଇ ମାସରେ କାରାଗାରରୁ ମୁକ୍ତି ।

୧୯୩୨ ମସିହାରୁ 'ସମାଜ' କାଗଜକୁ ନିୟମିତ ଖବର ଯୋଗାଣ । ସାମ୍ବାଦିକତା ଏବଂ ଗଠନମୂଳକ କାର୍ଯ୍ୟ ତାଙ୍କର ଜୀବନାଦର୍ଶ । ଆସୋସିଏଟେଡ୍ ପ୍ରେସ୍ ଅଫ୍ ଇଣ୍ଡିଆର ସମ୍ବାଦଦାତା । ସ୍ୱାଧୀନତା ପରେ ଏହାର ନାମ ହେଲା ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ । ନୃସିଂହ ଗୁରୁ ତା'ର ପ୍ରତିନିଧି । କିନ୍ତୁ ସତ୍ୟ ସମ୍ବାଦ ଯୋଗାଇଥିବାରୁ ତାଙ୍କ ଉପରେ ଦୋଷାରୋପ ଏବଂ ତାଙ୍କର ଇସ୍ତଫା ।

ନୃସିଂହ ଗୁରୁ ଆଟୋପ ଲୋଡ଼ି ନାହାନ୍ତି । ବ୍ୟଥିତ ହୋଇଛନ୍ତି ବିଚ୍ଛିନ୍ନତାବାଦୀମାନଙ୍କର କାର୍ଯ୍ୟରେ । ତ୍ୟାଗପୂତ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପାଇଥିବା କଷ୍ଟଲବ୍ଧ ସ୍ୱାଧୀନତା ବିପନ୍ନ ହେବା ହେତୁ । ସାମ୍ବାଦିକମାନେ ସେମାନଙ୍କର ଭୂମିକା ସମ୍ପନ୍ନ କରୁ ନଥିବା ହେତୁ ତାଙ୍କର ବେଦନା ।

ସମୟ ଅତିକ୍ରାନ୍ତ ହୋଇଛି । ନୃସିଂହ ଗୁରୁ ଆପଣାକୁ ସବୁ କାର୍ଯ୍ୟରୁ ନିଷ୍କ୍ରାନ୍ତ କରି ନେଇ କେବଳ ସାମ୍ବାଦିକତାରେ ମନୋନିବେଶ କରିଛନ୍ତି । ସମ୍ମାନ ମିଳିଛି । କିନ୍ତୁ ନୃସିଂହ ଗୁରୁ ତୃପ୍ତ ହୋଇନାହାନ୍ତି । କାହିଁ ସେ ସ୍ୱାଧୀନତା ?

ନୃସିଂହ ବାବୁ ବିଦାୟ ନେଇଛନ୍ତି ଚିରଦିନ ପାଇଁ । କିନ୍ତୁ ସେ ଉଜ୍ଜ୍ୱଳି ରହିବେ ଜନମାନସର ସ୍ମୃତି ପଟରେ ଚିରକାଳ ।

□□□

## ନ୍ରିପେନ୍ ଚକ୍ରବର୍ତ୍ତୀ - ଏକ ଶ୍ରଦ୍ଧାଞ୍ଜଳି

*(ଂ ନ୍ରିପେନ ଚକ୍ରବର୍ତ୍ତୀ)*

ସମାଜବାଦୀ ଆନ୍ଦୋଳନର ଅନ୍ୟତମ ପ୍ରବାଦ ପୁରୁଷ ନ୍ରିପେନ ଚକ୍ରବର୍ତ୍ତୀ ଆଉ ନାହାନ୍ତି । ୨୦୦୪ ମସିହା ଡିସେମ୍ବର ୨୫ ତାରିଖରେ କୋଲକାତାର ଏକ ଡାକ୍ତରଖାନାରେ ତାଙ୍କର ପରଲୋକ ହୋଇଯାଇଛି । ମୃତ୍ୟୁ ବେଳକୁ ତାଙ୍କୁ ଠିକ୍ କେତେ ବର୍ଷ ବୟସ ହୋଇଥିଲା କହିହେବ ନାହିଁ । ଜନ୍ମ ତାରିଖ ସମେତ ନିଜର ବ୍ୟକ୍ତିଗତ ଜୀବନର କୌଣସି ଘଟଣାବଳୀ ସଂପର୍କରେ ସେ ଆଦୌ ନଜର ଦେଇ ନାହାନ୍ତି । ଭାରତବର୍ଷର ସମାଜବାଦୀ ଆନ୍ଦୋଳନର ମହାରଥୀ, ୧୯୭୮ରୁ ୧୯୮୮ ପର୍ଯ୍ୟନ୍ତ ତ୍ରିପୁରା ରାଜ୍ୟର ମୁଖ୍ୟମନ୍ତ୍ରୀ, ଭାରତୀୟ କମ୍ୟୁନିଷ୍ଟ ପାର୍ଟିର(ପରେ ମାର୍କସବାଦୀ କମ୍ୟୁନିଷ୍ଟ ପାର୍ଟିର ମଧ୍ୟ) ଅନ୍ୟତମ ନାୟକ ନ୍ରିପେନ ଦା ନିଜର ବ୍ୟକ୍ତିଗତ ଜୀବନ ପ୍ରତି ବିମୁଖ ଥିଲେ ଅତ୍ୟନ୍ତ । ତେଣୁ ତାଙ୍କର ଠିକ୍ ଜନ୍ମ ତାରିଖ କେହି କହି ପାରିବେ ନାହିଁ । ତେବେ ତାଙ୍କୁ ୯୯ ( କେହି କେହି କହନ୍ତି ୧୦୧, ଅନ୍ୟମାନେ କହନ୍ତି ୧୦୨ ) ବର୍ଷ ହୋଇଥିଲା ନିଶ୍ଚିତ । ଗଲା କେତେ ଦିନ ସେ ଅସୁସ୍ଥ ରହୁଥିଲେ । କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱ ସହିତ ତାଙ୍କର ମତଭେଦ ଦେଖା ଦେଇଥିଲା ଏବଂ ସେ ପାର୍ଟିଠାରୁ ପ୍ରାୟ ସ୍ୱତନ୍ତ୍ର ହୋଇଯାଇ ଥିଲେ । ସାମ୍ୟବାଦୀ ନେତାମାନଙ୍କର ଜୀବନଧାରଣର ଶୈଳୀ, ସେମାନଙ୍କର କାର୍ଯ୍ୟକଳାପ, କ୍ୟାଡରମାନଙ୍କ ପ୍ରତି ବ୍ୟବହାର ପ୍ରଭୃତିର ସମାଲୋଚନା ସେ କରିଥିଲେ ଖୋଲାଖୋଲି । ଯାହାହେଉ, ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟି ତାଙ୍କ ଉପରୁ ସମସ୍ତ ପଦକ୍ଷେପ ପ୍ରତ୍ୟାହାର କରି ତାଙ୍କୁ ପାର୍ଟିକୁ ଫେରାଇ ଆଣିଥିଲା ମୃତ୍ୟୁର କିଛି ଦିନ ପୂର୍ବରୁ । ମୃତ୍ୟୁ ପରେ ତାଙ୍କୁ ରାଷ୍ଟ୍ରୀୟ ସମ୍ମାନର ସହିତ ବିଦାୟ ଦିଆ ଯାଇଥିଲା ଚିତାଗ୍ନିରେ । ନ୍ରିପେନ ଜୀବନରେ କୌଣସି ସମ୍ମାନ ଲୋଡିନାହାନ୍ତି, ଗ୍ରହଣ କରିନାହାନ୍ତି । ରାଷ୍ଟ୍ରୀୟ ସମ୍ମାନର ସହିତ ବିଦାୟ ଅନ୍ୟମାନଙ୍କ ପାଇଁ, ସେ ତା ବି ଚାହିଁ ନଥିଲେ ।

କେଉଁ ଦିନ କେଉଁଠି ଜନ୍ମ ହୋଇଥିଲି ତା'ର କୌଣସି ଗୁରୁତ୍ୱ ନାହିଁ । କିପରି ଜୀବନ କଟାଇଲି, ମଣିଷ ପାଇଁ କଣ କାମ କରିଗଲି, ମଣିଷ ସମାଜର ବିକାଶ ପାଇଁ କ'ଣ ଅବଦାନ ଦେଇଗଲି ତାହା ବେଶି ଗୁରୁତ୍ୱପୂର୍ଣ୍ଣ । ସେ କାହାକୁ ନିଜର ଜୀବନୀ କଥା କହୁ ନଥିଲେ କି ସେ ସଂପର୍କରେ କୌଣସି ତଥ୍ୟ ଦେଉନଥିଲେ । ବିଚିତ୍ର ମଣିଷ ! ଜୀବନରେ ବିବାହ କରିବାର ଅବସର ପାଇ ନଥିଲେ । ଗୋଟିଏ ବଖୁରିକିଆ ଘର, ଗୋଟିଏ ଛୋଟିଆ ସୁଟକେଶ ହେଉଛି ତାଙ୍କର ସମଗ୍ର ସମ୍ପତ୍ତି ! ବର୍ତ୍ତମାନ ରାଜନୀତିଜ୍ଞ ମାନଙ୍କ ପାଇଁ ତାହା ସ୍ୱପ୍ନ ଭଳି ଲାଗିବ । ଖାଆନ୍ତି ଖୁବ୍ କମ । ତାଙ୍କ ସଂଗରେ ଖାଇଲେ ଉପାସ ରହିଲା ଭଳି ମନେହେବ । ତ୍ରିପୁରାର ମୁଖ୍ୟମନ୍ତ୍ରୀ, କୌଣସି ପିଅନ ନାହିଁ, ଏସକର୍ଟ ନାହିଁ, ଆଦବକାଇଦା ନାହିଁ, ଥାଟ ନାହିଁ । ସୁଟକେଶକୁ ନିଜେ ନେଇ ଯାଆନ୍ତି ହାତରେ, କାହାରିକୁ ଧରିବାକୁ ଦିଅନ୍ତି ନାହିଁ । ଯାହା ତ ନିଜେ ଖାଆନ୍ତି, କିନ୍ତୁ ସାଂଗରେ ଯାଇଥିବା ଡ୍ରାଇଭର ସମେତ ସବୁ ଲୋକ ଖାଇ ସାରିବା ନିଶ୍ଚିତ ହେଲା ପରେ ଯାଇ ସେ ଖାଇବେ । ଥରେ ଜଣେ କେନ୍ଦ୍ରମନ୍ତ୍ରୀ ତାଙ୍କ ସାଂଗରେ ମଧ୍ୟାହ୍ନ ଭୋଜନ ପାଇଁ ନିମନ୍ତ୍ରିତ ହୋଇଥିଲେ । ଭୋଜନ ସରିଲା ପରେ ସେ ପରିହାସରେ କହିଲେ ଉପାସ ରହିବା ପାଇଁ ମଧ୍ୟାହ୍ନ ଭୋଜନ ବେଶ ହୋଇଛି । ନିଜ ଲୁଗା, କୁର୍ତ୍ତା ନିଜେ ସଫା କରନ୍ତି, କାଲିକୁ ପିନ୍ଧିବା ପାଇଁ ।

ଏଭଳି ମଣିଷ ବିରଳ ହୋଇ ଯାଉଛନ୍ତି । ୰ ଅଜୟ ମୁଖର୍ଜୀ,୰ ସୁନ୍ଦରାୟା, ୰ସୋମନାଥ ଲାହିଡ଼ୀ, ୰ଭବାନୀ ସେନ, ୰ ଡାକ୍ତର ପ୍ରଫୁଲ୍ଲ ଘୋଷ, ୰ ନମ୍ବୁଦ୍ରିପଦ ବିଭିନ୍ନ ଦଳର । ସେମାନଙ୍କର ଲାଇଫ ଷ୍ଟାଇଲ କିନ୍ତୁ ଏଇପରି । ହଜିଯାଉଥିବା ମୂଲ୍ୟବୋଧର ସେ ଥିଲେ ପ୍ରତୀକ । କେବଳ ସଭାସମିତିରେ ଭାଷଣଦେବା ଅବସରରେ ଉଠିଥିବା ଫଟୋ ଛଡ଼ା ତାଙ୍କର କୌଣସି ଅନ୍ୟ ଫଟୋ ନ ଥିଲା । ପାସପୋର୍ଟ ପାଇଁ ଦରଖାସ୍ତ କରିବା ସମୟରେ ସେଇ ସମସ୍ୟା ଉପୁଜିଥିଲା ।

ତ୍ରିପୁରାର ସାମ୍ୟବାଦୀ ଆନ୍ଦୋଳନର ତିନି ମହାରଥୀ ହେଉଛନ୍ତି ନ୍ରିପେନ, ପ୍ରବାଦପୁରୁଷ ଆଦିବାସୀ ନେତା ଦଶରଥ ଦେବ ବର୍ମନ ଏବଂ ବୀରେନ୍ ଦତ୍ତ । କିଛି ବର୍ଷ ପୂର୍ବରୁ ସେମାନେ ବିଦାୟ ନେଇ ସାରିଛନ୍ତି ସଂସାରରୁ । ତ୍ରିପୁରାର ଜନଜୀବନରେ ଆଦିବାସୀ ଏବଂ ଅଣ-ଆଦିବାସୀମାନଙ୍କ ମଧ୍ୟରେ ସେଇମାନେ ହିଁ ସମନ୍ୱୟର ପ୍ରତୀକ । ସେମାନେ ଯେଉଁ ଜନଆନ୍ଦୋଳନ ଗଢ଼ି ତୋଳିଥିଲେ, ସେଇ ମହା ସମନ୍ୱୟର ବିଜୟ ଦୁନ୍ଦୁଭି ବର୍ତ୍ତମାନ ବି ତ୍ରିପୁରାରେ ନିନାଦିତ । ତ୍ରିପୁରାର ରାଜଧାନୀ ଅଗରତାଲାର ଏକ ବିସ୍ତୀର୍ଣ୍ଣ ଅଂଚଳ ଓଡିଆଟାରା ନାମରେ ବିଦିତ । ସେଇ ଓଡିଆମାନେ ମଧ୍ୟ ଏହାର ପ୍ରତ୍ୟକ୍ଷ ସାକ୍ଷ୍ୟ ବହନ କରନ୍ତି ।

ଆତ୍ମବଡିମା ତାଙ୍କର ଆଦୌ ନଥିଲା । ସେ କଟକ ଆସିଥିଲେ ତ୍ରିପୁରାର ମୁଖ୍ୟମନ୍ତ୍ରୀ ଥିଲାବେଳେ, କଟକ ଆସି ସେ ତାଙ୍କର ଏକଦା ସହଯୋଦ୍ଧା ୰ ଶରତ ପଟ୍ଟନାୟକଙ୍କୁ ଭେଟିବାକୁ ଚାହିଁଲେ । ତାଙ୍କୁ ଡକାଇ ପଠାଇବାକୁ ପ୍ରତ୍ୟାଖ୍ୟାନ କରି ସେ ଚାଲିଲେ ଶରତବାବୁ ନିମସାହୀର ନର୍ଦ୍ଦମା ଉପରେ ରହୁଥିବା ଘରକୁ ଏବଂ କଟାଇଲେ ବେଶ କିଛି ସମୟ । ତାଙ୍କ ସଂର୍ପକରେ ମତ ଦେଇ ପ୍ରସିଦ୍ଧ ବ୍ୟୁରୋକ୍ରାଟ ଏସ.ଆର. ଶଂକରନ କହନ୍ତି ଯେ ସେ ତାଙ୍କ ଜୀବନରେ ଏ ଭଳି ସଚ୍ଚୋଟ, ଆତ୍ମ ଗାରିମା ଶୂନ୍ୟ, ପ୍ରଚାର ବିମୁଖ, ଜନ ସାଧାରଣଙ୍କ ପ୍ରତି ସଂପୂର୍ଣ୍ଣ ନିବେଦିତ ବ୍ୟକ୍ତି ଦେଖିନାହାନ୍ତି । ବର୍ତ୍ତମାନ ଶାସକଦଳମାନେ ଅମଲାତନ୍ତ୍ରକୁ ଆପଣା ପାଖକୁ, ଦଳଗୋଷ୍ଠୀର ଅନୁଗତ ହେବାକୁ ଚାହୁଁଛନ୍ତି । ନ୍ରିପେନଙ୍କ ସଂପର୍କରେ ବିରୋଧୀଦଳମାନେ ସେ ଅଭିଯୋଗ କରିନାହାନ୍ତି । କାରଣ ନ୍ରିପେନ ସବୁବେଳେ ଏକ କର୍ତ୍ତବ୍ୟନିଷ୍ଠ ନିରପେକ୍ଷ ଅମଲାତନ୍ତ୍ରକୁ ସ୍ୱାଗତ କରିଛନ୍ତି । ଅମଲାତନ୍ତ୍ରର ଦୟାରୁ ନୁହେଁ, ଜନସାଧାରଣଙ୍କ ପାଖରେ ଆପଣାର କାର୍ଯ୍ୟରୁ ପାର୍ଟି ଆପଣାର ଶକ୍ତି ସଂଗ୍ରହ କରିବ, ଜନପ୍ରିୟତା ବୃଦ୍ଧି କରି ପାରିବ । ଏହା ଥିଲା ତାଙ୍କର ଘୋଷିତ ନୀତି ।

ସାଧାରଣତଃ ମନ୍ତ୍ରୀମାନଙ୍କର ଖାଇବା, ପିଇବା, ରହିବା ବୁଝନ୍ତି ସରକାରୀ କଳ । ନ୍ରିପେନଙ୍କ ପ୍ରତି ତାହା ପ୍ରଯୁଜ୍ୟ ନଥିଲା । ସରକାରୀ କଳ କାମକଥା ବୁଝନ୍ତି । ରହିବା, ଖାଇବା ବୁଝିବାକୁ ହୁଏ ପାର୍ଟିକୁ । କେତେ ଖର୍ଚ୍ଚ କମିଯାଆନ୍ତା । ସରକାରୀ ତହବିଲରୁ, ଯଦି ମନ୍ତ୍ରୀମାନେ ଏହା କରନ୍ତେ !

ଦଳିତ ମଣିଷ, ଆଦିବାସୀ, ହରିଜନମାନଙ୍କ ପାଇଁ ତାଙ୍କର ଥିଲା ଅହେତୁକ ଦୁର୍ବଳତା । ନିଜର ଦୀର୍ଘ ରାଜନୈତିକ ଜୀବନ, ଦୀର୍ଘ ଅଜ୍ଞାତବାସ ହେତୁ ସେ ତ୍ରିପୁରାର ବିଭିନ୍ନ ଶ୍ରେଣୀର ବହୁ ବ୍ୟକ୍ତିଙ୍କୁ ଜାଣିଥିଲେ ଏବଂ ମନେ ରଖିଥିଲେ । ସେମାନଙ୍କୁ ପରିଚୟ କରାଇବାର ଆବଶ୍ୟକତା ପଡୁନଥିଲା । ମଣିଷ ପାଇଁ ଦ୍ୱାର ଖୋଲା ଥିଲା ଅବାରିତ । କେବଳ ସମୟ ଠିକ୍ କରି ଦେଖାକରିବା ପ୍ରତ୍ୟେକ ମଣିଷ ପାଇଁ ସମ୍ଭବ ଥିଲା । ବର୍ତ୍ତମାନ ତ ଅନେକଙ୍କୁ ଭେଟିବା ପାଇଁ ଆପଏଣ୍ଟମେଣ୍ଟ ନେବା ସତ୍ତ୍ୱେ ସମ୍ଭବ ହୋଇପାରୁନାହିଁ !

ସମୟ ବଦଳି ଯାଇଛି । ନ୍ରିପେନ ସବୁ ଚିଠି ନିଜେ ଦେଖନ୍ତି ଏବଂ କର୍ମପନ୍ଥାର ନିଷ୍ପତ୍ତି ଲିପିବଦ୍ଧ କରାହୁଏ । ଉତ୍ତର ଯାଏ ପ୍ରେରକ ପାଖକୁ । ପିଏମାନେ ବଳୟ ସୃଷ୍ଟି କରିବାର ପ୍ରଶ୍ନ ଉଠେନା ।

ପ୍ରତ୍ୟେକ ବୈଠକକୁ ସେ ଯାଆନ୍ତି ପ୍ରସ୍ତୁତ ହୋଇ । ଆପଣାର ଅଭିଜ୍ଞତାରୁ ସେ ସବୁବେଳେ ନୂତନ ଦିଗନିର୍ଦ୍ଦେଶନା ଦେଇ ପାରନ୍ତି; କିନ୍ତୁ ବିନୀତ ଭାବରେ । ତ୍ରିପୁରାରେ ଜାତୀୟ ନିଯୁକ୍ତି ଯୋଜନା କାର୍ଯ୍ୟକାରୀ କରିବାରେ ସେ ଭାରତରେ ପ୍ରଥମ । ପରେ ଏହା ଜାତୀୟ ସ୍ତରରେ ଗୃହୀତ ହୋଇଥିଲା ।

ମାର୍କ୍ସବାଦ ଲେନିନବାଦରେ ସେ ଥିଲେ ଯେପରି ପଟୁ; ବେଦ, ଉପନିଷଦ, ଗୀତା ପ୍ରଭୃତି ଶାସ୍ତ୍ରରେ ମଧ୍ୟ ସେ ଥିଲେ ସେଇପରି ପ୍ରବୀଣ । ଅନେକ ସମୟରେ ଚୈତନ୍ୟ, ଶଙ୍କରଙ୍କର ଲେଖାକୁ ଉଦ୍ଧୃତ କରି ସେ ଶ୍ରୋତାମାନଙ୍କୁ ଚମତ୍‌କୃତ କରନ୍ତି । ବୁଦ୍ଧଙ୍କର ବାଣୀ ଥିଲା ତାଙ୍କର କଣ୍ଠସ୍ଥ । ବିହାର ଜେଲମାନଙ୍କରେ ଅନେକ ଦିନ ରହି ସେ ବିସମିଲ ଓ ରେଣୁ ପ୍ରଭୃତିଙ୍କର କାବ୍ୟକବିତାକୁ ସେ ମନେ ରଖିଥିଲେ । ଅନେକ ସମୟରେ ବିଶିଷ୍ଟ ବକ୍ତାମାନେ ସେମାନଙ୍କର ଭାଷଣରେ ଉକ୍ତ କବିମାନଙ୍କର ଲେଖାକୁ ପୂରା ମନେ ନ ପକାଇ ପାରିଲେ ନୃପେନ ତାହା ପୂରଣ କରି ସମସ୍ତଙ୍କୁ ଆମୋଦ ଦିଅନ୍ତି, ଆଶ୍ଚର୍ଯ୍ୟ କରନ୍ତି । ମୁଁ ଭାରତୀୟ, ତେଣୁ ମୁଁ ଆନ୍ତର୍ଜାତିକ, ମୁଁ ଭାରତୀୟ, ତେଣୁ ମୁଁ ସାମ୍ୟବାଦୀ, ନୃପେନ ସବୁବେଳେ କହନ୍ତି ।

ଏଭଳି ବିରଳ ମଣିଷ ଆଉ ମିଳିବେ ନାହିଁ, ଇତିହାସ କେତେ ମନେରଖିବ ତାଙ୍କୁ କହିବା କଠିନ । କିନ୍ତୁ ଇତିହାସ ପୃଷ୍ଠାରେ ଯେତେବେଳେ ସଂକଟ ଦେଖାଦେବ ସେତେବେଳେ ମନେପଡିବେ ଏଇଭଳି ମଣିଷ ।

□□□

# ପାର୍ଲ୍ୟାମେଣ୍ଟର ପିତାମହଙ୍କର ପରଲୋକ

*(ଏନ୍.ଜି.ରଙ୍ଗା)*

ପ୍ରଫେସର ଏନ୍.ଜି. ରଙ୍ଗା ଆଉ ନାହାନ୍ତି । ଦେଶପ୍ରେମ ଓ ମୂଲ୍ୟବୋଧ ସହିତ ସମନ୍ୱୟ ଆଣିଥିବା ଯେଉଁ କେତେଜଣ ଅଧୁନାତନ ନେତା ଆଉ ବାକି ଥିଲେ ସେମାନଙ୍କ ମଧ୍ୟରେ ପ୍ରଫେସର ରଙ୍ଗା ଅନ୍ୟତମ । ତାଙ୍କର ପରଲୋକରେ ଦେଶାତ୍ମବୋଧ ଓ ମୂଲ୍ୟବୋଧର କନକ କିରଣର ଶେଷ ଛିଟା ପ୍ରାୟ ଅସ୍ତମିତ । ଏହା ଯୁଗାବସାନର ପ୍ରତୀକ ?

ପ୍ରଫେସର ରଙ୍ଗା ଏଭଳି ଏକ ବ୍ୟକ୍ତି ଥିଲେ ଯିଏ ନିଜ ମତରେ ଯେପରି ଅଟଳ ଥିଲେ, ଅନ୍ୟର ପ୍ରତିପକ୍ଷ ମତକୁ ସମ୍ମାନ ଦେବାରେ ସେଇପରି ଅଟଳ ଥିଲେ । ସେଇଯୋଗୁଁ ତାଙ୍କୁ ସମର୍ଥନ କରୁଥିବା ଏବଂ ବିରୋଧ କରୁଥିବା ଉଭୟ ଗୋଷ୍ଠୀ ତାଙ୍କୁ ସମ୍ମାନ ଦେଖାଉଥିଲେ । ପାର୍ଲ୍ୟାମେଣ୍ଟରେ ତାଙ୍କର ଅଭିଭାଷଣକୁ ସମସ୍ତେ ମନଯୋଗ ସହିତ ଶୁଣୁଥିଲେ, କାରଣ 'ହୋମଓ୍ୱାର୍କ' ବା ଘରେ ପ୍ରସ୍ତୁତି ନକରି ସେ କୌଣସି ବକ୍ତବ୍ୟ ଦେଉନଥିଲେ । ଗାନ୍ଧୀବାଦର ସେ ଥିଲେ ଅନ୍ୟତମ ଅନ୍ତିମ କ୍ରୁସେଡର ବା ଯୋଦ୍ଧା ।

ମୃତ୍ୟୁ ବେଳକୁ ତାଙ୍କୁ ୯୪ ବର୍ଷ ବୟସ ହୋଇଥିଲା । ତଥାପି ମାତ୍ର କିଛି ଦିନକୁ ଛାଡ଼ି ସେ ସୁସ୍ଥ ଏବଂ ଆଲର୍ଟ ଥିଲେ । ୧୯୦୦ ମସିହା ଡିସେମ୍ବର ସାତ ତାରିଖରେ ମାନ୍ଦ୍ରାଜ ପ୍ରଦେଶର କୃଷ୍ଣା ଜିଲ୍ଲାର ନିଡୁବ୍ରୋଲୁ ଗ୍ରାମରେ ଏକ କୃଷକ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । କୃଷକମାନଙ୍କର ସମସ୍ୟା ସମ୍ପର୍କରେ ପ୍ରବୀଣ ପାର୍ଲ୍ୟାମେଣ୍ଟାରିଆନ ରଙ୍ଗା, ପରିବାରର କୌଳିକ କାର୍ଯ୍ୟ କୃଷି କାର୍ଯ୍ୟରେ ନିଯୁକ୍ତ ହେବାପାଇଁ ପରିବାରର ଇଚ୍ଛା ଥିଲା । କିନ୍ତୁ ଯିଏ ସମଗ୍ର ଦେଶର ଚାଷୀମାନଙ୍କର ମଙ୍ଗଳ ପାଇଁ ଅଭିପ୍ରେତ ସେ କିପରି ଏକ ପରିବାରର କୌଳିକ କୃଷି କାର୍ଯ୍ୟରେ ନିଯୁକ୍ତ ହୋଇ ପାରନ୍ତା ? ପାରମ୍ପରିକ ବିଦ୍ୟାଳୟ ଶିକ୍ଷା ପ୍ରତି ତାଙ୍କର ଆଗ୍ରହ ନଥିଲା । ପୁରାଣଶାସ୍ତ୍ର ପଢ଼ିବାରେ ଥିଲା ତାଙ୍କର ଆଗ୍ରହ । ତଥାପି ୧୪ ବର୍ଷ ବୟସରେ ସେ ବିଦ୍ୟାଳୟ ପାଠ ଆରମ୍ଭ କଲେ ।

ସେ ପାଠ ପଢ଼ିବାକୁ ଗଲେ ପ୍ରସିଦ୍ଧ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟକୁ । ଅନେକ ଆଶା କରିଥିଲେ ଯେ ସେ ଆଇ.ସି.ଏସ୍. ହୋଇ ଫେରିବେ । କିନ୍ତୁ ଗାନ୍ଧିଜୀଙ୍କର ଡାକରା ତାଙ୍କୁ ଅନୁପ୍ରାଣିତ କରିଥିଲା । ଆଇ. ସି. ଏସ୍. ହେବା ସେତିକିରେ ରହିଲା । ରଙ୍ଗାଙ୍କର ବିଶାଳ ପୈତୃକ ନାମକୁ ବଦଳାଇ ସେ ସଂକ୍ଷିପ୍ତ ଏନ୍. ଜି. ରଙ୍ଗାରେ ପରିଣତ କରିଦେଲେ ଏଇଠି ।

ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ସେ ଅର୍ଥନୀତିରେ ଗବେଷଣା କରୁଥିଲେ । ୧୯୨୦-୨୧ ମସିହାର କଥା । ସମଗ୍ର ଭାରତବର୍ଷରେ ମୁକ୍ତି ଆନ୍ଦୋଳନର ପ୍ରଚଣ୍ଡ ଉଦ୍‌ବେଳନ । ତାର ଢେଉ ପିଟୁଛି ଇଂଲଣ୍ଡ ଉପକୂଳରେ । ରଙ୍ଗା ନିଷ୍ପତ୍ତି କଲେ ଭାରତବର୍ଷକୁ ଫେରିବା ପାଇଁ । ସବୁ ଉପଦେଶ, ନିବେଦନ ବୃଥା ହେଲା । ମୁକ୍ତିର ଡାକ ଆଗରେ ଅନ୍ୟ ସବୁ ଉପଦେଶ ହାରମାନିଲା ।

ତମେ କ'ଣ ହେବାକୁ ଚାହଁ ? ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ ଉତ୍ତର ଦେଇଥିଲା – ସ୍ୱରାଜ ପାଇଁ ଲୋକଙ୍କୁ ଏକାଠି କରିବା ହେବ ମୋର କର୍ମ । ୧୯୨୩ ମସିହାରେ ପ୍ରଫେସର ରଙ୍ଗା ଯୋଗ ଦେଲେ ଭାରତୀୟ ଜାତୀୟ କଂଗ୍ରେସରେ । ମୁକ୍ତି ଆନ୍ଦୋଳନ ଭିତରେ ତାଙ୍କୁ ବହୁବାର କାରାଗାର ଭୋଗ କରିବାକୁ ପଡିଛି । ବହୁକାଳ ଧରି ସେ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟ ଥିଲେ । କିଛି କାଳ ମଧ୍ୟ ଆନ୍ଧ୍ରପ୍ରଦେଶର କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଥିଲେ ।

୧୯୨୭ ମସିହାରୁ ୧୯୩୦ ମସିହା ପର୍ଯ୍ୟନ୍ତ ସେ ମାନ୍ଦ୍ରାଜର ଏକ କଲେଜରେ ଅର୍ଥନୀତି ଏବଂ ରାଜନୀତି ବିଜ୍ଞାନର ମୁଖ୍ୟ ଥିଲେ ।

ପ୍ରଫେସର ରଙ୍ଗା କେନ୍ଦ୍ର ଲେଜିସ୍‌ଲେଟିଭ ଆସେମ୍ବ୍ଲିର ସଭ୍ୟ ଥିଲେ ୧୯୩୫ ମସିହାରେ ତଥା ୧୯୪୫ ମସିହାରେ । ୧୯୪୬ରୁ ୧୯୫୦ ପର୍ଯ୍ୟନ୍ତ ସେ ସମ୍ବିଧାନ ସଭାର ସଭ୍ୟ ଥିଲେ ଏବଂ ପରେ ଅସ୍ଥାୟୀ ପାର୍ଲ୍ୟାମେଣ୍ଟର ମଧ୍ୟ ସଭ୍ୟ ଥିଲେ ।

ପ୍ରଫେସର ରଙ୍ଗା ପଚାଶ ବର୍ଷରୁ ଊର୍ଦ୍ଧ୍ୱକାଳ ପାର୍ଲ୍ୟାମେଣ୍ଟାରୀ ଜୀବନଯାପନ କରିଛନ୍ତି । ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିଲାବେଳେ ତାଙ୍କୁ ଏଥିପାଇଁ ସମ୍ମାନିତ କରାଯାଇଛି ଏବଂ ଏଭଳି ସମ୍ମାନ ପାଇବାରେ ସେ ଏକ ବିରଳ ବ୍ୟକ୍ତି । ୧୯୭୦ ରୁ ୧୯୭୭ ପର୍ଯ୍ୟନ୍ତ ସମୟକୁ ବାଦ ଦେଲେ ପ୍ରଫେସର ରଙ୍ଗା ବିଭିନ୍ନ ଦଳର ଟିକେଟରେ ହୁଏତ ରାଜ୍ୟସଭା ବା ଲୋକସଭାର ସଭ୍ୟ ହୋଇଛନ୍ତି । ମାତ୍ର ୧୯୯୧ ମସିହାରେ ତେଲୁଗୁ ଦେଶମ ଦଳର ଜଣେ ଅନାମଧେୟ ତରୁଣ ପାର୍ଥୀ ହାତରେ ଏଇ ପ୍ରବୀଣ ପାର୍ଲ୍ୟାମେଣ୍ଟ ସଭ୍ୟଙ୍କ ପରାଜୟ ହେଲା । ପରେ ପରେ ସେ ସକ୍ରିୟ ରାଜନୀତିରୁ ଅବସର ନେଲେ । ବୟସ ମଧ୍ୟ ହୋଇ

ଯାଇଥିଲା । ରାଜନୀତିରେ ବେଳେବେଳେ ବାତ୍ୟା ଆସେ ଏବଂ ତା'ଆଗରେ ମହାଦ୍ରୁମ ମଧ୍ୟ ଟଳି ପଡନ୍ତି ।

ପ୍ରଫେସର ରଙ୍ଗା ରକ୍ଷଣଶୀଳ ରାଜନୀତିଜ୍ଞ ଭାବରେ ପରିଚିତ, ଯଦିଓ ତାଙ୍କର ରାଜନୈତିକ ଜୀବନର ଆଦ୍ୟ ଭାଗ ତା'ର ସୂଚନା ବହନ କରୁନଥିଲା । ରାଜନୀତିର ଇତିହାସରେ ଏଭଳି ଅନେକ ଜନନାୟକ ଦେଖାଦେଇଛନ୍ତି । ଜୀବନର ଆଦ୍ୟ ଭାଗ ସେମାନଙ୍କର ପ୍ରଗତିଶୀଳ ଚିନ୍ତାରେ ପୁଷ୍ଟ ହୋଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ସେମାନେ ନାନା କାରଣରୁ ରକ୍ଷଣଶୀଳ ମତବାଦର ବାବଦୂକ ପାଲଟି ଯାଇଛନ୍ତି । ଭାରତବର୍ଷରେ ମିନୁ ମାଶାନୀ ତାର ଏକ ଜ୍ୱଳନ୍ତ ଉଦାହରଣ ।

ପ୍ରଫେସର ରଙ୍ଗା ୱାସିଙ୍ଗଟନରେ ଗଠିତ ହୋଇଥିବା ଆନ୍ତର୍ଜାତିକ କୃଷି ଉତ୍ପାଦକ ସଂଘର ପ୍ରତିଷ୍ଠାତାମାନଙ୍କ ମଧ୍ୟରେ ଅନ୍ୟତମ । ୧୯୩୦ ମସିହାରେ ଲଣ୍ଡନଠାରେ ଗଠିତ ଜନମୁକ୍ତି ସାମ୍ମୁଖ୍ୟର ମଧ୍ୟ ସେ ଅନ୍ୟତମ ପ୍ରତିଷ୍ଠାତା । ମହାତ୍ମା ଗାନ୍ଧୀଙ୍କଦ୍ୱାରା ପ୍ରତିଷ୍ଠିତ ଭାରତୀୟ ଚାଷୀ ଇନିଷ୍ଟିଚ୍ୟୁଟରେ ମଧ୍ୟ ସେ କିଛି କାଳ ପ୍ରିନ୍‌ସିପାଲ । କୃଷକ ଓ କୃଷି ତାଙ୍କର ଅସ୍ଥିମଜ୍ଜାଗତ । ଭାରତୀୟ କୃଷକ ଆନ୍ଦୋଳନର ମଧ୍ୟ ସେ ଅନ୍ୟତମ ପାଓନିଅର । କିଛିକାଳ ସେ ନିଖିଳ ଭାରତ କିଷାନ ସମ୍ମିଳନୀର ସଭାପତି ।

ଅଧ୍ୟାପକ ରଙ୍ଗାଙ୍କର ରାଜନୈତିକ ଜୀବନ ବୈଚିତ୍ର୍ୟମୟ । ମତ ତାଙ୍କ ପାଇଁ ଶ୍ରେଷ୍ଠ, ପଦବୀ ନୁହେଁ । ୧୯୫୧ ମସିହାରେ ସେ କଂଗ୍ରେସ ପରିତ୍ୟାଗ କରନ୍ତି ଏବଂ ଭାରତୀୟ କୃଷିକ୍ ଲୋକ ପାର୍ଟି ଗଠନ କରନ୍ତି । ୧୯୫୨ ମସିହା ନିର୍ବାଚନରେ ସେ ଲୋକସଭାକୁ ନିର୍ବାଚିତ ହୁଅନ୍ତି ଏବଂ ପ୍ରତ୍ୟାବର୍ତ୍ତନ କରନ୍ତି ତିନି ବର୍ଷ ପରେ କଂଗ୍ରେସକୁ । ଏହାର ପାର୍ଲ୍ୟାମେଣ୍ଟାରୀ ପାର୍ଟିର ସେକ୍ରେଟେରୀ ହୁଅନ୍ତି ଏବଂ ଭାରତ ସେବକ ସମାଜର କାର୍ଯ୍ୟକାରୀ କମିଟିର ସଭ୍ୟ ହୁଅନ୍ତି । ୧୯୫୯ ମସିହାରେ ସେ ପୁଣି କଂଗ୍ରେସ ଦଳ ପରିତ୍ୟାଗ କରନ୍ତି । ସେଇ ବର୍ଷ ସେ ସ୍ୱତନ୍ତ୍ର ପାର୍ଟିର ସଭାପତି ହୁଅନ୍ତି ।

ରାଜଗୋପାଳଚାରୀ ଥିଲେ ତାଙ୍କର ରାଜନୈତିକ ଗୁରୁ । ପଣ୍ଡିତ ଜବାହରଲାଲ ନେହେରୁଙ୍କ ସହିତ ତାଙ୍କର ମତଭେଦ ବଢ଼ିଥିଲା । କୃଷିକୁ ବ୍ୟକ୍ତିଗତ ଉଦ୍ୟୋଗକୁ ଛାଡି ଦିଆଯିବ ନା ସମବାୟ ଭିତ୍ତିକ କୃଷିକୁ ଉତ୍ସାହିତ କରାଯିବ ଏହି ସମସ୍ୟା ଉପରେ ସେ କଂଗ୍ରେସ ଛାଡିଲେ । ସୋଭିଏଟ ରୁଷରେ ସମବାୟ ଭିତ୍ତିକ କୃଷିର ବିକାଶ ଜବାହରଲାଲଙ୍କୁ ଅନୁପ୍ରାଣିତ କରିଥିଲା ।

ୱାଲର୍ଡ ଗଭର୍ଣ୍ଣମେଣ୍ଟ କନ୍‌ଫରେନସକୁ ନିମନ୍ତ୍ରିତ ହୋଇ ସେ ଏହାର ଟୋକିଓ ସମ୍ମିଳନୀ (୧୯୫୫)ରେ ଏବଂ ପ୍ୟାରିସ ସମ୍ମିଳନୀ (୧୯୫୬)ରେ ଯୋଗ

ଦେଇଥିଲେ । ୧୯୫୫ ମସିହାରେ ସେ ପାର୍ଲ୍ୟାମେଣ୍ଟାରୀ ପ୍ରତିନିଧି ଦଳରେ ରୁଷ ଏବଂ ଯୁଗୋସ୍ଲୋଭିଆ ପରିଦର୍ଶନ କରିଥିଲେ ।

ପ୍ରଫେସର ରଙ୍ଗା ଥିଲେ ଜଣେ ପ୍ରଖ୍ୟାତ ବୁଦ୍ଧିଜୀବୀ । ସେ ବହୁ ପୁସ୍ତକର ରଚୟିତା । ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ ଭାରତୀୟ ଗ୍ରାମମାନଙ୍କରେ ଅର୍ଥନୈତିକ ସଂଗଠନ; ଔପନିବେଶିକତା ଓ କୃଷ ଜନତା, ବୈପ୍ଳବିକ ଚାଷୀ, ବିଶ୍ୱଶାନ୍ତି ତାଙ୍କୁ ଅବିସ୍ମରଣୀୟ କରି ରଖିବ ।

ମୂଲ୍ୟବୋଧ ଏବଂ ମତବାଦ ପ୍ରତି ଅନୁରକ୍ତ ଏଇ ସେନାପତି ସ୍ମୃତ ହୋଇ ରହିବେ ବହୁକାଳ । ତାଙ୍କ ସହିତ ତୀବ୍ର ମତଭେଦ ଥିବା ବ୍ୟକ୍ତିମାନେ ମଧ୍ୟ ତାଙ୍କୁ ଏହି କାରଣରୁ ସ୍ମରଣ କରିବେ କାରଣ ଭାରତବର୍ଷରେ ମତ ପରିବର୍ତ୍ତରେ ଅର୍ଥ, ମୂଲ୍ୟବୋଧ ପରିବର୍ତ୍ତରେ ମାଫିଆ ଶକ୍ତିର ବିଜୟ ଆରମ୍ଭ ହୋଇଛି ।

□□□

# ଏନ୍.ଟି.ଆର୍

## (୰ ଏନ୍.ଟି. ରାମାରାଓ)

ଏନ.ଟି. ରାମାରାଓଙ୍କର ପରଲୋକ ହୋଇଗଲା ତେସ୍ତରୀ ବର୍ଷ ବୟସରେ ହାଇଦ୍ରାବାଦରେ ଗୁରୁବାର ଜାନୁଆରୀ ୧୮ ତାରିଖ ଦିନ ଭୋରରୁ । କିଛି ବର୍ଷ ତଳେ ତାଙ୍କର ବାଇପାସ୍ ସର୍ଜରୀ ହୋଇଥିଲା । ଏହା ସତ୍ତ୍ୱେ ସେ ଶାରୀରିକ ଏବଂ ମାନସିକ ଉଭୟ ଦୃଷ୍ଟିରୁ ସଂପୂର୍ଣ୍ଣ ସକ୍ଷମ ଥିଲେ । ଫେବୃଆରୀ ଦୁଇ ତାରିଖରେ 'ସିଂହ ଗର୍ଜନ' ର ବିଶାଳ ସମାବେଶ ଆୟୋଜନରେ ବ୍ୟସ୍ତ ଥିଲେ ସେ । ରାତି ତିନିଟା । ସେ ବିଛଣାରୁ ଉଠି ସବୁଦିନ ପରି ବ୍ୟାୟାମ କରିବାକୁ ପ୍ରସ୍ତୁତ ହେଉଥିଲେ । ହଠାତ୍ ଛାତିରେ ଯନ୍ତ୍ରଣା ଏବଂ ଦଶ ମିନିଟ ଭିତରେ ମୃତ୍ୟୁ । ତିନିଶହ କୋଡ଼ିଏରୁ ଊର୍ଦ୍ଧ୍ୱ ଚଳଚ୍ଚିତ୍ରରେ ଅଭିନୟ କରିଥିବା ରାମାରାଓ ସାଧାରଣ ମଣିଷର ପାଖରେ ପରିଚିତ ଥିଲେ ନିବିଡ଼ ଭାବରେ । ସେଇଯୋଗୁଁ ତାଙ୍କର ପରଲୋକରେ ଯେଉଁ ଅଭୂତପୂର୍ବ ଜନ ସମୁଦ୍ର ଅଜାଡ଼ି ହୋଇ ପଡ଼ିଲା ସେମାନଙ୍କ ମଧ୍ୟରେ ଥିଲେ ବିପୁଳ ଶ୍ରମଜୀବୀ ଜନତା । କାରଣ ଆପଣାର ପ୍ରାଚୁର୍ଯ୍ୟ ସତ୍ତ୍ୱେ ରାମାରାଓ ଆପଣାର ଅତୀତକୁ ଭୁଲି ନଥିଲେ । ଶ୍ରମଜୀବୀ ଜନତା ପାଇଁ ତାଙ୍କର ଦରଦ ଥିଲା ଅସୀମ । ଶସ୍ତାରେ ଚାଉଳ ଯୋଗାଇବା ସହିତ ପ୍ରତ୍ୟେକ ଶ୍ରମଜୀବୀ ମଣିଷକୁ ରେସନ କାର୍ଡରେ ବିଭିନ୍ନ ସାମଗ୍ରୀ ଯୋଗାଇବା ପାଇଁ ତାଙ୍କର ପଦକ୍ଷେପକୁ ସମସ୍ତେ ସ୍ୱାଗତ କରିଥିଲେ ।

ଏନ.ଟି.ଆର୍ ଚଳଚ୍ଚିତ୍ର ସଂଖ୍ୟା ଯେମିତି ବହୁତ, ପିଲାଛୁଆ ମଧ୍ୟ ସେଇପରି ବେଶି । ସାତ ପୁଅ ଏବଂ ଚାରି ଝିଅ ତାଙ୍କର ପ୍ରଥମ ସ୍ତ୍ରୀଙ୍କ ଗର୍ଭରୁ । ପରେ ମାତ୍ର କିଛି ବର୍ଷ ତଳେ ଆପଣାର ଜୀବନୀ ଲେଖିବାକୁ ଆସିଥିବା ଏକ ବିବାହିତା ନାରୀ ଲକ୍ଷ୍ମୀପାର୍ବତୀଙ୍କୁ ସେ ବିବାହ କରିଥିଲେ । ପ୍ରଥମ ସ୍ତ୍ରୀର ପରଲୋକ ହୋଇଯାଇଥିଲା ଦଶ ବର୍ଷ ତଳେ । ତାଙ୍କର ସମାଧି ରହିଛି ଏନ.ଟି. ଆର୍‌ଙ୍କ ଗ୍ରାମରେ, ପିତାମାତାଙ୍କ ସମାଧି ପାଖରେ । ଲକ୍ଷ୍ମୀପାର୍ବତୀଙ୍କ ସ୍ୱାମୀ ଜଣେ ହରିକଥା ଗାୟକ । ଲକ୍ଷ୍ମୀପାର୍ବତୀ ଆସିଥିଲେ ରାମାରାଓଙ୍କ ଜୀବନୀ ଲେଖିବା ପାଇଁ । ସେତେବେଳେ ରାମାରାଓ ଅସୁସ୍ଥ । ତେଣୁ ଲକ୍ଷ୍ମୀପାର୍ବତୀ

ରହିଗଲେ ତାଙ୍କ ପାଖରେ । ରାମାରାଓଙ୍କ ସାନ୍ନିଧ, ପତ୍ନୀହରା ଏକାକୀତ୍ୱ ଏବଂ ସର୍ବୋପରି ଶୁଶ୍ରୁଷା ବୋଧହୁଏ ଲକ୍ଷ୍ମୀପାର୍ବତୀଙ୍କୁ ସ୍ପର୍ଶ କରିଥିଲା କାତର ମୁହୂର୍ତ୍ତରେ । ରାମାରାଓ ମଧ ଠିକ୍ ଅନୁରୂପ ଭାବରେ ମୁଗ୍ଧ ହୋଇଗଲେ ଲକ୍ଷ୍ମୀପାର୍ବତୀଙ୍କ ସେବା ଏବଂ ସାନ୍ନିଧରେ । ଫଳରେ ପରସ୍ପର ମଧରେ ଗଭୀର ଅନୁକମ୍ପା ସୃଷ୍ଟି ହୋଇଥିଲା । ଲକ୍ଷ୍ମୀପାର୍ବତୀ ଆପଣାର ପ୍ରଥମ ସ୍ୱାମୀକୁ ପରିତ୍ୟାଗ କରି ରାମାରାଓଙ୍କର ସହଧର୍ମିଣୀ ହେଲେ । କିନ୍ତୁ ଯେଉଁଦିନ ରାମାରାଓ ଏହି ଘୋଷଣା କଲେ ସେଇଦିନ ତେଲୁଗୁ ଦେଶମ ତଥା ଆପଣା ପରିବାର ଭିତରେ ଭୂମିକମ୍ପ ସୃଷ୍ଟି ହେଲା । ଲକ୍ଷ୍ମୀପାର୍ବତୀ କେବଳ ସହଧର୍ମିଣୀ ହେବେ ନା ସହକର୍ମୀ ମଧ ହେବେ ? ସହକର୍ମୀ ହେଲେ ସେ ରାମାରାଓଙ୍କ ନିୟାମକ ହେବେ ଏବଂ ରାଜନୈତିକ ଉତ୍ତରାଧିକାରୀ ହେବେ । ଏହା ରାମାରାଓଙ୍କ ପୁତ୍ର ଓ ଜାମାତାମାନଙ୍କ ପାଇଁ ଅସହ୍ୟ । ଆରମ୍ଭ ହେଲା ମହାଭାରତ, ରାମାରାଓ ପରିବାରରେ ।

ରାମାରାଓ ଚଳଚ୍ଚିତ୍ର ଜଗତର ହିରୋ ଥିଲେ । ଆନ୍ଧ୍ରରେ ଏକ କଂଗ୍ରେସ ମୁଖ୍ୟମନ୍ତ୍ରୀ ଆସିଲେ । ସେ ଆସିଥିଲେ ଶ୍ରମଜୀବୀ ପରିବାରରୁ । ହାଇଦ୍ରାବାଦ ଏୟାରପୋର୍ଟରେ ଥରେ ଭାରତର ତତ୍କାଳୀନ କଂଗ୍ରେସ ପ୍ରଧାନମନ୍ତ୍ରୀ ନିଜ ହେଲିକାପ୍ଟରରେ ମୁଖ୍ୟମନ୍ତ୍ରୀଙ୍କୁ ନନେଇ ଚାଲିଗଲେ, ଅନ୍ୟମାନଙ୍କୁ ନେଇ । ଆନ୍ଧ୍ର ଜନତାର ସ୍ୱାଭିମାନରେ ଆଞ୍ଚ ଆସିଲା । ଏତିକି ବହପ ଏଇ ପ୍ରଧାନମନ୍ତ୍ରୀର ? ଜନ୍ମ ହେଲା ତେଲଗୁ ଦେଶମ ପାର୍ଟି । ଜନ୍ମ ହେବାର ମାତ୍ର ନଅ ମାସ ମଧରେ ସେମାନେ ସରକାର ଗଢ଼ିଲେ । କଂଗ୍ରେସର ପତ୍ତା ରହିଲା ନାହିଁ । ଏହି ସ୍ୱାଭିମାନର ପ୍ରତୀକ ହେଉଛନ୍ତି ରାମାରାଓ । ୧୯୫୪ ମସିହାରେ ଅବିଭକ୍ତ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଆପଣାର ଦୁଃସାହସବାଦୀ ନୀତି ଫଳରେ ଆନ୍ଧ୍ରରେ ଏକ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ାହେବାର ସମ୍ଭାବନା ଲୋପ ପାଇଲା । ତା'ପରେ ଆନ୍ଧ୍ରରେ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ହେବାର ସମ୍ଭାବନା ଥିଲା କ୍ଷୀଣ । ସେଇ ରାଜନୈତିକ ଦୃଶ୍ୟପଟରେ ସଂପୂର୍ଣ୍ଣ ପରିବର୍ତ୍ତନ ଆଣିଲେ ରାମାରାଓ ।

ରାମାରାଓ ମୁଖ୍ୟମନ୍ତ୍ରୀ ହେଲେ ଏବଂ ନ୍ୟାସନାଲ ଫ୍ରଣ୍ଟର ଚେୟାରମ୍ୟାନ୍ ହେଲେ । କ୍ଷମତାକୁ ଯିବା କଠିନ, ସେଠାରେ ରହିପାରିବା ତା'ଠାରୁ ବେଶି କଠିନ । ରାମାରାଓ ପରବର୍ତ୍ତୀ ନିର୍ବାଚନରେ ବିରୋଧୀ ଦଳର ନେତା ହେଲେ । ପୁଣି ଚକ ଓଲଟିଲା । ରାମାରାଓ କ୍ଷମତାକୁ ଫେରିଲେ । ମଝିରେ ନିଜେ ଏକ ସର୍ବଭାରତୀୟ ପାର୍ଟି ଗଢ଼ିବା ପାଇଁ ଉଦ୍ୟମ କରିଥିଲେ । ତାହା ସଫଳ ହେଲା ନାହିଁ ।

ଏଥରକ କିନ୍ତୁ ରାମାରାଓଙ୍କ ଗୃହ ଭିତରେ ଅନ୍ତର୍ଯୁଦ୍ଧ ଆରମ୍ଭ ହେଲା । ରାମାରାଓଙ୍କ ଗଣ ପ୍ରଭାବ ବିଶାଳ, କିନ୍ତୁ ଜାମାତା ଚନ୍ଦ୍ରବାବୁ ନାଇଡୁଙ୍କ ହାତରେ ସଂଗଠନ । ପୁତ୍ର ଏବଂ

ଜାମାତାମାନେ ଲକ୍ଷ୍ମୀପାର୍ବତୀଙ୍କ କ୍ରମଶଃ ବୃଦ୍ଧି ପାଉଥିବା ପ୍ରଭାବ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ରାମାରାଓଙ୍କ ହାତରେ ଅଖଣ୍ଡ ଦଳ ସମର୍ଥନ । ତେଣୁ ସେ ବିଧାନସଭାକୁ ଭାଙ୍ଗିଦେଇ ସାନି ନର୍ବାଚନ ପାଇଁ ପ୍ରସ୍ତାବ ଦେଲେ । ବିଧାନସଭାର ସଦସ୍ୟମାନେ କିନ୍ତୁ ଏତେ ଶୀଘ୍ର ନିଜର ଆସନ ହରାଇବା ପାଇଁ ପ୍ରସ୍ତୁତ ନଥିଲେ । ତେଲୁଗୁଦେଶମର ତାତ୍ତ୍ୱିକ ପଛଭୂମି ସେଦିନ କେବଳ ଥିଲା ତେଲୁଗୁ ସ୍ୱାଭିମାନ । ତାହା ତ ଚରିତାର୍ଥ ହୋଇ ସାରିଛି । ଆଉ ତା'ହେଲେ ଆସନ ଛାଡ଼ିବା କାହିଁକି ? ଅଧିକାଂଶ ସଭ୍ୟ ଯୋଗଦେଲେ ଚନ୍ଦ୍ରବାବୁ ନାଇଡୁଙ୍କ ସହିତ । ଚନ୍ଦ୍ରବାବୁ ନାଇଡୁ ମୁଖ୍ୟମନ୍ତ୍ରୀ ହେଲେ ସତ୍ୟ, ମାତ୍ର ଅଳ୍ପଦିନ ଭିତରେ ସେଥିରେ ବି ଫାଟ ଦେଖାଗଲା । କିଛି ସଭ୍ୟ ଫେରିଗଲେ ଏନ୍.ଟି.ଆର୍‌ଙ୍କ ପାଖକୁ । କିନ୍ତୁ ତାହା ଯଥେଷ୍ଟ ନଥିଲା । ତେଣୁ ତାହା ଚନ୍ଦ୍ରବାବୁ ନାଇଡୁଙ୍କ ସରକାରକୁ ଭାଙ୍ଗି ପାରିଲା ନାହିଁ । ଏଣେ ଚନ୍ଦ୍ରବାବୁ ବାମପନ୍ଥୀମାନଙ୍କ ସହିତ ସମଝୋତା କରିବାପାଇଁ ସକ୍ଷମ ହେଲେ । ତାଙ୍କର କଂଗ୍ରେସ ସହିତ ମଧୁଚନ୍ଦ୍ରିକା ଖୁବ୍ କ୍ଷଣସ୍ଥାୟୀ ହେଲା । ତେଲୁଗୁ ରାଜ୍ୟର ପ୍ରତିନିଧି ନରସିଂହ ରାଓ ଭାରତର ପ୍ରଧାନମନ୍ତ୍ରୀ । କିନ୍ତୁ ତାଙ୍କ ସହିତ ଚନ୍ଦ୍ରବାବୁଙ୍କର ସମଝୋତା ହୋଇ ପାରିଲା ନାହିଁ ।

ଅନ୍ୟ ଦିଗରେ ନେସନାଲ ଫ୍ରଣ୍ଟ ନେବ କେଉଁ ତେଲୁଗୁ ଦେଶମକୁ ? ଦୁଇ ଗୋଷ୍ଠୀକୁ ସ୍ୱତନ୍ତ୍ର ଭାବରେ ଜାତୀୟ ସାମ୍ମୁଖ୍ୟରେ ରଖିବା ପାଇଁ ଉଦ୍ୟମ ପରାହତ ହୋଇଛି । ରାମାରାଓ ଆପଣା ବିଶାଳ ଦଳ ସମର୍ଥନକୁ ପୁଂଜି କରି ''ପ୍ରଜାର ସିଂହ ଗର୍ଜନ'' ର ଆୟୋଜନ କରିଛନ୍ତି ।

ଠିକ୍ ଏଇ ସଂକଟ ସମୟରେ ତାଙ୍କର ପରଲୋକ । ଭବିତବ୍ୟରେ କ'ଣ ହେବ ତା' ଇତିହାସ କହିବ । ଦୁଇ ଗୋଷ୍ଠୀ ଏକାଠି ହେବେ ନା ଲକ୍ଷ୍ମୀପାର୍ବତୀ ରାମାରାଓ ଗୋଷ୍ଠୀର ନେତୃତ୍ୱ ନେବେ ? ଲକ୍ଷ୍ମୀପାର୍ବତୀ ବେଶ୍ ଶକ୍ତିଶାଳୀ ବକ୍ତା ଏବଂ ହରିକଥା ଗାୟକ । ତାଙ୍କ ସହିତ ନିଶ୍ଚିତ ଭାବରେ ଗୋଟିଏ ଗୋଷ୍ଠୀ ରହିବେ । ପାରିବାରିକ ବିଭାଜନ ଚୂଡାନ୍ତ ହୋଇଯିବ ନା ଜାମାତା ଓ ପୁତ୍ରମାନେ ଏକାଠି ହେବେ ?

ରାମାରାଓ ଆଉ ନାହାନ୍ତି । କିନ୍ତୁ ତେଲୁଗୁ ସ୍ୱାଭିମାନର ପ୍ରତୀକ ଭାବରେ ସେ ସ୍ମୃତ ହୋଇ ରହିବେ ଚିରକାଳ । ତାଙ୍କ ପରି ଜଣେ ବ୍ୟକ୍ତି ଆନ୍ଧ୍ରକୁ ପାଇବା ପାଇଁ ଲାଗିଯିବ ବହୁ ବର୍ଷ, ବହୁ ଯୁଗ ।

□□□

# ସେବିକାର ଶେଷଯାତ୍ରା

*(ଁ ପଦ୍ମାବତୀ ବକ୍ସିପାତ୍ର)*

ଖବରକାଗଜରୁ ହିଁ ଜାଣିଲି ଯେ ପଦ୍ମାବତୀ ବକ୍‌ସିପାତ୍ର ଆଉ ନାହାନ୍ତି । ଏବେ ତ ଯାଇଥିଲି ରାୟଗଡ଼ା । କିଛି ତ ରୋଗ ନଥିଲା । ହଠାତ୍ କ'ଣ ହେଲା ? ଜନ୍ମ ଓ ମୃତ୍ୟୁ ମଧ୍ୟରେ ସୀମାରେଖା ଅତ୍ୟନ୍ତ କ୍ଷୀଣ । ଏଇ ଥିଲେ, ଏଇ ନାହାନ୍ତି । କ'ଣ ହେଲା, କାହିଁକି ହେଲାର ଉତ୍ତର ପାଇନାହାନ୍ତି କେହି । ବସ୍ତୁବାଦୀ ଦର୍ଶନ ସେଇଯୋଗୁଁ କହେ ଯାହା ସତ୍ୟ, ଯାହା ବାସ୍ତବ ତାକୁ ସେଇପରି ଗ୍ରହଣ କର । କ'ଣ ମିଳିବ ଅଛିଣ୍ଡା ହେତୁକୁ ଖୋଜିଲେ ?

ପଦ୍ମାବତୀ ଜଣେ ଅଣ-ପାରମ୍ପରିକ ବ୍ୟକ୍ତି ଥିଲେ । ସେବିକା ଭାବରେ ଜୀବନ ଆରମ୍ଭ ହୋଇଥିଲା ଏବଂ ସେ ସେବା କରି କରି ହିଁ ମିଳାଇଗଲେ । ବସ୍ତୁବାଦୀ ଦର୍ଶନ ତାଙ୍କୁ ଆକୃଷ୍ଟ କରିଥିଲା । ଗଞ୍ଜାମ ଜିଲ୍ଲାର ଆସିକା ସହରରେ ଜନ୍ମ । କଟକ ବଡ଼ ଡାକ୍ତରଖାନାରେ ତିନିବର୍ଷ ସେବିକା । ସେତିକିବେଳେ ଆକାଶବାଣୀର କଳାକାର । ତା'ପରେ ରାୟଗଡ଼ା ।

ସେ ବର୍ଷ ଗୋପୀନାଥ ବକ୍‌ସିପାତ୍ରଙ୍କ ଘରେ ଝଡ଼ ଉଠିଥିଲା । ଗୋପୀନାଥ ବକ୍‌ସିପାତ୍ର ଧନୀ ଚାଷୀ, ଓଡିଆ ସ୍ୱାଭିମାନର ପ୍ରତୀକ । ସମ୍ଭ୍ରାନ୍ତ, ରକ୍ଷଣଶୀଳ ପରିବାର । କିନ୍ତୁ ପୁତ୍ର କନ୍ୟାମାନେ ସମସ୍ତେ କିଛି କିଛି ରାଜନୈତିକ ଝଲକରେ ଅନୁପ୍ରାଣିତ । ଝଲକ ଠିକ୍, କିନ୍ତୁ ପନ୍ଥା ଭିନ୍ନ । ଏହା ସତ୍ତ୍ୱେ ପାଟ୍ରିଆର୍କ ଗୋପୀନାଥ ବକ୍‌ସିପାତ୍ର, କେବଳ ପରିବାରର ନୁହନ୍ତି, ଓଡିଆ ସ୍ୱାଭିମାନର ଏବଂ ସମଗ୍ର ଅଞ୍ଚଳର । ତାଙ୍କରି ଅନ୍ୟତମ ପୁତ୍ର ବୃନ୍ଦାବନ ମାର୍କସବାଦୀ ଦର୍ଶନରେ ଦୀକ୍ଷିତ । ଗୋପୀନାଥ ବା ବଡ଼ପୁଅ କୃଷ୍ଣଚନ୍ଦ୍ର ସେଥି ପାଇଁ ବିବ୍ରତ ନୁହନ୍ତି । ତୁଙ୍ଗ ଶିଖରୀ ଚୂଳକୁ ସାମାନ୍ୟ ବତାସ ସ୍ପର୍ଶ କରି ନାହିଁ । ଦୁରନ୍ତ ଝଡ ତଥାପି ବାକି ଅଛି । କିନ୍ତୁ ବୃନ୍ଦାବନ ଓ ପଦ୍ମାବତୀ ନିଷ୍ପତ୍ତି କରିଛନ୍ତି ବିବାହ କରିବାକୁ, ଏହା ସେ ଗ୍ରହଣ କରି ପାରୁନାହାନ୍ତି, ଏଣେ ଉଦାର ହୃଦୟ କଠୋର ବା ନିଷ୍ଠୁର ହେବା ପାଇଁ ଦେଉ ନାହିଁ । ବୃନ୍ଦାବନ ଓ ପଦ୍ମାବତୀ ବିବାହ କଲେ । ତାଙ୍କର ରାଜନୈତିକ ଦଳ କମ୍ୟୁନିଷ୍ଟ ପାର୍ଟି ନିଷ୍ପତ୍ତି କଲା । କିନ୍ତୁ ବରଣମାଳା ପଡିବା ପୂର୍ବରୁ ବୃନ୍ଦାବନଙ୍କ ହାତରେ

ଶୃଙ୍ଖଳ ପଡିଥିଲା ଏବଂ ସେ କାରାରୁଦ୍ଧ ହେଲେ । ଦିନକ ପାଇଁ ତାଙ୍କୁ ଛୁଟି ମିଳିଲା କାରାଗାରରୁ ବିବାହର ବରଣମାଳା ପିନ୍ଧିବା ପାଇଁ । ସେଇଦିନ ହିଁ ସେ ଫେରି ଯାଇଥିଲେ କାରାଗାରକୁ । ମଧୁଚନ୍ଦ୍ରିକା ରହିଯାଇଥିଲା ସ୍ଥଗିତ ହୋଇ । ୨୯ ଏପ୍ରିଲ ୧୯୫୬ ମସିହାର କଥା ।

ପଦ୍ମାବତୀଙ୍କର ଚାକିରି କାଳ ୧୯୫୫ ରୁ ୧୯୮୫ । ଶୃଙ୍ଖଳିତ କାର୍ଯ୍ୟ, ଏକନିଷ୍ଠ ସେବା । ବିବାହ କରିଥିଲେ ଏକ ଦୁରନ୍ତ ଝଡକୁ । ଅମାନିଆଁ, ଅବୁଝା ମଣିଷ । କିନ୍ତୁ ପଦ୍ମାବତୀ ସ୍ଥିର ଚିତ୍ତ । ସେ ତେରଟି ଭାଷା ଜାଣିଥିଲେ । ସବୁ ଭାରତୀୟ ଭାଷା । ପାଠାଗାରଟିଏ କରିଥିଲେ । କାର୍ଯ୍ୟ ଛଡ଼ା ଗପ ପଢ଼ିବା, ସଙ୍ଗୀତ ଥିଲା ତାଙ୍କର ଅବସର କାଟିବାର ଆଧାର । ସ୍ୱାମୀ ଜେଲ ଯାଇଛନ୍ତି । ଅଜ୍ଞାତବାସରେ ରହିଛନ୍ତି । ମିଳିତ ପରିବାର ଛାଡି ସ୍ୱତନ୍ତ୍ର ରହୁଛନ୍ତି । ପଦ୍ମାବତୀ ଭାଙ୍ଗିପଡି ନାହାନ୍ତି । ଲୁହା ଇସ୍ପାତରେ ପରିଣତ ହୋଇଛି ଦହନ ଫଳରେ । ଅନେକ ପ୍ରତିକୂଳ ପରିସ୍ଥିତି ଆସିଛି । ଆନ୍ଦ୍ରରୁ ଆହତ, ଭଗ୍ନ ଯୋଦ୍ଧାମାନେ ଆସିଛନ୍ତି ଚିକିତ୍ସା ପାଇଁ, ଶୁଶ୍ରୂଷା ପାଇଁ । ମୁଣ୍ଡକୁ ବାଜି ରଖିଛନ୍ତି ସେମାନେ, ସଂଗ୍ରାମ ଭିତରେ । ପଦ୍ମାବତୀ କାମ କରି ଚାଲିଛନ୍ତି ନୀରବରେ, ଧାରାବାହିକ ଭାବରେ । କାମ ପାଇଁ ବାଜା ବାଜି ନାହିଁ, ଫୁଲତୋଡା ମିଳି ନାହିଁ । ଆପଣାର ସୁରଭିରେ ସେ ମହକିଛନ୍ତି ଚିରକାଳ ।

ଅସୁସ୍ଥ । ଯିବେ ଡାକ୍ତରଖାନାକୁ । ପ୍ରିମୋନିସନ । ମୁଁ ଆଉ ଫେରିବି ନାହିଁ । ଏଇ ମୋର ଶେଷ ଯାତ୍ରା । ଜନ୍ମିଲେ ମରଣ ସତ୍ୟ । ମୋ ପାଇଁ କୌଣସି କ୍ରିୟାକର୍ମ କରିବ ନାହିଁ । ଦଶାହ ନାହିଁ, କି ହୋମ ନାହିଁ । ଭସ୍ମୀଭୂତସ୍ୟ ଦେହସ୍ୟ, ପୁନରାଗମନ କୁତଃ । ଏ ଦେହ ମିଶିଯିବ ମାଟିରେ । ସେ ଆଉ ଫେରିବ ନାହିଁ । ପଦ୍ମାବତୀ ଚାଲିଗଲେ ସେଇ ବାଟରେ । ହସ୍ପିଟାଲକୁ ଯାତ୍ରା ମହାଯାତ୍ରାରେ ପରିଣତ ହୋଇଗଲା ।

ସେ ପାଲଟିଗଲେ ପରମ୍ପରା । ସ୍ୱାମୀ ପାଇଁ, ପୁତ୍ର ପାଇଁ, ପୁତ୍ରବଧୂ, ସହଯୋଦ୍ଧା, ପଦ୍ମାବତୀ ସମସ୍ତଙ୍କ ପାଇଁ ଅଶନି ସଙ୍କେତ ବା ଡିଷ୍ଟାଣ୍ଟ ଥଣ୍ଡର୍ ।

□□□

# ତ୍ୟାଗ ସେବା ଓ ସଂଗ୍ରାମର
# ଗିରିରାଜ ପାର୍ବତୀ

*(୰ ପାର୍ବତୀ ଗିରି)*

ତ୍ୟାଗ, ସେବା ଓ ସଂଗ୍ରାମର୍ ଗିରିରାଜ ପାର୍ବତୀ ଗିରିଙ୍କ ପରଲୋକ ହୋଇଯାଇଛି ବୀର ସୁରେନ୍ଦ୍ର ସାଏ ମେଡିକାଲ କଲେଜରେ ୧୭ ଅଗଷ୍ଟ, ୧୯୯୫ ମସିହାରେ । ତ୍ୟାଗ, ସେବା ଓ ସଂଗ୍ରାମର ଏକ ବିରାଟ ଅଧ୍ୟାୟ ଉପରେ ମହାକାଳ ଆପଣାର ଯବନିକା ଟାଣି ଦେଇଛି । ଗଲା ବେଶ୍ କେତେଦିନ ହେଲା ପାର୍ବତୀ ଗିରି ମାରାତ୍ମକ କ୍ୟାନସର ରୋଗରେ ପୀଡ଼ିତ ଥିଲେ । ଜୀବନର ଲମ୍ବା ଛାଇ ପଡ଼ିବାକୁ ଆରମ୍ଭ କଲାଣି । ଏ ସମ୍ପର୍କରେ ତାଙ୍କ ସମେତ ସମସ୍ତେ ସଚେତନ ଥିଲେ । କିନ୍ତୁ ବାଲ୍ୟ ଜୀବନରୁ ଯେ ମୃତ୍ୟୁକୁ ଭୟ କରିବାକୁ ଶିଖି୍ ନାହିଁ ସେ କ'ଣ ଆଜି ମୃତ୍ୟୁକୁ ଭୟ କରିବ ? ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଆପଣା କାର୍ଯ୍ୟରେ ରତ ଥିଲେ । ଯେଉଁ ଶିଶୁମାନଙ୍କର ସେ ମାଆ ପାଲଟିଥିଲେ ସେଇ ଶିଶୁମାନଙ୍କର କଲ୍ୟାଣ କାମନା ହିଁ ତାଙ୍କର ଏକମାତ୍ର କାର୍ଯ୍ୟ ଏବଂ ସ୍ୱପ୍ନ ଥିଲା । ମାତ୍ର କିଛି ଦିନ ତଳେ ସେଠାରେ କାର୍ଯ୍ୟ କରୁଥିବା ଅଙ୍ଗନବାଡ଼ି ସୁପରଭାଇଜର ହାତରେ ଖବର ପଠାଇଥିଲେ ଯିବା ପାଇଁ ପାଇକମାଲକୁ । କିନ୍ତୁ ସେ ଇଚ୍ଛା ପୂରଣ ହେବା ପୂର୍ବରୁ ସେ ଚାଲିଯାଇଛନ୍ତି ସେଇଠିକୁ ଯେଉଁଠୁ କେହି ଫେରି ନାହାନ୍ତି ।

ପାର୍ବତୀ ଗିରି ଚିର ଅବିବାହିତା ଥିଲେ । ପିଲାଦିନେ କୌଣସି ଏକ ଯୁବକ ସହିତ ତାଙ୍କର ବିବାହ ସ୍ଥିର ହୋଇଥିଲା । ସେ ପିଲାଟିର ମୃତ୍ୟୁ ହୋଇଗଲା ହଠାତ୍ । ଏକ ଦାରୁଣ ଧକ୍କା ଲାଗିଲା ପାର୍ବତୀଙ୍କୁ । ବିବାହ ତାଙ୍କ ପାଇଁ ନୁହେଁ କି ? ଏଇପରି ଏକ ଧାରଣା ହୁଏତ ତାଙ୍କର ହୋଇଥିଲା ଏବଂ ସେ ବିବାହ ନ କରିବା ପାଇଁ ସ୍ଥିର କରିଥିଲେ । ସେ ନିଷ୍ପତ୍ତି ଅପରିବର୍ତ୍ତନୀୟ, ଯେପରି ତାଙ୍କର ଜୀବନର ସବୁ ଧାରା ।

ବାପା ଧନଞ୍ଜୟ ଆସିଥିଲେ କାଶୀରୁ । ଶଙ୍କରାଚାର୍ଯ୍ୟ ସନ୍ନ୍ୟାସୀ ଗୋଷ୍ଠୀର ସେ ଥିଲେ ଅନୁଗତ । କାହିଁକି ଧନଞ୍ଜୟ କାଶୀରୁ ପାଇକମାଳ ଆସିଥିଲେ ସେ ସମ୍ପର୍କରେ

କୌଣସି ସମ୍ବାଦ ନାହିଁ । ୧୯୨୬ ମସିହା ଜାନୁଆରୀ ୧୯ ତାରିଖରେ ସମଲାଇପଦର ଗାଁରେ ପାର୍ବତୀଙ୍କର ଜନ୍ମ । ପାର୍ବତୀଙ୍କର ଦିହ ଓ ମନରେ ସେବା ଓ ତ୍ୟାଗ ବସା ବାନ୍ଧିଥିଲା ପିଲାଦିନରୁ । ତାଙ୍କର ଶିକ୍ଷା ପ୍ରାଥମିକ ସ୍କୁଲରେ ହିଁ ଶେଷ ହୋଇଥିଲା । ବହି ବସ୍ତାନି ବନ୍ଧା ହୋଇଥିଲା; କିନ୍ତୁ ଜୀବନର ବସ୍ତାନି ଖୋଲି ଯାଇଥିଲା । ୧୯୩୫ ମସିହାର କଥା । ବିପ୍ଳବିନୀ ମାଳତୀ ଚୌଧୁରୀ ଯାଇଥାନ୍ତି ବରଗଡ଼ । ଶିଶୁ ପାର୍ବତୀ ତାଙ୍କୁ କୁଣ୍ଢାଇ ଧରି ତାଙ୍କ ସାଙ୍ଗରେ ଯିବାକୁ ଜିଦ୍‌ଧରି ବସିଲେ । କୁଆଡେ ଯିବ ଏଇ ଛ' ବର୍ଷ ବୟସର ଶିଶୁ ? କ'ଣ କରିବ ସେ ? କିନ୍ତୁ ପିଲାଟିର ଜିଦ୍ । ମୁଁ ସାଙ୍ଗରେ ଯିବି । ଦେଶ ପାଇଁ କାମ କରିବି । ବଡ଼ ହେଲେ ଆମ ପାଖକୁ ଆସିବୁ କହି ମାଳତୀ ଦେବୀ ଚାଲି ଆସିଥିଲେ କିନ୍ତୁ ୧୯୩୮ ମସିହାରେ ମାତ୍ର ୧୨ ବର୍ଷ ବୟସରେ ପାର୍ବତୀ ଗିରି ପହଞ୍ଚିଲେ ବରୀ ଆଶ୍ରମରେ । ସେଇଠି ଦୁଇବର୍ଷ ତାଲିମ ପାଇସାରିବା ପରେ ୧୯୪୦ ମସିହାରେ ସେ ଫେରି ଆସିଲେ ସମଲେଇପଦରକୁ । ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭର ସମୟ ।

୧୯୪୨ ମସିହା । ସାରା ଦେଶରେ ଭାରତଛାଡ ଆନ୍ଦୋଳନ । ପାର୍ବତୀଙ୍କୁ ମାତ୍ର ଷୋହଳ ବର୍ଷ ବୟସ । ହଠାତ୍ କ୍ଷୁଦ୍ର ବରଗଡ ସହର ଛିଟିକି ଆସିଲା ସମ୍ବାଦପତ୍ରର ପ୍ରଥମ ପୃଷ୍ଠାକୁ । ଷୋହଳ ବର୍ଷ ବୟସର ଏକ କନ୍ୟା ବିଶାଳ ଶୋଭାଯାତ୍ରାର ନେତୃତ୍ୱ ନେଇ ଚାଲିଛନ୍ତି । ବରଗଡ ସହର । ଏସ୍.ଡି.ଓ. ଦପ୍ତରକୁ ଘେରାଉ କରି ନିଜ ଦଖଲକୁ ନେଇଗଲେ ଶୋଭାଯାତ୍ରାକାରୀମାନେ । ଏସ୍.ଡି.ଓ. ଚଉକୀରେ ବସି ସେଇ କନ୍ୟା ବିଚାର କଲା ପ୍ରବଳ ପ୍ରତାପୀ ଏସ୍.ଡି.ଓ. ଙ୍କର । କି ଆସ୍ପର୍ଦ୍ଧା ! ଆଗରେ ପୁଲିସ, ଗୁଳି, ବନ୍ଧୁକ । ତଥାପି ତା'ର ଭୟ ନାହିଁ । ଭୟ ଯେପରି ନିର୍ବାସିତା । ପାର୍ବତୀ ଗିରି ରହିଲେ ଦୁଇ ବର୍ଷ କାରାବାସରେ । କାରାବାସ ସରିଲା । ପାର୍ବତୀ ପୁଣି ଯୋଗଦେଲେ ବରୀ ଆଶ୍ରମରେ ।

୧୯୪୯ ମସିହା । ପାର୍ବତୀ ଗିରିଙ୍କ ଜୀବନରେ ଏକ ନୂଆ ମୋଡ଼ । ସେ ଆଲ୍ଲାହାବାଦର ପ୍ରୟାଗ ମହିଳା ବିଦ୍ୟାପୀଠରେ ଯୋଗଦେଲେ । ପାର୍ବତୀ ଦେବୀଙ୍କର ପରିସୀମା ବଦଳିଗଲା । ବହୁ ସର୍ବଭାରତୀୟ ନେତାଙ୍କ ସହିତ ତାଙ୍କର ପରିଚିତ ହେଲା । ସେଇ ପରିଚିତି ଯୋଗୁଁ ୧୯୫୨ ମସିହା ପ୍ରଥମ ସାଧାରଣ ନିର୍ବାଚନରେ ତାଙ୍କୁ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କ ପାଇଁ ପ୍ରଚାର କରିବାର ସୁଯୋଗ ମିଳେ । ସେ ଇନ୍ଦିରା ଗାନ୍ଧୀଙ୍କର ସହଯୋଦ୍ଧୃତ୍ୱ ଲାଭ କରନ୍ତି ଏବଂ ରାଜୀବ ସଞ୍ଜୟଙ୍କର ମାଉସୀ ହୋଇଯାଆନ୍ତି ।

୧୯୬୪ ମସିହା । ରାଉରକେଲାରେ ସାଂପ୍ରଦାୟିକ ଦୁର୍ଭିକ୍ଷ । ପେଟ ବିକଳରେ ମାଆ ବିକିଚି ଛୁଆକୁ । ଯୁବତୀ ପାଲଟିଛି ବାରବନିତା । ଦେହ ବିକିଚି ପେଟ ପାଇଁ । ଏକଦା ଗଭୀର ଅରଣ୍ୟାନୀର ଦେଶ ମରୁଭୂଇଁ ପାଲଟିଛି । ପାର୍ବତୀ ଗିରିଙ୍କ ପାଇଁ ଅସହ୍ୟ ।

ତାଙ୍କ ଦେହରେ ଯେପରି ବାରୁଦର ନିଆଁ ଲାଗିଛି । ସେ ହିଁ ପ୍ରଥମେ ଆଣିଲେ ଏଇ ଭୟାନକ କାହାଣୀର କଥା ବିଶ୍ୱ ଦରବାରକୁ । ପାର୍ବତୀ ବର୍ତ୍ତମାନ ଆନ୍ତର୍ଜାତିକ ।

ଦୁର୍ଭିକ୍ଷ ବହୁ ଶିଶୁଙ୍କୁ ଅନାଥ କରିଚି । କିଏ ମାଆ ଛାଡ଼ି ଚାଲିଯାଇଛି ଶିଶୁକୁ । ଏମାନେ ଯିବେ କୁଆଡେ ? କିଏ ହେବ ଏମାନଙ୍କର ମାଆ ? ପାର୍ବତୀ ଦେଇ କାନି ଭିଡି ବାହାରିଲେ । ସେ ହେଲେ ସେମାନଙ୍କର ମାଆ । ଗଢ଼ାହେଲା କସ୍ତୁରବା ବାଳ ନିକେତନ ପାଇକମାଳ ଗାଆଁରେ । ପରେ ଝୁମୁମୁରା ପାଖରେ ଫୁଲଝରଣ ଗାଁରେ ପ୍ରତିଷ୍ଠା ହେଲା ଆଉ ଏକ ବାଳ ନିକେତନ । ବଲାଙ୍ଗୀର ପଣ୍ଡନଚେବୋଠାରେ ଆଉରି ଗୋଟିଏ ବାଳ ନିକେତନ ଅର୍ଦ୍ଧସଂପୂର୍ଣ୍ଣ । ପାଇକମାଳରେ ଏକ ଡାକ୍ତରଖାନା ପ୍ରତିଷ୍ଠା ପାଇଁ ଉଦ୍ୟମ । କୋଠା ତିଆରି ସରିଛି । କାମ ସରି ନାହିଁ । କିନ୍ତୁ ନିର୍ମାତା ଆଉ ନାହାନ୍ତି ।

ଏହାହିଁ ତ ଜୀବନ । ସବୁ କାମ କ'ଣ କରି ସାରିପାରିବ ? ନା, କେତେକ ରହିଯିବ ଉତ୍ତର ପୀଢ଼ି ପାଇଁ । ପାର୍ବତୀ ଗିରି ସେଇ ବିରାଟ ଦାୟିତ୍ୱ ସମଗ୍ର ଦେଶ ଉପରେ ଲଦିଦେଇ ଚାଲିଯାଇଛନ୍ତି ।

ପ୍ରତିଷ୍ଠା ମିଳିଛି । ମିଳିଛି ଆୱାର୍ଡ । ହରେକୃଷ୍ଣ ମହତାବ ଚାହିଁଥିଲେ ପାର୍ବତୀ ଗିରି ବିଧାନସଭାର ସଭ୍ୟ ହୁଅନ୍ତୁ । ବିଜୁ ପଟ୍ଟନାୟକ ଯାଚିଥିଲେ ରାଜ୍ୟସଭା ପଦ । ପାର୍ବତୀ ଗିରି ସେସବୁ ପ୍ରସ୍ତାବକୁ ବିନୀତ ଭାବରେ ଫେରାଇ ଦେଇଛନ୍ତି, ଗ୍ରହଣ କରି ନାହାନ୍ତି । ସମାଜକୁ ବଦଳାଇ ଦେବା ପାଇଁ ଯେ କାନି ଭିଡିଛି, ଯିଏ ଜୀବନକୁ ବାଜି କରିଛି ସେ ପଦବୀର ଶୃଙ୍ଖଳ ଭିତରେ ରହିବ କିମିତି ? ସମାଜ ତ ବଦଳିବ ନାହିଁ । ତା'ହେଲେ ପଦବୀରୁ ମିଳିବ କ'ଣ ? ସମାଜକୁ ବଦଳାଇବା ପାଇଁ ପଣ କରିଥିବା ବ୍ୟକ୍ତିମାନେ ପଦବୀର ଶୃଙ୍ଖଳରେ ବର୍ତ୍ତମାନ ବନ୍ଦୀ । ସେମାନଙ୍କ ସଂଖ୍ୟା ବଢ଼ାଇବେ ପାର୍ବତୀ ଗିରି ? ସରୋଜିନୀ ନାଇଡୁଙ୍କର ମରଦେହକୁ କାନ୍ଧରେ ବୋହିନେଇ ଗଲାବେଳେ ପାର୍ବତୀ ଦେଖିଥିଲେ ଯେ ଦିନେ ସବୁ ଛାଡି ଚାଲିଯିବାକୁ ହେବ । ପଦ, ପଦବୀ ସବୁ ରହିଯିବ ପଛରେ । ପଦ, ପଦବୀ ସବୁ ଅସ୍ଥାୟୀ । ତା'ପଛରେ ଗୋଡାଇ ଲାଭ କ'ଣ ? ଯେଉଁମାନେ ସମାଜର ଭବିତବ୍ୟ, ଯେଉଁମାନଙ୍କ ଉପରେ ସମାଜକୁ ବଦଳାଇବାର ଭରସା କରାଯାଇପାରେ । ସେଇମାନଙ୍କର, ସେଇ ଶିଶୁମାନଙ୍କର ସେବାରେ ଦିନ କଟିଗଲେ ଭଲ ।

ଗୋଟିଏ କୋଠରୀ ବଢ଼ି ବଢ଼ି ନିକେତନରେ ପରିଣତ ହୋଇଛି । କ୍ଷୁଦ୍ର ମଞ୍ଜିଟିଏ ମହାଦ୍ରୁମରେ ପରିଣତ ହୋଇଛି । କୁଷ୍ଠ ରୋଗୀମାନଙ୍କର ଶିଶୁମାନଙ୍କ ପାଇଁ ବିଚଳିତ ହୋଇଛି ମନ । ମନେ ପଡିଚି ଡାକ୍ତର ଆଇଜାକ୍ ସାନ୍ତାଙ୍କ କଥା । ସେମାନଙ୍କ ପାଇଁ ଗଢ଼ା

ହୋଇଛି ବାଳ ନିକେତନ । ପାର୍ବତୀ ଗିରି କିନ୍ତୁ ରହିଯାଇଛନ୍ତି ସେଇପରି ବିନୀତ ଏବଂ ନିର୍ଭୀକ । ସେବା ଓ ତ୍ୟାଗର ଅଗ୍ନିରେ ଲୁହା ଇସ୍ପାତରେ ପରିଣତ ହୋଇଛି । ତାଙ୍କ ପାଇଁ ନାହିଁ କ୍ୟାଥଲିକ୍ ପ୍ରେସ୍‌ର ଆନ୍ତର୍ଜାତିକ ପ୍ରଚାର । ପାର୍ବତୀ ଗିରି ଅନନ୍ୟା । ସେ କାହାରି ସହିତ ତୁଳନୀୟ ନୁହନ୍ତି ।

ସମସ୍ତଙ୍କୁ ତ ଯିବାକୁ ହେବ । ପାର୍ବତୀ ଗିରି ମଧ୍ୟ ଯାଇଛନ୍ତି ସେଇ ଅଲଂଘନୀୟ ରାସ୍ତାରେ । ସେ ଆଉ ବ୍ୟକ୍ତି ନୁହନ୍ତି । ସେ ପାଲଟି ଯାଇଛନ୍ତି ଇତିହାସ । ତ୍ୟାଗ ଓ ସେବାରେ ଗର୍ବିତା ନାରୀ ଆଖି ବୁଜି ଦେଇଛି । ଚିତା ଜଳୁଛି । ଲେଖା ହେଉଛି ଇତିହାସ ।

❑❑❑

# ବିପ୍ଳବର ଗୈରିକ ପତାକା

*(ସ୍ୱ ପି.ସି.ଯୋଶୀ)*

ଢେଙ୍କାନାଳରେ ଚାଲିଥାଏ ଶଙ୍କର ପ୍ରତାପଙ୍କ ରାକ୍ଷୁଡା ଶାସନ । ଇତିହାସର ସେ କାହାଣୀ ଉପରେ ଅଧିକ ଚର୍ଚ୍ଚା ନିଷ୍ପ୍ରୟୋଜନ କାରଣ ଆଜି ସେ ରାଜା ନାହାନ୍ତି, ରାକ୍ଷୁଡା ଶାସନ ନାହିଁ ଏବଂ ତାକୁ ବଳ ଦେଉଥିବା ବ୍ରିଟିଶ ଶାସନ ମଧ ନାହିଁ । ଅତ୍ୟାଚାରର ରୂପ ଆଜି ବଦଳିଯାଇଛି । ଆଜିର ଯୁବକ ବିଶ୍ୱାସ କରିବ ନାହିଁ ସେ କାହାଣୀ । ନାଁ ଥିଲା 'ଅନ୍ଧାରି ଶାସନ' । ସତରେ ଅନ୍ଧାରି । କବି ଅନନ୍ତ ପଟ୍ଟନାୟକଙ୍କ ପାଟି ଚିରି ବିଷ୍ଠା ଖୁଆଇବା, ନାଚିବା ପାଇଁ ଆସିଥିବା ବାଈମାନଙ୍କ ଉପରେ ଶହ ଶହ ପୋଲିସ ଲଗାଇ ଧର୍ଷଣ କରିବା, ବିଷ୍ଠା ହାଣ୍ଡି ମୁଣ୍ଡରେ ବୋହି ରାସ୍ତାରେ ଚଲାଇବା, ଲଙ୍ଗଳା କରି ପୁରୁଷାଙ୍ଗକୁ ଦଉଡ଼ିରେ ବାନ୍ଧି ରାସ୍ତାରେ ଚଲାଇବା ଅତ୍ୟାଚାର ନୁହେଁ, ଏହା ଏକ ବିକୃତ ମସ୍ତିଷ୍କର ପରିଚାୟକ । କେତେ କାବ୍ୟ କବିତା ଲେଖା ନ ଯାଇଛି ଏଇ ଅତ୍ୟାଚାରର କାହାଣୀ ଉପରେ । 'ମୁକ୍ତାଗଡର କ୍ଷୁଧା' ଠାରୁ ଆରମ୍ଭ କରି 'ବାଜି ରାଉତ', 'ଅମର ଚିତା' ଠାରୁ ଆରମ୍ଭ କରି 'ଦଶହରା ଭେଟି' ପର୍ଯ୍ୟନ୍ତ ବହୁ ଉପନ୍ୟାସ, କାବ୍ୟ, କବିତା ଏଇ ଅନ୍ଧାରି ମୂଳକ ଓ ରାକ୍ଷୁଡ଼ା ଶାସନ ଉପରେ ଲେଖା । ଢେଙ୍କାନାଳରେ ଘେରି ରହିଛି ନିରନ୍ଧ୍ର ଅନ୍ଧକାର । ସୁର ପ୍ରତାପଙ୍କର ଶାସନ ଯାଇଛି । କଳା ସଂସ୍କୃତି ଶିକ୍ଷା ସଭ୍ୟତା ସବୁ ବର୍ତ୍ତମାନ ଅତ୍ୟାଚାରର ଯୂପକାଠରେ । ଢେଙ୍କାନାଳର ସୀମା ଟପି କୌଣସି ସମ୍ବାଦ ବାହାରକୁ ଯାଇପାରୁ ନାହିଁ । ଅତ୍ୟାଚାରର ନିବୁଜ କବାଟ ।

ଗାନ୍ଧିଜୀ ବ୍ୟଥିତ ହୋଇଛନ୍ତି । ତାଙ୍କର ଆଖିରେ ଲୁହ । କ'ଣ ସବୁ ଘଟିଯାଉଛି ଢେଙ୍କାନାଳରେ । କିଏ ଖବର ଆଣିପାରିବ ? ରାଜା ଶଙ୍କର ପ୍ରତାପଙ୍କ ପାଖରେ ତାର ଆସି ପହଞ୍ଚିଲା । ଏକ ବିଶିଷ୍ଟ ବୈଦେଶିକ ସମ୍ବାଦପତ୍ର ଆପଣାର ସ୍ୱତନ୍ତ୍ର ଭାରତୀୟ ପ୍ରତିନିଧିଙ୍କୁ ପଠାଇଛନ୍ତି ଢେଙ୍କାନାଳକୁ । ରାଜତନ୍ତ୍ରର ଅତ୍ୟାଚାର ବିରୁଦ୍ଧରେ ଅନେକ କାହାଣୀ ପ୍ରଚାରିତ ହେଉଛି ବାହାରେ । ସେଇ ସମ୍ବାଦପତ୍ରର ସ୍ୱତନ୍ତ୍ର ପ୍ରତିନିଧି ଯାଇଛନ୍ତି ସତ୍ୟାସତ୍ୟ ଅନୁସନ୍ଧାନ ପାଇଁ । ରାଜାଙ୍କ ପାଇଁ ଏହା ଅପୂର୍ବ ସୁଯୋଗ । ସେ କଳ୍ପନା

କରିଥିଲେ ଯେ ଏଇ ସମ୍ବାଦପତ୍ର ବୈଦେଶିକ ସମ୍ବାଦପତ୍ର । ତେଣୁ ଏହା ନିଶ୍ଚିତ ଭାବରେ ବ୍ରିଟିଶ ଶାସନର ପକ୍ଷପାତୀ ହୋଇଥିବ । ଏହାର ସ୍ୱତନ୍ତ୍ର ପ୍ରତିନିଧିମାନେ ବିଶ୍ୱସ୍ତ ପ୍ରତିନିଧି । ତାଙ୍କୁ ଧରିପାରିଲେ କାମ ଶେଷ । ସେ ନିଜ ସମ୍ବାଦପତ୍ରରେ ଏହା ଛାପିବେ ନିଶ୍ଚୟ । ଏହା ସହିତ ମହାମହିମ ବ୍ରିଟିଶ ସରକାରଙ୍କୁ ମଧ୍ୟ ଜଣାଇଦେବେ ।

ଯଥା ସମୟରେ ଟ୍ରେନ୍ ପହଞ୍ଚିଲା ଢେଙ୍କାନାଳରେ । ପ୍ରଥମ ଶ୍ରେଣୀରୁ ଅବତରଣ କଲେ ଜଣେ ବ୍ୟକ୍ତି, ବେଶ୍ ଥାଟ ବାଟରେ । ସନ୍ଦେହର ଅବକାଶ ନାହିଁ । ତାଙ୍କୁ ନେଇ 'ଅତିଥି ଭବନ'ରେ ରଖାଗଲା (ବର୍ତ୍ତମାନର ସର୍କିଟ ହାଉସ) । ରାଜା ଆସି ସାକ୍ଷାତ କଲେ । ନିଜର ଆଭିପ୍ରାୟ ଜଣାଇଲେ, ମାନ ମର୍ଯ୍ୟାଦା ସହିତ । ସ୍ୱତନ୍ତ୍ର ପ୍ରତିନିଧିଙ୍କୁ ନେଇ ସବୁ ସ୍ଥାନ ବୁଲାଇ ଦେଖାଗଲା । ମଢ଼ି ଜେଲ ପର୍ଯ୍ୟନ୍ତ । ସବୁ ରାଜନୈତିକ ବନ୍ଦୀଙ୍କ ସହ ଭେଟ କରାଇ ଦିଆଗଲା । ଯେଉଁ ସବୁ ସ୍ଥାନରେ, ଗ୍ରାମରେ ଅତ୍ୟାଚାର ହୋଇଛି ସେସବୁ ସ୍ଥାନ, ସେସବୁ ବ୍ୟକ୍ତିଙ୍କୁ ମଧ୍ୟ ଭେଟାଇ ଦିଆଗଲା । ଯଥା ସମୟରେ ରିପୋର୍ଟର ଏକ କପି ରାଜାଙ୍କୁ ମଧ୍ୟ ଦେଖାଇ ଦିଆହେଲା । ରାଜା ଭାରି ଖୁସ୍ । ବେଶ୍ କିଛି ମୋଟା ଅର୍ଥ ରାଜା ଯାଚିଲେ ଉପହାର ସ୍ୱରୂପ । ସ୍ୱତନ୍ତ୍ର ପ୍ରତିନିଧି ମନା କଲେ । ବିଦାୟ ନେଇ ଆସି କଟକରୁ ରାଜାଙ୍କୁ ଟେଲିଗ୍ରାମ କରି ଜଣାଇଦେଲେ ସେ । ଧନ୍ୟବାଦ - ପି.ସି. ଯୋଶୀ । ରାଜାଙ୍କୁ ଚମକ ଲାଗିଲା । ଖୋଜ ଖୋଜ କଟକରେ । ଧରିଆଣ ବା ମାରିଦିଅ । କିନ୍ତୁ ପି.ସି. ଯୋଶୀ କାହାନ୍ତି ? ସେ ଯାଇ ଗାନ୍ଧିଜୀଙ୍କ ପାଖରେ । ଯଥା ସମୟରେ ଏଇ ରିପୋର୍ଟ ଭାରତବର୍ଷ ଏବଂ ଭାରତ ବାହାରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇ ଚମକ ସୃଷ୍ଟି ହେଲା । ସବୁ କାହାଣୀ 'ଅନ୍ଧାରି ମୂଲକ'ରୁ ଯାଇ ପଦାରେ ପଡ଼ିଗଲା । ଗାନ୍ଧିଜୀ ବଡ଼ଲାଟ ଏବଂ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କୁ ବିବରଣୀ ଦେଲେ ଏବଂ ହସ୍ତକ୍ଷେପ କରିବା ପାଇଁ ନିବେଦନ କଲେ ।

ପି.ସି.ଯୋଶୀ ତ ଆଗରୁ ଭାରତ ବିଖ୍ୟାତ ହୋଇସାରିଥିଲେ । ବର୍ତ୍ତମାନ ତାଙ୍କ ନାଁରେ ଉଦ୍‌ବେଳନ ଖେଳିଗଲା ।

ପି.ସି. ଯୋଶୀ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ । ଛାତ୍ର ଜୀବନରୁ ପି.ସି. ଯୋଶୀଙ୍କୁ ସ୍ୱାଧୀନତା ଆନ୍ଦୋଳନର ଡାକରା ଶୁଭିଥିଲା । କୌଣସି ମତେ ବି.ଏ.ପାଶ୍ କଲା ପରେ, ଜୀବନର ରାଜପଥରେ ସେ ପଢ଼ିବା ପାଇଁ ସ୍ଥିର କଲେ । ସମାଜବାଦୀ ଚିନ୍ତାଧାରା ପିଲାଦିନୁ ତାଙ୍କୁ ଅନୁପ୍ରାଣିତ କରିଥିଲା । ମୋ ଜାଣିବା ଭିତରେ ଏଭଳି ଖୁବ୍ କ୍ୱଚିତ୍ ନେତା ଭାରତବର୍ଷରେ ଅଛନ୍ତି ଯେଉଁମାନେ ଆପଣାର ପ୍ରଭାବ ଜୀବନର ବହୁ ବିଭାବକୁ ସଂପ୍ରସାରିତ କରିପାରିଛନ୍ତି । ମହାତ୍ମା ଗାନ୍ଧୀ ଏଇଭଳି ଜଣେ ମଣିଷ ଥିଲେ ।

ପି.ସି.ଯୋଶୀ ମଧ୍ୟ ସେଇଭଳି ଏକ ମଣିଷ । ଓଡିଶୀ ନୃତ୍ୟ, ଓଡିଶା ଶାଢ଼ୀ ସମ୍ପର୍କରେ ସେ ଯେପରି ଦକ୍ଷତାର ସହିତ କହିପାରିବେ ଠିକ୍ ସେଇପରି କହିପାରିବେ ସ୍ଥାପତ୍ୟ କଳା ସମ୍ପର୍କରେ । ତାଙ୍କର ପ୍ରଭାବରେ ଆସିଥିବା ବ୍ୟକ୍ତିମାନଙ୍କର ତାଲିକା ଦେଖିଲେ ବିସ୍ମିତ ହେବାକୁ ପଡେ । ଜେ.ଆର୍. ଡି. ଟାଟା ଆପଣାର ସ୍ମୃତିଚାରଣରେ ଏଇ ଶ୍ରମଜୀବୀ ମଣିଷର ପ୍ରତିନିଧିଙ୍କ ସହ ତାଙ୍କର ସାକ୍ଷାତ ଆଲୋଚନା କଥା ଉଲ୍ଲେଖ କରିଛନ୍ତି । ଠିକ୍ ସେଇପରି ପ୍ରସିଦ୍ଧ ଲେଖକ କେ.ଏ ଆବ୍‌ବାସ୍, ମୂଲକରାଜ ଆନନ୍ଦ, ପ୍ରେମଚାନ୍ଦ ମଧ୍ୟ ତାଙ୍କରି ବିଷୟ ଉଲ୍ଲେଖ କରିଛନ୍ତି । ନାଟ୍ୟକାର ଉଦୟ ଶଙ୍କର, ଶିଳ୍ପୀ ରବି ଶଙ୍କର, ଚଳଚ୍ଚିତ୍ର ଅଭିନେତ୍ରୀ ଦୁର୍ଗା ଖୋଟେ, ସଂଗୀତଜ୍ଞ ହେମନ୍ତ କୁମାର, ଅଭିନେତା ଉତ୍ପଳ ଦତ୍ତ, ଗୀତିକାର ସାହିର୍ ଲୁଧିଆନ୍‌ଭି, ଲେଖକ ଫିରାକ ଗୋରଖପୁରୀ, କାଇଫି ଆଜମି, ସଙ୍ଗୀତ ନିର୍ଦ୍ଦେଶକ ଏସ୍.ଡି. ବର୍ମନ୍, ଫଟୋଗ୍ରାଫର ରଘୁ ରାୟ, ଅଭିନେତା ଦେବ ଆନନ୍ଦ, ନିର୍ଦ୍ଦେଶକ ବିମଲ ରାୟ, ଚେତନ ଆନନ୍ଦ, ଏ ତାଲିକା ସରିବ ନାହିଁ । ଏଇଭଳି ଅସଂଖ୍ୟ ମଣିଷ ତାଙ୍କର ସ୍ମୃତି ଚିତ୍ରରେ ପି.ସି ଯୋଶୀଙ୍କର ପ୍ରଭାବ ବିଷୟରେ ଉଲ୍ଲେଖ କରିଛନ୍ତି ଏବଂ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ନିଜ ପାର୍ଟିର ଦୃଷ୍ଟିକୋଣରୁ ନୁହେଁ, ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ କ'ଣ ପଦକ୍ଷେପ ନିଆଯିବା ଉଚିତ, କି ପ୍ରକାର ସଂଗଠନ ଗଢ଼ାଯିବା ଉଚିତ ସେ ସମ୍ପର୍କରେ ପି.ସି. ଯୋଶୀଙ୍କର ଅପୂର୍ବ ସାଂଗଠନିକ ଏବଂ ବୌଦ୍ଧିକ ଶକ୍ତି ସମ୍ପର୍କରେ ଆପଣାର ପ୍ରଶଂସା ଏବଂ ମୂଲ୍ୟାୟନ କରିଛନ୍ତି । ଯୋଶୀଙ୍କର ସାଂଗଠନିକ ଶକ୍ତି ଅଦ୍‌ଭୁତ । ଏକ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ସେ ପିପୁଲ୍‌ସ ରିଲିଫ କମିଟି, ଭାରତୀୟ ଗଣନାଟ୍ୟ ସଂଘ, ପ୍ରଗତିଶୀଳ ଲେଖକ ସଂଘ, ମହିଳା ଆତ୍ମରକ୍ଷା ସମିତି ପ୍ରଭୃତି ଗଣ ଅନୁଷ୍ଠାନ ଗଢ଼ି ତୋଳିଥିଲେ ଏବଂ ଆପଣାର ମତବାଦର ବାହାରେ ଥିବା ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ଏହା ସହିତ ସଂଲଗ୍ନ ଏବଂ ସକ୍ରିୟ କରିପାରିଥିଲେ । ଭାରତୀୟ ଛାତ୍ର ସଂଘ, ଗଣତାନ୍ତ୍ରିକ ଯୁବ ସଂଘ, ନିଖିଳ ଭାରତ ଟ୍ରେଡ୍ ୟୁନିୟନ କଂଗ୍ରେସ, ନିଖିଳ ଭାରତ କିଷାନ ସଭା, ନିଖିଳ ଭାରତ ଯୁବ ସଂଘ ପ୍ରଭୃତି ଅନୁଷ୍ଠାନମାନଙ୍କୁ ଶକ୍ତିଶାଳୀ ଗଣ ସଂଗଠନ ଭାବରେ ଗଢ଼ି ତୋଳିବାରେ ତାଙ୍କର ଦାନ ଥିଲା ବିପୁଳ । ଏବଂ ସବୁଠାରୁ ଉଲ୍ଲେଖଯୋଗ୍ୟ ହେଉଛି ଯେ କୌଣସିଥିରେ ସେ ଆପଣାର ବା ଆପଣା ପାର୍ଟିର ମତାମତକୁ ଚାପିଦେବା ପାଇଁ ଉଦ୍ୟମ କରୁନଥିଲେ । ଆଲୋଚନା ମାଧ୍ୟମରେ ଏକ କନ୍‌ସେନ୍‌ସସରେ ପହଞ୍ଚିବା ପାଇଁ ତାଙ୍କର ଉଦ୍ୟମ ଥିଲା କ୍ରମାଗତ ଏବଂ ଧାରାବାହିକ । ସେଇଯୋଗୁଁ ଆପଣା ପାର୍ଟି ଛଡା ଅନ୍ୟ ଦଳମାନଙ୍କର ନେତା ବା କର୍ମୀମାନଙ୍କ ସହିତ ତାଙ୍କର ବନ୍ଧୁତା ଥିଲା ପ୍ରଗାଢ଼ ।

କର୍ମୀ, ସହକର୍ମୀ, ନେତାମାନଙ୍କ ସହିତ ତାଙ୍କର ସମ୍ପର୍କ ଥିଲା ଐକାନ୍ତିକ । ଖାଲି ତତ୍ତ୍ୱ ବା ଭାଷଣରେ ସେ ତାକୁ ଛନ୍ଦି ଦେଉନଥିଲେ । ଦେଖାହେଲେ ପ୍ରଥମେ ଆରମ୍ଭ

କରିବେ ବ୍ୟକ୍ତିଗତ କଥା, ସ୍ୱାସ୍ଥ୍ୟ, ପରିବାର ପ୍ରଭୃତି । ତାପରେ ଏସବୁ ସରିଲା ପରେ ସେ ଆରମ୍ଭ କରିବେ ରାଜନୀତି କଥା । କୌଣସି ସାମାଜିକ, ସାଂସ୍କୃତିକ ଉତ୍ସବକୁ ନେଇ ସେଠାରେ ସେ ରାଜନୀତି କଥା ଆଦୌ ପକାନ୍ତି ନାହିଁ । ପକାଇଲେ ବିରକ୍ତ ହୁଅନ୍ତି । ସେ ସବୁ କାଲି ବିଚାର କଲେ ହେବ ନାହିଁ ? ଆଜି ଏଇ କଥାମାନଙ୍କରେ ସୀମିତ ରହୁ । ଏଇ ଥିଲା ତାଙ୍କର ଯୁକ୍ତି, ଯାହା ଆଗରେ ସମସ୍ତେ ନିରସ୍ତ୍ର ।

ଚିଠି ଲେଖିଲେ ସବୁବେଳେ ଲେଖିବେ ପ୍ରିୟ ଅମୁକ । ନାଁ ଥିବ ନିଶ୍ଚୟ । ନାଁରେ ଡାକିବେ । ଖାଲି 'କମ୍ରେଡ' ବୋଲି ଲେଖିବେ ନାହିଁ କି ଡାକିବେ ନାହିଁ । ସାଥୀମାନଙ୍କର ବ୍ୟକ୍ତିଗତ ସମସ୍ୟା, ଖାଇବା, ପିଇବା, ବିବାହ କରିବା, ଔଷଧ ଖାଇବା ପର୍ଯ୍ୟନ୍ତ ଟିକିନିଖି କଥା ବୁଝିବେ । ତାଙ୍କର ସାଙ୍ଗଠନିକ ଶକ୍ତି ଥିଲା ଅଦ୍ଭୁତ । ଅନ୍ୟ ରାଜନୈତିକ ଦଳର ନେତାମାନଙ୍କ ସହିତ ତାଙ୍କର ସମ୍ପର୍କ ଥିଲା ବ୍ୟକ୍ତିଗତ ଦୃଷ୍ଟିରୁ ନିବିଡ଼ । ବୟସରେ ବଡ଼ମାନଙ୍କୁ ସେ ସମ୍ମାନ ଦେଉଥିଲେ, ସେ ଯେଉଁ ଦଳର ହୁଅନ୍ତୁନା କାହିଁକି ।

ତତ୍ତ୍ୱକୁ ଲଦି ଦେବା ତାଙ୍କର ରୁଚିବିରୁଦ୍ଧ ଥିଲା । ଲେଟ୍ ଦି ଫାକ୍ଟସ୍ ସ୍ପିକ୍ ଫାଷ୍ଟ । ପ୍ରଥମେ ଘଟଣାବଳୀର ଅବତାରଣା କର । ଘଟଣାକୁ କହିବାକୁ ଦିଅ ତା'ର କଥା । ତାକୁ ତତ୍ତ୍ୱର ଘୋଡଣୀରେ ଘୋଡାଇ ଦିଅ ନାହିଁ । ପି.ସି. ଯୋଶୀ ଖୁବ୍ ଭଲ ବକ୍ତା ନଥିଲେ କିନ୍ତୁ ଆଲୋଚନାରେ ଥିଲେ ଅଦ୍ଭୁତ କୁଶଳୀ ।

ଗୁଳିବିଦ୍ଧ ହୋଇ ଢେଙ୍କାନାଳ ଆନ୍ଦୋଳନର ମହାରଥୀ ବୀର ବୈଷ୍ଣବ ପଟ୍ଟନାୟକ ଯାଇ ପହଞ୍ଚନ୍ତି ପି.ସି. ଯୋଶୀଙ୍କ ପାଖରେ କ୍ଷୁଧିତ ଅବସ୍ଥାରେ ଏବଂ ତୁରନ୍ତ ଆଲୋଚନା କରିବାକୁ ଚାହାନ୍ତି ରାଜନୈତିକ ପରିସ୍ଥିତି ଭିତରେ ତାଙ୍କର ଭୂମିକା ସମ୍ପର୍କରେ । ପି.ସି. ଯୋଶୀ କିନ୍ତୁ ନାରାଜ । ଆଗ ଖାଇ ସାର । କ୍ଷତର ବ୍ୟାଣ୍ଡେଜ୍ କରାଯାଉ । ବିଶ୍ରାମ ନେଇ ସାର । ରାଜନୀତି କ'ଣ କୁଆଡ଼େ ପଳଉଛି । କାଲି ଆଲୋଚନା କରିବା । ପି.ସି. ଯୋଶୀ ତାଙ୍କ ଯୁକ୍ତିରେ ଅଟଳ ।

ପ୍ରସିଦ୍ଧ କଂଗ୍ରେସ ନେତା ଜମିଦାର ଡକ୍ଟର ପି. ସୋବରାୟନଙ୍କ କନ୍ୟା ପାର୍ବତୀ ବାପାଙ୍କ ଇଚ୍ଛା ବିରୁଦ୍ଧରେ ବିବାହ କରନ୍ତି ଏନ୍.କେ.କ୍ରିଷ୍ଣନଙ୍କୁ । ଭାଇ ମୋହନ କୁମାର ମଙ୍ଗଳମ୍ ଏଇ ବିବାହକୁ ସମର୍ଥନ କରୁଥିଲେ । ମୋହନ କୁମାର ମଙ୍ଗଳମ୍, ପାର୍ବତୀ ମଙ୍ଗଳମ୍ ଏବଂ ଏନ୍. କେ. କ୍ରିଷ୍ଣନ୍ ତିନିହେଁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ । ବାପା ସୋବରାୟନ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ । ସେଥରକ ବମ୍ବେରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକ ବସିଥାଏ । କିନ୍ତୁ ସୋବରାୟନ ଯାଇ ନଥାନ୍ତି କମ୍ୟୁନିଷ୍ଟ ପାର୍ଟି ଅଫିସକୁ । ସେତେବେଳେ କଂଗ୍ରେସ ନେତାମାନେ କମ୍ୟୁନିଷ୍ଟ ପାର୍ଟି ଅଫିସକୁ ଯାଉଥିଲେ ଏବଂ

କମ୍ୟୁନିଷ୍ଟ ନେତାମାନେ କଂଗ୍ରେସ ଅଫିସକୁ ଯାଉଥିଲେ । ସେ ପରମ୍ପରା ଭାଙ୍ଗିଗଲା ସ୍ୱାଧୀନତା ପରେ । ପି.ସି.ଯୋଶୀ ଜାଣନ୍ତି ଯେ ସୋବରାୟନ କାହିଁକି ଯାଇ ନାହାନ୍ତି କମ୍ୟୁନିଷ୍ଟ ପାର୍ଟି ଅଫିସକୁ କାରଣ ସେଇଠି ପାର୍ବତୀ ଏବଂ କ୍ରିଷ୍ଣନ ମଧ୍ୟ ଅଛନ୍ତି । କ୍ରିଷ୍ଣନଙ୍କୁ ନେଇ ଯୋଶୀ ପହଞ୍ଚିଲେ ସୋବରାୟନ ରହୁଥିବା ସ୍ଥାନରେ । ବାରଣ୍ଡାରେ କ୍ରିଷ୍ଣନଙ୍କୁ ବସାଇ ଯୋଶୀ ପଶିଲେ ସୋବରାୟନଙ୍କ କୋଠରୀରେ । ଆପଣ କ'ଣ ଏଥର କମ୍ୟୁନିଷ୍ଟ ପାର୍ଟି ଅଫିସକୁ ଯାଇ ନାହାନ୍ତି । କ'ଣ ହେଲା ଆପଣଙ୍କର ? କ'ଣ ପାର୍ବତୀ ଓ କ୍ରିଷ୍ଣନର ବିବାହ ଯୋଗୁଁ ରାଗିଛନ୍ତି କି ଆପଣ ଆମ ଉପରେ ? ଆଚ୍ଛା, ମୁଁ କ୍ରିଷ୍ଣନକୁ ଆଣିଛି । ଆପଣ ତାକୁ ଯେତେ ଇଚ୍ଛା ପିଟି ଆପଣଙ୍କର ରାଗକୁ ଶାନ୍ତ କରିଦିଅନ୍ତୁ । କ୍ରିଷ୍ଣନ ବାରଣ୍ଡାରେ ବସିଛି । ସୋବରାୟନ ଆସିଲେ ଏବଂ କ୍ରିଷ୍ଣନକୁ କୁଣ୍ଢାଇ ନେଇଗଲେ ଘର ଭିତରକୁ । ସବୁ ବାଧାବିଘ୍ନ ତୁଟିଗଲା ଏଇ ପର୍ସନାଲ ଟଚ୍‌ରେ ।

୧୯୪୮ ମସିହା ଫେବୃଆରୀ ମାସରେ କଲିକତାରେ କମ୍ୟୁନିଷ୍ଟ ପାର୍ଟିର ଦ୍ୱିତୀୟ କଂଗ୍ରେସ ବସିଲା । ପି.ସି. ଯୋଶୀଙ୍କ ଉପରେ ଅଭିଯୋଗ ହେଲା ଯେ ପାର୍ଟିକୁ ସଂସ୍କାରବାଦ ଭିତରକୁ ଠେଲି ଦେଇଛନ୍ତି । ତାଙ୍କର ନେତୃତ୍ୱ ସଂସ୍କାରବାଦୀ ନେତୃତ୍ୱ । ଶ୍ରେଣୀଶତ୍ରୁ ବିରୁଦ୍ଧରେ ସମସ୍ତ ସଂଗ୍ରାମ କରିବା ପରିବର୍ତ୍ତରେ ଯୋଶୀ ପାର୍ଟିକୁ ନେସନାଲ କନ୍‌ସେନସସ୍ ଭିତରକୁ ଠେଲି ନେଇ ଶ୍ରେଣୀଶତ୍ରୁ ପ୍ରତି ଉଦାରତା ଦେଖାଉଛନ୍ତି । ସେ ନେତୃତ୍ୱରୁ ଗଲେ । ୧୯୪୮ ରୁ ୧୯୫୧ । ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଶସ୍ତ୍ର ସଂଗ୍ରାମର ନୀତି ଆରମ୍ଭ ହେଲା । 'ଏ ଆଜାଦୀ ଝୁଟା ହୈ' ର ସ୍ଲୋଗାନ ଶୁଭିଲା । ବହୁ ସାଥୀଙ୍କର ବଳିଦାନ ଏବଂ ପାର୍ଟିର ଅବକ୍ଷୟ ପରେ ଆରମ୍ଭ ହେଲା 'ଗରିଲା ଯୁଦ୍ଧ'ର ନୀତି । ଏ ଦୁଇ ନୀତି ଗ୍ରହଣ କରି କମ୍ୟୁନିଷ୍ଟ ପାର୍ଟିର ଯେଉଁ ବିପର୍ଯ୍ୟୟ ହେଲା, ତା'ଫଳରେ କମ୍ୟୁନିଷ୍ଟ ପାର୍ଟି ଫେରିଲା ଅଜୟ ଘୋଷଙ୍କ ନେତୃତ୍ୱରେ ଚଳିତ ନୀତିକୁ । ପି.ସି. ଯୋଶୀଙ୍କ ନୀତିକୁ କମ୍ୟୁନିଷ୍ଟ ପାର୍ଟି ବହୁ ଭାବରେ ଗ୍ରହଣ କଲେ ମଧ୍ୟ ପି.ସି.ଯୋଶୀ ଆଉ ନେତୃତ୍ୱକୁ ଫେରି ପାରିଲେ ନାହିଁ, ପାର୍ଟି ଭିତରର ଅନ୍ତର୍ନିହିତ ଦ୍ୱନ୍ଦ୍ୱ ଯୋଗୁଁ । ସେ ଧୀରେ ଧୀରେ ନିଷ୍କ୍ରାନ୍ତ ହୋଇଗଲେ ଗବେଷଣା ଭିତରକୁ ।

ତା'ରି ଭିତରେ ସେ ଆସନ୍ତି ଓଡ଼ିଶା । ଦେଖା ହୁଏ । ସାଙ୍ଗରେ ଯାଏ ନବବାବୁଙ୍କୁ ଦେଖା କରିବାକୁ ଅନୁଗୋଳ । ଦେଖାହେଲା କ୍ଷଣି ପି.ସି.ଯୋଶୀ ନବବାବୁଙ୍କୁ ତାଙ୍କ ବୟସ କେତେ ହେଲା ପଚାରନ୍ତି । କାରଣ ପଚାରିଲାରୁ କହନ୍ତି ନବବାବୁ ଯଦି ବୟସରେ ବଡ଼ ତା'ହେଲେ ମାଳତୀ ଦେବୀଙ୍କ ଉପରେ ତାଙ୍କର ଏକ ସ୍ୱତନ୍ତ୍ର ଅଧିକାର ରହିବ । ନବବାବୁ ବୟସରେ ମାତ୍ର ଛ'ମାସ ବଡ଼ । ଆଉ ମାଳତୀ ଦେବୀ ଯାଆନ୍ତି କୁଆଡେ ? ଏଇ ହେଉଛନ୍ତି ପି.ସି.ଯୋଶୀ ।

ସେତେବେଳେ କଟକରେ ଟାକ୍ସି ନଥାଏ । ଯୋଶୀଙ୍କ ପାଇଁ ଗାଡ଼ି ଦରକାର । ମୁଁ ଯାଇ ବୀରେନ ମିତ୍ରଙ୍କ ପାଖରେ ପହଞ୍ଚିଲି । ସେ ପି.ସି.ଯୋଶୀ ଆସିଛନ୍ତି ଜାଣି ତାଙ୍କୁ ଦେଖା କରିବାକୁ ଚାହିଁଲେ । ଏବଂ ସାଙ୍ଗେ ସାଙ୍ଗେ ଓଡିଶା ଟେକ୍ସଟାଇଲ ମିଲ୍ସରୁ ଏକ ଗାଡି ମଗାଇଲେ । ମଗାଇଲାବେଳେ ସେ ପି.ସି.ଯୋଶୀଙ୍କ ସମ୍ପର୍କରେ ଯେପରି ବୟାନ ଦେଲେ ନ ଶୁଣିବା ଲୋକ ବିଶ୍ୱାସ ଯିବ ନାହିଁ । ଏକଦା ବୀରେନ ମିତ୍ର କମ୍ୟୁନିଷ୍ଟ ପାର୍ଟିର ସମ୍ପର୍କରେ ଆସିଥିଲେ ଏବଂ ନିଖିଳ ଉତ୍କଳ ଛାତ୍ର ସଂଘର ସମ୍ପାଦକ ଥିଲେ । ତା'ପରେ ବହୁ ସମୟ ଅତିକ୍ରାନ୍ତ ହୋଇଛି । ବୀରେନ ମିତ୍ର ବର୍ତ୍ତମାନ କଂଗ୍ରେସର ନେତା । କିନ୍ତୁ ପି.ସି.ଯୋଶୀଙ୍କର ପ୍ରଭାବ ତାଙ୍କ ଉପରେ ଅତୁଟ ରହିଛି ।

ପି.ସି.ଯୋଶୀଙ୍କର ଜର୍ମାନ ତନୟା ଜର୍ମାନ କମ୍ୟୁନିଷ୍ଟ ପାର୍ଟିର ଏକ ଉଦିତ ତାରକା କୁମାରୀ ହେଲଗା ମେୟର କିଛି ବହି ପଠାନ୍ତି ମୋ ହାତରେ ଯୋଶୀଙ୍କର ଗବେଷଣା ପାଇଁ । ସେ ବହି ପି.ସି.ଯୋଶୀଙ୍କୁ ପାରମ୍ପରିକ ଅଫିସ ଜରିଆରେ ଦେବା ସମ୍ଭବ ହୁଏନା । ମୋତେ ଏକ ବ୍ୟକ୍ତିଙ୍କୁ ଖୋଜିବାକୁ ପଡେ ସେ ବହିଗୁଡିକୁ ଦେବା ପାଇଁ । ସେ ଆପଣାର କମ୍ୟୁନିଷ୍ଟ ପାର୍ଟି ଭିତରେ ମଧ୍ୟ ଆଉ ଖାପ ଖୁଆଇ ପାରୁନାହାନ୍ତି ମନେହେଲା ।

ଶେଷ ଦେଖା ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ । ହଠାତ୍ ଦେଖା । କିନ୍ତୁ ପି.ସି.ଯୋଶୀଙ୍କର ସୁଭାଷ ଚନ୍ଦ୍ର ବୋଷଙ୍କ ପରି ଗୋଟାଏ ଗୁଣ ଥିଲା, ସହଜରେ ନାଁ ପାଶୋରନ୍ତି ନାହିଁ, ପରିଚିତି ମଧ୍ୟ ହଜି ଯାଏନା । ଡାକ ପକାଇଲେ ମୋତେ ନାଁ ଧରି ପଚ୍ଛରୁ । ସାଙ୍ଗରେ ମୋର ଏକ ଭଉଣୀ । ସ୍ୱାମୀ ପାଇଲଣି ନା ପାଇବାର ଉପକଣ୍ଠରେ ପି.ସି.ଯୋଶୀ ହସି ହସି ପଚାରନ୍ତି । ଲୌକିକତା କଟିଯାଇ ଆତ୍ମୀୟତା ବଢ଼ି ଉଠେ । ଆପଣ କ'ଣ ଏଇ ଗବେଷଣାରେ ହିଁ ଜୀବନ କାଟିଦେବେ, ଆଉ ବିପ୍ଲବ । ପି.ସି.ଯୋଶୀଙ୍କର ଆଖି ବାଷ୍ପାକୁଳ । ବାହାରେ ବୈପ୍ଲବିକ ପରିସ୍ଥିତି ଥିଲେ ମୁଁ ଏଇ ଭଗ୍ନ ହୃଦୟରେ ମଧ୍ୟ କ'ଣ ଏଇ ପୁସ୍ତକ ଭିତରେ ରହିଥାନ୍ତି ? କିନ୍ତୁ ବାହାରେ ସେ ବୈପ୍ଲବିକ ପରିସ୍ଥିତି ନାହିଁ । ହୁଏତ ଆସିଲା ବେଳକୁ ମୁଁ ନଥିବି । ତମେମାନେ ଥିବ ।

ପି.ସି.ଯୋଶୀ ନାହାନ୍ତି । ଏଇମାତ୍ର ଖବର ପାଇଲି ଯେ ତାଙ୍କର ପରଲୋକ ହୋଇଗଲା । ବୈପ୍ଲବିକ ପରିସ୍ଥିତି । ସମାଜକୁ ବଦଳାଇଦେବାର ବୈପ୍ଲବିକ ପରିସ୍ଥିତି ତଥାପି ଆସି ନାହିଁ । ଆମ୍ଭମାନଙ୍କର ମଧ୍ୟ ଯିବାର ବୟସ ହେଲାଣି ।

□□□

# କ୍ରୀଡାର ପ୍ରବାଦ ପୁରୁଷଙ୍କର ବିଦାୟ

*(ଂ ପି.ଭି.ଆର୍ ମୂର୍ତ୍ତି)*

କ୍ରୀଡାର ପ୍ରବାଦପୁରୁଷ ପି.ଭି.ଆର. ମୂର୍ତ୍ତିଙ୍କର ୮୮ (୮୯) ବର୍ଷ ବୟସରେ ପରଲୋକ ହୋଇଯାଇଛି ତାଙ୍କର କଟକ ସୂତାହାଟ ଭବନରେ । ଶୁକ୍ରବାର, ୨୫ ଫେବୃଆରୀ, ୨୦୦୫ ମସିହା ଅପରାହ୍ନରେ । ଜୀବନର ସନ୍ଧ୍ୟା ଉପଗତ । ତଥାପି ସେ ଥିଲେ ସକ୍ରିୟ, ଶେଷ କିଛିଦିନକୁ ବାଦ ଦେଲେ । କ୍ରୀଡ଼ାର ସବୁ ବିଭାଗକୁ ତାଙ୍କର ପ୍ରଭାବ ଥିଲା ପରିବ୍ୟାପ୍ତ; କିନ୍ତୁ କ୍ରିକେଟ ପ୍ରତି ତାଙ୍କର ଅବଦାନ ଥିଲା ବିପୁଳ ଏବଂ ସେଇଥିପାଇଁ ସେ ସ୍ମରଣୀୟ ହୋଇ ରହିବେ ।

୧୯୩୩ ମସିହାରେ ସେ ଚେନ୍ନାଇ (ସେତେବେଳର ନାମ ମାଡ୍ରାସ) ସହରରେ ତାଙ୍କର କ୍ରିକେଟ କ୍ୟାରିଅର ଆରମ୍ଭ କରିଥିଲେ । ସେତେବେଳେ ବୋଧହୁଏ ଗଂଜାମ ଜିଲ୍ଲା (ପାରଳାଖେମୁଣ୍ଡି) ଛଡ଼ା ଅନ୍ୟତ୍ର କ୍ରିକେଟ ଖେଳ ଆଦୌ ନଥିଲା ଓଡିଶାରେ । ୧୯୩୮ ମସିହାରେ ସେ କଟକ ଆସିଲେ । ତା'ପୂର୍ବରୁ କିଛି କାଳ ସେ ଥିଲେ ବ୍ରହ୍ମପୁରରେ ଏବଂ ସେଠାରେ ବ୍ରହ୍ମପୁର ରିକ୍ରିଏସନ କ୍ଲବର ଜଣେ ଖେଳାଳୀ ଥିଲେ । କଟକ ଆସିଲେ ଏବଂ ଏଇ ସହର ହିଁ ତାଙ୍କର ଘର ହୋଇଗଲା । ତାଙ୍କ ଉଦ୍ୟମରେ କଟକରେ କେତେକ କ୍ଲବକୁ ନେଇ କଟକ ଜିଲ୍ଲା କ୍ରିକେଟ ଆସୋସିଏସନ୍ ଗଠିତ ହୋଇଥିଲା । ପରେ ୧୯୪୯ ମସିହାରେ ଓଡିଶା କ୍ରିକେଟ ଆସୋସିଏସନ ବିଧିବଦ୍ଧ ଭାରତୀୟ କ୍ରିକେଟ କଣ୍ଟ୍ରୋଲ୍ ବୋର୍ଡର ତାଲିକାଭୁକ୍ତ ହେଲା । ସେଇଟା ଓଡିଶା କ୍ରିକେଟ କ୍ରୀଡାର ଅୟମାରମ୍ଭର ଯୁଗ । ୧୯୫୪ରୁ ୧୯୬୧ ମସିହା ପର୍ଯ୍ୟନ୍ତ ପି.ଭି.ଆର୍ ମୂର୍ତ୍ତି ଓଡିଶା କ୍ରିକେଟ ଆସୋସିଏସନ୍‌ର ସଂପାଦକ ଥିଲେ । ସେ ହେଉଛନ୍ତି ଆଜିର ପ୍ରସିଦ୍ଧ କଳାହାଣ୍ଡି କପ୍ କ୍ରିକେଟ ପ୍ରତିଯୋଗିତାର ଜନକ । କଳାହାଣ୍ଡିର ତତ୍‌କାଳୀନ ମହାରାଜାଙ୍କଦ୍ୱାରା ପ୍ରଦତ୍ତ ଟ୍ରଫିକୁ ଗଂଜାମ ଓ ସମ୍ବଲପୁର ମାତ୍ର ଦୁଇଟି ଜିଲ୍ଲାକୁ ନେଇ ସେ ୧୯୫୪ ମସିହାରେ କଳାହାଣ୍ଡି କପ୍ କ୍ରିକେଟ୍ ପ୍ରତିଯୋଗିତା ଆରମ୍ଭ କରିଥିଲେ । ଶେଷ ନିଶ୍ୱାସର ତ୍ୟାଗ ପର୍ଯ୍ୟନ୍ତ ସେ ଓଡ଼ିଶା କ୍ରିକେଟ ଆସୋସିଏସନ୍‌ର କାଉନସିଲ ସଭ୍ୟ ଥିଲେ । କବାଡି, ହକି ପ୍ରଭୃତି ଖେଳ ପାଇଁ ମଧ୍ୟ ତାଙ୍କର ଅବଦାନ ପ୍ରଭୂତ ।

କ୍ରୀଡାର ଥିଲେ ସେ କିମ୍ବଦନ୍ତୀ ପୁରୁଷ । ବାରବାଟୀ ଷ୍ଟାଡ଼ିଅମର ପ୍ରତିଷ୍ଠାତା ସଭ୍ୟମାନଙ୍କ ମଧ୍ୟରେ ଅନ୍ୟତମ ଜର୍ଜ ପଟ୍ଟନାୟକ, ଭୈରବ ଚନ୍ଦ୍ର ମହାନ୍ତି, ଫେଲୁ ମହାପାତ୍ର, ଅମୀୟ ସେନ୍, ସୁବୋଧ ବିଶ୍ୱାସ, ଶୈଳେନ୍ ରାୟ ପ୍ରଭୃତିଙ୍କର ସେ ଥିଲେ ଘନିଷ୍ଠ ବନ୍ଧୁ ଏବଂ ସହଯୋଦ୍ଧା ।

ବନ୍ଧୁବତ୍ସଳ ମୂର୍ତ୍ତି ମୋତେ ଡାକୁଥିଲେ ପ୍ରଥମ ନାମରେ । ସେଇଟା ତାଙ୍କର ସ୍ୱଭାବ । ବୟସରେ ସାନମାନଙ୍କୁ ସେ ବାବୁ ନାମରେ ସମ୍ବୋଧନ କରନ୍ତି ନାହିଁ, ସ୍ନେହଭରା ସମ୍ବୋଧନ ବଡ଼ ଭାଇ ପରି । ବହୁ କ୍ଷେତ୍ରରେ ତାଙ୍କ ସଂଗରେ ଏକାଠି କାମ କରିବାର ସୁଯୋଗ ମିଳିଛି । ବିଶେଷତଃ ନାସନାଲ ଗେମ୍ସରେ ତାଙ୍କ ସଂଗରେ ବହୁଦିନ କାମ କରିବା ଏ ପର୍ଯ୍ୟନ୍ତ ସ୍ମରଣ ହୁଏ ଏବଂ ଆଖି ଲୁହରେ ଭରିଯାଏ । ତାଙ୍କୁ କଦାପି ବିରକ୍ତ ହେବା ମୁଁ ଦେଖିନାହିଁ । ତାଙ୍କ ସମୟର ସେଇ ଟିମ୍ ମଧ୍ୟ ମିଳିବ ନାହିଁ । ବୋଧହୁଏ ତାଙ୍କର ପରଲୋକ ସହିତ କ୍ରୀଡ଼ାର ସେଇ ଯୁଗର ପରିସମାପ୍ତି ଘଟିଛି । ସେଇ ଯୁଗର ସେ ଥିଲେ ଶେଷ ସନ୍ତକ ।

ଆୱାର୍ଡ଼ ପାଇଛନ୍ତି ଅନେକ । ସମ୍ମାନ ମିଳିଛି । କିନ୍ତୁ ସେ ରହିଯାଇଛନ୍ତି ସେଇପରି ହାସ୍ୟମୁଖର, ବିନୟୀ । ଓଡ଼ିଶା କ୍ରିକେଟ ଆସୋସିଏସନ୍, ରାଜ୍ୟ ସରକାରଙ୍କର କ୍ରୀଡା ବିଭାଗ ସମେତ ବହୁ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ସମ୍ମାନିତ କରାଯାଇଛି ।

ଜୀବନର ବ୍ୟାଟିଂରେ ସେ ଯେପରି ଦକ୍ଷ ଥିଲେ, ସେଇପରି ଦକ୍ଷ ଥିଲେ ଜୀବନର ବୋଲିଂରେ । ପ୍ରତିଭାର, ପରାକାଷ୍ଠାର ଅବସାନ ହୋଇଛି । କ୍ରିକେଟିଅରର ଲାଷ୍ଟବ୍ୟାଟିଂ ଶେଷ ହୋଇଛି ।

□□□

# ସଂଗ୍ରାମର ଅବସାନ

## (ସ୍ୱ ପୂର୍ଣ୍ଣଚନ୍ଦ୍ର ବଡ଼ଜେନା)

କୃଷକ ଆନ୍ଦୋଳନର ଅନ୍ୟତମ ମହାରଥୀ ପୂର୍ଣ୍ଣଚନ୍ଦ୍ର ବଡ଼ଜେନାଙ୍କର ହଠାତ୍ ପରଲୋକ ହୋଇଗଲା । ଓଡିଶାର କୃଷକ ଆନ୍ଦୋଳନର ଭେଟେରାନମାନଙ୍କ ମଧ୍ୟରେ ଆଉ ଖୁବ୍ କମ ଲୋକ ରହିଲେ । ବଡ଼ଜେନା ସକ୍ରିୟ ଥିଲେ ମୃତ୍ୟୁ ପର୍ଯ୍ୟନ୍ତ । କିନ୍ତୁ ନିକଟରେ ତାଙ୍କର ଦଳର ନେତୃତ୍ୱ ଭିତରେ ଆଉ ସେ ରହି ପାରିନଥିଲେ । ଏହା କ'ଣ ତାଙ୍କୁ ଆଘାତ ଦେଲା ? ଏଇପରି ପ୍ରଶ୍ନ ଅନେକଙ୍କ ମନରେ ।

୧୯୨୬ ମସିହାରେ ଜନ୍ମ ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ଛିଟିକି ଆସନ୍ତି ଲାଇମଲାଇଟ୍କୁ ୧୯୪୨ ମସିହାରେ । ଟେଲିଫୋନ ତାର କାଟିବା ଅପରାଧରେ ସେ ଅଭିଯୁକ୍ତ ହୁଅନ୍ତି । ଏହା ପୂର୍ବରୁ ସେ କମ୍ୟୁନିଷ୍ଟ ପାର୍ଟିର ତତ୍କାଳୀନ ନେତା ଶ୍ରୀ ବୈଦ୍ୟନାଥ ରଥଙ୍କ ସଂସ୍ପର୍ଶରେ ଆସି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ ।

କିନ୍ତୁ ତାଙ୍କ ପରିବାର ଥିଲା ଭାରତୀୟ କଂଗ୍ରେସ ପ୍ରତି ଅନୁରକ୍ତ ପରିବାର । ପରିବାରର ଦୀର୍ଘ ପରମ୍ପରା ଭାଙ୍ଗି ପୂର୍ଣ୍ଣଚନ୍ଦ୍ର ବାମପନ୍ଥୀ ଆନ୍ଦୋଳନରେ ସାମିଲ ହୁଅନ୍ତି ଏବଂ ଘର ଛାଡନ୍ତି ଚିରଦିନ ପାଇଁ । ଆଉ ପଛକୁ ଫେରିବାର ଅବକାଶ ନଥିଲା । ସେ ଫେରି ମଧ୍ୟ ନାହାନ୍ତି ।

ଭାଗଚାଷ ଆନ୍ଦୋଳନ ପାଇଁ ପୁରୀ ଜିଲ୍ଲା ପ୍ରସିଦ୍ଧି ଲାଭ କରିଥିଲା । ଠିକ୍ ସେଇପରି ଏଖରାଦତ ମାହାଲରୁ ଖଜଣାଛାଡ଼ ଆନ୍ଦୋଳନ । ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ଥିଲେ ତାର ଅଗ୍ରଭାଗରେ ।

ମିଥ୍ୟା ମର୍ଡର କେଶରେ ସେ ଅଭିଯୁକ୍ତ ହୋଇଛନ୍ତି । କାରାବାସ ଭୋଗ କରିଛନ୍ତି । କିନ୍ତୁ ରହିଛନ୍ତି ଅନମନୀୟ, ରହିଛନ୍ତି ସାଲିସହୀନ ସଂଗ୍ରାମୀ ଭାବରେ ।

ଖୋର୍ଦ୍ଧା ପଞ୍ଚାୟତ ସମିତିର ଭାଇସ୍ ଚେୟାରମ୍ୟାନ ହୋଇଛନ୍ତି । ଚେୟାରମ୍ୟାନ୍ କାର୍ଯ୍ୟ ତୁଲାଇଛନ୍ତି ଦକ୍ଷ ଭାବରେ । ଓଡିଶା ବିଧାନସଭା ପଦବୀ କିନ୍ତୁ ତାଙ୍କୁ ଏଡାଇ ଯାଇଛି । ତିନିଥର ସେ ନିର୍ବାଚନ ଲଢ଼ି ଦ୍ୱିତୀୟ ସ୍ଥାନରେ ରହିଛନ୍ତି । କମ୍ୟୁନିଷ୍ଟ ପାର୍ଟିର ବିଭାଜନ ତାଙ୍କର ବିଜୟ ପାଇଁ ଅନ୍ତରାୟ ସୃଷ୍ଟି କରିଚି । କିନ୍ତୁ ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ବିବ୍ରତ

ହୋଇ ନାହାନ୍ତି । ସଂଗ୍ରାମରେ ସବୁବେଳେ ବିଜୟ ହୁଏନା । କିନ୍ତୁ ସଂଗ୍ରାମ ଅବିରତ । ତାହା ହିଁ ସଂଗ୍ରାମୀର ଧର୍ମ, ସାନ୍ତ୍ୱନା ଏବଂ ତୃପ୍ତି ।

ଶ୍ରୀ ଚିନ୍ତାମଣି ପାଣିଗ୍ରାହୀଙ୍କ ସହଯୋଦ୍ଧା ଭାବରେ ସେ ଓଡିଶା ଗଣତାନ୍ତ୍ରିକ ଯୁବ ସଂଘର ସମ୍ପାଦକ କାର୍ଯ୍ୟ କରିଛନ୍ତି, ଓଡିଶା କିଶାନ ସଭାର ସମ୍ପାଦକ ହୋଇଛନ୍ତି । କିନ୍ତୁ ନିଜର ନୀତିରେ ସାଲିସ କରିନାହାନ୍ତି । କମ୍ୟୁନିଷ୍ଟ ପାର୍ଟିର ଲିଜେଣ୍ଡ୍ରି ନେତା ଇ.ଏମ.ଏସ. ନମ୍ବୁଦ୍ରିପଦଙ୍କ ସ୍ଥାନରେ ପ୍ରତିନିଧି ମନୋନୀତ ହୋଇ ସେ ରୁଷ ଭ୍ରମଣ କରିଛନ୍ତି । ନମ୍ର, ବନ୍ଧୁବତ୍ସଳ, ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ଆପଣା ଦଳ, ଗୋଷ୍ଠୀର ବାହାରେ ମଧ ବହୁ ବନ୍ଧୁ ପାଇଛନ୍ତି । ତାଙ୍କର ନିଷ୍ଠା, ଆପୋଷହୀନ ନୀତି ସମସ୍ତଙ୍କୁ ଏପରିକି ତାଙ୍କର ବିରୋଧୀମାନଙ୍କୁ ଆକୃଷ୍ଟ କରିଛି ।

ହଠାତ୍ ତାଙ୍କର ପରଲୋକ ତାଙ୍କର ଅଗଣିତ ବନ୍ଧୁ ଗୋଷ୍ଠୀକୁ ହତବାକ୍ କରିଛି । କାରଣ ଏଇପରି ଏକ ମଣିଷର ଅଭାବ ଦେଶରେ । ଅର୍ଥ, ବାହୁବଳର ବିଜୟ ଘଟୁଛି । ନୀତି, ନିଷ୍ଠା, ଦକ୍ଷତା ଉଭେଇ ଯାଉଛି । ସେତିକିବେଳେ ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ଛାଡି ଚାଲିଗଲେ । ସେ କିନ୍ତୁ ସ୍ମୃତ ହୋଇ ରହିବେ ଚିରକାଳ ତାଙ୍କର ଅଗଣିତ ବନ୍ଧୁମାନଙ୍କ ଭିତରେ । କାଲି ଯେତେବେଳେ କୃଷକ ଅନ୍ଦୋଳନ ମୁଣ୍ଡ ଟେକିବ, ଯୁବ ଆନ୍ଦୋଳନ ମୁଣ୍ଡ ଟେକିବ, ଜମି ପାଇଁ ଓ ଦେଶର ଅଳନ୍ଧୁକୁ ଦୂର କରିବାପାଇଁ ସେତେବେଳେ ପୂର୍ଣ୍ଣଚନ୍ଦ୍ର ବଡ଼ଜେନା ମନେପଡ଼ିବେ ।

ତାଙ୍କର ପରଲୋକରେ ତାଙ୍କ ବଂଶରେ ବାମପନ୍ଥୀ ପ୍ରଭାବ ଲୋପ ପାଇଯାଇଚି । ତାଙ୍କ ବଂଶର ଉତ୍ତରପୀଢ଼ି ଖୋଜିଛନ୍ତି ଆପଣାର କର୍ମପୀଠ ଅନ୍ୟତ୍ର । କିନ୍ତୁ ବଡ଼ଜେନା ଛାଡି ଯାଇଛନ୍ତି ବହୁ ଯୁବକଙ୍କୁ ଯେଉଁମାନେ ଆଗାମୀ କାଲିର ଜାତି ପାଇଁ, ଦେଶ ପାଇଁ ଆପଣାର ଜୀବନକୁ ବାଜି ରଖିବେ । ସେଇ ତ ତାଙ୍କ ଜୀବନର ସାର୍ଥକତା ।

□□□

# ସର୍ବହରାର ଏକ ନାୟକ

## (୰ ପ୍ରମୋଦ ଦାସଗୁପ୍ତ)

ପ୍ରମୋଦ ଦାସଗୁପ୍ତଙ୍କର ପରଲୋକ ହୋଇଯାଇଛି ବେଜିଙ୍ଗରେ । ଚିକିତ୍ସା ପାଇଁ ସେ ଯାଇଥିଲେ ଚୀନ, ଭାତୃଭୂମିକୁ । ଗଲା ବହୁ ବର୍ଷ ଧରି ଶ୍ୱାସ ରୋଗ ତାଙ୍କୁ ଆକ୍ରାନ୍ତ କରିଥିଲା । ତଥାପି ସେ ସିଗାର ଛାଡି ନଥିଲେ । ସିଗାର ଛାଡିଦେବା ପାଇଁ କହିଲେ ସେ ବିବେକାନନ୍ଦଙ୍କ କଥା କହନ୍ତି । ବିବେକାନନ୍ଦଙ୍କୁ ବହୁମୂତ୍ର ରୋଗ ଆକ୍ରମଣ କଲା । ଡାକ୍ତରମାନେ ତାଙ୍କୁ ମିଠା ଖାଇବାକୁ ବାରଣ କଲେ । ରସଗୋଲା ପାଇଁ ତାଙ୍କର ଥିଲା ଦୁର୍ବଳତା । ସେ ଡାକ୍ତରଙ୍କର ତାଗିଦା ଶୁଣି ଉତ୍ତର ଦେଲେ ''ଜୀବନରେ ମୋର କୌଣସି ଆସକ୍ତି ନାହିଁ । ନିବେଦିତା ଆସିଥିଲା ବିବାହର ଇଚ୍ଛା ନେଇ; କିନ୍ତୁ ରହିଗଲା ଭଗିନୀ ନିବେଦିତା ହୋଇ । ରସଗୋଲା ଖାଇବାଟା ଏକମାତ୍ର ଆସକ୍ତି । ତାକୁ ଛାଡିଦେଲେ ଆଉ ବଞ୍ଚିବି କାହିଁକି ?'' ବିବେକାନନ୍ଦ ରସଗୋଲା ଖାଇବା ଛାଡିଲେ ନାହିଁ । ପ୍ରମୋଦ ଦାସଗୁପ୍ତ ଏଇ ଗଳ୍ପ ବହୁ ବ୍ୟକ୍ତିଙ୍କୁ କହି ତାଙ୍କର ସିଗାର ଖାଇବାର ଯଥାର୍ଥତା ପ୍ରମାଣ କରନ୍ତି କରିବାକୁ ଚେଷ୍ଟା କରନ୍ତି । ବିବାହ କରି ନାହାନ୍ତି । ଆଲିମୁଦ୍ଦିନ ଷ୍ଟ୍ରୀଟରେ ଥିବା ପାର୍ଟି ଅଫିସର ଗୋଟିଏ କୋଠରୀ ତାଙ୍କର ଘର । ଜୀବନରେ କୌଣସି ଆସକ୍ତି ନାହିଁ । ଯେଉଁଠି ମନ ସେଇଠି ଶୋଇ ପଡ଼ନ୍ତି । ପ୍ରମୋଦ ଦାସଗୁପ୍ତଙ୍କର କଥା ସତ ହେଲା । ତାଙ୍କର ଭାରତ ଫେରିଯିବାର କଥା । ସବୁ ସ୍ଥିର ହୋଇ ସାରିଛି । ଟିକେଟ କିଣା ସରିଛି । ବିଦାୟର ପ୍ରସ୍ତୁତି ପର୍ବ । କିନ୍ତୁ ଆଉ ଏକ ବିରାଟ ବିଦାୟର ପ୍ରସ୍ତୁତି ଆରମ୍ଭ ହୋଇଯାଇଛି, ଏକଥା କିଏ ଜାଣିଥିଲା । ମ୍ୟାଟର ମଷ୍ଟ ଡିକେ (Matter must decay) ଏତିକି ଛଡ଼ା ଦ୍ୱନ୍ଦ୍ୱମୂଳକ ବସ୍ତୁବାଦୀ ଦର୍ଶନ ଆଉ ବିଶେଷ ଆଲୋକପାତ କରିପାରୁ ନାହିଁ । ଯେ ଗଲେ, ସେ ଗଲେ କୁଆଡେ ? ଆଉ ଫେରିବେ ନା ଫେରିବେ ନାହିଁ ? ସବୁ ବାଦ ବିସମ୍ବାଦ ତ ଏହାରି ମୂଳରେ । ଚାର୍ବାକଙ୍କଠାରୁ ଚଣ୍ଡିଦାସ, ଶଙ୍କରଙ୍କଠାରୁ ବୁଦ୍ଧ, ହେଗେଲ, କାଣ୍ଟଙ୍କ ଠାରୁ ମାର୍କସ୍ !

ପ୍ରମୋଦ ଦାସଗୁପ୍ତଙ୍କର ଗୋଟିଏ ଆସକ୍ତି ଥିଲା । ତା' ହେଉଛି ପାର୍ଟି ମେସିନାରୀ । ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିରେ ପ୍ରମୋଦ ଦାସଗୁପ୍ତ ନେତୃତ୍ୱର ପହିଲି ଧାଡିରେ ନଥିଲେ ।

ଅବଦୁଲ ରସୁଲ, ମୋମିନ, ଭବାନୀ ସେନ, ସୋମନାଥ ଲାହିଡୀ, ମୁଜାଫର ଅହମ୍ମଦ ପର୍ଯ୍ୟନ୍ତ ବହୁ ବ୍ୟକ୍ତି ସେ ଧାଡ଼ିରେ ଥିଲେ । ପ୍ରମୋଦ ଦାସଗୁପ୍ତ ପାର୍ଟି ପ୍ରେସ ଏବଂ ପାର୍ଟି ମୁଖପତ୍ରର ମ୍ୟାନେଜର ଥିଲେ । ମ୍ୟାନେଜର ଭାବରେ ତାଙ୍କର ଖ୍ୟାତି ଥିଲା । ସବୁ କଥାକୁ ଟିକିନିଖି ଦେଖିବା । ସବୁ ବିଷୟରେ ଖବର ରଖିବା ତାଙ୍କର ଦେହସୁହା ହୋଇଯାଇଥିଲା ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ବିଭାଜନ ତାଙ୍କୁ ଠେଲି ନେଇଗଲା ପ୍ରଥମ ଧାଡିକୁ କେବଳ ନୁହେଁ, ସରକାରକୁ ପରିଚାଳନା କରୁଥିବା ପାର୍ଟିର ସମ୍ପାଦକ ପଦକୁ । ପାର୍ଟି ପ୍ରେସ ଓ ମୁଖପତ୍ରକୁ ଚଳାଇବା ପାଇଁ ଯେଉଁ ମେଥଡିକାଲ କାମ ଏବଂ ସବୁକଥାରେ ତଦ୍‌ବିର କରିବା ଏକାନ୍ତ ଆବଶ୍ୟକ, ସେଇ ଗୁଣ ତାଙ୍କୁ ସାହାଯ୍ୟ କଲା । ପାର୍ଟିର ସବୁ ମୁଖ୍ୟ କ୍ୟାଡର, ସେମାନଙ୍କର ଇତିବୃ... ସେମାନଙ୍କର ଗୁଣ ଏବଂ ଦୋଷ, ସେମାନଙ୍କର ସାଫଲ୍ୟ ଏବଂ ବିଫଳତା ସବୁ ପ୍ରମୋଦ ଦାସଗୁପ୍ତଙ୍କର ନଖ ଦର୍ପଣରେ । ପାର୍ଟିର ସଭ୍ୟପଦ ନବୀକରଣ କେତେ ବାଟ ଗଲା ସେ ସମ୍ପର୍କରେ ଯେପରି ଦୈନନ୍ଦିନ ଖବର ତାଙ୍କ ପାଖରେ ପହଞ୍ଚେ ଠିକ୍ ସେଇପରି ସମ୍ବାଦ ତାଙ୍କ ଜିଭ ଅଗରେ । ତାଙ୍କୁ ସେଇଯୋଗୁଁ ସମସ୍ତେ ଡରନ୍ତି, ଖାତିର କରନ୍ତି । ଇମିତି ତ ପ୍ରକୃତିରେ ବେଶ୍ ଗମ୍ଭୀର ଲୋକ, ଶାଣିତ ଉକ୍ତି, ସ୍କାନିଙ୍ଗ ଆଖି । ବେଶି କଥା କହନ୍ତି ନାହିଁ । ତେଣେ ସବୁ କଥାରେ ଥରୋ(Thorough) ଏବଂ ଅପ୍-ଟୁ-ଡେଟ୍ ।

ତାଙ୍କର ଶବାଧାର ଉପରେ ପୁଷ୍ପମାଲ୍ୟ ଅର୍ପଣ କଲାବେଳେ ସେଇଯୋଗୁଁ ବଙ୍ଗଳାର ମୁଖ୍ୟମନ୍ତ୍ରୀ ଜ୍ୟୋତି ବସୁ କହନ୍ତି ଯେ ପ୍ରମୋଦ ଯୋଗୁଁ ମୁଁ ସରକାର ଛଡ଼ା ପାର୍ଟି କଥା ଆଦୌ ବୁଝୁ ନଥିଲି । ମୋର ବିଶ୍ୱାସ ଥିଲା ଯେ ପ୍ରମୋଦକୁ କିଛି ଚପି ଯାଇ ପାରିବ ନାହିଁ । ସର୍କୁଲାର, ଗାଇଡ୍ ଲାଇନ ଦେବାରେ ପ୍ରମୋଦ ଦାସଗୁପ୍ତ ଧୂରନ୍ଧର ବ୍ୟକ୍ତି ଥିଲେ । ପ୍ରମୋଦ ଦାସଗୁପ୍ତଙ୍କର ଆଦର୍ଶ ବା ହିରୋ ଥିଲେ ଜୋସେଫ ଷ୍ଟାଲିନ । ଏକ ନିରକ୍ଷର, ପଛୁଆ ସୋଭିଏଟ୍ ୟୁନିଅନକୁ ବିଶ୍ୱର ଏକ ଶିବିରର ନେତା କରିବା ପାଇଁ ଷ୍ଟାଲିନଙ୍କର ଅବଦାନ ତାଙ୍କ ପାଇଁ ଥିଲା ପ୍ରେରଣାଦାୟକ ଏବଂ ଆଦର୍ଶ ସ୍ଥାନୀୟ । ସାଫଲ୍ୟର ରାଜପଥରେ ରାସ୍ତାକଡ଼ରେ ପଡି ରହିଥିବା କଲ୍ମଷ ବା ଅନ୍ୟାୟକୁ ଦେଖ ନାହିଁ । ସେଗୁଡାକ ନିତାନ୍ତ ଆବଶ୍ୟକ ସାଫଲ୍ୟର ଦୀପ ପାଇଁ । ସେ ମଇଳା ଅରମାକୁ ପାଥେୟ କର ନାହିଁ । ସାଫଲ୍ୟର ଭାଷାରେ ସ୍ନାତ ହୁଅ । ଷ୍ଟାଲିନବାଦର ବିଲୋପ, ଷ୍ଟାଲିନଙ୍କ ପ୍ରତି ସମାଲୋଚନା, ଦ୍ୱିତୀୟ ମହାଯୁଦ୍ଧ ଷ୍ଟାଲିନଙ୍କର ଅନାବଶ୍ୟକ ଅତ୍ୟାଚାର ପ୍ରଭୃତି ପ୍ରମୋଦ ଦାସଗୁପ୍ତଙ୍କୁ ଏକ ସକ୍ (Shock) ଦେଇଥିଲା । ସେ ଏହାର ପ୍ରତିବାଦ ବା ବିରୋଧ କରିନଥିଲେ । କାରଣ ଘଟଣାବଳୀ ଜଳ ଜଳ ହୋଇ ଦେଖାଯାଉଥିଲା । କିନ୍ତୁ ତାଙ୍କୁ

ଆନ୍ତରିକତାର ସହିତ ସେ ଗ୍ରହଣ ମଧ୍ୟ କରି ପାରି ନଥିଲେ, ଯଦିଓ ଶୃଙ୍ଖଳିତ ସୈନିକ ଭାବରେ ସେ ପାର୍ଟିର ନିଷ୍ପତ୍ତିକୁ ମାନିଥିଲେ ଯେମିତି କାର୍ଯ୍ୟକାରୀ କରିଥିଲେ ମଧ୍ୟ ସେମିତି । କିନ୍ତୁ ଷ୍ଟାଲିନବାଦର ପତନ, ଷ୍ଟାଲିନଙ୍କ ନିନ୍ଦାକୁ ସେ ଗ୍ରହଣ କରିପାରି ନଥିଲେ ।

ପାର୍ଟିର ଲୌହ ଶୃଙ୍ଖଳାର ପ୍ରତୀକ ଥିଲେ ପ୍ରମୋଦ ଦାସଗୁପ୍ତ । ତାଙ୍କର ନିଜର କିଛି ନଥିଲା, ଲୋଡ଼ା ମଧ୍ୟ ଥିଲା ବହୁତ କମ୍ । କେବଳ ହାଭାନା ଚୁରୁଟ ଛଡା ତାଙ୍କର ଆଉ କୌଣସି ଦୁର୍ବଳତା ନଥିଲା । ସେଇଯୋଗୁଁ ଶୃଙ୍ଖଳାର ବୁଲଡୋଜର ଚଳାଇବା ତାଙ୍କ ପକ୍ଷରେ ସହଜ ସାଧ୍ୟ ଥିଲା । ଅନ୍ୟମାନେ ତାକୁ ମାନିବା ଛଡା ଉପାୟ ନଥିଲା । ପ୍ରମୋଦ ଦାସଗୁପ୍ତ ବଙ୍ଗଳାରେ ଶାସକଦଳର ସମ୍ପାଦକ ହୋଇଥିଲେ । ପାର୍ଟିର ସମ୍ପାଦକ ହୋଇଥିଲେ । ପାର୍ଟିର ସମ୍ପାଦକ ପଦବୀ ମୁଖ୍ୟମନ୍ତ୍ରୀଙ୍କର ରବର ଷ୍ଟାମ୍ପ ନଥିଲା । ପାର୍ଟି ହେଉଛି ସରକାରକୁ ଚଳାଇବାର, ନେତୃତ୍ୱର ଚେତାବନୀ, ତା'ର ଷ୍ଟିଅରିଙ୍ଗ ହୁଇଲ । ପ୍ରମୋଦ ଦାସଗୁପ୍ତ ତାର ସଫଳ ପ୍ରତୀକ । ତାକୁ ବାଦ ଦେଇ, ତାଙ୍କର ବିନାନୁମତିରେ କୌଣସି ନୀତି ନିର୍ଦ୍ଧାରଣ ସରକାର ବା ମୁଖ୍ୟମନ୍ତ୍ରୀଙ୍କ ପାଖରେ ସମ୍ଭବ ନଥିଲା ।

ପ୍ରମୋଦ ଦାସଗୁପ୍ତଙ୍କୁ ତାଙ୍କ ପାର୍ଟିର 'ମେସିନ ମ୍ୟାନ' ବୋଲି କୁହାଯାଉଥିଲା । ଜୀବନର କୋମଳ ଦିଗ, ସ୍ପନ୍ଦନ ପ୍ରତି ତାଙ୍କର ନଜର ବେଶି ନଥିଲା, ଥିଲା ବ୍ରାସ୍ ଟାସ୍କ (brass task) ପ୍ରତି ବେଶି । ତେଣୁ ତାଙ୍କୁ ପାର୍ଟିର କ୍ୟାଡରମାନେ ଯେମିତି ଡରୁଥିଲେ, ଭକ୍ତି କରୁଥିଲେ ମଧ୍ୟ ସେଇପରି। ନେତୃବୃନ୍ଦ ଖାତିର କରୁଥିଲେ । ମେଥଡୋଲଜି (methodology) ବିଜୟର ପ୍ରତୀକ ହେଉଛନ୍ତି ପ୍ରମୋଦ ଦାସଗୁପ୍ତ ।

ଭାରତବର୍ଷକୁ ଫେରିଯିବେ । ବାଙ୍ଗଲାଦେଶ ମନେ ପଡୁଛି । ସେ କ୍ଲାନ୍ତ ହୋଇ ପଡିଲେଣି ଆତିଥ୍ୟରେ । ଡାକୁଚି କଲିକତାର ରାଜପଥ, ଡାକୁଚି ଚଟକଳର ଶ୍ରମିକ, ଖାଦାନର ମଜଦୁର । କେତେ କାମ ବାକି ଅଛି । ନା, ଆଉ ନୁହେଁ । କାଲି ଯିବାକୁ ହେବ ।

କୁଆଡେ ? କୁଆଡେ ଯିବାକୁ ହେବ ? ମୁହଁ ହଠାତ୍ ବିକୃତ ହୋଇଯାଇଛି । ବନ୍ଧା ଦାନ୍ତ ସବୁ ବାହାରି ଆସୁଚି ମୁହଁରୁ । ସିଗାରଟା ଖସି ପଡ଼ିଲାଣି । ଡାକ୍ତର ଡକାହୋଇ ଆସିବା ପୂର୍ବରୁ ପ୍ରମୋଦ ଦାସଗୁପ୍ତ ଚାଲି ଗଲେଣି । ଆଉ ଫେରିବେ ନାହିଁ ।

କଲିକତାର ରାଜପଥରେ ପଟୁଆର ଓହ୍ଲାଇଛି । ବିଦଳିତ ଜନତାର, ସଂଗ୍ରାମୀ ଶ୍ରମିକର, ବିପ୍ଳବୀ ଅଭିନେତା, କବି ଓ ଲେଖକର । ଅସୁମାରି ମଣିଷର । ପ୍ରମୋଦ ଦାସଗୁପ୍ତ ସେମାନଙ୍କର ଜୀବନକୁ ଛୁଇଁ ଯାଇଛନ୍ତି, ବିଭିନ୍ନ ସମୟରେ ସେମାନେ ଏକ ସ୍ୱରରେ କହୁଛନ୍ତି "ପ୍ରମୋଦ ଦାସଗୁପ୍ତ ଅମର ରହେ" । କିନ୍ତୁ ଅମର କିଏ ରହିଛି ? ଇତିହାସ ହିଁ ତାର ପ୍ରମାଣ ଦେବ ।

□□□

# ପ୍ରଫୁଲ୍ଲର ପରଲୋକ

*(୰ ପ୍ରଫୁଲ୍ଲ ଚନ୍ଦ୍ର ରଥ)*

ରାତି ଆଠଟା । ଜଣେ ଯୁବକ ଘର ଆଗରେ ଛିଡା ହୋଇଛନ୍ତି । ଭିତରକୁ ଆସିବାକୁ ନାରାଜ । ବାଧହୋଇ ବାରଣ୍ଡାକୁ ଗଲି ! ଯୁବକ ଜଣକ ଚିଟଉଟିଏ ଧରେଇଦେଲେ । ଚମକଲାଗିଲା ଚିଟଉଟି ପଢ଼ି । ପ୍ରସିଦ୍ଧ ଇଂଜିନିଅର ପ୍ରଫୁଲ୍ଲ ଚନ୍ଦ୍ର ରଥ ଆଉ ନାହିଁ । କିଛି ତ ଖବର ପାଇନଥିଲି । ବୟସରେ ସାନ । ଗଲା କୁଆଡେ ଓ କାହିଁକି ?

ମନ ପହଁରିଗଲା ଦୂର ଅତୀତକୁ । ଗଂଜାମ ଜିଲ୍ଲାର ଶିକ୍ଷକମାନଙ୍କ ମଧ୍ୟରେ ପ୍ରବାଦ ପୁରୁଷ ଅନନ୍ତ ରଥଙ୍କର ସେ ପୁଅ । ଅନନ୍ତ ରଥ ତତ୍‌କାଳୀନ ସମୟରେ ଆପଣାର ପ୍ରବୀଣତା ତଥା ସ୍ୱାଧୀନତା ପାଇଁ ପ୍ରବାଦ ପୁରୁଷ ପାଲଟିଥିଲେ । ମୋ ସ୍ତ୍ରୀ ଏବଂ ମୁଁ ତାଙ୍କର ଛାତ୍ର । ତାଙ୍କର ତୈଳଚିତ୍ରକୁ ୰ ପର୍ଶୁରାମ ବ୍ରହ୍ମ ଓ ୰ ଦିବ୍ୟସିଂହ ପଟ୍ଟନାୟକ ଉପେନ୍ଦ୍ରଭଂଜ ହାଇସ୍କୁଲରେ ସ୍ଥାନୀତ କରିବା ପାଇଁ ମୋର ଉଦ୍ୟମକୁ ରୂପ ଦେଇଥିଲେ ପ୍ରଫୁଲ୍ଲ, ବାପାଙ୍କର ବିରଳ ଫଟୋଟିଏ ଦେଇ । ତୈଳଚିତ୍ର ସ୍ଥାନୀତ ହେଲା କିନ୍ତୁ ଫଟୋଟି ହଜିଗଲା ମହାବାତ୍ୟାରେ ।

ପ୍ରଫୁଲ୍ଲଙ୍କୁ ମୁଁ ଜାଣିଥିଲି ତାଙ୍କର ସ୍କୁଲ ଜୀବନରୁ । ପାଠ ପଢ଼ିଲେ ଉପେନ୍ଦ୍ର ଭଂଜ ହାଇସ୍କୁଲ, ଖଲିକୋଟ କଲେଜ ଏବଂ ବିହାର କଲେଜ ଆଫ୍ ଇଂଜିନିଅରିଂ । ବି.ଟେକ୍ ପାସ କରି ଯୋଗଦେଲେ ଓଡିଶା ସରକାରଙ୍କ ଜନସ୍ୱାସ୍ଥ୍ୟ ଇଞ୍ଜିନିୟର ଭାବରେ । ଏବଂ ଅବସର ଗ୍ରହଣ କଲେ ଜନସ୍ୱାସ୍ଥ୍ୟ ବିଭାଗର ଚିଫ୍ ଇଂଜିନିୟର ଭାବରେ ।

ବାପା ଅନନ୍ତ ରଥ ଏବଂ ମାଆ ଲଳିତା ରଥ ପ୍ରଫୁଲ୍ଲଙ୍କୁ ଶିକ୍ଷା ଦେଇଥିଲେ କର୍ମଠ, ସଚ୍ଚୋଟ ଏବଂ ଜନକଲ୍ୟାଣ ବ୍ରତୀ ହେବା ପାଇଁ । ପ୍ରଫୁଲ୍ଲ ତାକୁ ପାଳନ କରିଛନ୍ତି ଜୀବନ ବ୍ୟାପୀ । ବାପାଙ୍କର ବଂଧୁ ସମାଜ ସଂପାଦକ ୰ ରାଧାନାଥ ରଥ । କୁଜଙ୍ଗ, ଏରସମା ଅଞ୍ଚଳରେ ନଳକୂପ ସ୍ଥାପନ ଏକାନ୍ତ ଆବଶ୍ୟକ । କାରଣ ନଦୀର ପାଣି ଲୁଣିଆ । ଜଳସ୍ତର ମଧ୍ୟ ବହୁ ତଳେ ମଧୁର । ସୁତରାଂ ପ୍ରତ୍ୟେକ ନଳକୂଅକୁ ସାବଧାନର ସହିତ ପ୍ରୋଥିତ କରିବାକୁ ହେବ । ମନେପଡୁଚି ବୋଧହୁଏ ବିଭାଗୀୟ ମନ୍ତ୍ରୀ ନଳିନୀ ମହାନ୍ତି । ଅଦ୍ୟାପି ସେଇସବୁ ପ୍ରଫୁଲ୍ଲଙ୍କର କର୍ମନିଷ୍ଠତାର ମୂକସାକ୍ଷୀ ।

ଅବସର ନେଲାପରେ ରହିଲେ ଜୟଦୁର୍ଗା ନଗର, ବମିଖାଲ, ଭୁବନେଶ୍ୱରରେ । ତିନିପୁଅ, ସମସ୍ତେ ପ୍ରତିଷ୍ଠିତ । ସାନ ପୁଅ ସିଦ୍ଧେନ୍ଦ୍ର ଆମେରିକାରେ, ଅସୁସ୍ଥ ହୋଇ ଉଠିଛନ୍ତି ପ୍ରଫୁଲ୍ଲ । ସ୍ତ୍ରୀ ଅନ୍ନପୂର୍ଣ୍ଣା, ତିନିପୁଅ, ବୋହୂ,ପରିବାର ଜଗି ବସିଛନ୍ତି ।

ଡିସେମ୍ବର ୧୨, ୨୦୦୬ ମସିହା । ରାତି ହେବା ସହିତ ପ୍ରଫୁଲ୍ଲଙ୍କର ଜୀବନର ସୂର୍ଯ୍ୟ ମଧ ବୁଡିଗଲା । ପ୍ରଫୁଲ୍ଲ ଆଖି ବୁଜିଦେଲେ ଚିରଦିନ ପାଇଁ । ଡିସେମ୍ବର୧୨, ୧୯୩୮ ମସିହାରେ ଜନ୍ମଗ୍ରହଣ କରିଥିବା ପ୍ରଫୁଲ୍ଲ ଜନ୍ମ ଦିବସରେ ହିଁ ଆଖି ବୁଜିଦେଲେ । ଏଭଳି ଭାଗ୍ୟ ଖୁବ୍ କମ୍ ଲୋକଙ୍କର ଘଟେ ।

କୁହାଯାଏ ଯେ ଗୌତମବୁଦ୍ଧଙ୍କ ଜନ୍ମ ଓ ନିର୍ବାଣ ଏକା ଦିନରେ ହୋଇଥିଲା । ଡାକ୍ତର ବିଧାନ ଚନ୍ଦ୍ର ରାୟଙ୍କର ମଧ ସେତଆ! ହୋଇଥିଲା । ନିର୍ବାଣ ଲାଭହୁଏ କୁଆଡ଼େ ଏଇପରି କ୍ଷେତ୍ରରେ ।

ଯୁବକ ଠିଆ ହୋଇଛନ୍ତି । ଆମେରିକାର ଇଂଜିନିଅର ସିଦ୍ଧେନ୍ଦ୍ର ବାରଣକୁ ମଧ ନାରାଜ । ବାପାଙ୍କର ଶୌଚକ୍ରିୟା । ମାଆ ଅନ୍ନପୂର୍ଣ୍ଣା, ଜେଜେମା ଲଳିତା ଆମକୁ ମନେ ପକାଇ ଚିଟଉ ପଠେଇଛନ୍ତି । ମାଆ ଲଳିତାଙ୍କର ୯୨ ବର୍ଷ ବୟସ । ରାଜା ପଚାରୁଛନ୍ତି ପଣ୍ଡିତଙ୍କୁ । ପଣ୍ଡିତ ମହାଶୟ, କହି ପାରିବେ କାହିଁକି ମାଆ ବାପାଙ୍କ ଆଗରେ ପୁତ୍ରର ମୃତ୍ୟୁ ହୁଏ ? ପଣ୍ଡିତ ମହାଶୟ ଉତ୍ତର ଦେଲେ, ରାଜନ୍ ଏ ପ୍ରଶ୍ନ ଅନନ୍ତ । ଏହାର ଉତ୍ତର ଖୋଜି ଗୌତମ ବୁଦ୍ଧ ପାଲଟିଥିଲେ ।

ପ୍ରଫୁଲ୍ଲ ନାହାନ୍ତି । ଯୁବକ ଫେରି ଯାଉଛନ୍ତି ଖାଲି ପାଦରେ, ଚାଲି ଚାଲି । ବୟସ ବାଲିରେ ପ୍ରଫୁଲ୍ଲ ତମେ ବଂଚି ରହିବ ବହୁକାଳ, ତାର ବଂଧୁ, ସହକର୍ମୀଙ୍କ ଭିତରେ, ଖାଲି ପରିବାର ଭିତରେ ନୁହେଁ ।

□□□

# ମୂଲ୍ୟବୋଧର ମହାରଥୀଙ୍କ ମହାଯାତ୍ରା

## (ଂ ପ୍ରଦୀପ୍ତ କିଶୋର ଦାସ)

ସମାଜବାଦୀ ଚିନ୍ତକ, ପୂର୍ବତନ ମନ୍ତ୍ରୀ, ସ୍ୱାଧୀନତା ସଂଗ୍ରାମୀ ପ୍ରଦୀପ୍ତ କିଶୋର ଦାସଙ୍କର ପରଲୋକ ହୋଇଯାଇଛି । ତାଙ୍କର ପରଲୋକରେ ମୂଲ୍ୟବୋଧର ଅନ୍ୟତମ ପ୍ରତୀକ ଅସ୍ତ ହୋଇଯାଇଛି । ସେ ସମାଜବାଦୀ ଚିନ୍ତାନାୟକ କେବଳ ନଥିଲେ, ଥିଲେ ଲୋପ ପାଇଯାଉଥିବା ମୂଲ୍ୟବୋଧର ବାହକ । ମୁଁ କଲେଜକୁ ଆସିଲାବେଳକୁ ସେ ରେଭେନ୍ସା କଲେଜ ଛାତ୍ର ୟୁନିଅନର ସଭାପତି ଥିଲେ ।

ସ୍ୱାଧୀନତା ଆନ୍ଦୋଳନର ଏଇ ମହାରଥୀ ଜେଲଖାନାରୁ ମୁକ୍ତି ପାଇବା ପରେ କିଛିକାଳ ପାଇଁ ରେଭେନ୍ସା କଲେଜରେ ଯୋଗ ଦେଇଥାଆନ୍ତି ଛାତ୍ର ଭାବରେ । ସେହିଦିନରୁ ପରିଚିତି । ସେଇଟା ଏକ ବିଚିତ୍ର ସମୟ । ସ୍ୱାଧୀନତାର ସୂର୍ଯ୍ୟୋଦୟ ଆଉ ଅଳ୍ପ ସମୟ ବାକି । କିନ୍ତୁ ଅସଂଖ୍ୟ ପ୍ରଶ୍ନ । ଯେଉଁ ସ୍ୱାଧୀନତା ବହୁ ବଳିଦାନ ପରେ ଆସିବ, ତା'ର ରୂପରେଖ କ'ଣ ହେବ ? ଯେଉଁ ସ୍ୱାଧୀନତା ପାଇଁ ଏତେ ସଂଗ୍ରାମ, ଏତେ ବଳିଦାନ, ଏ କ'ଣ ସେଇ ସ୍ୱାଧୀନତା ?

ବିତର୍କ ପ୍ରବଳ । ଗୋଟାଏ ପଟରେ କଂଗ୍ରେସ, ଗୋଟାଏ ପଟରେ ସୋସଲିଷ୍ଟ ଏବଂ ଗୋଟାଏ ପଟରେ କମ୍ୟୁନିଷ୍ଟମାନଙ୍କ ମତ । ତୀବ୍ର, ଶାଣିତ ସେ ବିତର୍କ । ମତାନ୍ତର ମତଭେଦ, କିନ୍ତୁ ମତଭେଦ ବ୍ୟକ୍ତିଗତ ନୁହେଁ । ସେ ବିତର୍କ, ସେ ମତାନ୍ତର ଆଜି ଦେଖାଯାଏନା । ପ୍ରଦୀପ୍ତ ବାବୁ ଥିଲେ ସେଇ ବିତର୍କର ଅନ୍ୟତମ ମହାରଥୀ । ପରିଚିତ ସେଇଦିନରୁ ।

ପ୍ରଦୀପ୍ତବାବୁ ତିନିଥର ବିଧାନସଭାକୁ ନିର୍ବାଚିତ ହୋଇ ଆସିଛନ୍ତି ମାହାଙ୍ଗାରୁ । ମୋର ମନେପଡୁଛି, ଏକ ବିବାହ ଉତ୍ସବରେ (ବୋଧହୁଏ ସ୍ୱର୍ଗତଃ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କର କନ୍ୟା କି କ'ଣ ଠିକ୍ ମନେପଡୁନି) ଦେଖାହୁଏ । ସେ ମନ୍ତ୍ରୀ, କିନ୍ତୁ ବସ୍‌ରେ ଆସିଛନ୍ତି ଭୁବନେଶ୍ୱରରୁ କଟକ । କାରଣ ବିବାହ କାର୍ଯ୍ୟକ୍ରମ ବ୍ୟକ୍ତିଗତ । ସରକାରୀ ନୁହେଁ । ଏବେ ସେ ପଦ୍ଧତି କେତେଜଣ ଅନୁସରଣ କରନ୍ତି କି ନାହିଁ, ମୁଁ ଜାଣେ ନାହିଁ । କିନ୍ତୁ ମନେହୁଏ, ସେ ମୂଲ୍ୟବୋଧ ବର୍ତ୍ତମାନ ମରହଟିଆ ବୋଲି ବିବେଚିତ ହେବ । ପ୍ରଦୀପ୍ତ ବାବୁ ସେଇ ମୂଲ୍ୟବୋଧର ପ୍ରତୀକ ଥିଲେ ।

ଅଲୋଚନା ଚାଲିଥିଲା ଆମ ଭିତରେ ସେଇଠି । ସମସ୍ତଙ୍କର ନାମ ମନେପଡୁନି । ତେବେ ରାଜେନ୍ଦ୍ର ସିଂ, ଚିତ୍ତ ମହାନ୍ତି, ନରେନ୍ଦ୍ର ସ୍ୱାଇଁଙ୍କ ନାମ ମନେପଡୁଛି । ସରକାରୀ ଅଫିସରମାନେ ମନ୍ତ୍ରୀଙ୍କ କଥା ମାନୁନଥିବା ଅଭିଯୋଗ ପର୍ବର ଆଦ୍ୟ ସମୟ ସେଇଟା । ପ୍ରଦୀପ୍ତ ବାବୁ ଆସିବା ଦେଖି ତାଙ୍କୁ ଆଲୋଚନା ଭିତରକୁ ଟାଣି ଅଣାଗଲା । ସେ ଶୁଣିଲେ ଏବଂ କହିଲେ ଯେ, ମନ୍ତ୍ରୀଙ୍କ ନିର୍ଦ୍ଦେଶ ଏବଂ ଆଦେଶ ଅଫିସର ମାନୁନାହାନ୍ତି ନା କଥା ମାନୁନାହାନ୍ତି ! ମନ୍ତ୍ରୀ ଯଦି ନିର୍ଦ୍ଦେଶ ବା ଆଦେଶ ଦିଅନ୍ତି, ତା'ହେଲେ ଅଫିସର୍ ମାନିବାକୁ ବାଧ । କାରଣ ସେ ନ ମାନିଲେ ଦଣ୍ଡନୀୟ ହେବ । କିନ୍ତୁ କଥା ନ ମାନିବା ଅଲଗା କଥା ! ତମେମାନେ ମୋତେ କ'ଣ ପଚାରୁଛ ?

ପ୍ରଦୀପ୍ତ ବାବୁଙ୍କ ଉକ୍ତି ସ୍ପଷ୍ଟ ।

ସ୍ମୃତି ହାବୁକା ମାରୁଛି । ଆଉ ଦିନକର କଥା । ସେଦିନ ସକାଳଟା ଥିଲା ପ୍ରବଳ ବର୍ଷାମୁଖର । ତୁହାକୁ ତୁହା ବର୍ଷା ପିଟୁଛି । ପ୍ରଦୀପ୍ତ ବାବୁ ମନ୍ତ୍ରୀଙ୍କ ବାସଭବନ । ଆମେ ଯାଇଥାଉଁ ଏକ ପ୍ରତିନିଧିଦଳ ପ୍ରଦୀପ୍ତ ବାବୁଙ୍କୁ ଭେଟିବା ପାଇଁ । ସକାଳ ପ୍ରାୟ ଦଶଟା । ପ୍ରଦୀପ୍ତ ବାବୁଙ୍କ ଝିଅ ବ୍ୟସ୍ତ ହୋଇ ଆସି କହିଲା, ବାପା, ରିକ୍ସା ଆଦୌ ମିଳୁନି । ତମ ଗାଡ଼ିର ଡ୍ରାଇଭରକୁ ଟିକିଏ କହନ୍ତ ନାଇଁ ମୋତେ କଲେଜରେ ଛାଡିଦେବା ପାଇଁ ।

ପକେଟରୁ ପାଞ୍ଚଟଙ୍କା ବାହାର କରି ଝିଅ ହାତକୁ ବଢ଼ାଇଦେଇ ପ୍ରଦୀପ୍ତ ବାବୁ କହିଲେ, ମାଆ, ଦେଖ ରିକ୍ସା ଯାଉଥିବ । ତାକୁ ଅଧିକା ପାଞ୍ଚଟଙ୍କା ଦେଲେ ସେ ନେଇଯିବ ତୋତେ । ଜଲ୍‌ଦି ଯାଆ, ନଚେତ୍ କ୍ଲାସ୍ ପାଇଁ ଡେରି ହୋଇଯିବ । ଗାଡ଼ିଟା ପରା ସରକାରୀ ଗାଡ଼ି । ଝିଅର ଆଖିରୁ ଲୁହ ଖସି ପଡ଼ିଲା । ମୋର ମନେପଡୁଛି ଯେ ଭୈରବ ବାବୁ ବୋଧହୁଏ ଯାଇ ଝିଅକୁ ଛାଡ଼ିଦେଇ ଆସିଲେ । ଠିକ୍ ମନେପଡୁନି । ତୁଳନାର ଆବଶ୍ୟକତା ନାହିଁ । ଏଇ ମାସରେ ସାମ୍ୟବାଦୀ, ସମାଜବାଦୀ ଆନ୍ଦୋଳନର ଦୁଇ ମହାରଥୀ ବନମାଳୀ ଦାସ, ବୈଦ୍ୟନାଥ ରଥ ବାହୁଡ଼ି ସାରିଛନ୍ତି । ସମାଜବାଦୀ ଚିନ୍ତା ଖାଲି ଦୁର୍ବଳ ହୋଇନାହିଁ, ତା' ସହିତ କ୍ଷତିଗ୍ରସ୍ତ ହୋଇଛି ମୂଲ୍ୟବୋଧ ।

ପ୍ରଦୀପ୍ତ ବାବୁ ଆଉ ନାହାନ୍ତି । ଜୀବନର ଅପରାହ୍ନରେ ବହୁତ କଷ୍ଟ ପାଇଛନ୍ତି । ଆଉ କାହିଁକି ରହନ୍ତେ ? ପତ୍ନୀ ଚାଲିଯାଇଛନ୍ତି ଆଗରୁ । ବାର୍ଦ୍ଧକ୍ୟର ନିଃସଙ୍ଗତା, ଶୁଶ୍ରୂଷା ଘାରିଛି । ଯିଏ ସେ ଦୁଃଖ ଭୋଗ କରିନାହିଁ, ସେ ଜାଣିପାରିବ ନାହିଁ ।

ପ୍ରଦୀପ୍ତ ବାବୁଙ୍କର ଚିତା ଜଳୁଛି ସତ୍ୟନଗର ଶ୍ମଶାନରେ । ତାଙ୍କର୍ ମରଦେହ ନା ମାନବିକ ମୂଲ୍ୟବୋଧ, କାହାର ଚିତା ଜଳୁଛି ଏବଂ ଆଲୋକିତ କରୁଛି ଆମ ଚାରିପଟରେ ଘେରି ଆସୁଥିବା ତମିସ୍ରାକୁ ?

ଆପଣଙ୍କୁ ଉତ୍ତର ପୀଢ଼ିର ପ୍ରଣାମ !

ooo

# ପଖଳା ସ୍ମୃତି

## (୰ ପ୍ରହ୍ଲାଦ ମଲ୍ଲିକ)

ପ୍ରହ୍ଲାଦ ମଲ୍ଲିକ ମୋର ସହପାଠୀ, ସହଯୋଦ୍ଧା ଏବଂ ବନ୍ଧୁ । ତାଙ୍କ ସ୍ତ୍ରୀ, ଶାନ୍ତି ନାରାୟଣ ବୀରବର ସାମନ୍ତ ଓ ରତ୍ନମାଳୀ ଜେମାଙ୍କର କନ୍ୟା ଭଳି । ପହଲି ସହିତ ଆତ୍ମୀୟତା ଅତି ନିବିଡ ଯାହା କେବେହେଲେ ମଳିନ ହୋଇନାହିଁ । ପାଠ ପଢ଼ିଲାବେଳେ ଯେତେବେଳେ ଅନେକଙ୍କର ସ୍ୱପ୍ନ ଥିଲା, କାମନା ଥିଲା ହାକିମ ହେବାପାଇଁ, ସେତେବେଳେ ପହଲି ସ୍ୱପ୍ନ ଦେଖୁଥିଲେ ଏକ ନୂତନ ଭାରତବର୍ଷ ଗଠନ କରିବାର । ସେ ସ୍ୱପ୍ନ ନିଆରା ଥିଲା । ସେ ଭାବୁଥିଲେ ତାଙ୍କ ହାତର ସ୍ପର୍ଶରେ ମହାନଦୀ, କାଠଯୋଡି, ବ୍ରାହ୍ମଣୀ କୂଆଖାଇ, ଆଉ ଡାହାଣୀ ହୋଇ ରହିବେ ନାହିଁ । ସେମାନେ ଜନନୀ ରୂପେ ଏ ମାଟିକୁ ଶସ୍ୟରେ ଭରିଦେବେ । ବିଶାଳ ଆଉ ସେମାନେ ଥମକି ହୋଇ ଠିଆ ହେବେ । ଆଉ ସୁଇଚ ଟିପିଦେଲେ ଝଲମଲ୍ କରି ଉଠିବ ସାରା ଭାରତବର୍ଷର ଇଣ୍ଡଷ୍ଟ୍ରିଆଲ ବେଲ୍ଟ । ପହଲି ସ୍ୱପ୍ନ ଦେଖୁଥିଲେ । ତାଙ୍କର ଉଦାତ୍ତ ଆହ୍ୱାନରେ ଲକ୍ଷ ଲକ୍ଷ ଯୁବକ ବାରବାଟୀର ପୃଥ୍ୱୀ ବିଦାରି ଠିଆ ହେବେ ନୂତନ ଓଡିଶା ଗଠନ ପାଇଁ ଜାଗି ଉଠିବେ ।

ପହଲି ଥିଲା ସାମାଜିକ ଓ ଅର୍ଥନୈତିକ ଦୃଷ୍ଟିରୁ ତଥାକଥିତ ପଛୁଆଶ୍ରେଣୀର । କିନ୍ତୁ ମହାଭାରତର କର୍ଣ୍ଣଙ୍କ ପରି ସେ ବିଚାରୁଥିବା କୁଳ ହେଉଛି ଦୈବର ଅଧୀନ; କିନ୍ତୁ ପୌରୁଷ ହେଉଛି ମୋର ଅଧୀନ । ସେ କଂପ୍ଲେକ୍ସ ରହିଯାଇଥିଲା ଅନେକ ପଛରେ । ପହଲି ଚାଲିଯାଇଥିଲେ ବିଶାଳ ସାମାଜିକ ଜୀବନ ଭିତରକୁ । ରାଜନୈତିକ ଆକାଶକୁ ।

ପ୍ରହ୍ଲାଦ ମଲ୍ଲିକ ଉପମନ୍ତ୍ରୀ ଥାଆନ୍ତି ବିଦ୍ୟୁତ ଓ ଜଳସେଚନ ବିଭାଗର ୧୯୬୧ ମସିହାରେ । କିନ୍ତୁ ବିଭାଗ ଥାଏ ତାର ପୂର୍ଣ୍ଣ କର୍ତ୍ତୃତ୍ୱରେ । ବିରଳା କାଗଜକଳ ବିଦ୍ୟୁତ୍ ଦେୟ ବାକି ରହିଥାଏ । କୋର୍ଟରେ ଆବେଦନ କରି ବିରଳାଙ୍କ ପରି ଶିଳ୍ପପତିଙ୍କର ଆକାଉଣ୍ଟ ଅଚଳ କରିଦେଲା ପହଲି । ଆଜିକାଲି ତ ଅନେକ ଶିଳ୍ପପତି ଟାଟା, ବିର୍ଲା, ଡାଲମିଆଁ ଇତ୍ୟାଦି ଇତ୍ୟାଦି । ମାତ୍ର ସେ ସମୟରେ ଘନଶ୍ୟାମ ଦାସ ବିରଳା ଭାରତୀୟ ରାଜନୀତିର ସବୁଠାରୁ ପ୍ରଭାବଶାଳୀ ଖେଳାଳି । ତାଙ୍କ ବ୍ୟାଙ୍କ ଆକାଉଣ୍ଟ ଅଚଳ, ପୁଣି ଜଣେ ଓଡିଶାର ଉପମନ୍ତ୍ରୀଙ୍କଦ୍ୱାରା । ଷ୍ଟକ୍ ଏକ୍ସଚେଞ୍ଜରେ ବ୍ୟାପ୍ତ ହୋଇଗଲା ।

ପହଲି ଓ ମୁଁ ଭିନ୍ନ ଦଳର ସଭ୍ୟ ଥିଲୁ । ମତାନ୍ତର ପ୍ରଚୁର । ମାତ୍ର ମନାନ୍ତର ଓ ଦିନେ ବି ହୋଇନାହିଁ । ସେ ଓ ମୁଁ ଯେମିତି ଗୋଟିଏ ପରିବାରର । ମନେ ପଡୁଛି ଜରୁରୀକାଳୀନ ପରିସ୍ଥିତି । ପହଲି ବନ୍ଦୀ କେଉଁଝର ଜେଲରେ । ତାଙ୍କୁ ଦେଖା କରିବାକୁ ଯାଇଥାନ୍ତି ଶାନ୍ତି, ତାଙ୍କ ସ୍ତ୍ରୀ । ତାଙ୍କର କଣ ଗୋଟେ ସମସ୍ୟା ଥାଏ କଟକ ଜିଲ୍ଲାପାଳଙ୍କ ପାଖରେ । ଜେଲରେ ସାକ୍ଷାତ ସମୟରେ ପହଲି ଶାନ୍ତିଙ୍କୁ କହିଲେ ତମେ ଯାଅ, ଗିରିଜାକୁ ସାକ୍ଷାତ୍ କରିବ । ଯାହା କରିବା କଥା ସେ ହିଁ କରିବ । ଉପସ୍ଥିତ ଗୁଇନ୍ଦା ଅଫିସରମାନେ ଜଣକ ସାକ୍ଷାତ ସମୟର ବାର୍ତ୍ତାଳାପର ସନ୍ଦେଶ ତତ୍‌କ୍ଷଣାତ୍ ମୋତେ ଦେଇଥିଲେ । ଶାନ୍ତି ମୋ ଘରେ ପହଞ୍ଚିଲା ବେଳକୁ କଲେକ୍ଟର ପାଲ୍ ଓ ଏସ୍‌ପି ଆପାରାଓ ମୋ ଘରେ ଚା ପାନ କରୁଛନ୍ତି । ମୁଁ ପରିଚୟ କରାଇଦେଲି । ପହଲି ମନ୍ତ୍ରୀ କି ବନ୍ଦୀ ନୁହନ୍ତି । ସେ ମୋର ବନ୍ଧୁ ଓ ଶାନ୍ତି ମୋର ବନ୍ଧୁପତ୍ନୀ । ରାଜନୀତି ବ୍ୟକ୍ତିଗତ ସଂପର୍କକୁ ସ୍ପର୍ଶ କରିବା ଉଚିତ ନୁହେଁ ।

ଅନେକ ଘଟଣା, ଅନେକ ଅଶ୍ରୁ ପଖଳା ସ୍ମୃତି । ପଞ୍ଚାୟତ ନିର୍ବାଚନର ଆଦ୍ୟ ପରୀକ୍ଷା । ପହଲି ମନ୍ତ୍ରୀ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ । ପହଲି ତାଙ୍କର ଘନିଷ୍ଠ ସହଯୋଗୀ ଡାହାଣ ହାତ । ନିର୍ବାଚିତ କୌଣସି ଏକ ଜିଲ୍ଲାର ପ୍ରତିନିଧି ମାନେ ଆସି ହାଜର । କୌଣସି ଏକ ଅଫିସରଙ୍କ ବଦଳି ପାଇଁ । ବଦଳିର କାରଣ ଅଫିସର ଜଣକ ପାର୍ଟି ପ୍ରତି ତାଙ୍କର ସହଯୋଗ ଦେଉ ନାହାନ୍ତି ।

ମାତ୍ର ନିଜ ବିଭାଗର ଅଫିସରଙ୍କୁ ଏତେ ସୁନ୍ଦର ଭାବେ ପହଲି ସମର୍ଥନ କଲେ ଓ ନିଜ ସମର୍ଥକମାନଙ୍କୁ ମଧ୍ୟ ଉତ୍‌କ୍ଷିପ୍ତ କଲେ ନାହିଁ, ତାହା ଦେଖିବାର ଥିଲା ।

ଲେଖିବସିଲେ ଅନେକ ସ୍ମୃତି ଉଙ୍କିମାରେ । ଢେଉ ପରି । କେତେ କଥା, କେତେ ସୁଖଦୁଃଖର କାହାଣୀ । ବର୍ତ୍ତମାନର ଲୋକ ପ୍ରତିନିଧି ଓ ସେ ବେଳର ପହଲି ପ୍ରିୟ ପହଲିବାବୁ ସମସ୍ତଙ୍କର ଘର ମଣିଷ । ବର୍ତ୍ତମାନର ରାଜନୀତି ଖାଲି ଖବରକାଗଜରେ । ପାଞ୍ଚ ଛଟା ଖବରକାଗଜ ପଢ଼ିବା, ମାନେ ଛଅଟା ପ୍ରକାଶିତ ରାଶିଫଳ ଦେଖିବା ସହ ସମାନ । ମନ ଉଦ୍‌ବିଗ୍ନ ରହିବାର ସମ୍ଭାବନା, ଧନପ୍ରାପ୍ତିର ଆଶା, ବନ୍ଧୁମାନଙ୍କ ସହ ମତଭେଦର ଆଶଙ୍କା । ଆଜି ମିଶ୍ରଫଳ ଠିକ୍ ସେଇପରି ଆଜିର ରାଜନୀତି ।

ତେବେ ଗୋଟାଏ କଥା ଠିକ୍ । ଏକାଠି ମିଶି ସମାଜ ପାଇଁ ସମୂହ ସ୍ୱାର୍ଥ ପାଇଁ ଲଢ଼େଇ କରିଥିଲେ । ମତପାର୍ଥକ୍ୟ ସତ୍ତ୍ୱେ ବ୍ୟକ୍ତିଗତ ବନ୍ଧୁତା ଅତୁଟ ରହେ । ଗୋଟାଏ କିଛି ଦୁର୍ବଳତା ରହିଯାଏ ପରସ୍ପର ପ୍ରତି । ଯେମିତି ଥିଲା ସ୍ୱର୍ଗତ ବନମାଳୀ ପଟ୍ଟନାୟକ, ସ୍ୱର୍ଗତ ନବକୃଷ୍ଣ ଚୌଧୁରୀଙ୍କ ପ୍ରତି, ଯେମିତି ଥିଲା ସ୍ୱର୍ଗତ ହରେକୃଷ୍ଣ ମହତାବଙ୍କର, ମାନସିଂଙ୍କ ପ୍ରତି, ଯେମିତି ଥିଲା ନବକୃଷ୍ଣ ଚୌଧୁରୀଙ୍କର ସ୍ୱର୍ଗତ ବନମାଳୀ ଦାସଙ୍କ ପ୍ରତି । ଦଳର ପ୍ରାଚୀର ଭାଙ୍ଗି ପଡୁଥିଲା ଏକଦା ସହଯୋଦ୍ଧୃତ୍ୱର ସ୍ମୃତିରେ । ପ୍ରହ୍ଲାଦ ମଲ୍ଲିକ ଥିଲେ ସେଇପରି ଜଣେ । ସେ ଆଉ ନାହାନ୍ତି । କେହି ରହିବେ ନାହିଁ ରହିବ ଖାଲି ରହ ମଖଲା

ଦିନେ ବି ହୋଇନାହିଁ । ସେ ଓ ମୁଁ ଯେମିତି ଗୋଟିଏ ପରିବାରର । ମନେ ପଡୁଛି
ଜରୁରୀକାଳୀନ ପରିସ୍ଥିତି । ପହଲି ବନ୍ଦୀ କେଉଁଝର ଜେଲରେ । ତାଙ୍କୁ ଦେଖା କରିବାକୁ

# ପ୍ରଥିତଯଶା ମନସ୍ୱୀର ମହାଯାତ୍ରା

## (୰ ପ୍ରଫୁଲ୍ଲ କୁମାର ପତି)

ଯାତ୍ରା ସମ୍ବଲପୁରରୁ ଭୁବନେଶ୍ୱର ନୁହେଁ, ଯାତ୍ରା ବହୁ ଦୂରକୁ, ଯେଉଁ ଯାତ୍ରାରୁ କେହି କେବେ ଫେରି ନାହାନ୍ତି ।

''ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ
ଲଂଘି ଭୀଷଣ ଗିରି ସମୁଦ୍ର ବକ୍ଷ''

ସଲିଟାରୀ ରିପର୍ (ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ-ଅନୁବାଦ) ସାର୍ ଆବୃତ୍ତି କରୁଥିଲେ ବୋଲି ପାରିବାରିକ ବଂଧୁ ଧୀରେନ ଧଳ କହୁଥିଲେ । ଜୀବନର ଶେଷ ଆବୃତ୍ତି ତାପରେ ଆକାଶ, ସମୁଦ୍ର, କାନନ ବକ୍ଷ ଭେଦକରି ଅନନ୍ତକୁ ଯାତ୍ରା । ସେ ବିହଙ୍ଗ ଆଉ ଫେରିବ ନାହିଁ ।

ଜାନୁଆରୀ ୨୧,୨୦୦୬ ମସିହା ରାତ୍ରି ଆଠଟା, କଳିଙ୍ଗ ହସ୍‌ପିଟାଲରେ ଆଖିବୁଜି ଦେଇଛନ୍ତି ପ୍ରଥିତଯଶା ମନସ୍ୱୀ ଅଧ୍ୟାପକ, ପ୍ରବାଦ ପୁରୁଷ ପ୍ରଫୁଲ୍ଲ କୁମାର ପତି । ଚିଠି ପଡିରହିଛି ଆଗରେ । ପାର୍କିନସନ ରୋଗରେ ମୁଁ ବର୍ତ୍ତମାନ ଆକ୍ରାନ୍ତ । ତେଣୁ ଜୀବନଶୈଳୀ ଉପରେ ଲେଖି ପାରିବି ନାହିଁ । ''ବୟସ, ବୟସ୍କ ଏବଂ ବାର୍ଦ୍ଧକ୍ୟ'' ଉପରେ ପୁସ୍ତକ ପ୍ରକାଶୋନ୍ମୁଖୀ, କିନ୍ତୁ ତାହାର ପ୍ରକାଶ ଦେଖିବା ଆଗରୁ ତାଙ୍କର ଜୀବନର ପ୍ରକାଶ ଅସ୍ତମିତ ହୋଇଯାଇଛି । ସେ ପାଲଟି ଯାଇଛନ୍ତି ଇତିହାସ, ଏ ଜାତିର ଗର୍ବିତ ପରମ୍ପରା ।

ଅଧ୍ୟାପକ ପ୍ରଫୁଲ୍ଲ କୁମାର ପତି ୧୯୨୧ ମସିହା ସେପ୍ଟେମ୍ବର ମାସ ୯ ତାରିଖରେ ଜନ୍ମ ଗ୍ରହଣ କରିଥିଲେ ସମ୍ବଲପୁର ଝାଡୁଆପଡାରେ । ଗୁରୁପଡ଼ା ମାଇନର ସ୍କୁଲ, ସମ୍ବଲପୁର ଜିଲ୍ଲା ସ୍କୁଲ, ରେଭେନ୍‌ସା କଲେଜ, ପାଟନା ବିଶ୍ୱବିଦ୍ୟାଳୟରେ ଶିକ୍ଷା । ସେ କେବଳ ଜଣେ କୃତୀ ଛାତ୍ର ନଥିଲେ ଥିଲେ ବିଚକ୍ଷଣ ଡିବେଟର୍ । ଚାନସେଲ୍‌ର ପ୍ରାଇଜ ଡିବେଟରେ ସଫଳ ହୋଇଥିବା ପ୍ରଫୁଲ୍ଲ ପତି ବହୁ ବର୍ଷ ପର୍ଯ୍ୟନ୍ତ ପ୍ରତିଯୋଗୀମାନଙ୍କର ଅଭିପ୍‌ସା ଏବଂ ଲକ୍ଷ୍ୟ ଭାବରେ ବିବେଚିତ ହୋଇଥିଲେ ।

ଇଂରାଜୀରେ ପ୍ରଥମଶ୍ରେଣୀରେ ଏମ୍.ଏ.ପାସ କରିବାପରେ ସେ ଅଧ୍ୟାପନାକୁ ଆପଣାର ବୃତ୍ତି ଭାବରେ ଗ୍ରହଣ କରିଥିଲେ । କାରଣ ପଢ଼ିବା ଓ ପଢ଼ାଇବା ଥିଲା ତାଙ୍କର

ନିଷ୍ଠା ଓ ଶାଣିତ, ତୀବ୍ର ବିଦ୍ରୂପରେ ଭରା ତାଙ୍କର ପଠନଶୈଳୀ ଛାତ୍ରମାନଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଥିଲା । ଏବେ ମଧ୍ୟ ରେଭେନ୍ସା କଲେଜକୁ ଗଲେ ଯେଉଁମାନଙ୍କର କଣ୍ଠସ୍ୱର ଧ୍ୱନିତ ହୁଏ କର୍ଣ୍ଣପଟରେ ସେମାନଙ୍କ ମଧ୍ୟରେ ପ୍ରଫୁଲ୍ଲ ବାବୁ ଅନ୍ୟତମ ।

ଯାଇଥିଲେ ଆମେରିକାର ମିନେସୋଟା ବିଶ୍ୱବିଦ୍ୟାଳୟରେ ଗବେଷଣା କରି ଇଂରାଜୀ ସାହିତ୍ୟରେ ପିଏଚ.ଡି ଉପାଧି ପାଇବା ପାଇଁ । ପତିଙ୍କ ପରି ଛାତ୍ରଙ୍କ ପାଇଁ ଏହି ବିଶ୍ୱବିଦ୍ୟାଳୟରେ ଜାଣିବା ପାଇଁ ଅଧିକା କିଛି ନାହିଁ । ଭାରତ ସରକାର ଏଭଳି ଛାତ୍ରଙ୍କ ଏହି ବିଶ୍ୱବିଦ୍ୟାଳୟରେ ଉଚ୍ଚ ଶିକ୍ଷା ପାଇଁ, ପଠାଇବାର କୌଣସି ଆବଶ୍ୟକତା ନଥିଲା । ମିନେସୋଟା ବିଶ୍ୱବିଦ୍ୟାଳୟ ଅଧ୍ୟାପକମାନଙ୍କର ଏଇ ଥିଲା ଉପଦେଶ ଭାରତ ସରକାରଙ୍କୁ ।

ବାପା ମୃତ୍ୟୁଞ୍ଜୟ ପତି ଏବଂ ମାଆ ରୂପବତୀ ଦେବୀଙ୍କ ଛଅ ପୁଅ ଦୁଇଟି ଝିଅଙ୍କ ମଧ୍ୟରେ ପ୍ରଫୁଲ୍ଲ ପତି ଦ୍ୱିତୀୟ ସନ୍ତାନ । ପିତୃପୁରୁଷଙ୍କ ଘର ହେଉଛି ଇବ ନଦୀକୂଳରେ ରମ୍ପେଲା ଗ୍ରାମରେ । ଓଡ଼ିଶା ମାଟିର ବହୁ କୃତୀ ସନ୍ତାନ ଏଇ ଗ୍ରାମର । ଜାତୀୟ ଜନଜୀବନର ବହୁ ବିଭାବକୁ ସେମାନେ ସମୃଦ୍ଧ କରି ଏଇ ମାଟିକୁ ଗୌରବାନ୍ୱିତ କରିଯାଇଛନ୍ତି । ସେଇ ଗାଁ ଭୂଗୋଳରୁ ଯାଇ ବର୍ତ୍ତମାନ ଇତିହାସରେ, ହୀରାକୁଦର ଅତଳ ଜଳ ଗର୍ଭରେ । ଅଧ୍ୟାପକ ପତିଙ୍କ ଜଣେ ଭାଇ ଡାକ୍ତର ଯେ ଆମେରିକାରେ ବିବାହ କରି ସେଠାରେ ରହିଯାଇଛନ୍ତି କିଛି ଦଶନ୍ଧି ତଳେ ସେ ଓଡ଼ିଶା ଆସିବା ଅବସରରେ ତାଙ୍କ ସାଙ୍ଗରେ ଦେଖା ହୋଇଥିଲା ।

ଅଧ୍ୟାପକ ପତି ଚାକିରି ଆରମ୍ଭ କରନ୍ତି ରେଭେନ୍ସା କଲେଜରୁ । ଧରଣୀଧର କଲେଜ ଏବଂ ଖଲିକୋଟ କଲେଜରେ ଅଧ୍ୟାପକ ଏବଂ ଖଲିକୋଟ କଲେଜର ଅଧ୍ୟକ୍ଷ ହେବା ପରେ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଯୋଗଦେଲେ । ୧୯୭୯ରୁ ୧୯୮୩ ମସିହା ପର୍ଯ୍ୟନ୍ତ ସେ ଓଡ଼ିଶା ପବ୍ଲିକ ସର୍ଭିସ କମିଶନରେ ସଦସ୍ୟ ଥିଲେ । ୧୯୮୩ ରୁ ୧୯୮୬ ମସିହା ପର୍ଯ୍ୟନ୍ତ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ମୋର ବ୍ୟକ୍ତିଗତ ମତ ଯେ ''ଏହି ବ୍ୟକ୍ତି ଦିଲ୍ଲୀ, କୋଲକାତା, ମୁମ୍ବାଇ, ଚେନ୍ନାଇର ବିଶ୍ୱବିଦ୍ୟାଳୟର କୁଳପତି ହେବାପାଇଁ ଯୋଗ୍ୟ ଏବଂ ତା ନକରି ତାଙ୍କ ପ୍ରତି ଅନ୍ୟାୟ କରାଯାଇଛି'' ।

କୃତୀ ଛାତ୍ର । ଆଇ.ଏ.ରେ ଓଡ଼ିଶାରେ ପ୍ରଥମ, ବି.ଏ.ରେ ଡିଷ୍ଟିଂକସନ ସହ ପ୍ରଥମ ଶ୍ରେଣୀର ଅନର୍ସ ଏବଂ ମୋର ମନେପଡୁଛି ଯେ ଏମ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ହୋଇଥିଲେ । ମୋଟା,ଚଷମା କଡରେ ତାଙ୍କର ତୀର୍ଯ୍ୟକ ଚାହାଣୀ ଭୟ ଏବଂ ଭକ୍ତି ଉଭୟ ସଂଚାର କରେ ।

"Oh, solitude where one thy charms that ages and have seen in thy face."

ସାର୍ ଆବୃତ୍ତି କରୁଛନ୍ତି ଡାକ୍ତର ଭବାନୀ ଶଙ୍କର ଦାସଙ୍କ ଅସ୍ତ୍ରୋପଚାର ପରେ । ତା'ପରେ ଦୁଇଟି ଷ୍ଟ୍ରୋକ୍ ଆଉ ତା'ପରେ ସବୁ ଶେଷ । ବିଜନତା କାହିଁ ତୋ ବେଶ ମୋହନ ଆବୃତ୍ତି କରୁ କରୁ ସେ ଚାଲିଯାଇଛନ୍ତି ଅନ୍ତିମ ବିଜନତାକୁ । ପାଖରେ ଅଛନ୍ତି ପୁତ୍ରମାନେ ଏବଂ ପ୍ରିୟ ଛାତ୍ର, ଅଧ୍ୟାପକମାନେ । ଅଧ୍ୟାପକ କମରୁଦ୍ଦିନ୍ ତ ମୂଳରୁ ରହିଛନ୍ତି ଶେଷ ପର୍ଯ୍ୟନ୍ତ ।

ଭୁବନେଶ୍ୱରରୁ ସମ୍ବଲପୁର ସାକ୍ଷୀପଡା ଘର । ଅସୁମାରି ଭିଡ । କେତେ ଛାତ୍ରଙ୍କୁ ପଢ଼ାଇ ନାହାନ୍ତି ସିଏ । ସାର୍, ମନମୋହନ ବାବୁଙ୍କ ଉପରେ ଆପଣଙ୍କର ମତ କଅଣ ? ଆମକୁ ଛାତ୍ରମାନେ ଭକ୍ତି କରନ୍ତି, ତାଙ୍କୁ ପୂଜା କରନ୍ତି,ସେଇ ଭକ୍ତିର ଉଛୁଳା ସୁଅ । ରାଜ ଘାଟରେ ଚିତା ଜଳୁଛି । ମହାନଦୀ ଚହଲି ଉଠୁଛି ।

ମନେ ପଡୁଛି ଗଂଗାଧର ମେହେରଙ୍କ ଉପରେ ୟୁନିଭର୍ସିର ପୁସ୍ତକ ପ୍ରକାଶନ, ନୃସିଂହ ଗୁରୁ, ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ସ୍ମୃତିସଭା ପରେ ସାର୍ଙ୍କର ଚିଠି । ସାରଙ୍କର ବିଦ୍ରୋହୀ ଛାତ୍ର ଥିଲି ମୁଁ । କେତେ ଗଣ୍ଡଗୋଳ, କେତେ ଘଟଣା, ସୀମା ଅନ୍ଦୋଳନ, ଦଙ୍କେଇ ଘାଇ, ଜବାହରଲାଲଙ୍କ ରେଭେନ୍ସା କଲେଜ ଆଗମନ । ସବୁଥିରେ ତାଙ୍କର ସମର୍ଥନ, ସହାନୁଭୂତି ଓ ଶୁଭେଚ୍ଛା ମିଳିଛି ।

ଏକ ଉନ୍ନତ ସମୃଦ୍ଧିଶାଳୀ ଓଡିଶା ଗଠନ ଥିଲା ତାଙ୍କର ସ୍ୱପ୍ନ । ଆଞ୍ଚଳିକତା ତାଙ୍କୁ ଛୁଇଁନଥିଲା । ସେ ଥିଲେ ଭାରତୀୟ, ସେ ଥିଲେ ଉତ୍କଳୀୟ, ସେ ଥିଲେ ଏ ଜାତିର ଗୌରବ । ଏ ଜାତିକୁ ମଧ୍ୟ ଗର୍ବିତ କରିଯାଇଛନ୍ତି ।

□□□

# ‘ସମାଜ’ର ଗାଲମାଧବ

## (୰ ଫକୀର ଚରଣ ଦାସ)

ଫକୀରବାବୁଙ୍କର ବାହୁଡ଼ିବାର ସାତ ବର୍ଷ ହୋଇଗଲାଣି । ଅନେକ ଦିନ ପରେ ହଠାତ୍ ତାଙ୍କୁ ମନେ ପକେଇବା ଦେଖି ଆଚମ୍ବିତ ହେଲି । କାରଣ ଫକୀର ଦାସ ଯେମିତି ମଣିଷ ଥିଲେ ତାଙ୍କ ପାଇଁ ସ୍ମରଣିକା ସ୍ମୃତିସ୍ତମ୍ଭ, ସବୁ କିମିତି ଅଖାଡୁଆ ଲାଗେ । କାରଣ ସେ ସବୁଠାରୁ ବଡ଼ ପବ୍ଲିସିଟି ମାଧମରେ ଥାଇ ମଧ ପବ୍ଲିସିଟି ଆଦୌ ଖୋଜୁ ନଥିଲେ । କେଉଟ ମାଛଧରେ, କଙ୍କଡା ଖାଏ । ଫକୀର ବାବୁ ‘ସମାଜ’ର ମ୍ୟାନେଜର । ଖବର କାଗଜର ସବୁ ଟିକିନିଖି ଦେଖିବା ତାଙ୍କର କାମ । କାଗଜ ଆସିବାଠାରୁ କାଗଜ ବିକ୍ରୀ ପର୍ଯ୍ୟନ୍ତ । କିନ୍ତୁ ନିଜେ ଫକୀର ଦାସେ ପ୍ରଚାର ବିମୁଖ । କ୍ୱଚିଦ୍ ତାଙ୍କୁ ଖବରକାଗଜର ପୃଷ୍ଠା ମଣ୍ଡନ କରିବା ଦେଖାଯାଏ । ସେସବୁ ସେ ରାଧାନାଥ ବାବୁଙ୍କୁ ଛାଡ଼ି ଦେଇଛନ୍ତି ଯେପରି ଏବଂ ସେଇଥିରେ ତାଙ୍କର ଅପାର ଆନନ୍ଦ, ଦୁଃଖ ଟିକିଏ ନାହିଁ । ଅନେକ ଲୋକ ଥାଆନ୍ତି, ସେମାନଙ୍କର ଖୋଇବାରେ ଆନନ୍ଦ । ନିଜେ କିଛି ଖାଆନ୍ତି ନାହିଁ । ଫକୀର ବାବୁ ସେଇପରି ଏକ ମଣିଷ ଥିଲେ । ‘ସମାଜ’ ପରିବାରର ସେ । ସମସ୍ତେ ତାଙ୍କୁ ଭକ୍ତି କରନ୍ତି, କିଛି କିଛି ଭୟ ମଧ କରନ୍ତି । କାରଣ ତାଙ୍କ ଆଖିରୁ କିଛି ଖସିଯିବା ସମ୍ଭବ ନୁହେଁ । ଆଖି ଯେମିତି ପାକଳ ହୋଇଛି । ରାଧାନାଥବାବୁ ଓ ଫକୀର ଦାସ ଯେପରି ପରସ୍ପର କମ୍ପ୍ଲିମେଣ୍ଟାରୀ । ରାଧାନାଥ ବାବୁ ସଭା ସମିତିକୁ ଯାଆନ୍ତି, ବିଭିନ୍ନ ଲୋକଙ୍କୁ ଭେଟନ୍ତି । ତାଙ୍କୁ ଭେଟନ୍ତି ଅନେକ ଲୋକ । କେତେ ପ୍ରକାର କାର୍ଯ୍ୟ । ଫକୀରବାବୁ କୁଆଡେ ଯାଆନ୍ତି ନାହିଁ । କ୍ୱଚିଦ୍ ସଭା ସମିତିରେ ତାଙ୍କର ଦର୍ଶନ ମିଳେ । ରାଧାନାଥ ବାବୁ କ୍ଷଣକୋପୀ । ଟିକକରେ ରାଗିଯାଆନ୍ତି । ଏବଂ ପର ମୁହୂର୍ତ୍ତରେ ପୁଣି ସବୁ ଶାନ୍ତ ପଡିଯାଏ । ଫକୀରବାବୁଙ୍କୁ କେହି ରାଗିବା ଦେଖି ନାହାନ୍ତି । ସବୁବେଳେ ସେଇ ପାନଖିଆ ଦାନ୍ତ କେବଳ । ଖୁବ୍ ଗୁରୁତର କଥା ହେଲେ କେବଳ ମୁହଁଟା ଗମ୍ଭୀର ହୋଇଯାଏ । ରାଧାନାଥବାବୁ ଖର୍ଚ୍ଚୀ । ଉଦାର ହୃଦୟ । ଯିଏ ମାଗିଲା, ଯେଉଁଥି ପାଇଁ ମାଗିଲା ଦେଇଦେବେ । ଫକୀରବାବୁ ସେଥିରେ

କେବେ ଆପତ୍ତି କରନ୍ତି ନାହିଁ । ବାବୁଜୀ ଦେଉଛନ୍ତି । ସେଥିରେ ମୋର କ'ଣ କହିବାର ଅଛି ? କିନ୍ତୁ ତାଙ୍କଠାରୁ ପଇସାଟିଏ ଝଡିବା କାଠିକର ପାଠ । 'ସମାଜ' ପାଇଁ ଆପଣ ଏତେ ଆୟ କରୁଛନ୍ତି କିନ୍ତୁ...... । ମୁଁ କିଏ ? ପଇସା ଦେବା ଲୋକ ସେ । ଉପର ମହଲାରେ । ମୁଁ ନେବା ଲୋକ, ତଳ ମହଲାରେ । ସେଇ ଡିସ୍‌ଥାର୍ମିଙ୍ଗ ହସ । କ'ଣ କରିବ ମଣିଷ ? ହସିବ ନା ରାଗିବ ?

ଏଇ ଶତାବ୍ଦୀର ପ୍ରାରମ୍ଭ କାଳ । ଫକୀର ଚରଣ ଜନ୍ମ ହୋଇଥିଲେ ୧୯୦୬ ମସିହାରେ ଚାନ୍ଦବାଲି ବ୍ଲକର କୋଳିଆଡିଆ ଗାଁରେ । ଦରିଦ୍ର ପରିବାର । ବହୁ କଷ୍ଟରେ କନିକା ସ୍କୁଲରେ ପାଠ ପଢୁଥିଲେ । କିନ୍ତୁ ଦୁଃଖିନୀ କନିକାର ରାଜା ସ୍କୁଲକୁ ବନ୍ଦ କରିଦେଲେ । ପିଲାଏ ପାଠ ପଢ଼ିଲେ ସବୁ ଗଣ୍ଡଗୋଳ ! ଗାନ୍ଧୀ, ସ୍ୱାଧୀନତା ଆନ୍ଦୋଳନ ସବୁ ଅନର୍ଥର ମୂଳ ହେଉଛି ପାଠପଢ଼ା । ତେଣୁ ସ୍କୁଲ ବନ୍ଦ କରିଦେଲେ ସବୁ ସଇଲା । ମୂଳୁ ମାଇଲେ ଯିବ ସରି ।

ଫକୀର ଚରଣ ଆସିଲେ ଭଦ୍ରକ । ମାଟ୍ରିକ ପାଶ କଲେ ସେଇଠୁ । ରାଜା ଓ ରାଜ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ ବସା ବାନ୍ଧିଥିଲା ସେଇଦିନୁ । ଫକୀର ଚରଣ କଟକ ଆସିଲେ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ପାଖକୁ । ମୁକ୍ତିଆରୀ କରିବା ପାଇଁ । କିନ୍ତୁ ଏଇଠି ଦେଖାହେଲା ଗାନ୍ଧିଜୀଙ୍କ ସହିତ । ଜୀବନର ଗତିପଥ ବଦଳିଗଲା । ସେ ଗାନ୍ଧିଜୀଙ୍କର ସ୍ୱେଚ୍ଛାସେବୀ ଦଳରେ ଯୋଗଦେଲେ । ପରବର୍ତ୍ତୀ କାଳରେ ଗୋପବନ୍ଧୁ ଦାସଙ୍କ ସହିତ ତାଙ୍କର ସାକ୍ଷାତ ହୁଏ ଏବଂ ସମାଜ କାଗଜରେ ସେ ଯୋଗ ଦିଅନ୍ତି ।

ଆସେ ୧୯୪୨ ମସିହା । ମହାଯଜ୍ଞରେ ବଳିର ପ୍ରୟୋଜନ । ଯଦି ଭାରତବର୍ଷ ମୁକ୍ତ ନହୁଏ, ତା'ହେଲେ 'ସମାଜ' କା' ପାଇଁ ? ଫକୀର ଚରଣ ଯୋଗଦେଲେ ସ୍ୱାଧୀନତା ସଂଗ୍ରାମରେ । କାରାବରଣ କଲେ । କାରାଗାରରୁ ମୁକ୍ତି ପରେ କିଛି କାଳ ପାଇଁ କନିକାରେ କାର୍ଯ୍ୟ । କନିକା ପ୍ରଜା ଆନ୍ଦୋଳନର ମହାରଥୀ ଚକ୍ରଧର ମହାପାତ୍ରଙ୍କ ସହିତ ସହଯୋଦ୍ଧୃତ୍ୱ । ଏବଂ ପୁଣି ୧୯୫୨ ରେ 'ସମାଜ'କୁ ପ୍ରତ୍ୟାବର୍ତ୍ତନ ।

ସେଇ 'ସମାଜ'ରେ ହିଁ ଜୀବନର ବାକି ସବୁ ସମୟ । ବୟସ ବଢ଼ିଛି । ଜରା ଗ୍ରାସକରିଛି । କିନ୍ତୁ ଫକୀର ଚରଣ 'ସମାଜ' ଛଡା ଆଉ କିଛି ଚିନ୍ତା କରି ନାହାନ୍ତି । କେବଳ ରିଲିଫ୍ କାମ ପଡିଲେ ଫକୀରବାବୁଙ୍କୁ ଟିକିଏ ବ୍ୟତିକ୍ରମ ଦେଖାଯାଏ । ରିଲିଫ କାମ ପାଇଁ ତାଙ୍କର ସ୍ୱତନ୍ତ୍ର ଆଗ୍ରହ ।

ଫକୀର ଚରଣ ନିରଳସ ଥିଲେ । ପାନ ଖାଇବା ବୋଧହୁଏ ତାଙ୍କର ଏକମାତ୍ର ବଦଭ୍ୟାସ ଥିଲା । ଶ୍ୱାସରୋଗ ଗ୍ରାସ କରିଥିଲା । ତଥାପି ପାନ ଛାଡ଼ି ପାରି ନଥିଲେ ।

ଛାଡ଼ିବାକୁ କହିଲେ କହନ୍ତି ଆଉ ଜୀବନରେ କ'ଣ ଅଛି କି ? ଏଇ ଗୋଟିଏ ତ ବଦଭ୍ୟାସ । ତା' ଛଡ଼ା କେତେ ଦିନ କି ଆଉ ?

ସେଦିନ 'ସମାଜ'ର କ'ଣ ଗୋଟାଏ କାର୍ଯ୍ୟକ୍ରମ ଥାଏ । ହରେକୃଷ୍ଣ ମହତାବ ଆସିଥାନ୍ତି । ବେଶ୍ ଚାଞ୍ଚଲ୍ୟ ଖେଳିଥାଏ । ଫଟୋ ଉଠୁଥାଏ ଘନ ଘନ । ଫକୀର ବାବୁ କିଛି ବ୍ୟସ୍ତ ଆଉ ଏକ କାମରେ । ବିଶ୍ୱନାଥ ଦାସଙ୍କୁ କିମିତି ତୁରନ୍ତ ଅଣାଯିବ ସେଠିକୁ । ଗାଡ଼ି ପରେ ଗାଡ଼ି ଯାଉଛି । ଯାହାହେଉ ବିଶ୍ୱନାଥ ବାବୁ ଆସି ପହଞ୍ଚିଲେ । ତିନି ମହାରଥୀଙ୍କର ଫଟୋ ଉଠାଗଲା । ଫକୀରବାବୁ ଆଶ୍ୱସ୍ତ । ଆପଣ ଯାଉ ନାହାନ୍ତି ସେଠାକୁ ? ଫଟୋ ଉଠାହେବ । ଫକୀରବାବୁ ଯିବାକୁ ନାରାଜ । ବୋଧହୁଏ ତାଙ୍କୁ ଜବରଦସ୍ତ ନିଆଗଲା ସେଠାକୁ ବୋଲି ଟିକିଏ ଟିକିଏ ମନେ ପଡ଼ୁଚି ।

ଫକୀର ଦାସ କର୍ମଯୋଗୀ । କିନ୍ତୁ ଗପ ବେଶ୍ କରନ୍ତି । କିନ୍ତୁ ତାଙ୍କର ସୀମିତ ଲୋକଙ୍କ ସହିତ ଗପ ଜମେ । ଯେପରି ଜଣେ ଥିଲେ ଚାର୍ଟାଡ ଆକାଉଁଟାଣ୍ଟ ହୃଦାନନ୍ଦ ନାୟକ ।

ଫକୀର ଦାସ ଆଉ ନାହାନ୍ତି । କେହି ରହିବେ ନାହିଁ ଏହା ଧ୍ରୁବ ସତ୍ୟ । କିନ୍ତୁ ଫକୀର ବାବୁଙ୍କୁ ଯେଉଁମାନେ ଜାଣନ୍ତି ସେମାନେ ବଞ୍ଚିଥିବା ପର୍ଯ୍ୟନ୍ତ ହେଜିବେ ତାଙ୍କୁ ।

□□□

## 'ଫୁଟା ଡଙ୍ଗା'ର ଶେଷ ଯାତ୍ରା

### [ *ଫତୁରାନନ୍ଦ (ଏ ରାମଚନ୍ଦ୍ର ମିଶ୍ର)* ]

'ଫୁଟା ଡଙ୍ଗା' ଟି ଭାସି ଭାସି ତଥାପି ଚାଲିଥିଲା ଜୀବନର ସ୍ରୁଅରେ । ଡଙ୍ଗାଟି ଫୁଟି ଯାଇଥିଲା ଅନେକ ଦିନରୁ । ପାଣି ପଶି ପଶି ଆସୁଥିଲା ଡଙ୍ଗା ଭିତରକୁ । ତଥାପି ଡଙ୍ଗା ଭାସି ଭାସି ଯାଉଥିଲା । ଏବଂ ଆନନ୍ଦ ଦେଉଥିଲା ଅନେକଙ୍କୁ । କିନ୍ତୁ ଆଉ ଏହା ଯାଇପାରିଲା ନାହିଁ ଆଗକୁ । କେତେ ଦିନ ତିଷ୍ଠି ରହିପାରିବ ପ୍ରତିକୂଳ ପରିସ୍ଥିତିରେ । ସବୁ ଥିଲା ତାଙ୍କର । କିନ୍ତୁ କିଛି ନଥିଲା ତାଙ୍କ ପାଇଁ । ସବୁଥିରୁ ବଞ୍ଚିତ ହୋଇ ସେ ନିଜେ ଯନ୍ତ୍ରଣାରେ ସଢୁଥିଲେ । ଲେଖନୀ କିନ୍ତୁ ଆନନ୍ଦ ଦେଉଥିଲା ପାଠକଙ୍କୁ । ବର୍ତ୍ତିକା ନିଜେ ଜଳି ଅନ୍ୟକୁ ଆଲୋକିତ କଲାପରି ଜୀବନ ତମାମ ସେ ନିଜେ ଜଳି ଆଲୋକିତ କରି ଯାଇଛନ୍ତି ଅଗଣିତ ପାଠକଙ୍କୁ ।

ଏଇ ହେଉଛି 'ଫତୁରାନନ୍ଦ'ଙ୍କ କାହାଣୀ । ତାଙ୍କୁ ଏଇ ନାଁରେ ସମସ୍ତେ ଚିହ୍ନନ୍ତି । କିନ୍ତୁ ଏଇ ନାଁ ତାଙ୍କ ସହିତ ଯୋଡି ହୋଇଯିବା ପୂର୍ବରୁ ସେ ଅନ୍ୟ ବହୁ ଛଦ୍ମ ନାମରେ ପରିଚିତ ଥିଲେ । ଏଇ 'ଫତୁରାନନ୍ଦ' ନାମକ ଛଦ୍ମନାମଟା କିନ୍ତୁ ଲାଖିଗଲା ଚିରକାଳ ପାଇଁ । ଅନ୍ୟ ସବୁ ଛଦ୍ମନାମ ହଜିଗଲା କାଳର କରାଳ ଗର୍ଭରେ । ଠିକ୍ ଯେମିତି ହଜି ଯାଇଥିଲା ତାଙ୍କର ନିଜର ପିତୃଦତ୍ତ ନାମ ରାମଚନ୍ଦ୍ର ମିଶ୍ର । ନଭେମ୍ବର ଛ' ତାରିଖ ମଧ୍ୟାହ୍ନର ଠିକ୍ ପରେ ପରେ ତାଙ୍କର ପରଲୋକ ହୋଇଗଲା 'ଡଗର' ପ୍ରେସ ଗୃହରେ, ପିଠାପୁରରେ । ଏହା ହିଁ ତାଙ୍କର ଆଶ୍ରୟସ୍ଥଳୀ ଥିଲା ବିଗତ ବହୁବର୍ଷଧରି । ଝାଞ୍ଜିରୀମଙ୍ଗଳା, ତାରାଚାନ୍ଦ ପାଟଣାରେ ତାଙ୍କର ଅପର୍ଯ୍ୟାପ୍ତ ଭୂସମ୍ପତ୍ତି । କିନ୍ତୁ ସେଥିରୁ ସେ ବଞ୍ଚିତ । ବୟସ ହୋଇଥିଲା ୮୫ ବର୍ଷ । ଜୀବନ ତମାମ ଘୋର ଯନ୍ତ୍ରଣା ଭୋଗିଛନ୍ତି ଏବଂ ଜୀବନର ଶେଷ ଅଧ୍ୟାୟରେ ସବୁ ଥାଇ ମଧ୍ୟ ଗଣ୍ଡିଏ ଭଲ ଖାଇବା, ଟିକିଏ ଭଲ ଶୁଶ୍ରୂଷା ପାଇବାରୁ ସେ ବଞ୍ଚିତ ହୋଇଛନ୍ତି । ସମଗ୍ର ସମାଜ ହସିଛି ତାଙ୍କର କଠୋର ଯନ୍ତ୍ରଣାର ବିନିମୟରେ । ମାତ୍ର କିଛି ବନ୍ଧୁଙ୍କୁ ଛାଡିଦେଲେ ଅନ୍ୟମାନେ ଟିକିଏ ଆହା ! ଟିକିଏ ଅଶ୍ୱାସନାର ବାଣୀ

ଶୁଣାଇ ନାହାନ୍ତି । ବଢ଼ାଇ ନାହାନ୍ତି ଆପଣାର ସହାନୁଭୂତିର ହାତ । ତା' ହୋଇଥିଲେ ଏଇ ପ୍ରତିଭା ଆଉରି ବଞ୍ଚିଥାନ୍ତା ଅନେକ ଦିନ ଏବଂ ଦେଇପାରିଥାନ୍ତା ମନକୁ ଖାଦ୍ୟ ।

୧୯୧୫ ମସିହା ଜୁନ୍ ୧ ତାରିଖରେ ସେ ଏଇ କଟକ ସହରରେ ଜନ୍ମଗ୍ରହଣ କରିଥିଲେ । ପିତା ବିଦ୍ୟାଧର ମିଶ୍ର ଓ ମାଆ ସୁଭଦ୍ରା ଦେବୀଙ୍କର ସେ ଥିଲେ ଏକମାତ୍ର ସନ୍ତାନ । ୧୯୩୧ ମସିହାରେ ରେଭେନ୍‌ସା କଲେଜିଏଟରୁ ମାଟ୍ରିକ୍ ପାଶ୍ କରନ୍ତି । ଡାକ୍ତର ହେବା ପାଇଁ କଟକ ମେଡିକାଲ ସ୍କୁଲରେ ନାଁ ଲେଖାନ୍ତି । ହସର ମୁଣି ସେତିକିବେଳୁ ଫିଟିଯାଏ । ଆନାଟୋମି କ୍ଲାସରେ ଅଧ୍ୟାପକ ଆସି କହନ୍ତି କ'ଣ ଏପର୍ଯ୍ୟନ୍ତ ତମର ସ୍ପେସିମେନ୍ (ଅର୍ଥାତ୍ ଏକ ଶବ)ର ମୁଣ୍ଡ ଗଣ୍ଡି ଅଲଗା ହୋଇ ନାହିଁ । ଶବ ଉପରେ ପରୀକ୍ଷାର ଶେଷ ପର୍ଯ୍ୟାୟରେ ଏଇଆ ଘଟେ । ତା'ପର ଦିନ ରାମଚନ୍ଦ୍ର ମିଶ୍ର ଏକ କରତରେ ମୁଣ୍ଡଠାରୁ ଗଣ୍ଡିକୁ କାଟି ଅଲଗା କରିଦେଇ ଶିକ୍ଷକଙ୍କ ପାଖରେ ହାଜର୍ । ସାର୍ ମୁଣ୍ଡଠାରୁ ଗଣ୍ଡି ଅଲଗା ହୋଇଯାଇଛି । ଶିକ୍ଷକ ହସିବେ ନା କାନ୍ଦିବେ । ଡାକ୍ତରୀ ପଢ଼ି ଚିକିତ୍ସକ ହେବାର ସ୍ୱପ୍ନ ଉଭାଇଗଲା । ଦୁରାରୋଧ ରୋଗର ଶିକାର ହେଲେ । ସେତେବେଳେ ଏଇ ରୋଗ ଓ ତାର ଚିକିତ୍ସା ଉଭୟ ଥିଲା ଭୟାବହ । ରାମଚନ୍ଦ୍ର ମିଶ୍ରଙ୍କର ପ୍ରଥମ ଲେଖା ପ୍ରକାଶ ପାଏ 'ଡଗର'ରେ । 'କବି ଲଢ଼େଇ' ଥିଲା ତାର ନାମ । ରାମଚନ୍ଦ୍ର ମିଶ୍ର ସେଇଦିନଠାରୁ 'ଡଗର'କୁ ଆଦରି ନେଇଥିଲେ ଏବଂ ଡଗର ପ୍ରେସରେ ହିଁ ଜୀବନ କଟାଇଦେଲେ । ଡଗର ଭୁବନେଶ୍ୱରକୁ ଉଠିଗଲା ପରେ ସେଇ ଘର ହିଁ ଥିଲା ତାଙ୍କର ଆଶ୍ରୟ, କର୍ମକ୍ଷେତ୍ର । ଜୀବନର ସବୁ ସ୍ୱାଦରୁ ବଞ୍ଚିତ ରାମଚନ୍ଦ୍ର ମିଶ୍ର ଧରିଲେ କଲମ । ନିଜେ କାନ୍ଦିବେ କିନ୍ତୁ ଅନ୍ୟମାନେ ହସିବେ । ଟିକିଏ ହସ, ଟିକିଏ ନିର୍ଯ୍ୟାତନାରୁ ମୁକ୍ତି ମଣିଷକୁ ଆଣିଦେବ ଅପାର ଆନନ୍ଦ ।

ହାତ ଅଚଳ ହୋଇଯାଇଥିଲା । ଚକ୍ଷୁର ଶକ୍ତି ହଜି ଯାଇଥିଲା । ଦେହ ଅବଶ ହୋଇ ଆସୁଥିଲା । କିନ୍ତୁ ତାଙ୍କ ମୁହଁରେ ହସ ଲିଭି ନଥିଲା, ଲିଭି ନଥିଲା କର୍ମକ୍ଲାନ୍ତ ମଣିଷକୁ ଟିକିଏ ଆନନ୍ଦ ଦେବାର ଉଦ୍ୟମ । ସେଇ ହସ ଲିଭିଗଲା ।

ତାଙ୍କ କଲମରୁ ଝରୁଛି ଅସଂଖ୍ୟ ହାସ୍ୟରସାତ୍ମକ ଗଳ୍ପ, କବିତା, ଉପନ୍ୟାସ । ତାଙ୍କର ହାତରେ ଥିଲା ଅମୃତର ସ୍ପର୍ଶ । ସେଇ ହାତ ଆଙ୍କିପାରୁଥିଲା ବ୍ୟଙ୍ଗ ଚିତ୍ର ମଧ୍ୟ । 'ନାକଟା ଚିତ୍ରକର' ଫତୁରାନନ୍ଦଙ୍କର ପ୍ରଥମ ଓ ଶେଷ ଉପନ୍ୟାସ ତାଙ୍କର ଅସଂଖ୍ୟ ଗଳ୍ପ ସବୁଶ୍ରେଣୀର ପାଠକମାନଙ୍କ ମଧ୍ୟରେ ସୃଷ୍ଟି କରିଚି ଆନନ୍ଦ । ତେଣେ ଲେଖକ ଯନ୍ତ୍ରଣାର ଯୂପକାଠ ଭିତରକୁ ଚାଲିଯାଇଛନ୍ତି ଧୀରେ ଧୀରେ । ବିବାହ କରି ନାହାନ୍ତି । ନାରୀ କହିଲେ କେବଳ ମୁଁ ମୋର ମା'ଙ୍କୁ ବୁଝେ । ଅନ୍ୟ କୌଣସି ସ୍ତ୍ରୀର କଥା ମୁଁ ଚିନ୍ତାକରି ନାହିଁ ।

ସେଇଯୋଗୁଁ ଫତୁରାନନ୍ଦଙ୍କ ଗଳ୍ପମାନଙ୍କରେ ନାରୀର ସ୍ଥାନ ସୀମିତ । କେତେକ ସ୍ଥାନରେ ଚିତ୍ରଶିଳ୍ପୀର ସ୍ତ୍ରୀ ବା ଏଇପରି ଭାବରେ ନାରୀଙ୍କ ସ୍ଥାନ ତାଙ୍କର ଗଳ୍ପମାନଙ୍କରେ ।

ଖାଲି ଲେଖୁନାହାନ୍ତି ହାସ୍ୟରସ ପାଇଁ । ସମାଜରୁ ହ୍ୟୁମର୍ ବା ହାସ୍ୟରସ ହଜିଯାଉଛି । ହାସ୍ୟରସ ନଥିଲେ ଜୀବନ ନୀରସ, ଶୁଷ୍କ ହୋଇଯାଏ । ଜୀବନର ସ୍ୱାଦ ରହେନା । ଆକବରଙ୍କ ସଭାରେ ବୀରବଲ୍, ରାଜାଙ୍କ ସଭାରେ ଯଦୁମଣିଙ୍କର ସ୍ଥାନ କଳନା କଲେ ଏହା ଅନୁଭବ କରିହେବ । ହାସ୍ୟରସର ନିର୍ଦ୍ଦୋଷ, ନିଷ୍ପାପ, ନିଜ ବିରୁଦ୍ଧରେ ଲେଖା ପଢ଼ି ଆନନ୍ଦ ଉପଭୋଗ କରାଯାଇପାରେ । 'ଫତୁରାନନ୍ଦ' ଆପଣାର ସଞ୍ଚିତ ଅର୍ଥ, ଆପଣାର ଆୱାର୍ଡ ଲବ୍ଧ ଧନକୁ ଅର୍ପଣ କରି ସୃଷ୍ଟି କରିଥିଲେ ହାସ୍ୟ ବିକାଶ କେନ୍ଦ୍ର, 'ସରସ ସାହିତ୍ୟ ସମିତି' ପ୍ରଭୃତି ଅନୁଷ୍ଠାନ ।

'ଫତୁରାନନ୍ଦ' ଭାନିସିଙ୍ଗ ଟ୍ରାଇବ୍ ବା ଉଭାଇ ଯାଉଥିବା ଗୋଷ୍ଠୀର ପ୍ରତିନିଧି । ଦେବ ମହାପାତ୍ର ଏବେ ଯାଇଛନ୍ତି । ଚୌଧୁରୀ ହେମକାନ୍ତ ମିଶ୍ର ମଧ୍ୟ । ଦେଶ ଦରିଦ୍ର ହୋଇଯାଉଛି । ହାସ୍ୟରସ ହୋଇଯାଇଛି ଅନାଥ । 'ଫତୁରାନନ୍ଦ' ସ୍ମୃତ ହୋଇ ରହିବେ ଚିରକାଳ ଓଡ଼ିଆ ସାହିତ୍ୟର ଆକାଶରେ । ଓଡ଼ିଆ ସାହିତ୍ୟର ପାଠକ ହେଜିବେ ଫତୁରାନନ୍ଦଙ୍କୁ । ଜୀବନ ଯେତିକି ଶୁଷ୍କ, ନୀରସ ହୋଇଯିବ, କ୍ଳାନ୍ତ ମଣିଷ ସେତେବେଳେ ଖୋଜିବ ଫତୁରାନନ୍ଦଙ୍କୁ, ଟିକିଏ ହସ ପାଇଁ ।

❑❑❑

# ରଙ୍ଗମଞ୍ଚ ଓ ରାଜପଥର ଅଭିନେତା

*(୰ ବଲରାଜ ସାହନୀ)*

ମୋର ମୃତ୍ୟୁ ପରେ କୌଣସି କ୍ରିୟା ହେବ ନାହିଁ । ମୋର ଶବକୁ ନେଇଯିବେ ବମ୍ବେର ଶ୍ରମଜୀବୀମାନେ । ହାତରେ ସେମାନଙ୍କର ଥିବ ଲାଲ ପତାକା । ମୋର ଶବାଧାର ପାଖରେ ରଖିଦେବ ଲେନିନଙ୍କର ଜୀବନୀ ଓ ଲେଖାର ଖଣ୍ଡିଏ ପୁସ୍ତକ । ଏବଂ ମୋର ଶବ ପାଖରେ ସେମାନେ ଗାଇବେ ସମବେତ ସଙ୍ଗୀତ ଉଠ ଜାଗ ଭୋକୀ ଶୋଷୀ ବନ୍ଦୀ ଟୋଳ ତୋର ଲାଲ ତଲୱାର, ମୁକତି ପାଗଳ ମଜଦୁର ତୁହ୍ ଅନଶନ ଅତ୍ୟାଚାର.... କମ୍ୟୁନିଷ୍ଟ ଇଣ୍ଟରନେସନାଲର ସଙ୍ଗୀତ । ଏ କୌଣସି ପେସାଦାର ବିପ୍ଳବୀର ଉକ୍ତି ନୁହେଁ । ଏ ଶେଷ-ଇଚ୍ଛା ହେଉଛି ଭାରତୀୟ ଚଳଚ୍ଚିତ୍ର ଜଗତର ଅନ୍ୟତମ ନାୟକ ବଲରାଜ ସାହନୀଙ୍କର ।

ବଲରାଜ ସାହନୀଙ୍କ ଘର ପଞ୍ଜାବରେ । ଛାତ୍ର ଜୀବନରୁ ହିଁ ସେ ବିପ୍ଳବର ସ୍ୱପ୍ନ ଦେଖିଥିଲେ । ବିପ୍ଳବ ଭାରତର ମୁକ୍ତି ପାଇଁ, ବିପ୍ଳବ ସାମ୍ୟର ପ୍ରତିଷ୍ଠା ପାଇଁ । ପ୍ରସିଦ୍ଧ ଅକ୍ଟୋବର ବିପ୍ଳବ ଏବଂ ବିଖ୍ୟାତ ସାମ୍ୟବାଦୀ ପୂରଣ ଚନ୍ଦ୍ର ଯୋଶୀ ତାଙ୍କର ଦିଗ୍‌ବାରିଣୀ ଖୁଣ୍ଟ । ବିପ୍ଳବୀ ଭଗତ ସିଂ କାରାଗାର ଭିତରେ ଅବରୁଦ୍ଧ ଥିଲାବେଳେ ପଢ଼ିଥିଲେ ମାର୍କସବାଦୀ-ଲେନିନବାଦୀ ଦର୍ଶନ ଏବଂ ଜାଣିଥିଲେ ଯେ ସନ୍ତ୍ରାସବାଦ ନୁହେଁ ବିପ୍ଳବ ହିଁ ଆଣିଦେଇ ପାରିବ ମୁକ୍ତି । ଭଗତ ସିଂ ଆପଣାର ଡାଏରୀରେ ଏହା ଉଲ୍ଲେଖ କରିଯାଇଛନ୍ତି ଏବଂ ଦେଶବାସୀଙ୍କୁ ସେଇଥିରେ ଉଦ୍‌ବୁଦ୍ଧ ହେବା ପାଇଁ ନିର୍ଦ୍ଦେଶ ଦେଇ ଯାଇଛନ୍ତି । ବଲରାଜ ଆସିଥିଲେ ନିଖିଳ ଭାରତ ଛାତ୍ର ସଂଘ, ଭାରତୀୟ ଗଣନାଟ୍ୟ ସଂଘର ପ୍ରଭାବରେ ।

ବଲରାଜ ପାଠ ପଢ଼ିଲେ । ଇଂରାଜୀରେ ଏମ.ଏ. ପାଶ୍ କଲେ । ପରେ ବଙ୍ଗଳାରେ ମଧ୍ୟ ଏମ.ଏ.ପାଶ୍ କଲେ । ବିଶ୍ୱଭାରତୀରେ ଶିକ୍ଷକ ହେଲେ ଇଂରାଜୀ ସାହିତ୍ୟର । ଦ୍ୱିତୀୟ ମହାଯୁଦ୍ଧର ପ୍ରାକ୍‌କାଳରେ ଇଂଲଣ୍ଡ ଗଲେ । ଯୁଦ୍ଧ ଆରମ୍ଭ ହୁଏ । ବଲରାଜ ବି.ବି.ସି.ରେ କମେଣ୍ଟେଟର ଭାବରେ କାର୍ଯ୍ୟ କରନ୍ତି । ଫାସିବାଦର ପରାଜୟ ସମଗ୍ର ମାନବ ଜାତିର

କାମ୍ୟ । ଥରେ ଯଦି ପୃଥିବୀ ବୁଡ଼ିଯିବ ଫାସିବାଦର କାଳରାତ୍ରିରେ ତା'ହେଲେ ସେ ରାତି ପାହିବାକୁ ବହୁତ ଡେରି ହୋଇଯିବ । ଇମିତି ତ ପୃଥିବୀକୁ ବହୁମୂଲ୍ୟ ଦେବାକୁ ପଡିଲାଣି, କାଳରାତ୍ରିରେ ବୁଡିଗଲେ ମୂଲ୍ୟ ବା ବଳିଦାନର ଇୟତ୍ତା ରହିବ ନାହିଁ । ବଳରାଜ ଆନ୍ତର୍ଜାତିକ ଖ୍ୟାତି ଲାଭ କଲେ ଆପଣାର କାର୍ଯ୍ୟ ପାଇଁ ।

ଭାରତକୁ ଫେରି ଗଣନାଟ୍ୟ ସଂଘର ସଂଗଠନରେ ବ୍ୟାପୃତ ହେଲେ । ଅଭିନୟ ଥିଲା ପିଲାଦିନର ନିଶା । ତେଣୁ ଷ୍ଟ୍ରିଟ ଥିଏଟରଠାରୁ ଆରମ୍ଭ କରି ଚଳଚ୍ଚିତ୍ର ପର୍ଯ୍ୟନ୍ତ ସବୁଥିରେ ତାଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଦେଖିବାକୁ ମିଳିଲା । ଭାରତ-ସୋଭିଏତ୍ ମୈତ୍ରୀ ଗଠନ ପାଇଁ ମଧ୍ୟ ସେ ସକ୍ରିୟ ଭୂମିକା ଗ୍ରହଣ କଲେ । ଡାକ୍ତର ଏ.ଭି. ବାଲିଗାଙ୍କ ନେତୃତ୍ୱରେ ଭାରତ-ସୋଭିଏଟ ମୈତ୍ରୀ ସଂସଦ ଏକ ବିଶାଳ ସଂଗଠନରେ ପରିଣତ ହେଲା ।

ବଳରାଜ ବମ୍ବେ ସହରକୁ ହିଁ ତାଙ୍କର କର୍ମକେନ୍ଦ୍ର ଭାବରେ ଗ୍ରହଣ କରି ନେଇଥିଲେ । କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର ଅଫିସ ମଧ୍ୟ ସେଇ ବମ୍ବେ ସହରରେ ଥାଏ । ସେଇଠି ବଳରାଜ ଦେଖିଛନ୍ତି ବମ୍ବେ ଲୁଗାକଳ ଶ୍ରମିକଙ୍କର ସଂଗଠନ ଏବଂ ଆନ୍ଦୋଳନ । ପ୍ରସିଦ୍ଧ ଗିର୍ନି କାମଗାର ୟୁନିଅନ ତାଙ୍କର କର୍ମକ୍ଷେତ୍ର ହୋଇଛି । ଦେଖିଛନ୍ତି ପ୍ରସିଦ୍ଧ ନୌ ବିଦ୍ରୋହ ଏବଂ ନୌ ବିଦ୍ରୋହ ପ୍ରତି ବମ୍ବେ ଶ୍ରମଜୀବୀ ଜନସାଧାରଣଙ୍କର ସମର୍ଥନ ଏବଂ ବଳିଦାନ । ବ୍ୟାରିକେଡ୍ ଆରପଟରେ ଶ୍ରମଜୀବୀ ମଣିଷ ସହିତ ଯେଉଁ ଖ୍ୟାତନାମା ବୁଦ୍ଧିଜୀବୀମାନେ ଠିଆ ହୋଇଥିଲେ ସେମାନଙ୍କ ମଧ୍ୟରେ ବଳରାଜ ଅନ୍ୟତମ ।

ବଳରାଜ ରାଜନୈତିକ ଜୀବନରେ ସକ୍ରିୟ ଭୂମିକା ଗ୍ରହଣ କରନ୍ତି । ୧୯୪୮ ମସିହାରେ କମ୍ୟୁନିଷ୍ଟ ପାର୍ଟି ଯେଉଁ ଦୁଃସାହସିକ ଭୂମିକା ଗ୍ରହଣ କରେ ଆପଣାର ରାଜନୈତିକ ଗୁରୁ ପି.ସି.ଯୋଶୀଙ୍କ ସହ ବଳରାଜ ସାହନୀ ମଧ୍ୟ ସେଇ ପାର୍ଟି ନୀତି ସହିତ ଏକମତ ହୁଅନ୍ତି ନାହିଁ । କିନ୍ତୁ ଶୃଙ୍ଖଳିତ ସୈନିକ ଭାବରେ କାର୍ଯ୍ୟ କରିଯାଆନ୍ତି । ତାଙ୍କୁ କାରାରୁଦ୍ଧ କରାଯାଏ ।

କାରାଗାରରେ ଥିଲାବେଳେ ତାଙ୍କୁ ଏକ ଚଳଚିତ୍ରରେ ଭୂମିକା ଗ୍ରହଣ ପାଇଁ ଅନୁରୋଧ ଆସେ । ଏହି କଣ୍ଟ୍ରାକ୍ଟ ଗ୍ରହଣ ନ କରିବା ପାଇଁ ପାର୍ଟି ନେତୃତ୍ୱ ମନା କରେ । ଆଗରୁ ତ ବଳରାଜ ପାର୍ଟି ନୀତି ସହିତ ଏକମତ ନଥିଲେ । ପୁଣି ଅଭିନୟ ଥିଲା ତାଙ୍କର ନିଶା । ଏଣେ ପାର୍ଟି ଦୁଃସାହସିକ ନୀତିର ଘୂର୍ଣ୍ଣିରେ ବିପର୍ଯ୍ୟସ୍ତ ହୋଇଯାଇଥିଲା । ବଳରାଜ ଏକ ବଣ୍ଡରେ ଦସ୍ତଖତ କରି ଜେଲଖାନାରୁ ବାହାରକୁ ଆସିଲେ ଚଳଚ୍ଚିତ୍ରରେ ଅଭିନୟ

କରିବା ପାଇଁ । ତା'ପରେ ବୋଧହୁଏ ସେ ଆଉ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇନାହାନ୍ତି । କିନ୍ତୁ ସମାଜବାଦୀ ଚିନ୍ତାଧାରା ପରିହାର କରି ନାହାନ୍ତି ।

ବଲରାଜ ସିନେମା ଜଗତରଏକ ସ୍ୱତନ୍ତ୍ର ଅଭିନେତା ଥିଲେ । ସେଥିପାଇଁ ସେ ଏକ ସ୍ୱତନ୍ତ୍ର ସମ୍ମାନ ମଧ୍ୟ ପାଉଥିଲେ । ତାଙ୍କୁ କେହି ହାଲୁକା ଭାବରେ ଗ୍ରହଣ କରି ନାହାନ୍ତି । ଯେପରି ଅନ୍ୟ ଅଭିନେତା ଅଭିନେତ୍ରୀମାନଙ୍କୁ ବିଚାର କରାଯାଏ । ବଲରାଜ ସାହନୀ, ଦୁର୍ଗା ଖୋଟେ, ପୃଥ୍ୱୀରାଜ କପୁର ସେ ଧାରାର ଅଭିନେତା ନଥିଲେ । ସେମାନେ ହେଉଛନ୍ତି ବ୍ୟତିକ୍ରମ ।

ଗମ୍ଭୀର ଚେହେରା । କିନ୍ତୁ କଥା ଜମାନ୍ତି ବି ବେଶ୍ । ବାରବାଟୀ ଷ୍ଟାଡିଅମ୍ ପଡ଼ିଆରେ ଭାରତ-ସୋଭିଏଟ ମୈତ୍ରୀ ସମିତିର ଅଧିବେଶନ । ବଲରାଜ ମୁଖ୍ୟ ଅତିଥି । ଅନୁରୋଧ ହେଲା ଗୀତ ଗାଇବା ପାଇଁ । ବଲରାଜ ଉଚ୍ଛ୍ୱସିତ ହସ ହସି କହିଲେ ଯେ ତମର ତ ସିନେମା ସମ୍ପର୍କରେ କାଣ୍ଡଜ୍ଞାନ ମଧ୍ୟ ନାହିଁ । ମୁଁ ଗୀତ ଗାଏ, ନା ଖାଲି ପାଟି ପାକୁ ପାକୁ କରେ । ତମେ ଯେପରି ଗୀତ ଗାଇବ ମୁଁ ସେଇପରି ଗୀତ ଗାଇବି । ଆଉ ଅଭିନୟ ? ଅସମ୍ଭବ । କାରଣ ସଂଳାପ ମନେ ନାହିଁ କି ନିର୍ଦ୍ଦେଶକ ନାହାନ୍ତି । ବଲରାଜ ବସନ୍ତି ଷ୍ଟାଡିଅମର ସବୁଜ ପ୍ରାନ୍ତରରେ । ଚୌକୀରେ ବସିବାକୁ ନାରାଜ । ଏ ପଡିଆ କେତେ ମୁଲାୟମ ।

ବଲରାଜ ଯାଇଥିଲେ ପୃଥିବୀର ବିଭିନ୍ନ ଦେଶକୁ । ଯୁବ ସଂଗଠନ ପାଇଁ, ଶାନ୍ତି ପାଇଁ, ମୈତ୍ରୀ ପାଇଁ । ତାଙ୍କ ସାଙ୍ଗରେ ମୋର ରହିବା ହୋଇଥିଲା ଏକାଠି ମସ୍କୋର ଷଷ୍ଠ ବିଶ୍ୱ ଯୁବ ଓ ଛାତ୍ର ଉତ୍ସବରେ । ଅନ୍ୟମାନେ ଟିକିଏ ଦୂରେଇ ରହନ୍ତି । କିନ୍ତୁ ରାଜ କପୁର ଏବଂ ବଲରାଜ ସବୁ ପ୍ରତିନିଧିଙ୍କ ସହିତ ମିଶି ରହନ୍ତି । ସମାନସ୍କନ୍ଧ ହୋଇ । ବଲରାଜ ଓଡିଶା ଆସିଛନ୍ତି ଅନେକ ଥର । ଥରେ ସମ୍ବଲପୁରକୁ ଆସିଲାବେଳେ ତାଙ୍କୁ ଧମକ୍ ଦିଆଯାଇଥିଲା ଯେ ସେ ଯଦି ଉକ୍ତ ସମ୍ମିଳନୀରେ ଯୋଗଦେବେ ତା'ହେଲେ ତାଙ୍କ ମୁଣ୍ଡ କାଟି ଦିଆଯିବ । ସେ ସମ୍ମିଳନୀ ସ୍ଥଗିତ ହୋଇଗଲା ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର କିଶୋର ଚନ୍ଦ୍ର ପଟ୍ଟନାୟକଙ୍କ ପରଲୋକ ଯୋଗୁଁ । ବଲରାଜ କିନ୍ତୁ ଆସିଲେ ସେ ସମ୍ମିଳନୀକୁ । ଧମକରେ ଡରିଯିବା ଲୋକ ସେ ନୁହନ୍ତି । ଆସିବା ଆଗରୁ ଖବରକାଗଜରେ ଲେଖିଥିଲେ ଯେ ମୋତେ ଏଇପରି ଧମକ ଦିଆଯାଇଛି ଏବଂ ସେଇଯୋଗୁଁ ହିଁ ଯାଉଛି ।

ବଲରାଜ ବନ୍ଧୁବତ୍ସଳ । ଚିଠି ଦେଲେ ଉତ୍ତର ଦିଅନ୍ତି । ଦେଖାହେଲେ ଗଳ୍ପ କରନ୍ତି । ଥରେ ମୁଁ ତାଙ୍କୁ କହିଲି ଯେ ଆପଣ ଏକ ଚଳଚ୍ଚିତ୍ର ଅଭିନେତା ଅଭିନେତ୍ରୀମାନଙ୍କର ପ୍ରତିନିଧି ଦଳକୁ ନେଇ ଓଡିଶା ଆସୁ ନାହାନ୍ତି । ସେ ହସି ହସି କହିଲେ ଯେ ବନ୍ଧୁ ଏତେ ଜାଣିବା

ସତ୍ତ୍ୱେ ତମେ ବି ସେଇ ଚଳଚ୍ଚିତ୍ର ଅଭିନେତା-ଅଭିନେତ୍ରୀମାନଙ୍କର ଚକ୍କରରେ ଫସିଯାଇଛ ! ତମେ କ'ଣ ଜାଣନି ସେମାନଙ୍କ ଦର୍ଶନ, ସେମାନଙ୍କର ସାମାଜିକ ଦୃଷ୍ଟିକୋଣ, ଜାଣିନ ସେମାନଙ୍କର ନିକିଟିକୁ, କାହିଁରେ ସେମାନେ ତଉଲ କରନ୍ତି ଜୀବନକୁ । ମୁଁ ପଚାରିଲି ଆପଣ ଯେ... ସଙ୍ଗେ ସଙ୍ଗେ ଉତ୍ତର ଆସିଲା ବ୍ୟତିକ୍ରମ ନିୟମକୁ ହିଁ ପ୍ରମାଣିତ କରେ ।

ବଲରାଜ ବିପତ୍ନୀକ ହୋଇଥିଲେ କମ୍ ବୟସରେ । ତାଙ୍କର ଦ୍ୱିତୀୟ ସ୍ତ୍ରୀ ହେଉଛନ୍ତି ଶ୍ରୀ ବାତ୍ସାୟନଙ୍କର ପ୍ରଥମ ସ୍ତ୍ରୀ । ପୁଅ ପରୀକ୍ଷିତ ଚଳଚ୍ଚିତ୍ର ଜଗତରେ । ବଲରାଜଙ୍କ ବୟସ ହୋଇ ଆସୁଥିଲା । ସେ ଜାଣିଥିଲେ ଯେ ଚଳଚ୍ଚିତ୍ରରେ ତାଙ୍କର ଜୀବନ ସରି ସରି ଆସୁଚି । କିନ୍ତୁ ଜୀବନ ଦୀପ ଯେ ସରି ମଧ୍ୟ ଯାଉଛି ଏକଥା କିଏ ଜାଣିଥିଲା ? ଦୋ ବିଘା ଜମିନ୍, ସୀମା, ଏକ ଫୁଲ ଦୋ ମାଲି, କୁନ୍ଦନ, ଅଦାଲତ ପ୍ରଭୃତି ଚଳଚ୍ଚିତ୍ର କେବଳ ତାଙ୍କର ଅଭିନୟର ସାଫଲ୍ୟ ନୁହେଁ । ଏକ ଦିଗ୍‌ଦର୍ଶନ ମଧ୍ୟ ।

ବଲରାଜ ପ୍ରସ୍ତୁତ ହେଉଥିଲେ ଯିବାପାଇଁ ସୁଟିଙ୍ଗକୁ । କିନ୍ତୁ ଅନ୍ୟ କେଉଁଠି ଯେ ସୁଟିଙ୍ଗ ପାଇଁ ଡାକରା ଆସିଲାଣି ସେ ଜାଣି ନଥିଲେ । ତାଙ୍କର ମୃତ୍ୟୁ କିମିତି ଏକ ଚମକ ସୃଷ୍ଟିକଲା ମନରେ ? ବଲରାଜ କେବେ ବୁଢ଼ା ହୋଇଗଲେ ଯେ ମୃତ୍ୟୁର ଡାକରା ଆସିଗଲା ?

କିନ୍ତୁ କାଳ କୌଣସି ନିୟମକୁ ମାନେ ନାହିଁ ।

❑❑❑

# ମଥା ନତକରେ ଇତିହାସ

*(ଵ ବନମାଳୀ ଦାସ)*

ଫେବୃୟାରୀ ୨୬ ତରିଖ, ୨୦୦୭ ମସିହା ମଧରାତ୍ରି ଅତିକ୍ରାନ୍ତ । ରାତି ଦୁଇଟା ଅଠଚାଳିଶ ମିନିଟ, ରାତ୍ରି ପାହିବାକୁ ଅଳ୍ପ ସମୟ ଅଛି । ଇତିହାସ ଥମ୍ କରି ଠିଆହେଲା ମଥା ନତକରି । ଗଡଜାତ ଆନ୍ଦୋଳନର ପ୍ରବାଦ ପୁରୁଷ, ସ୍ୱାଧୀନତା ଆନ୍ଦୋଳନର ମହାରଥୀ, ପ୍ରସିଦ୍ଧ ସାମ୍ୟବାଦୀ ଚିନ୍ତକ, ଓଡିଶା ବିଧାନ ସଭାର ପ୍ରାକ୍ତନ ସଭ୍ୟ ବନମାଳୀ ଦାସ ଆଖିବୁଜି ଦେଇଛନ୍ତି ଚିରଦିନ ପାଇଁ । ଗଲା କିଛି ବର୍ଷ ହେବ ସେ କ୍ୟାନ୍‌ସର ରୋଗରେ ପୀଡିତ ଥିଲେ । କିନ୍ତୁ ଆପଣାର ପ୍ରଚଣ୍ଡ ମନୋବଳ ଯୋଗୁଁ ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସକ୍ଷମ ଥିଲେ । ଗଲା ଦୁଇଦିନ ହେଲା ସେ କୋମାରେ ଥିଲେ ଏବଂ ସେଇ ଅବସ୍ଥାରେ ହିଁ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଛି ।

ଅନ୍ଧାରିମୂଳକ ଗଡଜାତ ପ୍ରଜା ଆନ୍ଦୋଳନର ବୋଧହୁଏ ଆଉ ଜଣେ ପ୍ରବାଦ ପୁରୁଷ ବୀର ବୈଷ୍ଣବ ପଟ୍ଟନାୟକ ଜୀବିତ ଅଛନ୍ତି । ଅନ୍ୟମାନେ ବାହୁଡି ସାରିଛନ୍ତି । ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ରାଧାନାଥ ରଥ, କୈଳାଶ ମହାନ୍ତି, ଶରତ ଚନ୍ଦ୍ର ଦାସ, ଗିରିଶ ରାୟ, ବ୍ରଜ ପଟ୍ଟନାୟକ, ପବିତ୍ର ମୋହନ ପ୍ରଧାନ, ବ୍ରଜକିଶୋର ଧଳ, ମହେଶ୍ୱର ସୁବାହୁ ସିଂହ, ଯୁଧିଷ୍ଠିର ମିଶ୍ର, ଦୟାନନ୍ଦ ଶତପଥୀ, ମୂଷା ମଲିକ, ଶ୍ରୀକାନ୍ତ ରାଉତ, ପ୍ରସନ୍ନ କୁମାର ଦାସ, ସମସ୍ତେ ଆଜି ଇତିହାସର ପୃଷ୍ଠାରେ । ବନମାଳୀ ଦାସ ଆଜି ସେଇ ତାଲିକାରେ ।

ଓଡ଼ିଶାର ଗଡ଼ଜାତବାସୀଙ୍କର ସଂଗ୍ରାମ ଥିଲା ଦ୍ୱିବିଧ- ରାଜସାହୀ ବିରୁଦ୍ଧରେ ସଂଗ୍ରାମ ଏବଂ ରାଜସାହୀର ପୃଷ୍ଠପୋଷକ ଇଂରେଜ ସରକାର ବିରୁଦ୍ଧରେ ସଂଗ୍ରାମ । ବନମାଳୀ ଦାସ ଆପଣାର ସ୍କୁଲ ଛାତ୍ର ଜୀବନରୁ ସେଇ ସଂଗ୍ରାମ ସହ ଜଡିତ ହୋଇଯାଇଥିଲେ ଏବଂ ମାଟ୍ରିକ୍ ପରୀକ୍ଷା ହଲ୍‌ରୁ ସିଧା ଯାଇଥିଲେ ପ୍ରଜାମଣ୍ଡଳ ଆନ୍ଦୋଳନକୁ । ପାଠ ପଢ଼ିବା ଇତି ହୋଇଥିଲା ମାଟ୍ରିକ୍ ପରୀକ୍ଷା ପରେ । ଯଦିଓ ସେ ମାଟ୍ରିକ୍ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲେ । ସଂଗ୍ରାମର ପୀଠରେ ତା'ପରେ କଟିଛି ଜୀବନ । ବ୍ରିଟିଶ୍ ସରକାର ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିବା ଅପରାଧରେ ସେ ଅଭିଯୁକ୍ତ ହୁଅନ୍ତି ଏବଂ ଅନୁଗୋଳ ଜେଲ୍‌ରେ କନିଷ୍ଠତମ ବନ୍ଦୀ ହିସାବରେ ଦୁଇବର୍ଷ କଟାନ୍ତି ।

ଓଡିଶାର ରାଜନୈତିକ ବନ୍ଦୀମାନଙ୍କ ଭିତରେ ସେ ଏକମାତ୍ର ବ୍ୟକ୍ତି ଯିଏ ରାୟପୁର ଜେଲରେ ସେଲୁଲିଆର ବନ୍ଦୀ ଭାବରେ ବନ୍ଦୀ ଥିଲେ । କୋଇଲାରେ ଲେଖୁଥିଲେ ଜେଲ୍‌ର କାନ୍ଥରେ ଯାହା ମନକୁ ଆସୁଥିଲା । ତା'ପରଦିନ ତାକୁ ପୋଛି ଲିଭାଇ ପୁଣି ଲେଖୁଥିଲେ । କାରଣ ନା ଦିଆଯାଇଥିଲା କଲମ, ନା ଦିଆଯାଇଥିଲା କାଗଜ ।

ରାଜସାହୀ ବିରୁଦ୍ଧରେ ସମସ୍ତ ସଂଗ୍ରାମର ସେ ଥିଲେ ନାୟକ । ବିପ୍ଳବ ଚୌଧୁରୀ ତାଲିମ ଦେଇଥିଲେ ସାମରିକ ବିଦ୍ୟା କିଛି ଯୁବକଙ୍କୁ । ରାଜସାହୀ କିଛି ଲୋକଙ୍କୁ ଲଗାଇଥିଲା ଅନ୍ତର୍ଯୁଦ୍ଧ ପାଇଁ । ସେଇ ଆଦିବାସୀମାନେ ଥିଲେ ସଶସ୍ତ୍ର । ଆରମ୍ଭ ହେଲା ସଂଘର୍ଷ । ଯାହାର ପରିଣତି ସ୍ୱରୂପ ନୀଳଗିରିର ମିଶ୍ରଣ ହେଲା ଓଡ଼ିଶା ସହିତ ।

ଇତିହାସ ଜୟଗାନ କରେ ଦେଶ ମିଶ୍ରଣର । କିନ୍ତୁ ଗଡ଼ଜାତ ମିଶ୍ରଣର ବହୁ ପୂର୍ବରୁ ଯେ ନୀଳଗିରି ଗଡଜାତର ମିଶ୍ରଣ ହୋଇଥିଲା ଓଡିଶା ପ୍ରଦେଶ ସହିତ ଏକଥା କୁହାଯାଏନା । ଏହି ମିଶ୍ରଣର ନାୟକମାନଙ୍କ ମଧ୍ୟରୁ ବୈଦ୍ୟନାଥ ରଥ, ଗୁରୁଚରଣ ପଟ୍ଟନାୟକ ଜୀବିତ । ବାକି ସମସ୍ତେ ଗଲେଣି ।

ଭାରତ ସ୍ୱାଧୀନ ହେଲା । ଗଡଜାତମାନଙ୍କର ମିଶ୍ରଣ ହେଲା; କିନ୍ତୁ ଲୋକ ପାଇଲେ କ'ଣ ? ସଂଗ୍ରାମ ଚାଲୁ ରହିଲା । ବନମାଳୀ ଦାସ ବନ୍ଦୀ ହେଲେ । ଦିନେ ବନ୍ଦୀ ପଳାୟନ କରେ ଜେଲ୍‌ର କାନ୍ଥ ଡେଇଁ । କିନ୍ତୁ ସାହାଯ୍ୟ କରନ୍ତି ଜେଲର ଏବଂ ୱାର୍ଡରମାନେ । ବିଚିତ୍ର ଏଇ ବନମାଳୀ ଦାସ । ଜେଲ୍‌ର ପାଚିରି ଡେଇଁ ପଳାତକ ଖେଦି ଚାଲେ ଗ୍ରାମକୁ ଗ୍ରାମ । ଅସୁସ୍ଥ ହୋଇ ପଡନ୍ତି ଏବଂ ତାଙ୍କୁ ଖଟିଆରେ ବୋହି ଯେଉଁମାନେ ନିଅନ୍ତି ତାଙ୍କ ଭିତରେ ଥାଆନ୍ତି ତାଙ୍କର ପତ୍ନୀ ଯାମିନୀ ଦାସ (ବୋଷ) ।

ପୁଣି ବନ୍ଦୀ ହୁଅନ୍ତି ସେ । ପ୍ରଥମେ ବାଲେଶ୍ୱର ଜେଲ ଏବଂ ପରେ କଟକ ଜେଲ । ଜେଲ ପରିଦର୍ଶନ ପାଇଁ ଯାଇ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ, ପରେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଯାଆନ୍ତି ନାହିଁ ୧୫ ନମ୍ବର ୱାର୍ଡକୁ, ସଙ୍କୋଚରେ । ସହଯୋଦ୍ଧା ବନମାଳୀ, ବୈଷ୍ଣବ, ବ୍ରଜ ପରା ସେଇଠି ଅଛନ୍ତି । କିମିତି ଯିବେ ଦେଖା କରିବାକୁ ?

ମହତାବ ବାବୁ ଜେଲ୍ ବହିରେ ଲେଖନ୍ତି All facilities should be given to Sri Banamali Das but with a note of caution. Any facility can be utilised against you by him. ବନମାଳୀ ବାବୁଙ୍କ ପ୍ରତି ଶ୍ରଦ୍ଧା ଓ ଭୟର ଏହା ପ୍ରତୀକ ମାତ୍ର ।

ବନମାଳୀ ବାବୁ ନେତୃତ୍ୱ ନିଅନ୍ତି ତିନୋଟି ଦୀର୍ଘ ଅନଶନର । ସେଥିରୁ ଗୋଟିଏ ଥିଲା ଦୀର୍ଘ ୫୭ ଦିନର ଅନଶନ । ବନମାଳୀବାବୁ ନିଜେ ପାର୍ଟି ନୀତିର (ରଣଦିଭେ

ଲାଇନ ନାମରେ ଯାହା ଖ୍ୟାତ) ବିରୋଧୀ । ସକାଳ ବେଳା ପାର୍ଟି ଜେନେରାଲ ବଡ଼ିରେ ସେ ପାର୍ଟି ନୀତିର ପ୍ରବକ୍ତା ଏବଂ ଉପରବେଳା ଉଚ୍ଚ କମିଟିରେ (ଯାହାର ସିଏ ସଭ୍ୟ) ପାର୍ଟି ନୀତିର ବିରୋଧ ଜେଲଖାନା ଭିତରକୁ ପାର୍ଟି ସାହିତ୍ୟ, ଦଲିଲ ଯୋଗାଣର ସେ ଅନ୍ୟତମ ନାୟକ । ଠିକ୍ ସେଇପରି ପାର୍ଟି କେନ୍ଦ୍ରକୁ ସାମଗ୍ରୀ ଏବଂ ଅର୍ଥ ଯୋଗାଣରେ ମଧ୍ୟ ସିଦ୍ଧହସ୍ତ । ସେଇଯୋଗୁଁ ଓ୍ୱାର୍ଡ ଖାନତଲାସି ପରେ କର୍ତ୍ତୃପକ୍ଷ ରିପୋର୍ଟ ପାଇଲେ ଯେ ଏକ ସମାନ୍ତରାଳ ସରକାର ସେମାନେ ସୃଷ୍ଟି କରିଛନ୍ତି ଜେଲ୍ ଭିତରେ । ସେତିକିବେଳେ ଜେଲ୍‌ରୁ ପଳାୟନ ପାଇଁ ସବୁ ପ୍ରସ୍ତୁତି କରି ସାରିଥିଲେ ବୈଷ୍ଣବ ଓ ବନମାଳୀ । କଟକ ଜେଲ୍ ସହର ମଝିରେ, ସେଠାରୁ କାନ୍ଥ ଡେଇଁ ପଳାଇବା ଖୁବ୍ କଠିନ । ତଥାପି ସବୁ ଆୟୋଜନ ଚୂଡ଼ାନ୍ତ ହୋଇ ସାରିଥିଲା । ନାୟକ ବନମାଳୀ ଦାସ, ବୈଷ୍ଣବ ପଟ୍ଟନାୟକ । କାର୍ଯ୍ୟକାରୀ ହେଲା ନାହିଁ ଶେଷ ମୁହୂର୍ତ୍ତରେ । କାରଣ ସ୍ୱତନ୍ତ୍ର ।

ବନମାଳୀ ଦାସ ବିଧାନସଭାକୁ ନିର୍ବାଚିତ ହୁଅନ୍ତି ଏବଂ ଶ୍ରେଷ୍ଠ ବିଧାୟକ ଭାବରେ ମାନ୍ୟତା ଲାଭ କରନ୍ତି ।

ବନମାଳୀ ଦାସ ପୁଣି ବନ୍ଦୀ ହୁଅନ୍ତି, ଅସୁସ୍ଥ ହୋଇପଡ଼ନ୍ତି । ଘରୋଇ ମନ୍ତ୍ରୀ ନୀଳମଣି ରାଉତରାୟ ଆଖି ଛଳଛଳ କରି କହନ୍ତି ବନମାଳୀ ପ୍ରତି ମୋର ରହିଛି ପ୍ରଚଣ୍ଡ ଦୁର୍ବଳତା କାରଣ ଆମେ ଦୁହେଁ ଏକାଠି ହାତକଡ଼ା ପକାଇ ବନ୍ଦୀ ହୋଇଛୁ ଅନେକ ଥର । ତା' ଭଳି ତ୍ୟାଗ ଆମ କାହାରି ନାହିଁ । ଲୁହ ପୋଛି ପୋଛି କହନ୍ତି ।

ବନମାଳୀ ଦାସ ଓଡ଼ିଶାରେ ସି.ପି.ଏମ୍.ର ପ୍ରତିଷ୍ଠାତା । ପରେ ତାଙ୍କ ସହିତ ମତଭେଦ । କିନ୍ତୁ ପୁଣି ଫେରନ୍ତି ସେ ସି.ପି.ଏମ୍‌କୁ । କହିଁକିର ଉତ୍ତରରେ କହନ୍ତି ଶବାଧାର ଉପରେ ଲାଲଝଣ୍ଡାର ଘୋଡ଼ଣୀର କାମନା ଯୋଗୁଁ ।

ବନମାଳୀ ଦାସ ଶାଣିତ ଏବଂ ହାସ୍ୟରସିକ । ସମାଜର ସବୁ ସ୍ତରର ବ୍ୟକ୍ତିଙ୍କ ସହିତ ସେ ବଂଧୁତା କରିପାରନ୍ତି ଏବଂ ବ୍ୟବହାର କରିପାରନ୍ତି ସେମାନଙ୍କୁ ସାମାଜିକ କଲ୍ୟାଣ ପାଇଁ ବାରବନିତା ଠାରୁ ପୁଲିସ ଅଫିସର, ଜେଲର୍‌ଠାରୁ ଆଇ.ଏ.ଏସ୍., ଆଇ.ପି.ଏସ୍. ଅଫିସରଙ୍କ ପର୍ଯ୍ୟନ୍ତ ।

ଏଇପରି ଏକ ମଣିଷ ଆଉ ନାହାନ୍ତି । ଇତିହାସ ମଥା ପିଟୁଚି ।

ଦୀର୍ଘଦିନର ସହଯୋଦ୍ଧୃ, ବଂଧୁତାର ଇତିହାସ ଆଖିକୁ ଭରି ଦେଇଛି ଲୋତକରେ ।

❑❑❑

# ମହୀୟସୀର ମହାଯାତ୍ରା

## (୰ ବସନ୍ତ କୁମାରୀ ଦେବୀ)

ନୂଆବର୍ଷ । ୨୦୦୬ ମସିହା । ନୂଆବର୍ଷକୁ ସମସ୍ତେ ସ୍ୱାଗତ କରୁଛନ୍ତି । କିନ୍ତୁ ସେ ନାହାନ୍ତି ସ୍ୱାଗତ କରିବା ପାଇଁ । ନୂଆବର୍ଷ ମନେଇବା ପାଇଁ ବସନ୍ତ ଦେବୀ ଚାଲିଗଲେଣି ସେଇଠିକୁ ଯେଉଁଠୁ କେହି କେବେ ଫେରି ନାହାନ୍ତି । ତାଙ୍କର ଝାଂଝିରୀମଂଗଳା ବାସଭବନ । ପୁଅ ବିଷ୍ଣୁପଦ, ବୋହୂ, ଭାଇ ଡାକ୍ତର ଭବାନୀ, ଡାକ୍ତର ସରଳା ସମସ୍ତେ ଘେରି ବସିଛନ୍ତି । କାଲି ରାତିରେ ଖାଇଥିଲେ । ସମସ୍ତେ ଭାବିଥିଲେ ଏଇ ଘାଟୀଟା ବି ସେ ପାରହୋଇ ଯିବେ । କିନ୍ତୁ ସକାକୁ ଡାକିଲେ ଉଠୁ ନାହାନ୍ତି । ହୃଦଯନ୍ତ୍ର ଚାଲିଛି । ସବୁ କିନ୍ତୁ ଅଚଳ ହୋଇ ଯାଇଛି । ବସନ୍ତ ଦେବୀ ଆଖିବୁଜି ଦେଇଛନ୍ତି ଚିରଦିନ ପାଇଁ ।

ସବୁଠି ତାଙ୍କର ଦେଖା ମିଳୁଥିଲା । ସମସ୍ତଙ୍କୁ ଭେଟୁଥିଲେ । ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ । ସଭାସମିତିରେ ନିଶ୍ଚିତ ଦେଖା ମିଳୁଥିଲା ତାଙ୍କୁ । କାହାର ପାଠ ପଢ଼ିବା ପାଇଁ, କାହାର ଚାକିରିଟିଏ ପାଇଁ, କାହାର ଚିକିତ୍ସା ପାଇଁ ସେ ନିବେଦନ କରୁଥିଲେ, ଦାବୀ କରୁଥିଲେ କେତେ ଲୋକଙ୍କୁ କେତେ ପିଲାଙ୍କୁ ସେ ପାଠ ପଢ଼ାଇ ନାହାନ୍ତି, ଚାକିରି ବନ୍ଦୋବସ୍ତ କରାଇ ଦେଇ ନାହାନ୍ତି ।

ଆଗ ବୁଲୁଥିଲେ ମୋଟରକାରରେ, ନିଜେ ଗାଡି ଚଳାନ୍ତି । ବୋଧହୁଏ ଗାଡିଚଳାଇବାରେ ସେ କଟକର ପ୍ରଥମ ମହିଳା । ଟ୍ରକ ବି ଚଳାନ୍ତି । ଝାଂଝିରୀମଂଗଳା ଘର ତିଆରି ହେଲାବେଳେ ସେ ନିଜେ ଟ୍ରକରେ ବାଲିଗୋଡ଼ି ବୋହି ଆଣିଛନ୍ତି । ତାଙ୍କ ବୟସ ବଢ଼ିଛି । ତା'ପରେ ରିକ୍ସା ।

ନିଜ ପାଇଁ କାହାରି ପାଖରେ ହାତ ପାତିନାହାନ୍ତି । କିନ୍ତୁ ଅନ୍ୟ ପାଇଁ ମାଗିବାକୁ ଅନୁରୋଧ କରିବାକୁ କେବେ କୁଣ୍ଠିତ ହୋଇନାହାନ୍ତି । ଅଧାପକ ପ୍ରଫୁଲ୍ଲ ମହାନ୍ତିଙ୍କ ଠାରୁ ଆରମ୍ଭ କରି ପାଳିତା କନ୍ୟା ସବିତା ସେ କଥା କହିବାର ସାକ୍ଷ୍ୟ ବହନ କରନ୍ତି ।

ସ୍ୱାମୀ ଇଂଜିନିଅର ବାସୁଦେବ ମହାନ୍ତି ବାହୁଡି ସାରିଛନ୍ତି ୧୯୮୬ ମସିହାରୁ । ବସନ୍ତ ଦେବୀ ଭାଙ୍ଗି ପଡ଼ିନାହାନ୍ତି । ମଝିଆଁ ପୁଅ ଦେବଦତ୍ତ ଚାଲିଗଲା ଏବେ ଅକାଳରେ । ବସନ୍ତ ଦେବୀଙ୍କ ଭାଙ୍ଗିବା ପର୍ବ ଆରମ୍ଭ ହେଲା । ଗୋଡ ଭାଙ୍ଗି ଯିବାପରେ ଆଉ ଘରୁ ଯାଇପାରୁ ନଥିଲେ । ମନ ଭାଙ୍ଗିବା ଆରମ୍ଭ ହୋଇଗଲା ।

୧୯୧୮ ମସିହା । ପ୍ରଥମ ମହାଯୁଦ୍ଧ ସରି ସରି ଆସୁଛି । ଏପ୍ରିଲ ମାସ, ପୁଲିସ ଅଫିସର ଅନାଦି ନାଥ ଦାସଙ୍କର କନ୍ୟାଟିଏ ଜନ୍ମ ହୁଏ । ବସନ୍ତର ଆଗମନ । ସେଇଯୋଗୁଁ ନାମ ଦେଇଥିଲେ ବସନ୍ତ । ସେଇ ବସନ୍ତ ଯେ ବହୁ ଯୁବକ ଯୁବତୀଙ୍କୁ ମଣିଷ ହେବା ପାଇଁ ସାହାଯ୍ୟ କରି ଜୀବନର ବସନ୍ତ ସୃଷ୍ଟି କରିବ ଏ କଥା କିଏ ଜାଣିଥିଲା ?

ପିଲାଦିନରୁ ଖଦଡ଼ ପିନ୍ଧିଲେ । ଓଡ଼ିଶାର ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ ଚୌଧୁରୀ ପରିବାରର ସଂସ୍ପର୍ଶରେ ଆସିଲେ । ରମାଦେବୀଙ୍କ ପ୍ରେରଣାରେ ଭୂଦାନ ଆନ୍ଦୋଳନରେ ଯୋଗଦେଲେ । ରାଜନୀତି କିଛି କିଛି କରୁଥିଲେ କିନ୍ତୁ ତାହା ତାଙ୍କୁ ପୋଷାଇଲା ନାହିଁ କି କୁଳେଇଲା ନାହିଁ । ସେ ମଣିଷ ସେବାରେ ଆପଣାକୁ ନିବେଦିତ କଲେ । ସେଇ ତାଙ୍କର ପରିଚୟ ପାଲଟିଲା ।

ଇଂଜିନିଅର ବାସୁଦେବ ମହାନ୍ତିଙ୍କୁ ସରକାରୀ ଚାକିରି ମିଳିଲା ନାହିଁ । କାରଣ ସେ ବୌଦ୍ଧର ସମାଜବାଦୀ ସଂଗ୍ରାମୀକୁ ଆଶ୍ରୟ ଦେଇଥିଲେ ବୋଲି । ସେ ଡିଷ୍ଟ୍ରିକ୍ଟ ବୋର୍ଡ଼ର ଇଂଜିନିଅର ହେଲେ । ପରେ ସରକାରୀ ଚାକିରି ମିଳିଲା, କିନ୍ତୁ ସ୍ୱାଧୀନଚେତା ବାସୁଦେବ ବାବୁଙ୍କୁ ତାହା ପୋଷାଇଲା ନାହିଁ । ସେ ଚାକିରି ଛାଡ଼ି ବ୍ୟବସାୟ କଲେ । ବହୁ ଉତ୍ଥାନ ପତନ, ସଂଗ୍ରାମ ଭିତରେ ବସନ୍ତ ଦେବୀ ତାଙ୍କ ପାଖରେ ଠିଆହୋଇଥିଲେ କେବଳ ନୁହେଁ, ସହଧର୍ମିଣୀ ପାଲଟି ଯାଇଥିଲେ ସହଯୋଦ୍ଧା ।

ଯାଇଥିଲେ ଚେକୋସ୍ଲୋଭାକିଆ ୧୯୬୪ ମସିହାରେ, ଏକ ଆନ୍ତର୍ଜାତିକ ସମ୍ମିଳନୀରେ ଭାରତର ପ୍ରତିନିଧି ଭାବରେ । ଗଢ଼ିଥିଲେ ଗୃହଲକ୍ଷ୍ମୀ ସମବାୟ ସମିତି, ନାରୀମାନଙ୍କୁ ସ୍ୱାବଲମ୍ବୀ କରିବା ପାଇଁ । ତିନି ପୁଅର ମାଆ । କିନ୍ତୁ ସେ ପାଲଟି ଯାଇଥିଲେ ବହୁପୁତ୍ର କନ୍ୟାଙ୍କର । ସେ ଅସୁମାରି ତାଲିକା ।

ପୁଅ ବୋହୂ ନାତି ନାତୁଣୀ ସମସ୍ତେ ପ୍ରତିଷ୍ଠିତ । ଦେଶ ବିଦେଶରେ ବାଙ୍ଗଲୋର ଠାରୁ ସୁଇଜରଲ୍ୟାଣ୍ଡ, ଆମେରିକାଠାରୁ ଇଂଲଣ୍ଡ । ଆଉ ବାହାରକୁ ଯାଇହେଉ ନାହିଁ । ସମୟ ଅତିକ୍ରାନ୍ତ ହୋଇଛି । କ୍ଷମତାର ଲୋକମାନଙ୍କ ସହିତ ପରିଚିତି ହଜି ଗଲାଣି । ଆଉ ଅନୁରୋଧ କାମ କରୁନାହିଁ ।

ଦେହ ଭାଜିଗଲାଣି, ମନଭାଜି ଗଲାଣି, କଥାର ମୂଲ୍ୟ ବି ହଜିଗଲାଣି,ଆଉ ରହିବେ କାହିଁକି ? ଉତ୍ତର ପୀଢ଼ି ପାରି ଉଠିଲେଣି, ଅମିତାଭ, ବିଭୁପଦ, ଭବାନୀ, ସରଳା ବୋହୂମାନେ ସମସ୍ତେ ଘେରି ରହିଛନ୍ତି ।

ବସନ୍ତ ଦେବୀ ଆଖି ବୁଜି ଦେଇଛନ୍ତି । ପାଲଟି ଯାଇଛନ୍ତି ଇତିହାସ ପରମ୍ପରା ।

ଜାନୁଆରୀ ପହିଲା ୨୦୦୬ ମସିହାର ସନ୍ଧ୍ୟା ସହିତ ଜୀବନର ସନ୍ଧ୍ୟା ଆସି ଯାଇଛି ।

□□□

# ସେଇ ହସ ସେଇ କଥା

## (୰ ବାଉରୀବନ୍ଧୁ ମହାନ୍ତି)

ଦିନ ଥିଲା ଓଡ଼ିଶାର ସହରଠାରୁ ଆରମ୍ଭ କରି ଗାଁ'ଗଣ୍ଡା ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଜାଣିଥିଲେ । ସବୁଠି ତାଙ୍କର ପରିଚିତି । ତାଙ୍କର ହସ, ନମସ୍କାର ଏକ ସ୍ୱତନ୍ତ୍ର ଧରଣର । ଧୋତି ଉପରେ କଳା କୋଟ ଏବଂ ତା'ଉପରେ ଭଙ୍ଗାହୋଇ ପଡିଥିବା ଧଳା ଚଦ୍ଦର, ତାଙ୍କର ସେଇ ଡ୍ରେସ୍ ମଧ ଏକ ସ୍ୱତନ୍ତ୍ର ଧରଣର । କିଏ ନ ଜାଣିଥିଲା ଭ୍ରାମ୍ୟମାଣ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ମ୍ୟାନେଜର ବାଉରୀବନ୍ଧୁ ମହାନ୍ତିଙ୍କୁ ? ସେ ବି କାହାକୁ ନ ଜାଣନ୍ତି ? ପାଞ୍ଚ ଦଶ ହଜାର ନାଁ ତାଙ୍କର ଜିଭ ଅଗରେ । ଥରେ ଦେଖିଲେ ଲୋକର ନାମଟା ଯେମିତି ତାଙ୍କର ମୁଖସ୍ଥ ହୋଇଯାଏ ।

ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ର ମ୍ୟାନେଜର ବାଉରୀବନ୍ଧୁ ମହାନ୍ତି । ଅନ୍ନପୂର୍ଣ୍ଣା ଥିଏଟରେ ଦୁଇଟି ଗ୍ରୁପ ଥିଲା – 'ଏ' ଗ୍ରୁପ୍, 'ବି' ଗ୍ରୁପ୍ । 'ବି' ଗ୍ରୁପ୍ କଟକରେ ସ୍ଥାୟୀ ଭାବରେ ଅଭିନୟ ପ୍ରଦର୍ଶନ କରେ । ସପ୍ତାହରେ ଛଅଦିନ । ଅନ୍ନପୂର୍ଣ୍ଣା 'ଏ'ଗ୍ରୁପ୍ ଭ୍ରାମ୍ୟମାଣ । ଓଡ଼ିଶାର ବିଭିନ୍ନ ସହର, ପ୍ରଧାନ ପ୍ରଧାନ ଗାଁ ମାନଙ୍କରେ ଅଭିନୟ ପ୍ରଦର୍ଶନ କରେ । ଏକ ମହା କଠିନ କାମ । ହଲ୍ ବା ତମ୍ବୁ ବନ୍ଦୋବସ୍ତ କର, ଚଉକୀ, ବେଞ୍ଚ ବନ୍ଦୋବସ୍ତ କର, (ସେତେବେଳେ ଆଜିକାଲି ଭଳି ସପ୍ଲାୟର ନଥିଲା)ଅସ୍ଥାୟୀ କର୍ମଚାରୀ ନିଯୁକ୍ତ କର, ମୁଖ୍ୟବ୍ୟକ୍ତିମାନଙ୍କୁ ପାସ୍ ଦିଅ, ରୋଷେଇ ବନ୍ଦୋବସ୍ତ କର ଇତ୍ୟାଦି ଇତ୍ୟାଦି । କିନ୍ତୁ ବାଉରୀବନ୍ଧୁ ମହାନ୍ତିଙ୍କୁ ସେଗୁଡାକ ସୁହାଇ ଯାଇଥିଲା । ପ୍ରତି ସହରରେ କେଉଁଠି କିଏ ଅଛନ୍ତି,କିଏ ଅଫିସର, କିଏ ବ୍ୟବସାୟୀ ସବୁ ତାଙ୍କର ମୁଖସ୍ଥ । ପହଞ୍ଚିବେ ଘରେ । ସେଇ ଡ୍ରେସ୍, ସେଇ ହସ, ସେଇ ସମ୍ଭାଷଣ । ଚଉକୀ ମାଗିବେ, ମାଗିବେ ବେଞ୍ଚ, ମାଗିବେ ପେଟ୍ରୋମାକ୍ସ । ସତେ ଯେମିତି ଏଗୁଡାକ ତାଙ୍କର ଦାବୀ, ହକ୍ । ସେ ଓଡ଼ିଆ ନାଟକ କରିବେ ଆଉ ଆପଣ ସାହାଯ୍ୟ କରିବେ ନାହିଁ ? ତେଣୁ ତାଙ୍କର ମାଗୁଣିରେ ଦାବୀର ଶକ୍ତି ଥାଏ, ଥାଏ ତାଙ୍କର ହସ ଓ ଭାଷାର ମଧୁର ଆବରଣ । ନ ଦବା ଲୋକ ଦିଏ । ଆଉ ନେଲାବେଳେ କହିଯିବେ ଏତେ ସାହାଯ୍ୟ କଲେ, ଓଡିଆ ପିଲାଏ ନାଟ କରିବେ, ଆପଣ ସପରିବାର ଯିବେ ନାହିଁ ? ତାଙ୍କ ପାଇଁ ଟିକିଏ ତାଳି ଦେଲେ କେତେ ଖୁସି ହେବେ

ସେମାନେ ? ଓଡିଆ ଥିଏଟର ତ ଆପଣମାନଙ୍କୁ ନେଇ ବଞ୍ଚିବ । କଥିଁକ, ପର୍ସୁଏସିଭ ଭାଷାରେ ସେ ଅଳି କରିବେ । କିନ୍ତୁ ଏ ତ ଦାବୀ ଏ ଜାତିର, ସଂସ୍କୃତିର ! ସମସ୍ତେ ଯାଆନ୍ତି । ସ୍ଥାନଟି ଭର୍ତ୍ତି ହୋଇଯାଏ ।

ନାଟକ ସରିବାର ଠିକ୍ ପୂର୍ବରୁ ମଞ୍ଚ ଉପରେ ଅବତୀର୍ଣ୍ଣ ହେବେ ବାଉରୀବନ୍ଧୁ । ସେଇ ମୁଲାୟମ ଭାଷା, ସେଇ ହସ, ସେଇ ନିବେଦନ । ଅଭିନେତା ମାଷ୍ଟର ମାଣିଆ, କାର୍ତ୍ତିକ ଘୋଷ, ଠିକ୍ ସେଇପରି ଅଭିନେତ୍ରୀମାନଙ୍କ ମଧ୍ୟରେ ଭାନୁମତୀ, ରାଧାରାଣୀ । ଏଇ 'ଏ' ଗ୍ରୁପ୍ କେତେ ଯୁବକ ଯୁବତୀଙ୍କୁ ଥିଏଟର ପାଗଳ କରିଚି । ଟାଣି ଆଣିଛି ସେମାନଙ୍କୁ ପେଶାଦାର ଅଭିନେତା ହେବାପାଇଁ । ମୋର ମନେପଡୁଚି ନିରଞ୍ଜନ ଶତପଥୀଙ୍କ କଥା । ଇମିତି କେତେ ଥିବେ ।

କାଳର କୁଟିଳ ଗତି । ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ଭାଙ୍ଗିଯାଏ । ଓଡିଶା ପାଇଁ ତାହା ଏକ ବିଷାଦର ଦିବସ । କଟକ ସହରରେ ଦିନେ ତିନୋଟି ଥିଏଟର ଚାଲୁଥିଲା । ସପ୍ତାହକୁ ଛଅଦିନ । ଏହା ଥିଲା ଆମ ପାଇଁ ଗୌରବର ବସ୍ତୁ । ସମଗ୍ର ଭାରତବର୍ଷର ଦୃଷ୍ଟି ଆକର୍ଷିତ ହେଉଥିଲା, କିନ୍ତୁ ଆଜି ?

ଜ୍ଞାନମଣ୍ଡଳ ପ୍ରଣେତା ବିନୋଦ କାନୁନ୍‌ଗୋ ଏବଂ ମୁଁ ପୁରୀ ବଡଦାଣ୍ଡରେ ଚାଲି ଚାଲି ଆସୁଚୁ । ସେପଟରୁ ଜଣେ ଭଦ୍ରଲୋକ ବାଡିଟିଏ ଧରି ଧୀରେ ଧୀରେ ଆସୁଛନ୍ତି ଆଗରୁ । ଏ ତ ବାଉରୀବନ୍ଧୁ ମହାନ୍ତି ବିନୋଦବାବୁ ଓ ମୁଁ ଉଭୟେ ନମସ୍କାର ହେଲୁ । ବୟସ ଅତିକ୍ରାନ୍ତ ହୋଇଛି । ବୟସର ଭାରାରେ ନଇଁ ପଡିଲେଣି ବାଉରୀବନ୍ଧୁ ! ସ୍ମୃତି ଶକ୍ତି କିନ୍ତୁ ଅଛି ସେମିତି ପ୍ରଖର । ବିନୋଦ ! ପାକୁ ! ମୋର ଡାକ ନାଁ ଶୁଣି ମୁଁ ଚମକି ପଡ଼ିଲି । କାରଣ ସେତେବେଳକୁ ମୋତେ ସମସ୍ତେ ଗିରିଜା ନାଁରେ ଡାକିବାକୁ ଆରମ୍ଭ କଲେଣି । ମୋ ଘରେ ଟିକିଏ ଚା' ଖାଇ ଯିବନି ? ଅନୁରୋଧ ବାଉରୀବନ୍ଧୁ ମହାନ୍ତିଙ୍କର । ଏଡାଇବା ଭାରି କଠିନ । ବାପା କିମିତି ଅଛନ୍ତି ? ଆଉ ଦାଦା ? ତମେ କ'ଣ କରୁଚ ? ଓଃ ! ଭୁଲିଗଲି । ତମେ ବର୍ତ୍ତମାନ ପରା ରାଜନୀତିଜ୍ଞ । ବୁଝିଲୁ ପାକୁ, ତମ ଭଲ ନାଁଟା କ'ଣଟି ? ମୁଁ ଗିରିଜା ବୋଲି କହିବାରୁ ସେ ହସି ହସି କହିଲେ, ତମକୁ ତ ପାକୁ ଭାବରେ ଦେଖି ଆସିଥିଲି । ଗିରିଜା ନାଁରେ ତ ଦେଖିନଥିଲି । ସେଇଯୋଗୁଁ କିଛି ମନେକରିବ ନାହିଁ ।

ତାଙ୍କ ଘରେ ପହଞ୍ଚିଲୁ । ଛୋଟିଆ ଘରଟିଏ । ଜୀବନ ଯେମିତି ଭାଙ୍ଗିଯାଇଚି, ଘରର ସବୁ ସେମିତି ଭଙ୍ଗା । ଚଉକୀ, ଟେବୁଲ୍, ଚା' କପ୍ । ଦାରିଦ୍ର୍ୟର କଷାଘାତ । ନାଟକର ଆୟୋଜନ, ନାଟକର ସଂଗଠନ କରି ଆସିଛନ୍ତି ବାଉରୀବନ୍ଧୁ । କିନ୍ତୁ ଜୀବନକୁ ସଂଗଠିତ କରିପାରି ନାହାନ୍ତି । ପେନ୍‌ସନ୍ ନାହିଁ, ବୋନସ୍ ନାହିଁ କିଛି ନାହିଁ । ଏକ ବିରାଟ ନାହିଁ ମଧ୍ୟରେ ଯେମିତି ସେ ବସା ବାନ୍ଧିଛନ୍ତି । ଚା' ତିନିକପ୍ ଆସିଲା । ଯେଉଁ ଭଦ୍ରମହିଳା

ଚା' ନେଇ ଆସିଲେ ତାଙ୍କର ମଧ୍ୟ ବୟସ ଅତିକ୍ରାନ୍ତ । ବିଗତ ଯୌବନା । କିନ୍ତୁ ଦିନେ ମନଲୋଭା ଯୌବନ ତାଙ୍କ ଦେହକୁ ଛୁଇଁଥିଲା । ତା' ତାଙ୍କର ଗଢ଼ଣରୁ ସ୍ପଷ୍ଟ ବାରି ହୋଇଯାଉଛି । ଅଖା ଭଳି ଏକ ଶାଢ଼ୀ ପିନ୍ଧିଛନ୍ତି । ବିନୋଦବାବୁ କାହିଁକି କେଜାଣି ତାଙ୍କୁ ପାଦ ତଳିପାଠାରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁବାକୁ ଲାଗିଲେ । କାହିଁକି ବିନୋଦବାବୁ ତାଙ୍କୁ ଅନଉଛନ୍ତି ? ସେ ଭଦ୍ରମହିଳା ବିନୋଦବାବୁଙ୍କୁ ନମସ୍କାରଟିଏ ହେଲେ ।

ବିନୋଦବାବୁ ଅନେଇଲେ ବାଉରୀବନ୍ଧୁ ମହାନ୍ତିଙ୍କୁ ପ୍ରଶ୍ନବାଚୀ ଦୃଷ୍ଟିରେ । ବିନୋଦ, ତମେ ଠିକ୍ ଚିହ୍ନିଛ । ଏ ସେଇ ? ଜୀବନରେ ତା'ର କେହି ନଥିଲେ । ମୋର ମଧ୍ୟ କେହି ନଥିଲା । ଆଶ୍ରୟ ଖୋଜୁଥିଲୁ ଦୁହେଁ । ଏଇଠି ରହିଯାଇଚୁ ।

ବର୍ତ୍ତମାନ ମୋ ପାଳି । ମୁଁ ବିନୋଦବାବୁଙ୍କୁ ଅନେଇଲି । ଏ ହେଉଛନ୍ତି ପୀତାମ୍ବରୀ ଦେବୀ । ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର ଶାଳୀ । ପରେ ରକ୍ଷିତା ନାମରେ ପରିଚିତ । ଏବଂ ତା'ପରେ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କର କୋର୍ଟରେ ଉପସ୍ଥାପିତ ଡାଏରୀରୁ ଜଣାପଡ଼େ ସେ ତାଙ୍କର ସ୍ତ୍ରୀ ।

ସେ ବଖାଣିଲେ । ଦୁରାରୋଧ କାହାଣୀ । ଆପଣ ତ ଜାଣନ୍ତି । ଚା' ଜପରେ ବିଷ ଦେଇଥିବା ଅଭିଯୋଗରେ ମୋତେ ଦୋଷୀ ସାବ୍ୟସ୍ତ କରାଗଲା । ମୁଁ ଗିରଫ ହେଲି । ମୋତେ କୋର୍ଟରେ ବାଧ ହୋଇ ତାଙ୍କର ଡାଏରୀ ଉପସ୍ଥାପନା କରିବାକୁ ହେଲା । ଆପଣ ତ ଜାଣନ୍ତି ସେ କାହାଣୀ । ଓକିଲଙ୍କ ପାଖରେ ସବୁ ଅଳଙ୍କାର ରଖି ଦେଇଥିଲି ବିଶ୍ୱାସରେ । ଆଉ ତ କିଛି ଉପାୟ ନଥିଲା । ଖଲାସ ହେଲି । ଏଣେ ଘର ଅବରୁଦ୍ଧ । ତେଣେ ସୁନା ଅଳଙ୍କାର ମଧ୍ୟ ଆଉ ମିଳିଲା ନାହିଁ । ସୁନା କେତେ ଥିଲା ମନେ ନାହିଁ । କେବେ ତ ହିସାବ ରଖିନଥିଲି । ତେବେ ବେଶ୍ ଓଜନିଆ ଥିଲା ମୋର ସେଇ ପୁଟୁଳା । ମୋତେ ଦୁଇ ହାତରେ ଟେକି ନେବାକୁ ହୋଇଥିଲା । ଭାଗ୍ୟ ପୋଡ଼ିଗଲେ ଇମିତି ହୁଏ ।

ବୟସ ହୋଇଯାଇଥିଲା । ଆଶ୍ରୟ ଦେବ କିଏ ? ... ଆଖିରୁ ଲୁହ ପୋଛିଲେ । ଅନାଇଲା ବେଳକୁ ବାଉରୀବନ୍ଧୁ ମହାନ୍ତି ମଧ୍ୟ ଆଖି ପୋଛୁଛନ୍ତି । ଜୀବନର ଏକ ଅନ୍ଧ ଗଳି ଭିତରେ ଯେମିତି ଦୁଇଟି ନିରାଶ୍ରୟ ପକ୍ଷୀ ଆଶ୍ରୟ ଖୋଜିଛନ୍ତି ଦୁର୍ବାର ଝଡ ଆଗରେ ।

ଅପରାହ୍ନ । ଲମ୍ବା ଲମ୍ବା ଛାଇ ପଡ଼ିଲାଣି । ଆମେ ବିଦାୟ ନେଲୁ । ଦୁଇଜଣ ନିରାଶ୍ରୟ ବଳେଇ ଦେବାକୁ ଆସିଲେ । ନମସ୍କାର କରି ଫେରିଲୁ ବିନୋଦବାବୁ ଏବଂ ମୁଁ । ପଛକୁ ଫେରି ଦେଖୁଥିଲି । ଦୁଇଟି ନିରାଶ୍ରୟ ହାତ ହଲାଉଛନ୍ତି, ବିଦାୟର ସଙ୍କେତ । ନିଷ୍ଠୁର ବିଧି ହାତରେ ସତେ ଯେପରି ଦୁଇଟି ଅସହାୟ କଣ୍ଢେଇର ନୃତ୍ୟ ନା ଜୀବନର ଅନ୍ତିମ ଅଭିନୟ, ଯଦି ଏଇ ପୃଥିବୀ ଏକ ରଙ୍ଗମଞ୍ଚ ଏବଂ ପୁରୁଷ ଓ ନାରୀ ହେଉଛନ୍ତି ଅଭିନେତା, ଅଭିନେତ୍ରୀ ।

000

# ବାମାଚରଣ ଦାସ – ଏକ ଶ୍ରଦ୍ଧାଞ୍ଜଳି

*(୰ ବାମାଚରଣ ଦାସ)*

ନୂଆ ଦିଲ୍ଲୀରେ ପହଞ୍ଚିବାର ଛଅ ଦିନ ହୋଇଗଲାଣି । ଯେଉଁ ପାର୍ଲ୍ୟାମେଣ୍ଟ ସଭ୍ୟଙ୍କ ଘରେ ରହୁଛି, ସେ ଓଡ଼ିଆ କାଗଜ ମଗାନ୍ତି ନାହିଁ । ପାଖରେ ଥିବା ଓଡ଼ିଆ ସଭ୍ୟମାନେ ମଧ୍ୟ ତଦ୍ରୂପ । କିମିତି ଅଣନିଃଶ୍ୱାସୀ ଲାଗୁଚି । ପାନ ଦୋକାନୀ ଓଡ଼ିଆ । ପାନ ଦୋକାନ ପାଖରେ ଠିଆ ହୋଇଚି ଟାକ୍‌ସି ପାଇଁ । ଆଖିରେ ପଡ଼ିଲା 'ସମାଜ' । ପାନ ଦୋକାନୀ ଓଡ଼ିଆ ଖବରକାଗଜ ମଗାଏ । ଅନ୍ୟ ଅନେକ କାଗଜ ସହିତ । ବିଭିନ୍ନ ଭାଷାର ଲୋକ ତା'ଦୋକାନରୁ ପାନ, ଚା' ଖାଆନ୍ତି, ବସ୍ ଟ୍ୟାକ୍‌ସିକୁ ଅପେକ୍ଷା କରନ୍ତି । ସେମାନେ ପଢ଼ନ୍ତି, ଦୋକାନୀ ବି ପଢ଼େ । ପାଖଆଖରେ ଥିବା ଏମ.ପି. ମାନେ ମଧ୍ୟ ସେଥିରୁ ବାଦ ଯାଆନ୍ତି ନାହିଁ । 'ସମାଜ' ଉପରେ ଆଖି ପଡ଼ିଲା କ୍ଷଣି ଝାମ୍ପିଲାଭଳି ଆଣି ପଢ଼ିବାକୁ ଆରମ୍ଭ କଲି । କିନ୍ତୁ ହଠାତ୍ ପଢ଼ିବା ବନ୍ଦ ହୋଇଗଲା ଏକ ସମ୍ବାଦ ପାଖରେ । ତା'ପରେ ଆଖି ଜକେଇ ଆସିଲା । ଅକ୍ଷର ସବୁ ଅସ୍ପଷ୍ଟ ହୋଇଗଲା ।

ଅଧ୍ୟାପକ ବାମାଚରଣ ଦାସ ଆଉ ନାହାନ୍ତି । ଆସିଲାବେଳେ ତାଙ୍କୁ ଭେଟିବାକୁ ଯାଇଥିଲି । ଗୋଟାଏ ତିନିଚକିଆ ଲମ୍ବା ସାଇକେଲ ଭଳି ଜିନିଷଟାଏ ଧରି ସେ ଘର ଭିତରେ ବୁଲୁଛନ୍ତି । ଅଦମ୍ୟ ଇଚ୍ଛାଶକ୍ତି । ବଞ୍ଚି ରହିବାପାଇଁ ଉଦଗ୍ର ପ୍ରଚେଷ୍ଟା । ହେବା ସ୍ୱାଭାବିକ । ଶାରୀରିକ ଓ ମାନସିକ ଦୃଷ୍ଟିରୁ ଏକଦମ ସକ୍ଷମଥିବା ବ୍ୟକ୍ତି ହଠାତ୍ ରୋଗାକ୍ରାନ୍ତ ହେଲେ ସେ କ'ଣ ସହଜରେ ରୋଗ ପାଖରେ ହାର ମାନେ ?

ବାମାଚରଣ ଦାସ ପ୍ରତିଭା-ପ୍ରସବିନୀ ମାହାଙ୍ଗା ଅଞ୍ଚଳର । ଅଙ୍କ ଶାସ୍ତ୍ରରେ ଏମ.ଏ ପାଶ୍ କରି ଯାଇଥିଲେ ଲଣ୍ଡନ ଉଚ୍ଚଶିକ୍ଷା ପାଇଁ । ଅଙ୍କ ଶାସ୍ତ୍ରରେ ଯେପରି ନିପୁଣ, ଟେନିସ ଖେଳରେ ମଧ୍ୟ । ସୁଦର୍ଶନ ଚେହେରା । ବହୁ ତରୁଣୀଙ୍କର ହୃତ୍‌କମ୍ପନ ।

ଇଂଲଣ୍ଡରେ ଉଚ୍ଚଶିକ୍ଷା ସହିତ ପାଇଲଟ ହୋଇଥିଲେ । 'ବି' କ୍ଲାସ ପାଇଲଟ ହୋଇଥିଲେ ବୋଲି ଶୁଣାଯାଏ । ଅଦମ୍ୟ ସାହସ । ଫେରିବାକୁ ଚାହିଁଥିଲେ ଏକାକୀ ବ୍ୟୋମଯାନ ଚଳାଇ ଲଣ୍ଡନରୁ ଦିଲ୍ଲୀ । ଓଡ଼ିଶାର କୌଣସି ରାଜା ତାଙ୍କୁ ଆର୍ଥିକ ସାହାଯ୍ୟ

ଦେବାପାଇଁ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ଶେଷ ମୁହୂର୍ତ୍ତରେ ଓହରିଗଲେ ସେ ପ୍ରସ୍ତାବରୁ । ବାମାଚରଣ ଡିଗ୍ରୀ ସହ ଫେରିଲେ କିନ୍ତୁ ଏକାକୀ ନୁହେଁ ବହୁ ଯାତ୍ରୀଙ୍କ ସହ । ଜୀବନବ୍ୟାପୀ ସେଇଟା ଥିଲା ତାଙ୍କର ଅବଶୋଷ ।

ଅଧ୍ୟାପକ ଭାବରେ ଯୋଗଦେଲେ । ଭଲ ପଢ଼ାନ୍ତି, ଭଲ ଖେଳନ୍ତି । ସେ ସମୟରେ ସେ ଖୁବ୍ ରୋମାଣ୍ଟିକ୍ ଥିଲେ ବୋଲି ସମସାମୟିକମାନେ କୁହନ୍ତି । ଯଥା ସମୟରେ ସେ ପ୍ରିନ୍ସିପାଲ ଥିଲେ ରେଭେନ୍ସା କଲେଜରେ । କିନ୍ତୁ ଅନ୍ୟମାନଙ୍କ ପରି ସେ ସୁଧାର ନଥିଲେ, ଥିଲେ ବିବାଦମୂଳକ । କେତେକ କହନ୍ତି (ସେ ଭିତରେ ମୋ ସ୍ତ୍ରୀ କମଳ କୁମାରୀ ପଟ୍ଟନାୟକ ଅନ୍ୟତମ)ଯେ ସେ ଛାତ୍ରଛାତ୍ରୀମାନଙ୍କ ପ୍ରତି ଖୁବ୍ ସମ୍ବେଦନଶୀଳ । କମଳ କୁମାରୀ କହନ୍ତି ଯେ ସେ ପାଠ ପଢ଼ିବା ପାଇଁ ଆସିଥିଲେ ରେଭେନ୍ସା କଲେଜକୁ । ସେତେବେଳେ ଛାତ୍ରୀମାନଙ୍କ ପାଇଁ ଗୋଟିଏ ମାତ୍ର ହଷ୍ଟେଲ ଥିଲା । ଭଡା ଘର, ୧୬ଟି ମାତ୍ର ସିଟ୍ । ସେ ସ୍ଥାନ ନପାଇ ଫେରିଯାଉଥିଲେ ଉଚ୍ଚ ଶିକ୍ଷା ଆଶାର ପୋଥି ବାନ୍ଧିବା ପାଇଁ । ସକାଳୁ ପ୍ରାତଃ ଭ୍ରମଣରେ ବାହାରିଥିବା ଅଧ୍ୟାପକ ବାମାଚରଣ ଦାସଙ୍କ ସହିତ ଦେଖାହେଲା । ସେ ପଚାରିଲେ, ଫେରି ଯିବାର କାରଣ । ଶୁଣି ନିଜେ ଆସି ଖଟଗୁଡିକୁ ଘୁଞ୍ଚାଇ ସିଟ୍‌ଟିଏ କରି ଦେଇଥିଲେ କମଳ କୁମାରୀଙ୍କ ପାଇଁ । ନଚେତ୍ ପାଠ ପଢ଼ିବା ଇତି ହୋଇଥାନ୍ତା ତାଙ୍କର । ଠିକ୍ ଓଲଟା କଥା କହନ୍ତି ତାଙ୍କର ଛାତ୍ର ନରେନ୍ଦ୍ର କୁମାର ରଥ । କେବଳ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ନୁହେଁ ଅଧ୍ୟାପକ ମହଲରେ ମଧ୍ୟ ସେଇ ଅବସ୍ଥା । ଷ୍ଟ୍ରଙ୍ଗ ଲାଇକସ୍ ଏଣ୍ଡ ଡିସ୍‌ଲାଇକସ୍ । ତେଣୁ ବିବାଦମୂଳକ ହେବାକୁ ବାଧ୍ୟ । ପୁରୀ କଲେଜରେ ପ୍ରିନ୍ସିପାଲ ବାମାଚରଣ ଦାସ । ୰ଶିବକୁମାର ମିଶ୍ର (ଆସିଷ୍ଟାଣ୍ଟ ଶ୍ରମ କମିଶନର) ସେତେବେଳେ ଛାତ୍ର । ସାର୍ ତାଙ୍କୁ ନାମଲେଖାଇବାକୁ ଅନୁମତି ଦେଲେ ନାହିଁ । ସାରଙ୍କ ଅଭିଯୋଗ ଯେପରି ତୀବ୍ର, ଅନ୍ୟ ପଟର ଅଭିଯୋଗ ମଧ୍ୟ ସେଇପରି । ଗଭର୍ଣ୍ଣିଂ ବଡି ମଧ୍ୟ ଦ୍ୱିଧା ବିଭକ୍ତ ।

ସାର୍ ଖୁବ୍ କମ୍ ଡିକ୍ଟେସନ୍ ଦିଅନ୍ତି । ନାଲି କାଳିରେ ସେ ଲେଖନ୍ତି ବିସ୍ତାରିତ ନୋଟ୍ । ଏତିକି ଲେଖିବା ଅନ୍ୟମାନଙ୍କ ପକ୍ଷରେ ସହଜ ନୁହେଁ । କିନ୍ତୁ ସେ ଅବାରିତ ଗତିରେ ଲେଖନ୍ତି । ସବୁ କଥା ଯେପରି ପକ୍‌କା ହୋଇଥିବ । ଷ୍ଟେନୋଗ୍ରାଫିରେ ରେକର୍ଡ଼ିଂର ସ୍ଥାନ ଖୁବ୍ କମ୍ । ତାଙ୍କର ପ୍ରତିପକ୍ଷମାନେ ମଧ୍ୟ ସାରଙ୍କର ଏଇ ଗୁଣକୁ ପସନ୍ଦ କରନ୍ତି ।

ବାମାଚରଣ ବାବୁଙ୍କର ଆଗ୍ରହ କେବଳ ଅଙ୍କ ଶାସ୍ତ୍ରରେ ସୀମିତ ନଥିଲା । କ୍ରୀଡା ଜଗତକୁ ତାହା ସଂପ୍ରସାରିତ ଥିଲା । ଓଡିଶା ଅଲମ୍ପିକ୍ ଆସୋସିଏସନ୍‌ର ପ୍ରତିଷ୍ଠାତା ସଭ୍ୟମାନଙ୍କ ମଧ୍ୟରେ ସେ ଅନ୍ୟତମ । ଠିକ୍ ସେପରି ପ୍ରସିଦ୍ଧ ବାରବାଟୀ ରାଫଲ୍‌ର ମଧ୍ୟ

ସେ ଅନ୍ୟତମ ସଂଗଠକ । ସଂସ୍କୃତି ଜଗତକୁ ମଧ୍ୟ ତାହା ପ୍ରସାରିତ ହୋଇଥିଲା । କଳା ବିକାଶ କେନ୍ଦ୍ରର ପ୍ରତିଷ୍ଠାତାମାନଙ୍କ ମଧ୍ୟରେ ସେ ଅନ୍ୟତମ । ନିଜ ଝିଅକୁ ସେ ତାଲିମ ଦେଇଥିଲେ ନୃତ୍ୟ ଶିଳ୍ପୀ ଭାବରେ ଏବଂ ସେଇ କନ୍ୟା କୁମ୍‌କୁମ୍ ଆଜି ଓଡ଼ିଶୀ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ।

ମୋର ବ୍ୟକ୍ତିଗତ ସମ୍ପର୍କ ତାଙ୍କ ସହିତ ସ୍ନେହ ଏବଂ ସଂଗ୍ରାମରେ ଭରା । ଅନେକ ଥର ତାଙ୍କ ସହିତ ପ୍ରିନ୍‌ସିପାଲ ଭାବରେ ମୋର ଯୁଦ୍ଧ ହୋଇଛି । ଠିକ୍ ସେଇପରି ତାଙ୍କ ସହିତ, ତାଙ୍କ ପରିବାର ସହିତ ମୋର ସମ୍ପର୍କ ନିବିଡ଼ତାରେ ଭରାହୋଇ ରହିଛି । ତାଙ୍କର ପତ୍ନୀ, କନ୍ୟାତ୍ରୟ ଏବଂ ପୁତ୍ର ମୋତେ ଭଲ ପାଇଛନ୍ତି ତାଙ୍କର ପରିବାରର ଲୋକ ଭଳି । ଅଥଚ ପ୍ରିନ୍‌ସିପାଲ ଭାବରେ ବାମାଚରଣ ବାବୁଙ୍କ ସହିତ ମୋର ସଂଘର୍ଷ ତୀବ୍ର । ସେଇଯୋଗୁଁ ସେ ମୋତେ କଲେଜରୁ ବହିଷ୍କାର କରିପାରି ନାହାନ୍ତି ଏବଂ ପରିଶେଷରେ ମନ୍ତବ୍ୟ ଦେଇଛନ୍ତି ଯେ, " ସେ ସହଜରେ ଅନ୍ୟ ଲୋକମାନଙ୍କୁ ତାଙ୍କ ମତ ସହିତ ନେଇଯାଇପାରେ ।" ସେଇ ସଂଘର୍ଷ ଏବଂ ସ୍ନେହର କାହାଣୀ ଓଡ଼ିଶାର ଇତିହାସରେ ଏକ ଅଧ୍ୟାୟ । ସୀମା ଆନ୍ଦୋଳନଠାରୁ ଆରମ୍ଭ କରି ଜବାହରଲାଲ ନେହେରୁଙ୍କର ରେଭେନ୍‌ସା କଲେଜ ପରିଦର୍ଶନ ପର୍ଯ୍ୟନ୍ତ । ସେସବୁ ଘଟଣା ହାବୁକା ମାରୁଥିଲା ମନ ଭିତରେ, ସେଇ ପାନ ଦୋକାନ ଆଗରେ । ସାଉଥ ଆଭିନ୍ୟୁର ରାଜପଥରେ ।

ବାମାଚରଣ ବାବୁ ଆଉ ନାହାନ୍ତି । ସେ ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ ହେବା ପରେ ଡି.ପି.ଆଇ. ହୋଇଥିଲେ ଏବଂ ସେଇ ପଦବୀରୁ ହିଁ ଅବସର ଗ୍ରହଣ କରିଥିଲେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହେଉ ହେଉ ରହିଗଲେ । ହୋଇପାରିଲେ ନାହିଁ ତାଙ୍କର କିଛି ତାତ୍କାଳିକ ବନ୍ଧୁମାନଙ୍କ ଯୋଗୁଁ ।

ସେ ଅବସର ଗ୍ରହଣ କରିବାର କିଛି ବର୍ଷ ପରେ ଏକ ବିଚିତ୍ର ରୋଗରେ ପୀଡିତ ହେଲେ ଏବଂ ଯେପରି ସାହସ ଓ ନିଷ୍ଠାର ସହିତ ଚିକିତ୍ସା କରି ସେଥିରୁ ଆରୋଗ୍ୟ ଲାଭକଲେ ତାହା ଅନେକଙ୍କୁ ବିସ୍ମିତ କରିଥିଲା । କାରଣ ପରିଣତ ବୟସରେ ଏକ ଦୁରାରୋଗ୍ୟ ବ୍ୟାଧି ଆକ୍ରମଣ କଲେ ସେଥିରୁ ମୁକ୍ତି ମିଳିବା କଠିନ ହୁଏ । ମାନସିକ ଏବଂ ପାରମ୍ପରିକ ଉଭୟ ଦୃଷ୍ଟିରୁ ଶରୀରର ଶକ୍ତି ଖୁବ୍ କମ୍ ଥାଏ । କିନ୍ତୁ ବାମାଚରଣ ବାବୁଙ୍କ ପାଖରେ ବୟସ ହାର ମାନିଥିଲା । ସେ ଜୟଲାଭ କରିଥିଲେ ।

ବାମାଚରଣ ବାବୁ ବନ୍ଧୁ ମହଲରେ ବେଶ୍ ହ୍ୟୁମରସ୍ । ନିଜ ବିରୁଦ୍ଧରେ ମଧ୍ୟ ସେ ହସିପାରନ୍ତି । ସେ ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ ଥିଲାବେଳେ ସେ ହଷ୍ଟେଲର କୌଣସି ବୋର୍ଡ଼ର ଅତିଥି ବା ଗେଷ୍ଟକୁ ରାତିରେ ରଖିପାରିବ ନାହିଁ ବୋଲି ନିର୍ଦ୍ଦେଶ ଦେଲେ । ତା'ର

ପ୍ରଥମ ଶିକାର ହେଲେ ରବି କାନୁନ୍‌ଗୋ (ବର୍ତ୍ତମାନ କାନାଡ଼ାର ପ୍ରସିଦ୍ଧ ମନସ୍ତତ୍ତ୍ୱବିତ୍ ) ତାଙ୍କ ବାପାଙ୍କୁ ରାତିରେ ନିଜ ରୁମ୍‌ରେ ରଖିଥିବାରୁ ତାଙ୍କୁ ଦଣ୍ଡିତ କରାଗଲା ।

ପ୍ରସିଦ୍ଧ ଇଂରାଜୀ ଅଧ୍ୟାପକ ଡକ୍ଟର ପ୍ରଫୁଲ୍ଲ କୁମାର ପତି କଲେଜ ୟୁନିଅନର ବାର୍ଷିକ ଉତ୍ସବରେ ଏକ ପାଲା ଗୀତ ଭଣିତା କଲେ । ତାହା ହେଲା ଏଇପରି–

''ବାମାଚରଣ, ତୁମ ପାଦେ ଶରଣ,
ହଷ୍ଟେଲେ କରିଲ ଅତିଥି ବାରଣ ।''

ବାମାବାବୁ ନିଜେ ଦର୍ଶକ ଏବଂ ସେ ହସୁଛନ୍ତି ।

କାଳର ଗତି ବିଚିତ୍ର । ମଣିଷ କ'ଣ କାଳର ସବୁ ଆକ୍ରମଣକୁ ପ୍ରତିହତ କରିପାରିବ ? ଅସମ୍ଭବ । ବାମାଚରଣ ବାବୁଙ୍କ ପାଇଁ ମହାକାଳ ତା'ର ହସ୍ତ ପ୍ରସାରଣ କରିଛି । ପାଇଲଟ୍, କ୍ରୀଡାବିତ୍, ଗଣିତ ଶାସ୍ତ୍ରର ଶିକ୍ଷକ, ଶିକ୍ଷାନୁଷ୍ଠାନମାନଙ୍କର କର୍ମକର୍ତ୍ତା ବାମାଚରଣ ନିୟତିର ସେ ନିୟମକୁ ଆଉ ଉଲଂଘନ କରିପାରି ନାହାନ୍ତି ।

ସେ ପାଲଟି ଯାଇଛନ୍ତି ଇତିହାସ ।

□□□

# ଅନ୍ଧାରି ମୂଲକର ଧାରେ ଆଲୁଅ

*(ସ୍ୱ ବାଙ୍କନିଧି ଭୂତିଆ)*

ସେତେବେଳେ ଦେଶରେ କିଟିକିଟି ଅନ୍ଧକାରର ରାଜୁତି । ଢେଙ୍କାନାଳରେ ରାଜୁଡ଼ା ଶାସନ । ଭାରତବର୍ଷରେ ବ୍ରିଟିଶ ସରକାର । ତଥାପି ସେଇ ଅନ୍ଧକାର ଭିତରେ ଭବିତବ୍ୟ ପାଇଁ ଅନେକ ବ୍ୟକ୍ତି ଦିହୁଡ଼ି ହୋଇଥିଲେ । ଆପଣାକୁ ଜାଳି ସେମାନେ ଅନ୍ଧାରରେ ଆଲୁଅ ଦେଖାଉଥିଲେ ଉତ୍ତରପୀଢ଼ି ପାଇଁ । ନବକୃଷ୍ଣ ଚୌଧୁରୀ, ଭଗବତୀ ଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ, ସାରଙ୍ଗଧର ଦାସ ପ୍ରଭୃତି ଆଉ ନାହାନ୍ତି । ଯେଉଁମାନେ ଅଛନ୍ତି ସେମାନଙ୍କ ସଂଖ୍ୟା ଆଙ୍ଗୁଠି ଅଗରେ ଗଣି ହୋଇଯିବ ।

ସେତିକିବେଳେ । ଢେଙ୍କାନାଳ ସ୍କୁଲରେ ପଢୁଥିବା ବାଳକଟିଏ ଜୀବନର ସନ୍ଧାନ ପାଇଁ ରାଜପଥକୁ ଛିଟିକି ଆସିଥିଲା । ନାଁ ଥିଲା ବାଙ୍କନିଧି ଭୂତିଆ । ପାଠ ପଢ଼ା ବହି ବସ୍ତାନି ଭିତରେ ବର୍ଷୁଟିଏ ବନ୍ଧାହୋଇ ପଡ଼ି ରହିଲା । କଠୋର ଦଣ୍ଡ ଭୋଗକରି ଜୀବନ ସଂଗ୍ରାମ ପାଇଁ ଶାଣିତ ହୋଇ ଯାଇଥିଲା ବାଳକର । ଲୁହା ଇସ୍ପାତରେ ପରିଣତ ହୋଇଥିଲା । ଖଦଡ ପିନ୍ଧୁଥିଲା, ଗାଁ ଗାଁରେ ମୁକ୍ତିର ବାର୍ତ୍ତା ପ୍ରଚାର କରୁଥିଲା । ଉତିଷ୍ଠତ ଜାଗ୍ରତ, ଉଠ ଜାଗର ମହାମନ୍ତ୍ରରେ ସେ ଧ୍ୱନିତ କରୁଥିଲା, କପିଳାସର ପାହାଡକୁ । ସହଯୋଦ୍ଧାମାନଙ୍କ ଭିତରୁ ଲକ୍ଷ୍ମୀଧର ଅଧ୍ୟାପକ ଦୟାନିଧି ପ୍ରଭୃତି ଗଲେଣି । ଅଛନ୍ତି ବୈଷ୍ଣବ, ହରମୋହନ ପ୍ରଭୃତି । ସ୍କୁଲ ପାଠ ସାରି ବାଙ୍କନିଧି ଆସିଲେ ରେଭେନ୍‌ସା କଲେଜକୁ । କ୍ରୀଡାରେ ଯେପରି 'ବ୍ଲୁ ହେଲେ, ସ୍ୱାଧୀନତା ସଂଗ୍ରାମରେ ମଧ୍ୟ ସେଇପରି ଜଡିତ ହୋଇପଡିଲେ । କବି ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାୟତ, ଭଗବତୀ ଚରଣ ପାଣିଗ୍ରାହୀ, ବୀରେନ ମିତ୍ର, ନୀଳମଣି ରାଉତରାୟ ପ୍ରଭୃତିଙ୍କର ସହଯୋଦ୍ଧୃତ୍ୱର ଗୌରବମୟ ଦିନଗୁଡିକୁ ବାଙ୍କନିଧି ହେଜୁଥିଲେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ, ସମାଜବାଦୀ ଚିନ୍ତାଧାରା ସହ ତାଙ୍କର ସଖ୍ୟ ବୃଦ୍ଧି ପାଇଲା ଦିନକୁ ଦିନ ।

ଢେଙ୍କାନାଳ ଫେରି କିଛିକାଳ ସେ ଶିକ୍ଷକତା କରନ୍ତି ଏବଂ ପରେ ଅଧିକ ସ୍ୱାଧୀନତା ପାଇଁ ଆସନ୍ତି ଓକିଲାତି କରିବା ପାଇଁ । ଓକିଲାତି ତାଙ୍କର ପେସା ଥିଲା, ନିଶା ବି ଥିଲା । ମେହନତୀ ମଣିଷର ସେ ଥିଲେ କଚେରି ବାହାରେ ଓ ଭିତରେ ସାଥୀ, ବାଙ୍କନିଧି ଭୂତିଆ ଥିଲେ ପ୍ରାଗମାଟିଷ୍ଟ । କୌଣସି ବାଦକୁ ସେ ବାଦ ଦେଇ ନାହାନ୍ତି । ସମାଜବାଦଠାରୁ ଭୂଦାନ, ପ୍ରଜାମଣ୍ଡଳ ଠାରୁ ଗ୍ରାମଦାନ, ମାର୍କସ୍‌ଙ୍କଠାରୁ ଗାନ୍ଧୀ, ହେତୁବାଦଠାରୁ ଆଧ୍ୟାତ୍ମିକବାଦ, ସବୁର ସେ ସାଜିଛନ୍ତି ମହାସମନ୍ୱୟ । ସବୁଥିରୁ ଭଲକଥା ଗ୍ରହଣ କରି ତାର ଏକ ନିର୍ଯ୍ୟାସ ସୃଷ୍ଟି କରିବାରେ ମତୁଆଲା ଥିଲେ ବାଙ୍କନିଧି । ସେଇଯୋଗୁଁ ତାଙ୍କ ଘରେ ବିପ୍ଳବୀମାନଙ୍କର ଯେପରି ଆଡ୍‌ଡା ଜମୁଥିଲା, ଠିକ୍ ସେଇପରି ଆଚାର୍ଯ୍ୟ ହରିହର, ରମାଦେବୀ, ମାଳତୀ ଦେବୀ ପ୍ରଭୃତି ଭୂଦାନ ବାର୍ତ୍ତା ପ୍ରସାର ପାଇଁ ସେଇଠି ଶିବିର ପାତୁଥିଲେ । ସେଇ ଘର ମଧ୍ୟ ବହୁ ଯଜ୍ଞ, ହୋମର ଓଁକାର ଧ୍ୱନିରେ ମୁଖରିତ ହେଉଥିଲା । ୧୯୧୫ ମସିହା ମାର୍ଚ୍ଚ ମାସ ୨୩ ତାରିଖରେ ଢେଙ୍କାନାଳର ପୋତାଗଡ଼ ଗାଁରେ ଜନ୍ମ ହୋଇଥିବା ବାଙ୍କନିଧି ଭୂତିଆ ଆପଣାର ପ୍ରିୟ ଜନ୍ମ ମାଟିରୁ ବିଦାୟ ନେଲେ ଜାନୁଆରୀ ୧୭, ୧୯୯୫ ମସିହାରେ ।

ସାଧାରଣ ଜୀବନକୁ ଆଉ ବେଶି ଲୋକ ଆସୁ ନାହାନ୍ତି । ସାଧାରଣ ଜୀବନ ବା ପବ୍ଲିକ ଲାଇଫ ବର୍ତ୍ତମାନ କ୍ରିମିନାଲମାନଙ୍କଦ୍ୱାରା ଆକ୍ରାନ୍ତ । ଶ୍ୱାସରୁଦ୍ଧ ଅବସ୍ଥା । ସେତିକିବେଳେ ଯେଉଁ କେତେଜଣ ଆପଣାକୁ ଏହାର ଊର୍ଦ୍ଧ୍ୱରେ ରଖି ପାରିଥିଲେ ସେମାନଙ୍କ ମଧ୍ୟରେ ବାଙ୍କନିଧି ଭୂତିଆ ଅନ୍ୟତମ । ଢେଙ୍କାନାଳରେ ସବୁ ପ୍ରଗତିଶୀଳ ଚିନ୍ତା ସହିତ ସେ ଜଡିତ ଥିଲେ ନିବିଡ ଭାବରେ ଏବଂ ତାହା ହିଁ ତାଙ୍କୁ ସ୍ମୃତ କରି ରଖିବ ଜନମାନସରେ ବହୁକାଳ ଧରି ।

❑❑❑

## ତୁମ ମରଦେହ ଗ୍ରାସିଛି ଶ୍ମଶାନ
## ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ

*(୰ ବିନୟ ମିଶ୍ର ଓ ୰ ଅଜୟ ଭୂୟାଁ)*

ମରଣ ଇମିତି ବି ଆସେ । କାହା ବେକ ପାଇଁ ଯାଉଥିବା ଫୁଲମାଳକୁ ନିଜ ବେକରେ ଗଳାଇ ସେମାନେ ଫେରନ୍ତି । କିନ୍ତୁ ସେ ଫେରିବା ତ ଦୁର୍ଗମ ଦୁରାରୋଧ । ମୃତ୍ୟୁ ଆସେ ଅଚାନକ । ଆସେ ପୁତ୍ର ପାଇଁ, ବୃଦ୍ଧ ପିତାମାତାଙ୍କ ଆଗରେ, ଆସେ ବିଧବା ମାଆ ଆଗରେ, ଆସେ ସଂସାରକୁ ଜାଣି ନଥିବା ପୁତ୍ରକନ୍ୟାମାନଙ୍କ ଆଗରେ । ଦୁର୍ବିସହ, ଦୁର୍ବିସହ ସେ ଯାତନା, ସେ ବେଦନା ସାନ୍ତ୍ୱନାର ବାହାରେ । କିଏ ଦେବ ସ୍ୱାନ୍ତ୍ୱନା ? ସମସ୍ତଙ୍କ ଆଖିରେ ତ ଲୁହ ଢେଉ କାଟୁଛି, ସମସ୍ତେ ତ ନିସ୍ତବଧ, ନିର୍ବାକ ! ସବୁ ଅସମ୍ପୂର୍ଣ୍ଣ ରହିଛି । ସବୁ ରହିଛି ଅଧାରେ । ଆଗରେ ବିରାଟ ଜୀବନ ପଡି ରହିଛି ଭୁବନେଶ୍ୱରକୁ ଯାଉଥିବା ରାଜରାସ୍ତାପରି । କାମ ଅନେକ । ଶିଳ୍ପ ଥିଲା ପେସା; କିନ୍ତୁ ନିଶା ଥିଲା ବହୁତ । କଳା, ସଂସ୍କୃତି, ଶିକ୍ଷା, ସାହିତ୍ୟ । ଜୀବନର ବହୁ ବିଭାବକୁ ଛୁଇଁଯାଉଥିଲା ସେଇ ଚାରୋଟି ହାତ । କିନ୍ତୁ ହଠାତ୍ ସେଇ ରାଜରାସ୍ତା ଉପରେ ସବୁର ପୂର୍ଣ୍ଣଛେଦ । ସବୁ ପାଲଟିଗଲା ଇତିହାସ । କାହିଁକି ? ସେଦିନ ରାଜା ପ୍ରଶ୍ନ ପଚାରିଥିଲେ ପଣ୍ଡିତଙ୍କୁ । ଆପଣ କହିପାରିବେ କାହିଁକି ପିତାମାତା ଆଗରେ ପୁତ୍ରର ମୃତ୍ୟୁ ହୁଏ । କହି ପାରିବେ କାହିଁକି ମୃତ୍ୟୁ ହୁଏ ସ୍ତ୍ରୀ ଆଗରେ ସ୍ୱାମୀର ? ସେ ପ୍ରଶ୍ନ ସେଇପରି ରହିଯାଇଛି । ଅନନ୍ତ ସେଇ ପ୍ରଶ୍ନ । ଏଇ ପ୍ରଶ୍ନର ଉତ୍ତର ଖୋଜିବାକୁ ଯାଇ ତ ଗୌତମ ପାଲଟିଲେ ବୁଦ୍ଧ । ସମସ୍ତେ ନିସ୍ତବ୍ଧ । ପ୍ରକୃତି ବି । ଆକାଶ ଗମ୍ଭୀର । ମେଘରେ ଆଚ୍ଛନ୍ନ । ସମସ୍ତଙ୍କ ଆଖି ଲୁହରେ ଭରା । ଦୁଇ ଉଦୀୟମାନ ମଣିଷ । ତେଜୋଦୀପ୍ତ ଦେହ । ମରଣର ଶୀତଳ ସ୍ପର୍ଶରେ ନିସ୍ତବ୍ଧ । ବିନି ମିଶ୍ର ଥିଲେ । କିନ୍ତୁ ନ ଥିଲା ଅହମିକା, ନଥିଲା ଗର୍ବ । ବିନୟର ଯେପରି ଏକ ଚଳନ୍ତି ପ୍ରତିମା । ବାପା ମାଆଙ୍କର ନାମ ସାର୍ଥକ କରିଥିଲେ । ସକାଳେ ଦେଖା ହୋଇଥିଲା । କହିଥିଲେ ସନ୍ଧ୍ୟାକୁ ଆସିବେ । ଆସିଲେ ତ ନାଇଁ, ଆଉ ବି ଆସିବେ ନାହିଁ । କିନ୍ତୁ ଗେଟ ଆଗରେ ଆମ୍ଭାସତର

ଗାଡ଼ିଟିଏ ରହିଲେ ମନେହେବ ସେ ଆସିଲେ । ୟୁନିଭର୍ସରେ ସେମିନାରଟିଏ ହେଲେ, କୌଣସି କାର୍ଯ୍ୟକ୍ରମ ହେଲେ ମନେହେବ ସେ ଆସିବେ । ଆମେ ତାଙ୍କୁ ଅପେକ୍ଷା କରିବୁ, ଥିବା ପର୍ଯ୍ୟନ୍ତ । ଅଜୟ ଥିଲା ସହପାଠୀ । କଥାବାର୍ତ୍ତାଟା ତେଣୁ ବାଟଘାଟ ମାନୁ ନଥିଲା । ଦେଖାହେଲେ ସେହିଭଳି କଥା । ସେଇ ହସ ହସ ମୁହଁ । କଲେଜରେ ଯେମିତି ଥିଲେ ଏବେ ବି ସେମିତି । ବୁଢ଼ା ଆଦୌ ବୁଢ଼ା ହୋଇ ନଥିଲା । ବାର୍ଦ୍ଧକ୍ୟ ତାକୁ ଛୁଇଁବାକୁ ଡରୁଥିଲା । ପଢ଼ିଥିଲା ଇତିହାସ, ହୋଇଥିଲା ପାଇଲଟ, ଶିଳ୍ପପତି । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ସିଣ୍ଡିକେଟର ସଭ୍ୟ । ସବୁ ବିଭାବକୁ ଛୁଇଁବାକୁ ତାର ପ୍ରବଳ ଆଗ୍ରହ । କେବଳ ମରଣଟା ବାକିଥିଲା । ସେଇଟାକୁ ସମ୍ପୂର୍ଣ୍ଣ କରିଦେଲା ସେ । ଦୁହେଁ ଥିଲେ ବ୍ୟକ୍ତିଗତ ବନ୍ଧୁ, ୟୁନିଭର୍ସ ପରିବାରର ଲୋକ । ବହୁ ଦୁଃଖସୁଖର ବନ୍ଧୁ । ବିନି ଥିଲା ଆମ ପରିବାର ଭିତରୁ ଜଣେ । ଭାଇଠାରୁ ବଳି । ବୟସରେ ବହୁତ ସାନ । ଅଜୟ ସହପାଠୀ । ସେମାନେ ନାହାନ୍ତି । ତାଙ୍କର ସ୍ମୃତିରେ ଲେଖିବାର 'ଗୌରବ' । କଲମ ରୁନ୍ଧିହୋଇଯାଏ, ଆଖି, ମନ ସବୁ ଅଚଳ ହୋଇଯାଏ । ମନେହୁଏ ନା ସେମାନେ ମରି ନ ପାରନ୍ତି । କାହିଁକି ମରିଯିବେ ସେମାନେ ? କ'ଣ ପାପ କରିଥିଲେ କି ସେମାନେ ? ଅନ୍ୟମାନେ କ'ଣ ପୁଣ୍ୟ କରିଛନ୍ତି ଯେ ବଞ୍ଚି ରହିବେ । ନା, ନା, ସେମାନେ ଫେରିବେ । ନ୍ୟାୟ ଯଦି ଥାଏ, ଧର୍ମ ଯଦି ଥାଏ, ସେମାନେ ଫେରିବେ । କିନ୍ତୁ ଏ ସବୁ ତ ବିଳାପ, ପ୍ରଳାପ । ସେମାନେ ଫେରିବେ ଆମ ଭିତରେ । ଆମେ ସବୁ ଥିବା ପର୍ଯ୍ୟନ୍ତ ।

□□□

# ଟିକିଏ ସ୍ମୃତି ଟୋପାଏ ଲୁହ
## (ଂ ବିଶ୍ୱନାଥ ପଶାୟତ)

ସକାଳଟା କିମିତି ହଠାତ୍ ବିଷର୍ଣ୍ଣ ହୋଇଗଲା । 'କଳିଙ୍ଗ' ଖବରକାଗଜ ଅଫିସରେ ପଶୁ ପଶୁ ସମ୍ବାଦ ମିଳିଲା ଯେ ବିଶ୍ୱନାଥ ପଶାୟତ ଆଉ ନାହାନ୍ତି । ଶବାଧାରରେ ଫୁଲ ଦେବା ପାଇଁ, ତାଙ୍କୁ ସମ୍ମାନ ଜଣାଇବା ପାଇଁ ଆମେ ସବୁ ଚାଲିଲୁ । କୋକେଇ ବନ୍ଧା ହେଉଛି ତାଙ୍କ ଘର ଦୁଆର ମୁହଁରେ । ବନ୍ଧୁମାନେ ଆସି ପହଞ୍ଚିବାକୁ ଲାଗିଲେଣି । ବିଭିନ୍ନ ଗୋଷ୍ଠୀର ମଣିଷ । ବାର୍ ଆସୋସିଏସନ୍‌ର ସମ୍ପାଦକ । ଓକିଲ ବନ୍ଧୁମାନେ ଆସି ପହଞ୍ଚିବାକୁ ଆରମ୍ଭ କଲେଣି । ବହୁକାଳ ଧରି ସେ ବାର ଆସୋସିଏସନ୍‌ର ସମ୍ପାଦକ । କୁହାଯାଏ ତାଙ୍କୁ କେହି ପ୍ରତିଦ୍ୱନ୍ଦ୍ୱିତା କରନ୍ତି ନାହିଁ । ସେ ଅବିସମ୍ବାଦୀ । ତେଣୁ ତାଙ୍କୁ ପୁଣି ଥରେ ସମ୍ପାଦକ ହେବା ପାଇଁ ଅନୁରୋଧ କରାଯାଏ ।

ବିଶ୍ୱନାଥ ପଶାୟତ କଟକ ଜିଲ୍ଲାର । ପାଠ ପଢ଼ିଛନ୍ତି ରେଭେନ୍‌ସା କଲେଜରେ । ପଢ଼ିବା ଦିନୁ ହିଁ ସେ ସମାଜସେବା ପ୍ରତି ମନ ବଳାଇଥିଲେ ଏବଂ ତାହା ଅତୁଟ ରହିଥିଲା ମୃତ୍ୟୁ ପର୍ଯ୍ୟନ୍ତ । ଛାତ୍ର ଜୀବନରେ ସେ ଅବିଭକ୍ତ ଛାତ୍ରସଂଘର ସମ୍ପାଦକ ଥିଲେ । କଂଗ୍ରେସରୁ ଅଲଗା ହୋଇ ସୋସାଲିଷ୍ଟ ପାର୍ଟି ଗଠନ ହେଲାବେଳେ ସେ ସୋସାଲିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ । ନବକୃଷ୍ଣ ଚୌଧୁରୀ, ସାରଙ୍ଗଧର ଦାସ, ଭଗବତୀ ଚରଣ ପାଣିଗ୍ରାହୀ, ମାଳତୀ ଦେବୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ ପ୍ରଭୃତିଙ୍କ ସହଯୋଗିତ୍ୱ ପାଇଥିଲେ ।

ଇତିହାସର ପୃଷ୍ଠାରେ ବାଜିରାଉତ ନାମ ଲିଭିବ ନାହିଁ । ବାଜି, ହୃଷୀ, ନଟ, ଲକ୍ଷ୍ମଣ, ଗୁରି ପ୍ରଭୃତିଙ୍କ ଶବନେଇ ଯାଉଥିବା ଶୋଭାଯାତ୍ରାରେ ଥିଲେ ବିଶ୍ୱନାଥ ପଶାୟତ । ମେଡିକାଲ ଧର୍ମଘଟ, ରେଭେନ୍‌ସା କଲେଜ ଛାତ୍ର ଧର୍ମଘଟ ପ୍ରଭୃତିରେ ନେତୃତ୍ୱ ନେଇଥିଲେ ସେ ।

ପାଠପଢ଼ା ସାରି ସେ ଆଇନ ବ୍ୟବସାୟରେ ଯୋଗ ଦେଇଥିଲେ । ସଦାବେଳିଆ ରାଜନୈତିକ କର୍ମୀ ହେବାରେ ଯେଉଁ ଝଡ, ଝଞ୍ଜା, ଦୁର୍ବିପାକ ଅଛି ତାକୁ ସହ୍ୟ କରିପାରିବେ

ନାହିଁ ବୋଧହୁଏ ତାଙ୍କର ମନେ ହୋଇଥିଲା । ଏହା ଛଡା ରାଜନୈତିକ କର୍ମୀମାନଙ୍କର ମଧ୍ୟ ଜଣେ ନିର୍ଭରଶୀଳ ଓକିଲ ଦରକାର ପଡୁଥିଲା । ଆନ୍ଦୋଳନ ବ୍ୟାପକ ହେବା ସହିତ ବିଚାରାଳୟରେ ରାଜନୈତିକ କର୍ମୀମାନଙ୍କର ସଂଖ୍ୟା ବଢ଼ିବାକୁ ଲାଗିଲା । ବିଚାରାଳୟରେ କେବଳ ନିଜେ ଲଢ଼ିଲେ ଯଥେଷ୍ଟ ନୁହେଁ ଲଢ଼ାଇକୁ ସଂଗଠିତ କରିବାକୁ ହେବ । ଅଧିକରୁ ଅଧିକ ପ୍ରଗତିଶୀଳ ଆଇନଜୀବୀଙ୍କୁ ତା' ଭିତରକୁ ଆଣିବାକୁ ପଡିବ । ଏ ପର୍ଯ୍ୟନ୍ତ ରାଜନୈତିକ କର୍ମୀମାନଙ୍କର ମୋକଦ୍ଦମା ଲଢ଼ିବା ପାଇଁ ଆଇନଶାଳାର ଅନେକ ଦନ୍ତାବଳ ବ୍ୟକ୍ତିଗତ ଭାବରେ ସେମାନଙ୍କର ସମୟ ଦେଉଛନ୍ତି । କିନ୍ତୁ ଲୋଡା ଏକ ସଙ୍ଗଠକ । ବିଶ୍ୱନାଥ ପଶାୟତଙ୍କ ଉପରେ ଏହି ଦାୟିତ୍ୱ ପଡ଼ିଲା । ସେ ତାହା ଗ୍ରହଣ କରି ନେଇଥିଲେ ।

ବିଶ୍ୱନାଥ ପଶାୟତଙ୍କର ତାଲିମ ଆରମ୍ଭ ହେଲା ଚିନ୍ତାମଣି ଆଚାର୍ଯ୍ୟଙ୍କ ପାଖରେ । ଚିନ୍ତାମଣି ଆଚାର୍ଯ୍ୟ ତାଙ୍କର ପଡ଼ୋଶୀ । ବିଶାଳ ଅବୟବ, ଲମ୍ବା ଯେମିତି ଚଉଡା ସେମିତି । କଣ୍ଠରୁ ନିର୍ଗତ ହୁଏ ଶବ୍ଦ ହୋସ୍ ପାଇପରୁ ପାଣି ବାହାରିଲା ପରି । କାଠଗଡ଼ାରେ ସାକ୍ଷୀମାନେ ଏକ କରି ପକାନ୍ତି ତାଙ୍କ ପାଟିରେ, ଟେବୁଲ ବାଡ଼ିଆରେ । ରକ୍ଷଣଶୀଳ, ଧର୍ମବିଶ୍ୱାସୀ ଚିନ୍ତାମଣି ଆଚାର୍ଯ୍ୟଙ୍କର ଶିଷ୍ୟ ବିଶ୍ୱନାଥ ପଶାୟତ ପ୍ରଗତିଶୀଳ, ଧର୍ମ ବିଶ୍ୱାସ ଆଦୌ ନାହିଁ । ନମ୍ର, ଭଦ୍ର । ତଥାପି ଦୁହିଁଙ୍କ ଭିତରେ ଗାଢ଼ ମମତା । (Anti-poles attract)

ପଶାୟତ ଗଣତାନ୍ତ୍ରିକ ଆଇନଜୀବୀ ସଂଘ, କୃଷକ ସଭା, ଶାନ୍ତି ଆନ୍ଦୋଳନ ସହିତ ନିବଢ଼ ଭାବରେ ଜଡିତ । ସବୁ ରାଜନୈତିକ କର୍ମୀଙ୍କ ମୋକଦ୍ଦମା ତାଙ୍କ ପାଖରେ । ପରେ ତାଙ୍କ ସହିତ ରଘୁନାଥ ଦାସ, ରାମଚନ୍ଦ୍ର ରାମ, ବିପିନ ବିହାରୀ ମହାନ୍ତି, ଦୟାନିଧି ସିଂହ, ଅଦ୍ୱୈତ ଚରଣ ମହାନ୍ତି ପ୍ରଭୃତିଙ୍କର ସମାବେଶ । ବିଶ୍ୱନାଥ ପଶାୟତ ଯାଆନ୍ତି ସୋଭିଏଟ୍ ୟୁନିଅନ । ପଶାୟତଙ୍କର ଦାନ୍ତ ଖସି ପଡିଥିଲା ବେଶ ଆଗରୁ । ପାକୁଆ ପାଟି । କିନ୍ତୁ ତାଙ୍କର ଅଭ୍ୟାସ ହେଉଛି ଗୁଡାଖୁ । ଏବଂ ତା ମଧ୍ୟ ପ୍ରତି ପାଞ୍ଚ ମିନିଟରେ । ଉଡାଜାହାଜ ଭିତରେ ଏହି ଘଟଣା ଦେଖି ଶ୍ୱେତାଙ୍ଗିନୀ ପରିଚାରିକା ଆଶ୍ଚର୍ଯ୍ୟ । କ'ଣ ଘଷୁଛି ଏଇ ଲୋକଟା ବାରମ୍ବାର ! ସିଟ୍ ଛାଡି ଦୌଡୁଚି ବେସିନ୍ ପାଖକୁ । କ'ଣ ସେଇ ନାଲି ନାଲି ଗୁଡାକ ହାତରେ ! ପରିଚାରିକା ଆଉ ବିସ୍ମୟକୁ ବେଶି ସମୟ ଚାପିରଖି ପାରିଲେ ନାହିଁ । କ'ଣ ସେଇଟା ଆପଣଙ୍କ ହାତରେ ? କ'ଣ ଘଷୁଛନ୍ତି ଏତେଥର ! ପରିଚାରିକାଙ୍କ ପ୍ରଶ୍ନ । ଇଣ୍ଡିଆନ୍ ଟୁଥପେଷ୍ଟ ! ବିଶ୍ୱନାଥ ପଶାୟତଙ୍କ ତୁରନ୍ତ ଉତ୍ତର । ହାସ୍ୟରୋଳ ଖେଳିଯାଏ ବ୍ୟୋମଯାନ ଭିତରେ ।

ବିଶ୍ୱନାଥ ପଶାୟତ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ । ତାଙ୍କର ଥିଲା ଦାୟିତ୍ୱବୋଧ । ଥିଲା ସାମାଜିକ କମିଟ୍‌ମେଣ୍ଟ । ପଶାୟତଙ୍କର ହାତରେ ମୋକଦ୍ଦମାଟିକୁ ଛାଡିଦେଇ ନିର୍ବିଘ୍ନରେ ଫେରି ଯାଉଥିଲେ ଘରକୁ । ତା'ପରେ ବାକି ସବୁ ଦାୟିତ୍ୱ ପଶାୟତଙ୍କର ।

ସେତେବେଳେ ଶହଶହ ରାଜନୈତିକ ବନ୍ଦୀ ଓଡିଶାର ବିଭିନ୍ନ ଜେଲରେ । ସେତେବେଳେ କୋର୍ଟଗୁଡ଼ିକ ଗଣତାନ୍ତ୍ରିକ ଧାରା, ଛାଞ୍ଚରେ ପଡ଼ି ନାହାନ୍ତି । କୋର୍ଟ ଥିଲା ରକ୍ଷଣଶୀଳ । ତଥାପି ବିଶ୍ୱନାଥ ପଶାୟତ ଲଢ଼ନ୍ତି ନିର୍ଭୟରେ । ମନେ ପଡୁଚି ୧୯୫୧-୫୨ ମସିହାରେ ଯେତେବେଳେ ବହୁ ମୋକଦ୍ଦମା ପରେ ମୋତେ ହାଇକୋର୍ଟ ଖଲାସ କଲେ ସେତେବେଳେ ମାନ୍ୟବର ବିଚାରପତି ପଚାରିଥିଲେ ପରିଶେଷରେ ଆପଣଙ୍କ ବାଳକ ଖଲାସ ହେଲା, ନୁହେଁ ଶ୍ରୀ ପଶାୟତ । ଖଲାସ ହେଲା ନୁହେଁ ନ୍ୟାୟ ପାଇଲା ଏବଂ ଏହା ଭିତରେ ସେ ନାବାଳକରୁ ସାବାଳକ ହୋଇଯାଇଛି କାରାଗାର ଭିତରେ ।

ବିଶ୍ୱନାଥ ପଶାୟତ ବନ୍ଧୁବତ୍ସଳ, ଉଦାର । ଯାହା କରିଛନ୍ତି ସେଥିପାଇଁ ବାହାବା ଖୋଜି ନାହାନ୍ତି, ଉପାଧି ଖୋଜି ନାହାନ୍ତି । ଗର୍ବୀ ହୋଇ ନାହାନ୍ତି । ସାମାଜିକ ଅଙ୍ଗୀକାର ଆଗରେ ଏକାମ ସବୁ କ'ଣ ? କିଛି ନୁହେଁ । ସଦାବେଳିଆ ରାଜନୈତିକ କର୍ମୀ ତ ହୋଇ ପାରିଲି ନାହିଁ, ଜୀବନରେ ଖେଦ ।

ପଶାୟତ ମଣିଷ ଭିତରେ ମଣିଷ ଥିଲେ । ଏବଂ ସେଇପରି ଭାବରେ ହିଁ ସ୍ମୃତ ହୋଇ ରହିବେ ତାଙ୍କର ଅଗଣିତ ବନ୍ଧୁଙ୍କର ସ୍ମୃତିପଟରେ ।

□□□

# କେତେକୋଟି ଦିନେ ରାତିପାହେ

*(୪ ବିନୋବା ବାଭେ)*

ମହାତ୍ମା ଗାନ୍ଧୀ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ଡାକରା ଦେଇଥାନ୍ତି । ଗଣ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଇ ତା' ସ୍ଥାନରେ ବ୍ୟକ୍ତିଗତ ସତ୍ୟାଗ୍ରହକୁ ବିକଳ୍ପ ଭାବରେ ଉପସ୍ଥାପିତ କରନ୍ତି । ଏବଂ ସେ ନିଜେ ବାଛିବେ ପ୍ରତ୍ୟେକ ବ୍ୟକ୍ତିଗତ ସତ୍ୟାଗ୍ରହୀକୁ । ପ୍ରଥମ ସତ୍ୟାଗ୍ରହୀ କିଏ ହେବ ? ସମସ୍ତେ ଭାବି ନେଇଛନ୍ତି ପ୍ରଥମ ସତ୍ୟାଗ୍ରହୀ ହେବେ ଜବାହରଲାଲ ନେହେରୁ ନିଶ୍ଚୟ । କିନ୍ତୁ ମହାତ୍ମା ଗାନ୍ଧୀ ବାଛନ୍ତି ପୌନାର ଆଶ୍ରମର ଏଇ ବାବାଜୀଟିକୁ । ସେ ତାଙ୍କରି ଭଳି ପିନ୍ଧେ ଲଏନ୍ କ୍ଲଥ୍ । ମୁହଁରେ ଏକପ୍ରକାର ଲମ୍ବା ଦାଢ଼ି । ବିବାହ କରିନାହାନ୍ତି । ବିବାହ କରିବା ପାଇଁ ସମୟ ପାଇନାହାନ୍ତି ବା ବିବାହ କରିବାର ପ୍ରବୃତ୍ତି ଆସି ନାହିଁ ।

ତାଙ୍କର ନାଁ ହେଉଛି ବିନୋବା ବାଭେ । ବ୍ୟକ୍ତିଗତ ସତ୍ୟାଗ୍ରହର ପ୍ରଥମ ସେନାନୀ । ନାଁ ଛିଟିକି ପଡେ ସାରା ଭାରତବର୍ଷରେ, ଭାରତ ବାହାରେ ମଧ୍ୟ । ଜୀବନର ବହୁବର୍ଷ କଟିଛି କାରାବାସରେ, ବହୁ କଷ୍ଟ ସହ୍ୟ କରିଛନ୍ତି । ଗାନ୍ଧୀବାଦଦ୍ୱାରା ଶାଣିତ ହୋଇଛନ୍ତି । ହାତରେ ଗୀତା, ଆର ହାତରେ ଇଉକ୍ଲିଡ୍ ଜୋମେଟ୍ରି ବା ଜ୍ୟାମିତି । ଏଇ ଦିଓଟି ହେଉଛି କୁଆଡେ ତାଙ୍କ ଶିକ୍ଷାର ଉତ୍ସ । ଯେତେବେଳେ ଯେଉଁଠି ସଂଶୟ ଉପୁଜିଛି ସେ ଗୀତା ପଢ଼ିବାରେ ମନୋନିବେଶ କରିଛନ୍ତି ବା ଇଉକ୍ଲିଡ୍ ଜୋମେଟ୍ରି ପଢ଼ିଛନ୍ତି । ତାଙ୍କର ସଂଶୟ ଦୂର ହୋଇଛି । ସମାଧାନର ବାଟ ମିଳିଯାଇଛି ।

ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ପରି ସେ ମଧ୍ୟ ଏକ ଆଶ୍ରମ ଗଠନ କରିଛନ୍ତି ପୌନାରରେ । ସଂଗ୍ରାମର ଦୁଇ ଅଧ୍ୟାୟ ମଧ୍ୟରେ ଯେଉଁ ବିରତି ଦେଖାଯାଏ ସେତେବେଳେ ସେ ଫେରିଯାଆନ୍ତି ଏଇ ଆଶ୍ରମକୁ । କୁଟୀରଶିଳ୍ପ, ଜନଜାଗରଣରେ ଲିପ୍ତ ରଖନ୍ତି ନିଜକୁ । ଗଠନମୂଳକ କାର୍ଯ୍ୟରେ ଆପଣାକୁ ବିନିଯୋଗ କରି ସଂଗ୍ରାମର ପରବର୍ତ୍ତୀ ଅଧ୍ୟାୟ ପାଇଁ ନିଜକୁ ପ୍ରସ୍ତୁତ କରନ୍ତି ।

ସ୍ୱାଧୀନତା ଆସିଛି । ଏହା ବହୁ ବ୍ୟକ୍ତି, ସଂଗଠନମାନଙ୍କୁ ସନ୍ତୁଷ୍ଟ କରିପାରି ନାହିଁ । ଏଇ କ'ଣ ସ୍ୱାଧୀନତା ? ସାଇନ୍‌ବୋର୍ଡ଼ ବଦଳିଗଲେ ତ ସ୍ୱାଧୀନତା ମିଳେନା । ଚାଷୀ ପାଇଁ ଜମି, ଭୋକୀ ଲାଗି ଭାତ, ଛାତ୍ର ପାଇଁ ଶିକ୍ଷା, ବେକାର ପାଇଁ ନିଯୁକ୍ତି, ମଜଦୁର ପାଇଁ ଉପଯୁକ୍ତ ମଜୁରୀ, ଲେଖକ ପାଇଁ ଲେଖାର, ଅଭିନେତା ପାଇଁ ରଙ୍ଗମଞ୍ଚର ବିକାଶ ହେଉଛି ସ୍ୱାଧୀନତା । କି ହେବ ଏ ସ୍ୱାଧୀନତା ଘେନି ?

ମହାତ୍ମା ଗାନ୍ଧୀ ମଧ ଏଇ କଥା କହିଥିଲେ । ଦଳେ ସରକାରକୁ ଗଲେ । ସେମାନଙ୍କ ମଧ୍ୟରୁ ଅନେକ ସନ୍ତୁଷ୍ଟ ନୁହନ୍ତି । କିନ୍ତୁ ଅନ୍ୟମାନେ ? ଅନ୍ୟମାନେ ସରକାରକୁ ଯିବାପାଇଁ ନାସ୍ତି କରିଦେଲେ । ସେମାନେ ନିଷ୍ପତ୍ତି କଲେ ଯେ ଗଠନମୂଳକ କାର୍ଯ୍ୟ, ଗ୍ରାମୀଣ ସ୍ୱାଧୀନତା ପାଇଁ ସେମାନେ କାମ କରିଯିବେ । ଶାସନ ଗାଦୀକୁ ଯିବେ ନାହିଁ । ସେମାନଙ୍କ ମଧ୍ୟରେ ଗାନ୍ଧିବାଦୀ ଅର୍ଥନୀତିଜ୍ଞ ଜେ.ସି. କୁମାରପ୍ପା, ବିନୋବା ଭାବେ ପ୍ରମୁଖ ଅନ୍ତର୍ଭୁକ୍ତ । ସରକାରୀ କଳର ବିଶାଳ ଶକ୍ତି ଆଗରେ ଏମାନଙ୍କର କେତେକ ସମୟ ପାଇଁ ଖୁବ୍ ବେଶି ନାଁ ଡାକ ଶୁଭିଲା ନାହିଁ । କିନ୍ତୁ ଦେଶ ଯେତେବେଳେ କୌଣସି ସଂକଟର ସମ୍ମୁଖୀନ ହୋଇଛି, ଶାସକ ଦଳ କୌଣସି ସଂକଟରେ ସମ୍ମୁଖୀନ ହୋଇଛି, ସେତେବେଳେ ଏଇଭଳି କର୍ମୀ ଓ ନେତାମାନଙ୍କୁ ଖୋଜା ପଡିଛି, ତାଙ୍କର ମୂଲ୍ୟ ବଢ଼ିଯାଇଛି ।

କେବଳ ଗାନ୍ଧିବାଦୀମାନେ ଯେ ନିରାଶ ହୋଇଛନ୍ତି ତା' ନୁହେଁ, ସମାଜବାଦୀମାନେ ମଧ ନିରାଶ ହୋଇଛନ୍ତି । ଦେଶର ଚାଷୀ, ମଜଦୁରଙ୍କ ମଧ୍ୟରେ ଉଦ୍‌ବେଳନ ଦେଖାଦେଇଛି । ଏହା ବିସ୍ଫୋରକ ପରିସ୍ଥିତିରେ ପହଞ୍ଚିଚି ଯେତେବେଳେ ଚାଷୀ ଆପଣାର କଠୋର ସଂଗ୍ରାମରେ ପାଇଥିବା ହକ୍ ହରାଇବାକୁ ବସିଛି ନୂତନ ବ୍ୟବସ୍ଥାରେ । ହାଇଦ୍ରାବାଦ ତାହାର ଏକ ଜ୍ୱଳନ୍ତ ଉଦାହରଣ । ଦେଶରେ ଥିଲା ବ୍ରିଟିଶ ସରକାର । ହାଇଦ୍ରାବାଦ ଥିଲା ଗଡଜାତମାନଙ୍କ ମଧ୍ୟରେ ସବୁଠାରୁ ବଡ଼ । ଶାସକ ଥିଲେ ନିଜାମ୍ । ନିଜାମଙ୍କର ଥିଲା ପ୍ରଚୁର ସ୍ଥାବର ଅସ୍ଥାବର ସମ୍ପତ୍ତି । ପୃଥିବୀର ସବୁଠାରୁ ବଡ଼ ଧନୀମାନଙ୍କ ଭିତରେ ସେ ଗଣା ହେଉଥିଲେ । ତାଙ୍କର ପ୍ରଚୁର ଜମିବାଡିର ସ୍ୱାର୍ଥରକ୍ଷା ପାଇଁ ହାତରେ ଥିଲା ସଶସ୍ତ୍ର ରାଜକର ବାହିନୀ । ଚାଷୀମାନଙ୍କ ଉପରେ ସେମାନେ ଅତ୍ୟାଚାର କରୁଥିଲେ ଭୀଷଣ ଭାବରେ । ସେ ଅତ୍ୟାଚାର ବିରୁଦ୍ଧରେ ଚାଷୀମାନେ ଏକତ୍ରିତ ହେଲେ । ସଂଗଠିତ ପ୍ରତିରକ୍ଷା ସଶସ୍ତ୍ର ସଂଗ୍ରାମରେ ପରିଣତ ହେଲା । ଚାଷୀମାନେ ଲଢ଼େଇକରି ନିଜେ ଚାଷ କରୁଥିବା ଜମିକୁ ନିଜ ଅକ୍ତିଆରକୁ ଆଣିଲେ । ଏତିକିବେଳେ ଦେଶୀୟ ରାଜ୍ୟମାନଙ୍କର ମିଶ୍ରଣ ହେଲା । କିନ୍ତୁ ହାଇଦ୍ରାବାଦରେ ଚାଷୀ ହାତରୁ ପୁଣି ଜମି ରାଜକର ବା ନିଜାମ ହାତକୁ ଚାଲିଯିବାର ଭୟ ହେଲା । ଆରମ୍ଭ ହେଲା ସଶସ୍ତ୍ର

ସଂଗ୍ରାମ । ଇତିହାସରେ ବିଶେଷତଃ କମ୍ୟୁନିଷ୍ଟ ପାର୍ଟିର ଇତିହାସରେ ଏହା 'ତେଲେଙ୍ଗାନାର ବାଟ' ଭାବରେ ଖ୍ୟାତ । ଏକ ପଟରେ ବର୍ତ୍ତମାନ ଭାରତ ସରକାରଙ୍କର ବିରାଟ ସେନାବାହିନୀ । ଆଧୁନିକ ଅସ୍ତ୍ରରେ ସଜ୍ଜିତ । ଅନ୍ୟ ଦିଗରେ ଯାହା ହାତରେ ପାଇଲା ଅସ୍ତ୍ର ହାତରେ ତେଲେଙ୍ଗାନାର ଚାଷୀ । କମ୍ୟୁନିଷ୍ଟ ପାର୍ଟିର ଦୁଃସାହସିକତାବାଦ ଯୋଗୁଁ ପ୍ରାୟ ଆଠ ହଜାରରୁ ଅଧିକ କ୍ୟାଡ଼ର ବଳି ପଡିଲେ । ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ମିଡ଼ଲ୍ କ୍ୟାଡରର୍ । ତେଣୁ ସେମାନଙ୍କ ଭିତରେ ବହୁ ଅଧ୍ୟାପକ, ଲେଖକ, କଳାକାର ହିଁ ଥିଲେ । କମ୍ୟୁନିଷ୍ଟ ପାର୍ଟିର ଦୁଃସାହସିକ ନୀତି ଯୋଗୁଁ ପାର୍ଟି ବିପର୍ଯ୍ୟସ୍ତ ହୋଇଗଲା ସତ୍ୟ; କିନ୍ତୁ ଚାଷୀର ଦାବୀ ଉପରେ ଏକ ବିରାଟ ଜନମତ ଗଢ଼ିଉଠିଲା ।

ବିନୋବା ବାଭେ ଆବିର୍ଭାବ ହେଲେ ଏଇ ଭୂଖଣ୍ଡରେ ଭୂଦାନର ସ୍ଲୋଗାନ ନେଇ । ସେ ନିବେଦନ କରିବେ ଜମିଦାର କୁଳକୁ, ନିବେଦନ କରିବେ ବଡ଼ ଜମି ମାଲିକମାନଙ୍କୁ ବଳକା ଜମି ବା ଜମିର ଏକ ଷଷ୍ଠାଂଶ ଦାନ କରିବା ପାଇଁ । ବିନୋବା ତୁମର ଷଷ୍ଠ ପୁଅ । ସେ ମାଗୁଛି ମାତ୍ର ଏକ ଷଷ୍ଠାଂଶ ଭୂମି । କମ୍ୟୁନିଷ୍ଟ ପାର୍ଟିର ତତ୍କାଳୀନ ନେତା ଶ୍ରୀପଦ ଅମ୍ରିତ ଡାଙ୍ଗେ ବିନୋବାଙ୍କୁ କହିଲେ ଯେ ଯଦି ଚାଷୀ ତା'ର ହକ୍ ପାଇବ ତା'ହେଲେ ସେ ବନ୍ଧୁକ ପରିବର୍ତ୍ତରେ ଲଙ୍ଗଳ ଧରିବାକୁ ରାଜି ଅଛି । ସାରା ଭାରତରେ ଭୂଦାନର ଉଦ୍‌ବେଳନ ଖେଳିଗଲା । ଅନେକ ଆଦର୍ଶବାଦୀ ଗାନ୍ଧିବାଦୀମାନେ ବିନୋବା ବାଭେଙ୍କ ପଦଯାତ୍ରାରେ ଯୋଗଦେଲେ । ଜୟପ୍ରକାଶ, ନବକୃଷ୍ଣ ଚୌଧୁରୀ ସେମାନଙ୍କ ମଧ୍ୟରେ ଅନ୍ୟତମ । ଭୂଦାନରୁ ଗ୍ରାମ ଦାନ, ଗ୍ରାମ ଦାନରୁ ଜୀବନ ଦାନର ପର୍ବ ଆରମ୍ଭ ହେଲା । ବେଶ୍ କିଛି ସମୟ ପର୍ଯ୍ୟନ୍ତ ଏହା ଭୂବିପ୍ଳବର ବିକଳ୍ପ ଭଳି ପ୍ରତୀୟମାନ ହେଲା । କାଳକ୍ରମେ ଏକ ରିଚୁଆଲ ବା ପାର୍ବଣରେ ପରିଣତ ହେଲା । ଉଦାହରଣ ସ୍ୱରୂପ କଟକର କନିକା ରାଜବାଟୀର ବିଶାଳ ଅଞ୍ଚଳ ବ୍ୟାପୀ ପ୍ରାଚୀର ଉପରେ ପତାକା କିଛି ସମୟ ପାଇଁ ପୋତିଦେଇ ଜମି ଦଖଲ ହୋଇଥିଲା ବୋଲି ପ୍ରଚାର କଲେ ଏବଂ ଭାବିଲେ ହୁଏତ । କିନ୍ତୁ ଏହା ପ୍ରତାରଣା ଛଡ଼ା ଆଉ କିଛି ନଥିଲା । ଖୋଦ୍ ଜୟପ୍ରକାଶଙ୍କ ବିହାରରେ ଏହା ଜମି ସମସ୍ୟାର ସମାଧାନ କରିପାରିଲା ନାହିଁ କି ଜମିଦାରୀ ଶୋଷଣ ବନ୍ଦ କରିପାରିଲା ନାହିଁ । ଜମିଦାରକୁଳ ଆପଣାର ନୃଶଂସ ଅତ୍ୟାଚାରକୁ ଜାହିର୍ ରଖିବା ପାଇଁ ସେନାବାହିନୀ ନିଜେ ନିଜେ ଗଠନ କଲେ । ପୁଣି ସଶସ୍ତ୍ର ସଂଗ୍ରାମର ଉପକଣ୍ଠରେ ବିହାର ପହଞ୍ଚିଲା ।

ଏତିକିବେଳେ ଇନ୍ଦିରା ଗାନ୍ଧୀ ଜରୋରୀ ପରିସ୍ଥିତି ଜାରି କଲେ ବିପ୍ଳବୀ, ସମାଜବାଦୀ ସ୍ଲୋଗାନ ଦେଇ । ବ୍ୟାଙ୍କ ଜାତୀୟକରଣ, ରାଜାମାନଙ୍କର ଭତ୍ତା କାଟ ଏହାର ପ୍ରଥମ ପଦକ୍ଷେପ ହେଲା । ସ୍ୱାଭାବିକ ଭାବରେ ଏହା ସଂସ୍କାର ଚାହୁଁଥିବା ଶକ୍ତିମାନଙ୍କ

ଭିତରେ ବିଭେଦ ସୃଷ୍ଟି କଲା । ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଏହାକୁ ବୈପ୍ଳବିକ ପଦକ୍ଷେପ ବୋଲି ଘୋଷଣା କରି ଜରୋରୀ ପରିସ୍ଥିତିକୁ ସମର୍ଥନ କଲା । ମାର୍କସବାଦୀ କମ୍ୟୁନିଷ୍ଟ ପାର୍ଟି ସହିତ ଏହାର ମତଭେଦ ସୁଦୃଢ଼ ହୋଇଗଲା । କାରଣ ମାର୍କସବାଦୀ କମ୍ୟୁନିଷ୍ଟମାନେ ଜରୋରୀ ପରିସ୍ଥିତିକୁ ସମର୍ଥନ କଲେ ନାହିଁ । କଟ୍ଟର ବିପ୍ଳବୀମାନଙ୍କ ଭିତରେ ଏଇ ଅବସ୍ଥା ! ଗାନ୍ଧିବାଦୀମାନଙ୍କ ଭିତରେ ତତୋଧିକ ଅବସ୍ଥା । ବିନୋବା ବାଭେ ପରିସ୍ଥିତିକୁ ସ୍ୱାଗତ କରି ଏହା ଅନୁଶାସନ ପର୍ବ ବୋଲି ଘୋଷଣା କଲେ । ତାଙ୍କ ସହିତ ନିର୍ମଳ ଦେଶପାଣ୍ଡେ ପ୍ରଭୃତି ।

ଅପର ପକ୍ଷରେ ଜୟପ୍ରକାଶ, ନବକୃଷ୍ଣ ଚୌଧୁରୀ ପ୍ରଭୃତି ଜରୋରୀ ପରିସ୍ଥିତିକୁ ବିରୋଧ କଲେ, କାରାଗାର ବରଣ କଲେ । ସେଇମାନେ ହିଁ ବର୍ତ୍ତମାନ ବିନୋବା ବାଭେଙ୍କୁ 'ସରକାରୀ ସାଧୁ' ବୋଲି ଅଭିହିତ କଲେ । ବିନୋବା ବାଭେଙ୍କର କାଟ୍‌ତି କମିଗଲା । ଏବଂ ଇନ୍ଦିରା ଗାନ୍ଧୀଙ୍କ ସାମୟିକ ପରାଜୟ ବିନୋବା ବାଭେଙ୍କୁ ଭାରତୀୟ ଜନଜୀବନରୁ ବହୁ ଦୂରକୁ ହଟାଇ ନେଲା ।

ବୟସ ହୋଇଯାଇଛି । ସ୍ୱପ୍ନ ଭାଙ୍ଗି ଯାଇଛି । ଦେହ ଦୁର୍ବଳ ହୋଇଗଲାଣି । ବିନୋବା ବାଭେଙ୍କର ସ୍ୱାସ୍ଥ୍ୟରେ ଦ୍ରୁତ ଅବନତି ଦେଖାଦେଇଛି । ଏକ ବିରାଟ ପରୀକ୍ଷା ଫେଲ୍ ମାରିଚି । କିନ୍ତୁ ରଖିଯାଇଛନ୍ତି ଆପଣାର ଅଭିଲେଖ, ଆଗାମୀ ଯୁଗ ପାଇଁ । ବିନୋବା ବାଭେଙ୍କ ଦେହ ଆଉ ବୋଲ ମାନୁ ନାହିଁ । ସେ ଔଷଧ ଖାଇବା ଛାଡ଼ି ଦେଇଛନ୍ତି ।

ମୃତ୍ୟୁ ଅଲଂଘନୀୟ । ତା'ର ପଦଧ୍ୱନି ଶୁଭୁଚି । ତାକୁ ଆସିବାକୁ ଦିଅ । ମିଛରେ ଜଞ୍ଜାଳ ବଢ଼ାଇ ଯନ୍ତ୍ରଣା ହିଁ ସାର । ବିନୋବା ବାଭେ ସ୍ଥିତପ୍ରଜ୍ଞ । ନା, ଆଉ ନୁହେଁ । ମାନସିକ, ତାତ୍ତ୍ୱିକ ପରାଜୟ ହୋଇଥିଲା । ବର୍ତ୍ତମାନ ଶାରୀରିକ ପରାଜୟର ସମୟ । ନା ଆଉ ନୁହେଁ, ମୃତ୍ୟୁ ମୋତେ ଭେଟିବା ପୂର୍ବରୁ ମୁଁ ତାକୁ ଭେଟିବାକୁ ଯିବି ।

□□□

# ପରମ୍ପରାର ସ୍ରଷ୍ଟା

## (୰ ବିଶ୍ୱନାଥ ଦାଶ)

ବିଶ୍ୱନାଥ ଦାଶଙ୍କର ଆଜି ପରଲୋକ ହୋଇଗଲା ତାଙ୍କର କଟକ ବାସଭବନରେ । ବୟସ ଅତିକ୍ରାନ୍ତ ହୋଇଥିଲା । ଗଲା କେତେଦିନ ଧରି ସେ ଅସୁସ୍ଥ ଥିଲେ । ପରଲୋକ ସମ୍ବାଦ ପ୍ରଚାରିତ ହୋଇଯାଇଛି ଲୋକମୁଖରେ । ଭିଡ଼ ଜମୁଚି । ବିଶ୍ୱନାଥ ଦାଶ ଓଡ଼ିଶାର ଦ୍ୱିତୀୟ ପ୍ରଧାନମନ୍ତ୍ରୀ । ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ହେଉଛନ୍ତି ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି । କିନ୍ତୁ ତାଙ୍କର କାର୍ଯ୍ୟକାଳ ଏତେ ସଂକ୍ଷିପ୍ତ ସମୟ ପାଇଁ ଯେ ଲୋକ ସ୍ମୃତିରେ ବିଶ୍ୱନାଥ ଦାଶ ହିଁ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ । ବିଶ୍ୱନାଥ ଦାଶ ମାନ୍ଦ୍ରାଜ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ସଭ୍ୟ ଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ଯେଉଁ ନିର୍ବାଚନ ହେଲା ସେଥିରେ ବିଶ୍ୱନାଥ ଦାଶ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହେଲେ । ଗାନ୍ଧିଜୀ ତାଙ୍କୁ ମନୋନୟନ କଲେ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେବା ପାଇଁ । ତାଙ୍କର ବୈଧାନିକ ଭାବରେ ଅଭିଜ୍ଞତା ଥିବାରୁ ମନୋନୟନ ହେଲା ବୋଲି କେତେକ ମତ ଦିଅନ୍ତି । ଅନ୍ୟ କେତେକଙ୍କ ମତରେ ଓଡିଶା କଂଗ୍ରେସ ଭିତରେ ଜମି ଆସୁଥିବା ଗୋଷ୍ଠୀ କନ୍ଦଳ ଏଥିପାଇଁ ଦାୟୀ । ବିଶ୍ୱନାଥ ଦାଶ କେବଳ ପ୍ରଧାନମନ୍ତ୍ରୀ ହେଲେ ନାହିଁ ଏକ ନୂତନ ପରମ୍ପରା ମଧ୍ୟ ସୃଷ୍ଟି କରିଗଲେ ଭାରତବର୍ଷର ସାମ୍ବିଧାନିକ ଇତିହାସରେ । ଏଥିପାଇଁ ସେ ଚିରକାଳ ସ୍ମୃତ ହୋଇ ରହିବେ । ସେ ପ୍ରଧାନମନ୍ତ୍ରୀ ଥିଲାବେଳେ ଗଭର୍ଣ୍ଣର ଛୁଟିରେ ଯିବାକୁ ଚାହିଁଲେ । ଭାଇସରାୟ ରାଜ୍ୟର ଚିଫ୍ ସେକ୍ରେଟାରୀଙ୍କୁ ଅସ୍ଥାୟୀ ରାଜ୍ୟପାଳ କରିବାକୁ ଚାହିଁଲେ । ବିଶ୍ୱନାଥ ଦାଶ ଏହାର ବିରୋଧ କଲେ । ନିଜର ସବର୍ଡିନେଟ୍ ବା ଅଧସ୍ତନ କର୍ମଚାରୀ ତାଙ୍କର ମାଲିକ ବା ବସ୍ ହୋଇପାରିବ ନାହିଁ । ବିଶ୍ୱନାଥ ଦାଶ ଇସ୍ତଫା ଦେବାର ଧମକ ଦେଲେ । କାରଣ ଭାରତ ସରକାରଙ୍କର ଜିଦ୍ ବଢ଼ି ଯାଇଥିଲା । ଏକ କଳାଲୋକର ଏପରି ବହପ ଗୋରା ଲୋକେ ସହ୍ୟ କରିବା ଅସମ୍ଭବ । କଥାଟା ଗାନ୍ଧିଜୀଙ୍କ ପର୍ଯ୍ୟନ୍ତ ଗଲା । କିନ୍ତୁ ବିଶ୍ୱନାଥ ଦାଶ ଗାନ୍ଧିଜୀଙ୍କ ପାଖରେ ମଧ୍ୟ ନିଜ ନିଷ୍ପତ୍ତିରେ ଅଟଳ । ସରକାର ମୁଣ୍ଡ ନୋଇଁଲେ । ରାଜ୍ୟପାଳ ଛୁଟିରେ ଆଉ ଗଲେ ନାହିଁ । ନୂଆ ପରମ୍ପରା ସୃଷ୍ଟି ହେଲା

ଉତ୍ତର ପୀଢ଼ି ପାଇଁ । ଠିକ୍ ସେଇପରି ଖଦୀ କିଣିବା ବିଷୟରେ । ସେତେବେଳେ ସମ୍ବିଧାନ ଅନୁଯାୟୀ ମନ୍ତ୍ରିମଣ୍ଡଳର ବୈଠକରେ ରାଜ୍ୟପାଳ ସଭାପତିତ୍ୱ କରୁଥିଲେ । ସେ ଅନୁପସ୍ଥିତ ରହିଲେ ପ୍ରଧାନମନ୍ତ୍ରୀ ସଭାପତିତ୍ୱ କରିବାର ନିୟମ । ଓଡ଼ିଶା ସରକାର ଏକ ଲକ୍ଷ ଟଙ୍କାର ଖଦୀ କିଣିବାକୁ ଚାହିଁଲା । ଚିଫ୍ ସେକ୍ରେଟାରୀ ଏହା ରାଜ୍ୟପାଳଙ୍କ ଦୃଷ୍ଟିକୁ ଆଣିଲେ । ଏଭଳି ଏକ ନିଷ୍ପତ୍ତି ଗର୍ହିତ କଥା । କିନ୍ତୁ ଗଭର୍ଣ୍ଣର କରିବେ କ'ଣ ? ତେଣୁ ସେ ଏକ ଉପାୟ ଚିନ୍ତା କଲେ । ବୈଠକରେ ଆଜେଣ୍ଡା ବା କାର୍ଯ୍ୟକ୍ରମ ପ୍ରସ୍ତୁତ ହେଉଛି । ଖଦୀ କିଣିବା କାର୍ଯ୍ୟକ୍ରମକୁ ତଳକୁ ରଖାଗଲା । କଥା ହେଲା ରାଜ୍ୟପାଳ ମଧ୍ୟାହ୍ନ ଭୋଜନକୁ ଯାଇ ଆଉ ଫେରିବେ ନାହିଁ । ତେଣୁ ଖଦୀ କିଣିବା କାର୍ଯ୍ୟକ୍ରମ ବିଚାରକୁ ଆସିବ ନାହିଁ । ଯଥା ସମୟରେ ରାଜ୍ୟପାଳ ମଧ୍ୟାହ୍ନ ଭୋଜନକୁ ଯିବାପାଇଁ ଉଠିଲେ । ମନ୍ତ୍ରିମଣ୍ଡଳର ବୈଠକ ବନ୍ଦ ହୋଇଯିବାର କଥା । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାଶ କହିଲେ ମାନ୍ୟବର ଗଭର୍ଣ୍ଣର ମଧ୍ୟାହ୍ନ ଭୋଜନକୁ ଯାଇ ପାରନ୍ତି । କିନ୍ତୁ ମନ୍ତ୍ରିମଣ୍ଡଳ ବୈଠକ ଚାଲୁ ରହିବ ଏବଂ ନିୟମାନୁଯାୟୀ ପ୍ରଧାନମନ୍ତ୍ରୀ ସଭାପତିତ୍ୱ କରିବେ । ଗଭର୍ଣ୍ଣରଙ୍କ ପାଖରେ ଉପାୟ କ'ଣ ? ସେ ବାଧ୍ୟହୋଇ ମଧ୍ୟାହ୍ନ ଭୋଜନକୁ ଗଲେ ଏବଂ ଚିଫ୍ ସେକ୍ରେଟାରୀଙ୍କୁ ଫୋନ୍ କଲେ ଯେ କୌଣସି ଉପାୟ ନାହିଁ । ଖଦୀ କିଣିବା କାର୍ଯ୍ୟକ୍ରମକୁ ଏଡାଇବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ ।

ବିଶ୍ୱନାଥ ଦାଶ ଜଣେ ନିୟମ ଜଗି ଚଳିବା ଲୋକ । ଯାହାକୁ ଇଂରାଜୀରେ କୁହାଯାଏ ଷ୍ଟିକଲର୍ ଟୁ ରୁଲ୍ସ୍ । ଏଥିପାଇଁ ତାଙ୍କର ଖ୍ୟାତି ଥିଲା । ସରୁ, ପତଳା, ଗୋରା ମଣିଷ । ଖାଇ ସାରିଲା ପରେ ନିଶ୍ଚୟ ଘଣ୍ଟାଟିଏ ବଜ୍ରାସନରେ ବସିବେ । ଏବଂ ସେଇ ବସିଲାବେଳେ ମଧ୍ୟ ଅନେକ ଫାଇଲ କାମ ସାରିବେ । ଗୋରା ଅଫିସରମାନଙ୍କୁ ଡାକି କଦଳୀ ପତ୍ରରେ ତଳେ ବସି ଖାଇବାକୁ ଦେବା ପ୍ରଭୃତି ଅନେକ କାହାଣୀ ତାଙ୍କ ନାଁ ସହିତ ଜଡ଼ିତ ରହିଛି । ସେତେବେଳେ ବିଦେଶୀ ଶାସନ । ଗୋରାମାନେ ଅତ୍ୟାଚାର କରୁଥିଲେ କଳାମାନଙ୍କ ଉପରେ । ତେଣୁ ଯଦି କୌଣସି କଳାଲୋକ କୌଣସି ବାଟରେ ଇଂରେଜମାନଙ୍କ ଉପରେ ଦାଉ ସାଧିଲା ସେ ଲୋକମାନଙ୍କ ଉପରେ ବୀର ବା ହୀରୋ ହୋଇଯାଉଥିଲା ।

ବିଶ୍ୱନାଥ ଦାଶ ଚାଷୀ ପରିବାରର ଲୋକ । ଦେଶ ଖାନ୍‌ଦାନ୍ । ରକ୍ଷଣଶୀଳ ସବୁ କଥାରେ । କିନ୍ତୁ ଗଞ୍ଜାମ ଜିଲ୍ଲା ରଇତ ଆନ୍ଦୋଳନର ଅନ୍ୟତମ ପୁରୋଧା ହେଉଛନ୍ତି ବିଶ୍ୱନାଥ ଦାଶ । ମୁସ୍ତାଦାରୀ ପ୍ରଥା ବିରୁଦ୍ଧରେ ଗଞ୍ଜାମ ରଇତ ଆନ୍ଦୋଳନର ନେତା ବିଶ୍ୱନାଥ ଦାଶ । ସହଯୋଦ୍ଧା ଦିବାକର ପଟ୍ଟନାୟକ, ଉମାଚରଣ ପଟ୍ଟନାୟକ, ଗୋବିନ୍ଦ ପ୍ରଧାନ, ହରିହର ଦାଶ, ବନମାଳୀ ମହାରଣା ପ୍ରଭୃତି । ରଇତ ଆନ୍ଦୋଳନ ହିଁ ତାଙ୍କୁ

ନେଇ ଆସିଥିଲା ରାଜନୈତିକ ଆକାଶକୁ । ସ୍ୱାଧୀନତା ସଂଗ୍ରାମୀ ବିଶ୍ୱନାଥ ଦାଶ କାରାବରଣ କରିଛନ୍ତି ବହୁବାର । ୧୯୪୨ ମସିହାରେ ବ୍ରହ୍ମପୁର ଜେଲରେ ବନ୍ଦୀ ଥିଲାବେଳେ ସହଯୋଦ୍ଧା ଲକ୍ଷ୍ମଣ ନାୟକର ଫାଶି ହୁଏ । ବହୁ ସହଯୋଦ୍ଧା ସମାଜବାଦୀ ପାଲଟନ୍ତି । ବିଶ୍ୱନାଥ ଦାଶ ରହିଯାଆନ୍ତି ସେଇପରି । ପାର୍ଲ୍ୟାମେଣ୍ଟ ସଦସ୍ୟ ହୋଇଛନ୍ତି । ହୋଇଛନ୍ତି ଉତ୍ତର ପ୍ରଦେଶର ରାଜ୍ୟପାଳ । ଡକ୍ଟର ହରେକୃଷ୍ଣ ମହତାବ ବମ୍ବେର ରାଜ୍ୟପାଳ ଭାବରେ ଏବଂ ଶ୍ରୀ ବିଶ୍ୱନାଥ ଦାଶ ଉତ୍ତର ପ୍ରଦେଶର ରାଜ୍ୟପାଳ ଭାବରେ ସୁନାମ ଅର୍ଜନ କରିଛନ୍ତି । ସରକାରୀ ଏବଂ ବିରୋଧୀ ଦଳ, ଉଭୟଙ୍କ ସହିତ ସେମାନଙ୍କର ସଦ୍‌ଭାବ ରହିଥିଲା ଏବଂ ରାଜ୍ୟପାଳ ପଦବୀର ମର୍ଯ୍ୟାଦାକୁ ସେମାନେ ଅତୁଟ ରଖିଥିଲେ ।

ଖାଆନ୍ତି ସରଳ ଖାଦ୍ୟ । ଭାତ ଓ ସନ୍ତୁଳା ତାଙ୍କର ଆହାର । ଥରେ ରାଉରକେଲା ଗସ୍ତରେ ଯାଉଥିଲେ, ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ (ପ୍ରଥମଥର ମୁଖ୍ୟମନ୍ତ୍ରୀଙ୍କ ନାମ ଥିଲା ପ୍ରଧାନମନ୍ତ୍ରୀ) ଭାବରେ । ରାଉରକେଲା ଗେଷ୍ଟ ହାଉସ୍‌ରୁ ମୁଖ୍ୟମନ୍ତ୍ରୀଙ୍କ ଖାଇବା ମେନୁ ଜାଣିବା ପାଇଁ ଖବର ଆସିଲା । ଟେଲିଗ୍ରାମ ଗଲା ଏପଟରୁ । କିନ୍ତୁ ସନ୍ତୁଳାକୁ ଇଂରାଜୀ ଭାଷାରେ କେହି ବୁଝିପାରିଲେ ନାହିଁ । ପରିଶେଷରେ ନିଜେ ମୁଖ୍ୟମନ୍ତ୍ରୀଙ୍କୁ ହିଁ ଉତ୍ତର ଦେବାକୁ ହେଲା ଯେ ଏହା କିଛି ଏପରି ସ୍ୱତନ୍ତ୍ର ଖାଦ୍ୟ ନୁହେଁ । ଏହା ସନ୍ତୁଳା ମାତ୍ର । ବହୁକାଳ ଧରି ରାଉରକେଲାରେ ଏହା ଏକ କାହାଣୀ ହୋଇ ରହିଗଲା ।

ବିଶ୍ୱନାଥ ଦାଶ ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ ହେଲେ, ଅଚଳ ରାଜନୈତିକ ଅବସ୍ଥାର ସମାଧାନ ପାଇଁ । ରାଉରକେଲାର ଉପନିର୍ବାଚନରେ ଜୟଲାଭ କଲେ । ଏ ମନ୍ତ୍ରୀତ୍ୱ ମଧ୍ୟ ପୂରା ସମୟ ରହିପାରିଲା ନାହିଁ । ବିଶ୍ୱନାଥ ଦାଶ ଇସ୍ତଫା ଦେଇଦେଲେ ।

ଲୋକସେବକ ମଣ୍ଡଳର ସେ ବହୁକାଳ ସଭାପତି ଥିଲେ । ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ ତାଙ୍କରି ସମୟରେ ଲୋକସେବକ ମଣ୍ଡଳର ସଭ୍ୟ ହେଲେ ।

ବିଶ୍ୱନାଥ ଦାଶ ବେଶ୍ ହ୍ୟୁମର ବି କରିପାରନ୍ତି । ନାତି ଯାଉଛି ବିଦେଶ । ଘରେ ବହୁ ଅତିଥି ବସିଛନ୍ତି, ନାରୀ ଓ ପୁରୁଷ ବିଭିନ୍ନ ବୟସର । କିଏ ଆସି ଖବର ଦେଲା ଯେ ନାତି ଯାଉଚି, ଆଶୀର୍ବାଦ ନେବାକୁ ଆସିଚି । ବିଶ୍ୱନାଥ ଦାଶ ସମ୍ମତି ଦେଲେ । ଚାରିପଟରେ ବେଶ୍ ମଣିଷଙ୍କର ଭିଡ । ନାତି ଆସି ମୁଣ୍ଡିଆ ମାରିଲା । ବିଶ୍ୱନାଥ ବାବୁ ଆଶୀର୍ବାଦ କରି କହିଲେ ଯେ ବାବୁ, ବିଦେଶ ଯାଉଚୁ । ଯୋଡ଼ିଏ ଜିନିଷ ପ୍ରତି ଜାଗ୍ରତ । ତୁଣ୍ଡ ଓ ବାଣ୍ଡ । ଏ ଦୁଇଟି ପ୍ରତି ଜାଗ୍ରତ ଥିଲେ ଆଉ ଆପଦ ନାହିଁ । କଥାଟା କାନକୁ ଅଖାଡୁଆ ଶୁଭୁଚି । କିନ୍ତୁ ଏହା କେତେ ଅଭ୍ରାନ୍ତ ସତ୍ୟ ।

ବିଶ୍ୱନାଥ ଦାଶ ନାହାନ୍ତି । ପରମ୍ପରାର ଅନ୍ୟତମ ସ୍ରଷ୍ଟାର ବିଦାୟ ।

□□□

# ମୁରୁଖରୁ ଶିକ୍ଷକ

(ଂ ବିନୋଦ କାନୁନଗୋ)

ବିନୋଦ କାନୁନଗୋ ଆଉ ନାହାନ୍ତି । ତାଙ୍କର ମରଦେହ ନିଷ୍ପନ୍ଦ ହୋଇଯିବା ମୁହୂର୍ତ୍ତ ବେଳକୁ ପୁତ୍ର ଡାକ୍ତର ଆଲୋକ କାନୁନଗୋ ଓ ମୁଁ ଠିଆ ହୋଇଥିଲୁ । ତାଙ୍କର ଶଯ୍ୟା ପାଖରେ । ବାରଣ୍ଡାରେ 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥଙ୍କୁ ବଳାଇ ଦେଇ ଠିଆ ହୋଇଥିଲେ ପୁତ୍ର ପାବକ କାନୁନଗୋ, ଦୀପକ କାନୁନଗୋ ଓ ଭଣଜା ସ୍ୱାଧୀନତା ସଂଗ୍ରାମୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି । ରାଧାନାଥବାବୁ ଯାଇଥିଲେ ବିନୋଦ କାନୁନଗୋଙ୍କର ଖବର ବୁଝିବା ପାଇଁ । ସାଙ୍ଗରେ ମୁଁ ଯାଇଥିଲି । କିଛି କରିହେବ ନାହିଁ ବର୍ତ୍ତମାନ ? ରାଧାନାଥବାବୁ କଣ୍ଠରୁଦ୍ଧ କୋହରେ । ବିନୋଦବାବୁ ତାଙ୍କର ସହକର୍ମୀ, ସହବନ୍ଦୀ ବ୍ରହ୍ମପୁର ଜେଲରେ, ବିନୋଦ କାନୁନଗୋ 'ସମାଜ' କାଗଜରେ ସହ ସମ୍ପାଦକ... ସ୍ମୃତି ଢେଉ ମାରୁଥିଲା । ରାଧାନାଥ ବାବୁ ଲୁହ ପୋଛୁଥିଲେ । ତାଙ୍କଠାରୁ ବୟସରେ ସାନ । ବିନୋଦ କାନୁନଗୋ ଆଗ ଚାଲିଯିବେ କାହିଁକି ? କିନ୍ତୁ ଏହାର ଉତ୍ତର ଦେବ କିଏ ?

ବିନୋଦ କାନୁନଗୋ ଆଉ ନାହାନ୍ତି । ବାପା ଚାଲିଗଲେ । ଆଲୋକ କମ୍ପୋଚନ୍ଦ୍, କିନ୍ତୁ ଝଡର ପୂର୍ବାଭାସ ଭଳି ସ୍ଥିର ! ବାପାଙ୍କ ମୁହଁ ଉପରକୁ ଚାଦରଟାକୁ ଟାଣିଦେଇ ଆଲୋକ ବସି ପଡିଲେ ଚୌକୀ ଉପରେ । ଏବଂ ମୋ ଉପରେ ସତେ ଯେପରି ଦାୟିତ୍ୱ ଲଦିଦେଇ ଏ ଖବର ବାହାରେ ଜଣାଇ ଦେବାପାଇଁ । କିନ୍ତୁ ଏ ଖବର ଜଣାଇବି କାହାକୁ ? ଆଗରେ ପାବକ, ଆଗରେ ଗୋବିନ୍ଦବାବୁ । ଗୋବିନ୍ଦ ଭାଇଙ୍କୁ ସମ୍ଭାଳନ୍ତୁ.... ପୁଅ ପାବକ କହୁଚି ।

ଇତିହାସର ଗୋଟିଏ ପୃଷ୍ଠା ଓଲଟି ପଡିଛି, ସମୟର ବାତ୍ୟାରେ ।

ବିଂଶତି ଶତାବ୍ଦୀର ତୃତୀୟ ଦଶକର କଥା । ଭାରତବର୍ଷ ସାରା ମୁକ୍ତି ପାଇଁ ପ୍ରବଳ ଉଦ୍‌ବେଳନ । ଏହାର ଅଗ୍ରଭାଗରେ ଛାତ୍ର ଓ ଯୁବକମାନେ । ସେମାନଙ୍କର ନୟନ ପିତୁଳା ଜବାହରଲାଲ । ଜବାହରଲାଲ ଆସିଛନ୍ତି ଓଡିଶା । କାଠଯୋଡୀ ବାଲିରେ ସଭା । ହଜାର ହଜାର ଲୋକ ଛୁଟିଛନ୍ତି ସଭାକୁ । କିନ୍ତୁ ରେଭେନ୍‌ସା କଲେଜିଏଟ୍‌ର ହେଡମାଷ୍ଟର ଗେଟରେ ତାଲା ପକାଇଦେଇଛନ୍ତି । କେହି ଯାଇପାରିବେ ନାହିଁ ସଭାକୁ । ଜବାହରଲାଲଙ୍କ ସଭାକୁ

ଯିବା ଦେଶଦ୍ରୋହୀ କାର୍ଯ୍ୟ । ହଷ୍ଟେଲରେ ପିଲାମାନଙ୍କ ଭିତରେ ତୁମୁଳ ଉଦ୍‌ବେଳନ । ସେମାନଙ୍କ ଭିତରେ ଥିଲେ ତିନୋଟି ବୃତ୍ତିଭୋଗୀ ଛାତ୍ର । ନବମ ଶ୍ରେଣୀର ଛାତ୍ର ତିନିହେଁ, ସହପାଠୀ । ସେମାନେ ସ୍ଥିର କଲେ । ଆଜି ଅଗ୍ନି ପରୀକ୍ଷାର ମାହେନ୍ଦ୍ର ମୁହୂର୍ତ୍ତ ଉପସ୍ଥିତ । ପୋଥିର ପାଠ ନା ଜୀବନର ପାଠ ? ସେମାନଙ୍କୁ ବାଛିନେବାକୁ ହେବ । ଗେଟ୍‌ରେ ତାଲା ପଡ଼ିଛି । କିନ୍ତୁ ପାଚିରୀ ତ ଅଛି । ତାକୁ ଡେଇଁ ଚାଲିଗଲେ କିଏ କ'ଣ କରିବ ? ଜବାହରଲାଲଙ୍କ ଉଦାତ୍ତ ଆହ୍ୱାନ ଶୁଭୁଛି ଦେଶର ଯୁବ ସମାଜକୁ । ଆଉ ସେଇ ଡାକରାର ଉତ୍ତରରେ ରେଭେନ୍‌ସା କଲେଜିଏଟ୍‌ର ବୃତ୍ତିଭୋଗୀ ଛାତ୍ର ତିନି ଜଣ ପାଚିରୀ ଡେଇଁ ଚାଲିଯାଇଛନ୍ତି ସେହି ଉଦ୍‌ବେଳନରେ ସାମିଲ ହେବା ପାଇଁ ।

ସେମାନେ ଆଉ ଫେରି ନାହାନ୍ତି । ଫେରିବାର ପ୍ରଶ୍ନ ଉଠିନାହିଁ । ସମସ୍ତେ ଅବାକ୍ କି ପିଲା ମ ଏମାନେ ? ଡିପୋଟି ହୋଇଥାନ୍ତେ, ଅଧ୍ୟାପକ ହୋଇଥାନ୍ତେ । ସବୁ ଛାଡ଼ି ବାଇଆ ହୋଇଗଲେ ନା କ'ଣ ? ସତରେ ସେମାନେ ବାଇଆ ହୋଇଥିଲେ ଭାରତବର୍ଷର ମୁକ୍ତି ପାଇଁ ।

କେତେଜଣ ଇମିତି ବାଇଆ ହୋଇ ପାରନ୍ତି ?

ପୋଥିବନ୍ଧା ହେଲା । ସେମାନେ ଚାଲିଲେ ଜୀବନର ପାଠ ପଢ଼ିବା ପାଇଁ । ଆରମ୍ଭ ହେଲା ବାନର ସେନା ଭାବରେ ସତ୍ୟାଗ୍ରହ, ବିଦେଶୀ ଲୁଗା ପୋଡ଼ିବା ଏବଂ ବେତ ମାଡ଼ । ଭଲ ପାଠ ପଢୁଥିଲେ ସେମାନେ । ଦିନେହେଲେ ବେତ ମାଡ଼ ଖାଇନାହାନ୍ତି । କିନ୍ତୁ ଆଜି ବେତ ମାଡରେ ହାତ ନୋଳା ଫାଟି ଯାଉଛି । ତଥାପି ସେମାନେ ଗୀତ ଗାଉଛନ୍ତି..... ।

''ମାର କେତେ ତୁମେ ମାରିବ''

ଜୀବନର ପାଠ ଆରମ୍ଭ ହେଲା । ଘର, ଦୁଆର ସବୁ ରହିଗଲା ପଛରେ । 'ବନ୍ଦେ ମାତରଂ' ଧ୍ୱନି ଦିହରେ ଅଗ୍ନି ସଂଯୋଗ କଲା । ୧୯୩୦ ରୁ ୧୯୪୨ । ଏଇପରି କଟିଗଲା ୧୨ ବର୍ଷ । କିନ୍ତୁ ସେମାନେ ସଚେତନ ଯେ ପାଠ ସରି ନାହିଁ କି ଅରି ଫେରି ନାହିଁ ।

୧୯୪୨ ମସିହା ଭାରତଛାଡ ଆନ୍ଦୋଳନ । ବ୍ରହ୍ମପୁର ଜେଲରେ ସେଇ ତିନିଜଣ ସହପାଠୀ ବନ୍ଦୀ । ହଠାତ୍ ସେଥିରୁ ଜଣକର ମନେହେଲା ଯେ ଓଡ଼ିଆ ଭାଷାରେ ତ ବିଶ୍ୱକୋଷ ବା ଏନ୍‌ସାଇକ୍ଲୋପେଡିଆ ନାହିଁ । ଲେଖିଲେ କିମିତି ହୁଅନ୍ତା । ପୃଥିବୀର ବିଭିନ୍ନ ଭାଷାରେ ବିଶାଳ ଏନସାଇକ୍ଲୋପେଡିଆ ରହିଚି । ତାକୁ ଲେଖିଛନ୍ତି ଦଳ ଦଳ ବିଶେଷଜ୍ଞ । ସଂପାଦନା କରିଛନ୍ତି ସେଇପରି ଦଳ ଦଳ ବିଶେଷଜ୍ଞ । ସଂଶୋଧନ କରିଛନ୍ତି ସେଇପରି ଆଉ ଦଳେ । ସେଥିପାଇଁ ଲାଗିଯାଇଚି ବହୁ ବର୍ଷ, ଖର୍ଚ୍ଚ ହୋଇଛି ପ୍ରଚୁର ଅର୍ଥ । କିନ୍ତୁ ଜେଲଖାନା ଭିତରେ ସେଦିନ ସେଇ ଯୁବକ ସ୍ୱପ୍ନ ଦେଖିଲେ । ହାତରେ ଅର୍ଥ ନାହିଁ, ହାତରେ କାଗଜ ନାହିଁ (ଯୁଦ୍ଧ ସମୟ କାଗଜ କେଉଁଠି ମିଳିବ ?),ପାଠ ପଢ଼ା ନବମ ଶ୍ରେଣୀ ପର୍ଯ୍ୟନ୍ତ, ପୁଣି ଏକାକୀ ।

ଯୁବକର ମନେ ପଡିଲା କର୍ଣ୍ଣଙ୍କର ବାଣୀ । କୁଳ ହେଉଛି ଦୈବର ଅଧୀନ, କିନ୍ତୁ ପୌରୁଷ ହେଉଛି ମୋର ଅଧୀନ ।

କାଗଜ ନାହିଁ । କିନ୍ତୁ ବନ୍ଦୀମାନଙ୍କର ଫର୍ମ ଅଛି ତ ! ସେଇଥିରୁ ଆରମ୍ଭ ହେଲା । ଯୋଜନା ତିଆରି ହେଲା, ନୋଟ ଲେଖିବା ଆରମ୍ଭ ହେଲା । ସମୟ ମଧ ଅତିକ୍ରାନ୍ତ ହେବାକୁ ଲାଗିଲା । ଜେଲଖାନାରୁ ଯୁବକ ଖଲାସ ହେଲେ । ଭାରତବର୍ଷ ସ୍ୱାଧୀନତାର ଉପକଣ୍ଠରେ । ଦିଗନ୍ତରେ ନୂତନ ଉଷାର ପୂର୍ବାଭାସ । ଅନେକ ହିସାବ ନିକାଶ କରିବାରେ ବ୍ୟସ୍ତ । କ'ଣ ଦେଇଛନ୍ତି, କ'ଣ ପାଇବେ ? କିମିତି ପାଇବେ ?

ଯୁବକର ସ୍ୱପ୍ନ ଅତୁଟ ରହିଛି । ନୂତନ ଭାରତବର୍ଷରେ ଓଡିଆ ଭାଷାରେ ବିଶ୍ୱକୋଷର ଆବଶ୍ୟକତା ପଡ଼ିବ । ଆମ ଦେଶ ପଛୁଆ । ଆମ ପିଲାମାନଙ୍କ ପାଇଁ ଉପଯୁକ୍ତ ବହି ନାହିଁ । ତାଙ୍କର କାର୍ଯ୍ୟ ଲାଗି ରହିଲା ସେଇପରି । ଏଥରକ ବିଶ୍ୱକୋଷ ପ୍ରଣୟନ ତାଙ୍କୁ ମତୁଆଲା କରି ଦେଇଛି ।

ମର ଦେହକୁ ବାରଣ୍ଡାକୁ ଅଣାଗଲାଣି । ମହାଯାତ୍ରାର ପର୍ବ ଆରମ୍ଭ ହେବ । ଓଡିଶା ବିଧାନସଭା ପରମ୍ପରା ଏବଂ ପ୍ରୋଟୋକଲ ଭଙ୍ଗ କରି ଶୋକ ପ୍ରସ୍ତାବ ଗ୍ରହଣ କରିଛି । ସେଇ ମଣିଷଟି ପ୍ରତି ସବୁ ଦଳର ନେତାମାନେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । ସେ ଥିଲା ଦଳମୁକ୍ତ, ଗୋଷ୍ଠୀମୁକ୍ତ ମଣିଷ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପହଞ୍ଚିଲେଣି ଶେଷ ଯାତ୍ରାର ଆୟୋଜନ ତଦାରଖ କରିବା ପାଇଁ ।

''ମୋ ମାଟି ମାଆକୁ ଏଇଭଳି ଏକ ସନ୍ତାନ ଜନ୍ମ କରିବା ପାଇଁ ବହୁ ଯୁଗ ଲାଗିଯିବ ।'' ବାଷ୍ପାକୁଳ କଣ୍ଠ । ବିନୋଦ କାନୁନଗୋ ସମସାମୟିକ । ତେଣୁ ବ୍ୟଥା ପ୍ରଚୁର ।

ଲେଖା ଆରମ୍ଭ ହେଲା । ଭାଷାକୋଷ ଲେନ୍‌ର ଏକ ଘର । ବନ ବିହାରୀ ପାଲିତଙ୍କର । ଭଡ଼ା ଦିଆହୋଇପାରୁ ନାହିଁ । ଖାଇବାର ଠିକଣା ନାହିଁ । ତଥାପି ଲେଖା ଚାଲିଛି ।

ଜେଲ୍‌ଖାନାରୁ ଫେରି ସେ ଅନେଇଥିଲେ ଭାରତବର୍ଷକୁ । ନୂତନ ଭାରତବର୍ଷ । କିନ୍ତୁ ତ୍ୟାଗ କାହିଁ । ଏତ ଭୋଗର ଯୁଗ ଆରମ୍ଭ ହେଲା । ବିନୋଦ କାନୁନଗୋଙ୍କ ପକ୍ଷରେ ଆଉ କଂଗ୍ରେସରେ ରହିବା ସମ୍ଭବ ହେଲା ନାହିଁ । ସେ ନବଗଠିତ ସୋସାଲିଷ୍ଟ ପାର୍ଟିରେ ଯୋଗଦେଲେ ଏବଂ ଗୋଟାଏ ନିର୍ବାଚନ ବି ଲଢ଼ିଥିଲେ । ପ୍ରତିଦ୍ୱନ୍ଦ୍ୱୀଙ୍କ ବିରୁଦ୍ଧରେ ତାଙ୍କର ନିର୍ବାଚନ ମୋକଦ୍ଦମା ଏକ ଇତିହାସ ସୃଷ୍ଟିକଲା । କିନ୍ତୁ ତାଙ୍କର ମନ ତୃପ୍ତ ହେଲା ନାହିଁ । ସେ ରାଜନୀତି ଛାଡ଼ିଲେ । ବହୁତ ହୋଇଗଲା । ବିଧାନସଭା ସଭ୍ୟ, ପାର୍ଲ୍ୟାମେଣ୍ଟ ସଭ୍ୟ, ମନ୍ତ୍ରୀପଦର ଲୋଭ ଅନେକଙ୍କୁ ଗ୍ରାସ କରିଛି । ସ୍ୱାଧୀନତା ଆନ୍ଦୋଳନରେ କରିଥିବା ତ୍ୟାଗ ବଦଳରେ କ'ଣ ପ୍ରାପ୍ୟ ପାଇବେ ସେଇ ହୋଇଛି ବଡ଼ କାମ ।

ବିନୋଦ କାନୁନଗୋ କାବୁଲିବାଲାଠାରୁ ଟଙ୍କା ଧାର କଲେ, ଚଢ଼ା ସୁଧରେ । ସେଇଥିରେ ଜ୍ଞାନମଣ୍ଡଳ ଲେଖା ଚାଲିଲା । ପୃଥିବୀ ଇତିହାସରେ ଇମିତି ଘଟଣା ନାହିଁ । ଜଣେ ମଣିଷ, ପୁଣି ଅପାଠୁଆ । ବିନା ଅର୍ଥରେ ସେ ଲେଖିବ ଜ୍ଞାନମଣ୍ଡଳ । ସେ ଲେଖିବ ଅ-ଅମ୍ଳଜାନ, ଅକ୍ଷର, ଅନାବନା ସବୁ । ବିନୋଦବାବୁ ଖବରକାଗଜ କିଣନ୍ତି । ଟିକିଏ ପାଠ ପଢ଼ିଥିବା ରିକ୍‌ସାବାଲାର ସନ୍ଧାନ କରନ୍ତି । ସେ କଟିଙ୍ଗ କରେ । ବିନୋଦବାବୁ is best in his worst. ଅଗ୍ନିରେ ଶାଣିତ ହୋଇ ବାହାରିବାକୁ ପଡିବ ।

ଜ୍ଞାନମଣ୍ଡଳର ପ୍ରଥମ ଖଣ୍ଡ ଛପା ହୁଏ । ଲେଖା ଯେପରି ପରିସ୍ଥିତିରେ, ଅର୍ଥ ସଙ୍କଟ ସେଇପରି ଗୁରୁତର । ଭଲ ପ୍ରେସ ମିଳିବ କୁଆଡୁ ? ବିନୋଦବାବୁ ଲେଖିଚାଲିଛନ୍ତି ଟେବୁଲ ଉପରେ । ପ୍ରେସର କମ୍ପୋଜିଟର ଆସି ଠିଆ ହେଲା ମୁଣ୍ଡକୁ କୁଣ୍ଡେଇ କୁଣ୍ଡେଇ । 'ଈ' ନାହିଁ ପ୍ରେସରେ । ଇମିତି ଲେଖିବେ ଯେପରି 'ଈ' ନଥିବ । ବିନୋଦବାବୁ ହସିଦେଲେ ଟିକିଏ । ଉପାୟ କ'ଣ ? ବହିର ପ୍ରଥମ ଖଣ୍ଡ ପ୍ରକାଶିତ ହେଲା । ଡକ୍ଟର ହରେକୃଷ୍ଣ ମହତାବ ବହିଟି ଉନ୍ମୋଚନ କରି କହିଲେ— ପାଇଓନିଅରିଙ୍ଗ କାମ ପାଇଁ ବହୁ କଷ୍ଟ ସହିବାକୁ ପଡେ । କିଛି ବ୍ୟସ୍ତ ହୁଅ ନାହିଁ । ଭୁଲ୍ ଭଟକା ଥିବ । ଉତ୍ତର ପୁରୁଷ ତାକୁ ସଂଶୋଧନ କରିବ । ପରିମାର୍ଜିତ କରିବ ମନେରଖ Enemy of good is better, not bad. ସତେ ତ !

ବିନୋଦ କାନୁନଗୋ ଉଠି ଆସିଲେ ବାରବାଟୀ ଷ୍ଟାଡ଼ିଅମକୁ । ଭୈରବବାବୁ ତାଙ୍କୁ ମଦତ ଦେଲେ, ସାହାଯ୍ୟ କଲେ । ବିନୋଦବାବୁଙ୍କୁ ଟିକିଏ ଜାଗା ମିଳିଲା ଲେଖିବା ପାଇଁ । ପ୍ରତିଦିନ ସକାଳେ ପ୍ରାତଃ ଭ୍ରମଣରେ ଯାଆନ୍ତି । ବହୁମୂତ୍ର ରୋଗ ଗ୍ରାସ କଲାଣି । ଚାଲନ୍ତି ସକାଳୁ କିଲ୍ଲାଫୋର୍ଟ ଚାରିପଟରେ ଦ୍ରୁତ ଗତିରେ । ସେଇଠି ଦେଖାହୁଏ ଅନେକ ଲୋକଙ୍କ ସହିତ । ପୁଣି ଚାଲୁ ଚାଲୁ ଅନେକ ହଜି ଯାଆନ୍ତି ହଠାତ୍ । ବିନୋଦବାବୁ ଥମ ହୋଇ ଠିଆ ହୁଅନ୍ତି । ନା, ଶୀଘ୍ର ସାରିବାକୁ ହେବ ଜ୍ଞାନମଣ୍ଡଳ ।

ବିନୋଦବାବୁଙ୍କ ମରଦେହ ଗ୍ରାମକୁ ଯିବ । ସେଇଠି ସେ ଏବେ ତିଆରି କରିଛନ୍ତି ଏକ ଆଶ୍ରମ । ଦୁଇ ଏକର ଜମି ଉପରେ । ସେଇଠି ସେ ଇଣ୍ଟରଭିଉ ଦେଇଛନ୍ତି ଆକାଶବାଣୀକୁ, ଦୂରଦର୍ଶନକୁ । ତା'ପରେ ସେ ପୁଣି ଫେରିବେ କଟକ ସହରକୁ ତାଙ୍କର କର୍ମପୀଠ ଜ୍ଞାନମଣ୍ଡଳ ଅଫିସକୁ ।

ବିନୋଦବାବୁ ବୁଲିଛନ୍ତି ଜ୍ଞାନମଣ୍ଡଳକୁ ବିକି ବିକି- ସାଇକେଲରେ, ବସରେ ଓ ଓଡିଶା ତମାମ । ନିବେଦନ କରିଛନ୍ତି ସରକାରକୁ । ମୋର ଗ୍ରାଣ୍ଟ ଲୋଡ଼ା ନାହିଁ । ଖଣ୍ଡିଏ ବହି ଛପା ହେଲେ ସେଥିରୁ ହଜାରେ ବା ଦୁଇହଜାର ସରକାର କିଣି ନିଅନ୍ତୁ ଲାଇବ୍ରେରୀ ପାଇଁ । ସେତିକି ଦରକାର । ଶ୍ରୀ ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ହେଲେ । ସେଇ ପ୍ରତିଶ୍ରୁତି କାର୍ଯ୍ୟକାରୀ ହେଲା । ବିନୋଦ ବାବୁ ଆଶ୍ୱସ୍ତ ହେଲେ । ସମୟ ଗଡ଼ି ଚାଲିଲା ।

ବିନୋଦବାବୁଙ୍କର ଶାଖା ପ୍ରଶାଖା ବଢ଼ିବାକୁ ଲାଗିଲା । ୩୬୫ ଦିନରେ ପିଲାଙ୍କ ପାଇଁ ୩୬୫ ବହି । ଛୋଟିଆ ବହିଟିଏ, ଦାମ୍ ଟଙ୍କାଟିଏ । ପିଲାଏ ପଢ଼ିବେ । ପୁଣି 'ଇତିହାସର ଡାଏରୀ' । ପ୍ରତିଦିନର ଘଟଣା ଲେଖିଯିବେ ସେଥିରେ ।

ବିନୋଦ କାନୁନଗୋଙ୍କୁ ସ୍ୱୀକୃତି ମିଳିଛି, ସମ୍ମାନ ମିଳିଛି । ବିନୋଦବାବୁ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଇଁ ନିବେଦନ କରିନାହାନ୍ତି । ଦେଖିବାକୁ ଆସିଛନ୍ତି ବହୁ ବ୍ୟକ୍ତି, ବହୁ ଅନୁଷ୍ଠାନର ପ୍ରତିନିଧି ଜ୍ଞାନମଣ୍ଡଳକୁ ଆସନ୍ତି । ବିନୋଦବାବୁ ସମସ୍ତଙ୍କୁ ଭେଟନ୍ତି କହନ୍ତି ଜ୍ଞାନମଣ୍ଡଳର କାହାଣୀ । ଜୀବନୀ ''ପାଠ ପଢେ ପଢେ ଅପାଠୁଆ'' ଛପା ହୋଇଚି । ଡାକ୍ତରୀ ଛାତ୍ରମାନେ ଆସନ୍ତି, ଆସନ୍ତି ଇଞ୍ଜିନିଅରିଙ୍ଗ କଲେଜର ଛାତ୍ରମାନେ । କିମିତି ଏଇ ଅପାଠୁଆ ପାଠ ପଢ଼ାଉଛି, ପାଠ ଲେଖୁଚି । ଆସନ୍ତି ଦେଶ ବିଦେଶରୁ ବହୁ ବ୍ୟକ୍ତି ଏଇ ଆଶ୍ଚର୍ଯ୍ୟଜନକ ମଣିଷକୁ ଦେଖିବା ପାଇଁ । ବୁକ୍ ଅଫ୍ ଗିନିସ୍‌ରେ ଲିପିବଦ୍ଧ ହେବା ପାଇଁ ଉପଯୁକ୍ତ ଚରିତ୍ର ।

ମରଦେହ ପହଞ୍ଚିଲାଣି ଗାଁକୁ । ଲୋକଭଡ଼ ଜମିଛି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଶ୍ରଦ୍ଧା ନିବେଦନ କରୁଛନ୍ତି । ପ୍ରଣିପାତ କରୁଛନ୍ତି । ମଲା ପରେ ମନେହେଉଛି ସେଇ ମଣିଷର ଗୁରୁତ୍ୱ । ଇମିତି ମଣିଷ ତ ଆଉ ମିଳିବେ ନାହିଁ ।

ଜ୍ଞାନମଣ୍ଡଳକୁ ୧୦୦ରୁ ୭୫ ଖଣ୍ଡକୁ କମେଇ ଆଣିଛନ୍ତି । ବୋଧହୁଏ ଜୀବନର ସଂକ୍ଷିପ୍ତତା ସମ୍ପର୍କରେ ସେ ସଚେତନ ହୋଇ ଉଠିଛନ୍ତି । ସବୁ କପିର ପାଣ୍ଡୁଲିପି ସରିଯାଇଛି । ଉତ୍ତର ପୁରୁଷ ଛାପିବ ନାହିଁ ତାକୁ ? ବିନୋଦବାବୁ କିମିତି ବୀତସ୍ପୃହ ହୋଇ ଉଠିଛନ୍ତି ଜୀବନ ପ୍ରତି । କେତେ ଔଷଧ ଖାଇବ ମଣିଷ ? ଜୀବନର ମୂଲ୍ୟବୋଧରେ ଅବକ୍ଷୟ ଦେଖା ଦେଇଛି । ବିନୋଦବାବୁ ନିୟମିତ ଖୁବ୍ । କିନ୍ତୁ ଏଣିକି ଆଉ ଉପଦେଶ ମାନୁ ନାହାନ୍ତି ।

ସେଇ ରାତି । ପରିସ୍ରା କରି ଯାଇଛନ୍ତି ବାଥ୍ ରୁମ୍‌କୁ । ସେଇଠି ପଡ଼ିଗଲେ । ମୁଣ୍ଡରେ ଆଘାତ ଲାଗିଲା । କେଉଁଟା ଆକସ୍ମିକ ? କେଉଁଟା ଆଗ ? ତା'ପରେ ଡାକ୍ତରଖାନା । ଏବଂ ତା'ପରେ ମୃତ୍ୟୁ ।

ଏକ ଇତିହାସର ପରିସମାପ୍ତି ଘଟିଛି । ତିନିଜଣ ସାଥୀ – ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ ଓ ଶ୍ରୀ ବିନୋଦ କାନୁନଗୋ ।

❑❑❑

# ବିନାୟକ ମାଷ୍ଟ୍ରେ

## (୰ ବିନାୟକ ଆଚାର୍ଯ୍ୟ)

ବିନାୟକ ଆଚାର୍ଯ୍ୟ ଗଞ୍ଜାମ ଜିଲ୍ଲାରେ ମାଷ୍ଟ୍ରେ ନାମରେ ପରିଚିତ ଥିଲେ । ଆଶ୍ଚର୍ଯ୍ୟର କଥା ମୁଖ୍ୟମନ୍ତ୍ରୀ ହେଲା ପରେ ମଧ ତାଙ୍କୁ ସମସ୍ତେ ସେଇ ନାଁରେ ସମ୍ବୋଧନ କରୁଥିଲେ ଏବଂ ଆହୁରି ଆର୍ଶ୍ଚଯ୍ୟର କଥା ବିନାୟକ ବାବୁ ସେଥିରେ କ୍ଷୁବ୍ଧ ବା ବିରକ୍ତ ନ ହୋଇ ଆପଣାକୁ ଗର୍ବିତ ମନେ କରୁଥିଲେ । ଅନେକ ଶିକ୍ଷକ, ଅଧାପକ ଯେଉଁ ଦୋଷରେ ପ୍ରାୟତଃ ପୀଡିତ ଥାଆନ୍ତି, ବିନାୟକ ବାବୁ ସେଥିରୁ ସଂପୂର୍ଣ୍ଣ ମୁକ୍ତ ଥିଲେ । ସରଳ, ମିଷ୍ଟଭାଷୀ, ବନ୍ଧୁବତ୍ସଳ ବିନାୟକ ବାବୁ ସବୁବେଳେ ସେଇପରି ରହିଥିଲେ । ଶାସନ, କ୍ଷମତା ତାଙ୍କୁ ଘାରି ନଥିଲା, କ୍ଷମତାର ଦୁଷ୍ଟବ୍ରଣ ତାଙ୍କୁ ବିଷାକ୍ତ କରିପାରି ନଥିଲା । ଆପଣାର ଅତୀତ ହେଉଛି ମଣିଷର ଭିତ୍ତିଭୂମି । ଡକ୍ଟର ସଦାଶିବ ମିଶ୍ର ଗର୍ବର ସହିତ କହନ୍ତି ଯେ 'ସମାଜ' କାଗଜ ନଥିଲେ ସେ ପାଠ ପଢ଼ିପାରି ନଥାନ୍ତେ । କାରଣ ଏଇ କାଗଜକୁ ହକିଂ କରି ସେ ଜୀବିକା ଅର୍ଜନ କରି ପାଠ ପଢ଼ି ପାରିଛନ୍ତି । ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ଡାକ୍ତର କିଶୋର ଚନ୍ଦ୍ର ପଟ୍ଟନାୟକ ଗର୍ବିତ ଘୋଷଣା କରୁଥିଲେ ଯେ ସେ ନିଉଜ୍ ପେପର ହକର ଭାଇସଚାନସେଲର ବା ଖବରକାଗଜ ବିକାଳୀ କୁଳପତି । କିନ୍ତୁ ସେମାନେ ବ୍ୟତିକ୍ରମ । ବିନାୟକ ମାଷ୍ଟ୍ରେ ମଧ ସେଇପରି ଏକ ବ୍ୟତିକ୍ରମ ।

ବିନାୟକ ଆଚାର୍ଯ୍ୟ ପିଲାଦିନୁ ଜାତୀୟବାଦୀ ମନୋଭାବାପନ୍ନ ଥିଲେ । ବୃନ୍ଦାବନ ନାୟକଙ୍କର ସେ ସମସାମୟିକ ଏବଂ ବନ୍ଧୁ । ଦୁହେଁ ପିଲାଦିନରୁ ପ୍ରସିଦ୍ଧ ମାର୍କସବାଦୀ ବିଜୟ ଚନ୍ଦ୍ର ଦାସଙ୍କର ପ୍ରଭାବରେ ଆସିଥିଲେ । ବିନାୟକ ବାବୁ ପାଠ ପଢ଼ି ଶିକ୍ଷକତା ଆରମ୍ଭ କରିଥିଲେ ବ୍ରହ୍ମପୁରରେ । ଅଗଣିତ ଛାତ୍ର ଏଇ ଆଦର୍ଶବାଦୀ ଶିକ୍ଷକଙ୍କର ପ୍ରଭାବରେ ଆସିଛନ୍ତି । ଜୀବନର ବିଭିନ୍ନ ବିଭାଗକୁ ସେମାନେ ପୁଷ୍ଟ କରିଛନ୍ତି; କିନ୍ତୁ ସମସ୍ତଙ୍କର ଜୀବନରେ ରହିଯାଇଛି ସେମାନଙ୍କର 'ମାଷ୍ଟ୍ରେ'ଙ୍କର ଅଲେଖ୍ୟ । ବିନାୟକ ବାବୁଙ୍କର ଜୀବନର ଏହା ହେଉଛି ସବୁଠାରୁ ବଡ଼ ସାଫଲ୍ୟ ।

କିନ୍ତୁ କ୍ଲାସ ରୁମ୍‌ରେ ଶିକ୍ଷକତା ତାଙ୍କୁ କୁଳାଇଲା ନାହିଁ ସବୁଦିନ ପର୍ଯ୍ୟନ୍ତ । ସେ ପ୍ରତ୍ୟକ୍ଷ ରାଜନୀତିକୁ ଛିଟିକି ଆସିଲେ । ପ୍ରସିଦ୍ଧ ବ୍ରହ୍ମପୁର ଉପନିର୍ବାଚନରେ ସେ ପ୍ରାର୍ଥୀ ହେଲେ ଆପଣାର ବନ୍ଧୁ ବୃନ୍ଦାବନ ନାୟକଙ୍କ ବିରୁଦ୍ଧରେ । ଏହା ଥିଲା ଏକ ଐତିହାସିକ ଉପନିର୍ବାଚନ । ଓଡିଶାର ଇତିହାସରେ ପ୍ରଥମ ଥର ପାଇଁ ସରକାରୀକଳ ବିନିଯୋଗ ହେଲା ନିର୍ବାଚନରେ । ଏବଂ ଏଇ କଳଙ୍କମୟ ପଦକ୍ଷେପ ପରବର୍ତ୍ତୀ କାଳରେ ସଞ୍ଚରିଗଲା ଆଉରି ଦ୍ରୁତଗତିରେ, ବିଭିନ୍ନ ନିର୍ବାଚନକୁ । ପଞ୍ଚାୟତ ନିର୍ବାଚନଠାରୁ ଆରମ୍ଭ କରି ପାର୍ଲିଆମେଣ୍ଟ ନିର୍ବାଚନ ପର୍ଯ୍ୟନ୍ତ ସବୁକ୍ଷେତ୍ରକୁ ଏହି ବିଷ ସଞ୍ଚରିଯାଉଛି । ହୁଏତ ଯେଉଁମାନେ ଏଥିପାଇଁ ଦାୟୀ ସେମାନେ ଦିନେ ଏଥିପାଇଁ ଅନୁତାପ କରିବେ । କିନ୍ତୁ ସେତେବେଳକୁ ନେଡ଼ିଗୁଡ଼ କହୁଣୀକି ବୋହି ଯାଇ ସାରିଥିବ ।

ବିନାୟକ ଆଚାର୍ଯ୍ୟ ଏହି ମୂଲ୍ୟବୋଧର ଅବକ୍ଷୟ ଦେଖି ମର୍ମାହତ ହୋଇଥିଲେ । ଶିକ୍ଷକ ମଣିଷ । ତେଣୁ ହୁଏତ ତାଙ୍କୁ ଏହା ବେଶି ବାଧିଥିଲା । ରାଜନୈତିକ ଲୁତାଜାଲରେ ସେ ବିଶେଷ ପାରଦର୍ଶୀ ନଥିଲେ । କାହା ଉପରେ ନିର୍ଭର କରିବେ ନାହିଁ ବୋଲି ସ୍ଥିର କରି ନିଜର ପ୍ରେସଟିଏ କରିଥିଲେ । ଛାପାଖାନା କରିବା ଭାରି କଠିନ କାମ । ତା'ଠାରୁ ବେଶି କଷ୍ଟ ହେଉଛି ଏହାକୁ ଚଳାଇବା । ସବୁକଥା ସେ ନିଜେ ବୁଝୁଥିଲେ । ବୁଝୁଥିଲେ ଛାପାର ସମସ୍ୟା । ଛୋଟ ପ୍ରେସଟିଏ । ତେଣୁ ମଧ୍ୟବିତ୍ତ ପରିବାରର ଗ୍ରାହକ ବେଶି । ସମ୍ବେଦନଶୀଳ ବିନାୟକ ମାଷ୍ଟ୍ରେ ସେମାନଙ୍କର ମଧ୍ୟ ଦୁଃଖ ବୁଝୁଥିଲେ । ତେଣୁ ଦେୟ ଆଦାୟ କରିବା କାମ ମଧ୍ୟ କଷ୍ଟକର ଥିଲା । ପ୍ରେସଟି ସବୁ ଚେଷ୍ଟା ସତ୍ତ୍ୱେ ଭଲ ଭାବରେ ଚାଲିପାରୁ ନଥିଲା ।

ଏହା ସତ୍ତ୍ୱେ ବିନାୟକ ବାବୁ ଯୁବସଂଘ ଗଠନ କରିବାରେ, ଶାନ୍ତି ଆନ୍ଦୋଳନ ସଂଗଠିତ କରିବାରେ ଲାଗି ପଡିଥିଲେ । ତାଙ୍କର ନିଷ୍ଠା, ସଚ୍ଚୋଟତା ବହୁ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

ରାଜନୈତିକ ଗୁରୁ ବିଜୟ ଚନ୍ଦ୍ର ଦାସ କମ୍ୟୁନିଷ୍ଟ ପାର୍ଟି ଟିକେଟରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ ସତ୍ୟ କିନ୍ତୁ ତାଙ୍କର କମ୍ୟୁନିଷ୍ଟ ପାର୍ଟି ସହିତ ରାଜନୈତିକ ମତଭେଦ କ୍ରମଶଃ ପରିସ୍ଫୁଟ ହୋଇ ଉଠୁଥିଲା । କମ୍ୟୁନିଷ୍ଟ ପାର୍ଟିର ଦୁଃସାହସିକ ରଣନୀତି ସହିତ ବିଜୟ ଚନ୍ଦ୍ର ଦାସ ମୂଳରୁ ଏକମତ ନଥିଲେ । ୧୯୪୯ ମସିହାର ପ୍ରସିଦ୍ଧ ରେଳବାଇ ଧର୍ମଘଟରେ ଡାକରା ସହିତ ସେ ଏକମତ ନଥିଲେ ଯଦିଓ ଏଇ ଧର୍ମଘଟର ଡାକରାରୁ ଓହରି ଯାଇଥିବା ବ୍ୟକ୍ତି ବା ଅନୁଷ୍ଠାନମାନଙ୍କ ସହ ମଧ୍ୟ ସେ ଏକମତ ନଥିଲେ । କିନ୍ତୁ ରାଜନୈତିକ ମତଭେଦକୁ ସେ ପାର୍ଟିର ଅନ୍ତର୍ନିହିତ ସମସ୍ୟା ଭାବରେ ଗଣନା କରି ଶୃଙ୍ଖଳିତ ସୈନିକ ଭାବରେ ଏହା କାର୍ଯ୍ୟକାରୀ କରିବାକୁ ପଛେଇ ନଥିଲେ ଏବଂ କାରାବରଣ

କରିଥିଲେ । ୧୯୫୦ ମସିହାରେ ଭାରତର ନୂତନ ସଂବିଧାନ ଗଠନ ପରେ ସେ କମ୍ୟୁନିଷ୍ଟ ପାର୍ଟିର ପୁରାତନ ନୀତି ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ ଜେଲଖାନାରୁ । ପରିଶେଷରେ ସେ କମ୍ୟୁନିଷ୍ଟ ପାର୍ଟିକୁ ଓଡିଶାରେ ପୁନର୍ଗଠିତ କରିବା ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣକଲେ ସତ୍ୟ କିନ୍ତୁ ମତଭେଦ ବଢ଼ି ଚାଲିଲା । ଆନ୍ଧ୍ରପ୍ରଦେଶର ନିର୍ବାଚନରେ କମ୍ୟୁନିଷ୍ଟ ପାର୍ଟିର ଭୂମିକା ପରେ ସେ ନିଷ୍କ୍ରାନ୍ତ ହୋଇଗଲେ ରାଜନୀତିରୁ । ପରେ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦେଲେ । ତାଙ୍କର ମତଭେଦ ଏବଂ ପଦକ୍ଷେପ ସଂପୂର୍ଣ୍ଣ ରାଜନୈତିକ ଥିଲା । କୌଣସି ପଦବୀ ବା ଅର୍ଥ ତାହାର ନିୟାମକ ନଥିଲା ।

ବିନାୟକ ବାବୁଙ୍କୁ ଏହା ଆକୃଷ୍ଟ କରିଥିଲା । ଏବଂ ରାଜନୈତିକ ଜୀବନର ସକ୍ରିୟ ଭୂମିକାରୁ ଅପସରି ଯାଉଥିବା ବିନାୟକ ବାବୁ କଂଗ୍ରେସ ଦଳଭୁକ୍ତ ହେଲେ । ବ୍ରହ୍ମପୁର ବିଧାନସଭାରୁ ନିର୍ବାଚିତ ହେଲେ ଏବଂ କାଳଚକ୍ରର ଆବର୍ତ୍ତନରେ ଓଡିଶାର ମୁଖ୍ୟମନ୍ତ୍ରୀ ମଧ୍ୟ ହେଲେ । କିନ୍ତୁ ରହିଗଲେ ସେଇପରି ଆଦର୍ଶବାଦୀ ଓ ଶିକ୍ଷକ ହୋଇ ।

କୂଟଚକ୍ରରେ ତିଷ୍ଠି ନପାରି ବିନାୟକବାବୁ ମୁଖ୍ୟମନ୍ତ୍ରୀତ୍ୱ ଛାଡ଼ିଲେ । କଂଗ୍ରେସ ଦଳରୁ ମଧ୍ୟ ବିଦାୟ ନେଲେ । ଓଡ଼ିଶାର ବିରୋଧୀଦଳର ଅନ୍ୟତମ ନେତା ମଧ୍ୟ ହେଲେ ।

ହଠାତ୍ ସେ ଅସୁସ୍ଥ ହୋଇପଡ଼ିଲେ । କରୋନାରୀ ଥ୍ରମ୍ବୋସିସ୍ ଏବଂ ସେରିବ୍ରାଲ ହାମରେଜରେ ପୀଡିତ ହୋଇ ପଡ଼ିଲେ ଏଇ କିଛି ଦିନ ହେବ । ସମସ୍ତଙ୍କର ଆଶାକୁ ଧୂଳିସାତ୍ କରି ଏବଂ ଆଶଙ୍କାକୁ ସତ୍ୟ ପ୍ରମାଣିତ କରି ତାଙ୍କର ଜୀବନଦୀପ ନିର୍ବାପିତ ହୋଇଗଲା ଆଜି ।

ମନରେ ଗୋଟାଏ ଚମକ । କ'ଣ ହୋଇଥିଲା ତାଙ୍କର ? ରୋଗର କୌଣସି ସୂଚନା ମଧ୍ୟ ନଥିଲା । ଆଜି ତାଙ୍କର ଯାହା ହୋଇଛି..... କାଲି....

"ସର୍ବେ ଚଳିବେ କାଳବଳେ,<br>ଯଶ ରହିବ ମହୀତଳେ ।"

ବିନାୟକ ମାଷ୍ଟ୍ରେ ଆଉ ନାହାନ୍ତି ।



# ପ୍ରତିଭାର ଅବସାନ

## (ଂ ବିଜୟ ଚନ୍ଦ୍ର ଦାସ)

ପ୍ରତିଭାଶାଳୀ ଚିନ୍ତକ ବିଜୟ ଚନ୍ଦ୍ର ଦାସଙ୍କର ପରଲୋକ ହୋଇଗଲା କଲିକତାରେ କ୍ୟାନସର ରୋଗରେ । ତାଙ୍କର ମରଦେହ ବହନ କରି ଆପଣାର ଉଡାଜାହାଜରେ ଭୁବନେଶ୍ୱରକୁ ନେଇ ଆସିଲେ ଶ୍ରୀ ବିଜୁ ପଟ୍ଟନାୟକ । ମରଦେହକୁ ଭୁବନେଶ୍ୱରରେ ଗ୍ରହଣ କରିବା ପାଇଁ ଉପସ୍ଥିତ ଥିଲେ ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀ ବୀରେନ ମିତ୍ର, କମ୍ୟୁନିଷ୍ଟ ପାର୍ଟିର ନେତୃବୃନ୍ଦ । ତାଙ୍କର ମରଦେହକୁ ଗଲାକାଲି ବ୍ରହ୍ମପୁର ନିଆଯାଇ ସେଠାରେ ଶେଷକୃତ୍ୟ ସମାପନ କରାଯାଇଛି । ବିଜୟ ଚନ୍ଦ୍ର ଦାସ ପାଲଟି ଯାଇଛନ୍ତି ଇତିହାସ ।

ବିଜୟ ଚନ୍ଦ୍ର ଦାସ ପାଠ ପଢ଼ିଥିଲେ ବ୍ରହ୍ମପୁର ଏବଂ ପରେ ମାନ୍ଦ୍ରାଜରେ । ଅର୍ଥନୀତି ଥିଲା ତାଙ୍କର ସ୍ୱତନ୍ତ୍ର ବିଷୟ । ସେ ହେଉଛନ୍ତି ଓଡ଼ିଶାର ଖୁବ୍ କମ୍ ସଂଖ୍ୟକ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ଯାହାଙ୍କର କର୍ମମୟ ଜୀବନ ଆରମ୍ଭ ହୋଇଥିଲା ସନ୍ତ୍ରାସବାଦୀ ଆନ୍ଦୋଳନରୁ । ପରେ ବିଜୟ ଚନ୍ଦ୍ର ଦାସ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦିଅନ୍ତି ଏବଂ ଜଣେ ମାର୍କସବାଦୀ ତାତ୍ତ୍ୱିକ ଭାବରେ ପରିଗଣିତ ହୁଅନ୍ତି । ରେଭେନ୍ସା କଲେଜରେ ପଢ଼ିବା ବେଳେ ବିଜୟ ଚନ୍ଦ୍ର ଦାସ ଛାତ୍ର ଅନ୍ଦୋଳନର ନେତୃତ୍ୱ ନିଅନ୍ତି । ଜଣେ ଏକନିଷ୍ଠ ବ୍ୟକ୍ତି ଭାବରେ ତାଙ୍କର ପରିଚିତି ପରିବ୍ୟାପ୍ତ ହୁଏ । ତାଙ୍କ ସହିତ ଗଭୀର ମତଭେଦ ଥିବା ବ୍ୟକ୍ତିମାନେ ମଧ୍ୟ ଏକଥା ସ୍ୱୀକାର କରନ୍ତି ଏବଂ ତାଙ୍କର ବନ୍ଧୁତା ମତଭେଦର ସୀମା ସରହଦ ଟପିଯାଏ ।

ଚଳିତ ଶତାବ୍ଦୀର ଚତୁର୍ଥ ଦଶକରେ ବିଜୟ ଚନ୍ଦ୍ର ଦାସଙ୍କୁ ଇତିହାସ-ପ୍ରସିଦ୍ଧ ଆସ୍କା ବ୍ୟାଙ୍କ ମର୍ଡର କେଶ ସହିତ ଜଡ଼ିତ କରାଇବା ପାଇଁ ଉଦ୍ୟମ ହୁଏ । ବୋଧହୁଏ ତାଙ୍କର ସନ୍ତ୍ରାସବାଦୀ ଅତୀତଯୋଗୁଁ ଏଭଳି ଏକ ଅଭିଯୋଗ ଲାଖିଯିବ ବୋଲି କର୍ତ୍ତୃପକ୍ଷ ଧରି ନେଇଥିଲେ । କିନ୍ତୁ ସବୁ ପ୍ରକାର ଉଦ୍ୟମ ସତ୍ତ୍ୱେ ତାହା ଫଳବତୀ ହୋଇ ନଥିଲା ।

ତାତ୍ତ୍ୱିକ ବିଜୟ ଚନ୍ଦ୍ର ଦାସ ଛାତ୍ର ସଂଗଠନ ପରେ ଆଉ କୌଣସି ଗଣ ସଂଗଠନ କାର୍ଯ୍ୟରେ ଖୁବ୍ ବେଶି ଜଡ଼ିତ ନଥିଲେ । କିନ୍ତୁ ଗଣ ସଂଗଠନମାନଙ୍କର ଦାୟିତ୍ୱ ନେବା

ପାଇଁ ସେ ପାର୍ଟି କ୍ୟାଡରମାନଙ୍କୁ ପ୍ରସ୍ତୁତ କରୁଥିଲେ । ପାର୍ଟି କ୍ଲାସ ନେଲାବେଳେ ସେ ଠିକ୍ ଅଧ୍ୟାପକଙ୍କ ଭଳି ପାଠ ପଢ଼ାଉଥିଲେ । ମାର୍କସବାଦ ଏକ ଆକସ୍ମିକ ଘଟଣା ନୁହେଁ, ସାମାଜିକ ବିକାଶର ଏକ ନିଷ୍ପତ୍ତିମୂଳକ ପରିଣତି । ବିଜୟବାବୁ ତେଣୁ ପଢ଼ାନ୍ତି ସେଇ କ୍ରମରେ । ଅର୍ଥନୀତିରେ ମାର୍କସବାଦୀ ତତ୍ତ୍ୱ ଅନୁଯାୟୀ ଉତ୍ପାଦନର ଦୁଇଟି ଫାକ୍ଟର କିନ୍ତୁ ପୂର୍ବବର୍ତ୍ତୀ ତତ୍ତ୍ୱ ଅନୁଯାୟୀ ଉତ୍ପାଦନର ଚାରୋଟି ଫାକ୍ଟର । ଅନ୍ୟମାନେ ପଢ଼ାନ୍ତି ଦୁଇ ଫାକ୍ଟର, ଚାରି ଫାକ୍ଟର କଥା କହନ୍ତି ନାହିଁ; – କିନ୍ତୁ ବିଜୟବାବୁ ପଢ଼ାନ୍ତି ଓ ତାଙ୍କର ମୌଳିକତା ସେଇଠି ।

ବିଜୟବାବୁ ଭଦ୍ରଲୋକ । ସାଧାରଣ ଜୀବନରେ ବେଶ୍ ଉଇଥଡ୍ରନ । କିନ୍ତୁ ବକ୍ତୃତାରେ ବେଶ୍ ଉଷ୍ମ । କମ୍ୟୁନିଷ୍ଟମାନଙ୍କର ଅଭିଧାନରେ ଫାକ୍ସନାଲିଜମ୍ ଏକ କୁତ୍ସିତ କଥା । ଯଦିଓ ବହୁ କମ୍ୟୁନିଷ୍ଟ ଏଥିରେ ଜଡ଼ିତ । ଥରେ ସହଯୋଦ୍ଧା ବନମାଳୀ ଦାସ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟ ସମ୍ପର୍କରେ ଅସନ୍ତୁଷ୍ଟ ବିଜୟବାବୁଙ୍କୁ କହିଲେ ଯେ ଆସନ୍ତୁ ଆମେ ଏଇ ଫାକ୍ସନାଲିଜମ୍ ବିରୁଦ୍ଧରେ ସଂଗ୍ରାମ କରିବା । ବିଜୟ ବାବୁ ହସି ହସି ଉତ୍ତର ଦେଲେ ଫାକସନାଲିଜମ୍ ବିରୁଦ୍ଧରେ ଆଉ ଏକ ଫାକ୍ସନ.... ? ମୁଁ ସେଥିରେ ନାହିଁ । ବିଜୟବାବୁ କୌଣସି ଗୋଷ୍ଠୀ ବା ଗ୍ରୁପ୍ ସହିତ ସଂପୃକ୍ତ ନଥିଲେ ।

୧୯୪୮ ମସିହାରେ କମ୍ୟୁନିଷ୍ଟ ପାର୍ଟି ପି.ସି.ଯୋଶୀଙ୍କ ନେତୃତ୍ୱରେ ହୋଇଥିବା ପାର୍ଟିନୀତିକୁ ସୁଧାରବାଦୀ ନୀତି ବୋଲି ଘୋଷଣା କରି ବି.ଟି. ରଣଦିଭେଙ୍କ ନେତୃତ୍ୱରେ ଏକ ନୂତନ ପାର୍ଟିନୀତି ଗ୍ରହଣ କରେ । ଏହି ନୀତିରେ ପ୍ରଥମ ଅଗ୍ନି ପରୀକ୍ଷା ହୁଏ ୧୯୪୯ ମସିହା ମାର୍ଚ୍ଚ ୯ ତାରିଖରେ । କମ୍ୟୁନିଷ୍ଟ ପାର୍ଟି ଏକାକୀ ରେଳବାଇ ଧର୍ମଘଟ କରିବାକୁ ଓହ୍ଲାଇ ଆସେ । ବିଜୟବାବୁ ଏହି ନୀତିର ବିରୋଧ କରନ୍ତି ଏବଂ ଏହା ଦୁଃସାହସିକ ବିପର୍ଯ୍ୟୟକୁ ବରଣ କରିବ ବୋଲି ଚେତାବନୀ ଦିଅନ୍ତି । ସତକୁସତ ସେଇଆ ଘଟେ । ୧୯୫୦ ମସିହାରେ ନୂତନ ସମ୍ବିଧାନ ଘୋଷିତ ହୁଏ । ବିଜୟବାବୁ ସମ୍ବଲପୁର ଜେଲରୁ ଏହାକୁ ସ୍ୱାଗତ କରନ୍ତି ଏବଂ ଏହାର ସୁଯୋଗ କମ୍ୟୁନିଷ୍ଟ ପାର୍ଟି ନେବା ଉଚିତ ବୋଲି ମତ ଦିଅନ୍ତି । ବିଜୟ ବାବୁ କମ୍ୟୁନିଷ୍ଟ ପାର୍ଟିରୁ ବହିଷ୍କୃତ ହୁଅନ୍ତି । କିନ୍ତୁ କାରାଗାରରୁ ମୁକ୍ତ ହୋଇ ବିଜୟବାବୁ କମ୍ୟୁନିଷ୍ଟ ପାର୍ଟିର ପୁନର୍ଗଠନ ପାଇଁ ଉଦ୍ୟମ କରନ୍ତି । ୧୯୫୦ ମସିହାରେ କମ୍ୟୁନିଷ୍ଟ ପାର୍ଟି ରାଜେଶ୍ୱର ରାଓଙ୍କର ନେତୃତ୍ୱରେ ଆଉ ଏକ ନୀତି ଗ୍ରହଣ କରେ । ବିଜୟବାବୁ ତାକୁ ମଧ୍ୟ ବିରୋଧ କରନ୍ତି ଏବଂ ଏହା ଅଧିକ ବିପର୍ଯ୍ୟୟ ବରଣ କରି ଆଣିବ ବୋଲି ମତ ଦିଅନ୍ତି । ତାହା ହିଁ ଘଟେ ।

୧ ୯ ୫ ୨ ମସିହା ପ୍ରଥମ ସାଧାରଣ ନିର୍ବାଚନରେ ବିଜୟବାବୁ ବ୍ରହ୍ମପୁର ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ ହୁଅନ୍ତି । କିନ୍ତୁ କମ୍ୟୁନିଷ୍ଟ ପାର୍ଟି ସହିତ ତାଙ୍କର ମତଭେଦ ବଢ଼ି ବଢ଼ି ଚାଲେ । ପାର୍ଲ୍ୟାମେଣ୍ଟରେ ସେତେବେଳେ ପି. ସୁନ୍ଦରାୟା କମ୍ୟୁନିଷ୍ଟ ପାର୍ଟିର ଦଳପତି । ଆନ୍ଧ୍ର କମ୍ୟୁନିଷ୍ଟ ପାର୍ଟି ଅନେକ ଦିନ ପର୍ଯ୍ୟନ୍ତ ବ୍ରହ୍ମପୁରକୁ ଆନ୍ଧ୍ର ସହିତ ମିଶାଇବା ପାଇଁ ପ୍ରଚାର କରୁଥିଲା । କମ୍ୟୁନିଷ୍ଟ ପାର୍ଟିନୀତିର ବିରୁଦ୍ଧାଚରଣ ସତ୍ତ୍ୱେ ଶକ୍ତିଶାଳୀ ଆନ୍ଧ୍ର କମ୍ୟୁନିଷ୍ଟ ପାର୍ଟି ବିରୁଦ୍ଧରେ କେହି କିଛି କରି ପାରୁ ନଥିଲେ । ବିଜୟବାବୁ ଗଞ୍ଜାମର ବାସିନ୍ଦା । ଏହି ନୀତିର ପ୍ରବଳ ବିରୋଧୀ ଥିଲେ ସେ । ସେଇଯୋଗୁଁ ବିଜୟବାବୁଙ୍କ ସହିତ ସୁନ୍ଦରାୟାଙ୍କ ପଡ଼ିଲା ନାହିଁ । ଏହାର ଚୂଡାନ୍ତ ପର୍ଯ୍ୟାୟ ହେଲା ଆନ୍ଧ୍ର ଉପନିର୍ବାଚନ । କମ୍ୟୁନିଷ୍ଟ ପାର୍ଟି ଏକାକୀ ସରକାର ଗଢ଼ିବା ଉଦ୍ଦେଶ୍ୟରେ ନିର୍ବାଚନ ଲଢ଼ିବାକୁ ସ୍ଥିର କଲା । ଏହାର ଫଳ ଭୟାବହ ହେବ ବୋଲି ବିଜୟବାବୁ ଚେତାବନୀ ଦେଲେ । ଫଳ ସତକୁସତ ସେଇଆ ହେଲା । ଆନ୍ଧ୍ର କମ୍ୟୁନିଷ୍ଟ ପାର୍ଟି ଏ ପର୍ଯ୍ୟନ୍ତ ସେ ବିପର୍ଯ୍ୟୟ ଧକ୍କାରୁ ମୁକ୍ତି ପାଇନାହିଁ ।

ବିଜୟବାବୁଙ୍କ ସହିତ କମ୍ୟୁନିଷ୍ଟ ପାର୍ଟିର ମତଭେଦ ବଢ଼ିବାକୁ ଲାଗିଲା । ପରିଶେଷରେ ସେ କମ୍ୟୁନିଷ୍ଟ ପାର୍ଟିରୁ ବିଦାୟ ନେଲେ; କିନ୍ତୁ ଅନ୍ୟ କୌଣସି ପନ୍ଥା ଗ୍ରହଣ କରିବା ପୂର୍ବରୁ ଆପଣାକୁ ରାଜନୈତିକ ଦୃଷ୍ଟିକୋଣରୁ ସଂପୂର୍ଣ୍ଣ ବିଲୁପ୍ତ କରିବା ପାଇଁ ସମୟ ନେଲେ । ପରେ ସେ କଂଗ୍ରେସରେ ଯୋଗଦେଲେ । ଏକ ରାଜ୍ୟସଭା ନିର୍ବାଚନ ଲଢ଼ି ପରାସ୍ତ ହେଲେ । କାରଣ ନୀତି, ତତ୍ତ୍ୱ, ମୂଲ୍ୟବୋଧର ଗୁରୁତ୍ୱ ହ୍ରାସ ପାଇ ଆସୁଥିଲା । ବିଜୟବାବୁଙ୍କୁ କଂଗ୍ରେସ ଦଳ ବା ନୀତି ମଧ୍ୟ ସନ୍ତୁଷ୍ଟ କରିପାରିଲା ନାହିଁ । ସେ ଅସ୍ଥିର ହେବାକୁ ଲାଗିଲେ ଏବଂ ତାରି ଭିତରେ ତାଙ୍କୁ କ୍ୟାନସର ରୋଗ ଆକ୍ରମଣ କଲା । ବିଜୟବାବୁ କଠୋର ଯନ୍ତ୍ରଣା ଭିତରେ ଅବଶ୍ୟମ୍ଭାବୀ ମୃତ୍ୟୁକୁ ଅପେକ୍ଷା କରି ରହିଲେ ।

ବିଜୟବାବୁ ନାସ୍ତିକ । କଠୋର ଯନ୍ତ୍ରଣାରେ ସେ ଅତିଷ୍ଠ । ପୁରୁଣା କନିଷ୍ଠ ସାଂଗମାନେ ପହଞ୍ଚିଲେ ଗୋଡ଼ ଘଷି ଦିଅନ୍ତି । ତାଙ୍କୁ ଭଲ ଲାଗେ । ପତ୍ନୀ ସରଳା ଦେବୀ ଆପତ୍ତି କଲେ କହନ୍ତି ତମେ ମୋର ସହଧର୍ମିଣୀ; କିନ୍ତୁ ସେମାନେ ମୋର ସହଯୋଦ୍ଧା । ମୋ ଦୁଃଖ ସେମାନେ ବୁଝିବେ ନାହିଁ ତ କିଏ ବୁଝିବ ? ପ୍ରସିଦ୍ଧ ଗାନ୍ଧିବାଦୀ ନେତା ଈଶ୍ୱରଲାଲ ବ୍ୟାସ ଆସି ପହଞ୍ଚିଲେ । ବିଜୟବାବୁଙ୍କୁ ସଂଖୋଳି ପଚାରିଲେ, କିମିତି ଅଛନ୍ତି ? ବିଜୟବାବୁ କହିଲେ କ୍ୟାନସର ରୋଗର ଅନ୍ତିମ ଯନ୍ତ୍ରଣା, ଭାରି କଷ୍ଟକର । କରୁଣାରେ ବିଚଳିତ ଈଶ୍ୱରଲାଲ ବ୍ୟାସ କହିଲେ ବିଜୟବାବୁ, କିଛି ଭଗବତ୍ ଆରାଧନା, କିଛି ଗୀତା ପଢ଼ନ୍ତୁ । ଯନ୍ତ୍ରଣାରୁ ଉପଶମ ହୁଏତ କିଛି ମିଳିବ । ମନେହେଲା ଯେମିତି ଏକ

ବିସ୍ଫୋରଣ ହେବ କି ଆଉ ? ବିଜୟବାବୁ ଦାନ୍ତ ଚିପି ଚିପି କହିଲେ ଈଶ୍ୱରଲାଲଜୀ ଏ ଶରୀର ଏକ ବସ୍ତୁ । ବସ୍ତୁର ଧର୍ମ ହେଉଛି କ୍ଷୟ । ଏହା କ୍ଷୟ ହେବାକୁ ବାଧ୍ୟ । ମୋର ଦୁଃଖ ଯେ ମୋ କ୍ଷେତ୍ରରେ ଏହି କ୍ଷୟ ଶୀଘ୍ର ହୋଇଯାଉଛି । କିନ୍ତୁ ଏହା ବୋଲି ମୁଁ ବିଶ୍ୱାସ କରିବି ଭଗବାନ ନାମକ ସେଇ କ୍ଷୟପ୍ରାପ୍ତ ଧ୍ୱଂସାଭିମୁଖୀ ଧାରଣାକୁ ? ଈଶ୍ୱରଲାଲଜୀ ଘରୁ ବାହାରି ଆସି ନମସ୍କାର କରୁଛନ୍ତି, ହେ ଭଗବାନ, କି ବିଶ୍ୱାସ । ମୃତ୍ୟୁ ସନ୍ନିକଟ, ଗଭୀର ଯନ୍ତ୍ରଣା । ତଥାପି ବିଶ୍ୱାସ ଅତୁଟ ! ମଣିଷ ନା.... । ଈଶ୍ୱରଲାଲ ବ୍ୟାସଙ୍କ ଆଖିରୁ ଲୁହ ଝରୁଛି ।

କଟକରୁ କଲିକତା । ସାଙ୍ଗରେ ପତ୍ନୀ ସରଳା । ବିଜୟବାବୁ ସଚେତନ ଯେ ମୃତ୍ୟୁ ଆସି ଦ୍ୱାରଦେଶରେ । ସରଳା ଦେବୀଙ୍କୁ ସେ ବହୁତ ହଇରାଣ କରିବାକୁ ଆରମ୍ଭ କଲେ । ଏହା ସହ୍ୟ କରିପାରିଲେ ନାହିଁ ସାଥୀମାନେ । ଦିନେ ଜଣେ ଏକାନ୍ତରେ ବିଜୟବାବୁଙ୍କୁ ଏହି ପ୍ରଶ୍ନ କଲେ । ଆପଣ କାହିଁକି ସରଳାଙ୍କୁ ଇମିତି ହଇରାଣ କରୁଛନ୍ତି ? ବିଜୟବାବୁଙ୍କ ଆଖିରେ ଲୁହ । ସେ କହିଲେ ଯେ ମୁଁ ଜାଣିଶୁଣି ଏହା କରୁଛି । ମୋର ଚାଲିଯିବାର ସମୟ ହେଲା । ସେ ତ ମୋ ସାଙ୍ଗରେ ଚାଲିଯିବ ନାହିଁ । ଇମିତି ଚାଲିଗଲେ ସେ ଝୁରି ହେବ, ସବୁ କାମରୁ ମନ ମାରିଦେବ । କିନ୍ତୁ ହଇରାଣ କରିଥିଲେ ସେ ଝୁରିବା ସହିତ ଆଶ୍ୱସ୍ତ ମଧ୍ୟ ହେବ । ତା'ହେଲେ ତା' ପାଇଁ ଜୀବନର ସବୁ ସ୍ୱାଦ ହଜିଯିବ ନାହିଁ ।

ପ୍ରକୃତରେ ମଣିଷ ନା ଆଉ କିଛି ? ଏ କି ପ୍ରକାର ବିଚାର ? କେତେ ମହତ୍ ନହେଲେ ଏଇ ବିଚାର ଆସିପାରେ ?

ବିଜୟବାବୁ ଆଉ ନାହାନ୍ତି ।



# ଶିଳ୍ପୀର ଗୋଧୂଳି

(୰ ବିଦ୍ୟାଧର ବର୍ମା)

ବୋଧହୁଏ ୧୯୪୭ ମସିହାର କଥା । ରାଣୀହାଟ ଛକରୁ ରେଭେନ୍‌ସା କଲେଜ ଆଡ଼କୁ ଗଲାବେଳେ ଅନତି ଦୂରରେ ଏକ ରାସ୍ତା ଲମ୍ବି ଯାଇଛି କେନାଲ କୂଳକୁ । ସେଇଠି ଏକ ଦି'ମହଲା କୋଠାର ଉପର ମହଲା । ପୁରୁଣାକାଳିଆ ଘର । ସିଡି ମଧ ପୁରାତନ, ଜରାଜୀର୍ଣ୍ଣ । ଉପର ମହଲାକୁ ଆମେ ଉଠିଲୁ । ମୁଁ ରେଭେନ୍‌ସା କଲେଜର ପ୍ରଥମ ବାର୍ଷିକ ଛାତ୍ର । ମୋତେ ସାଙ୍ଗରେ ନେଇଯାଇଛନ୍ତି ଲବ୍ଧପ୍ରତିଷ୍ଠ କବି ରାଧାମୋହନ ଗଡ଼ନାୟକ । ଅନେକ ହୁଏତ ଜାଣନ୍ତି ନାହିଁ ଯେ ଏଇ କବି ୧୯୪୭ ମସିହାରେ ଖ୍ରୀଷ୍ଟ କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ର ଥିଲେ, ଯେତେବେଳେ ତାଙ୍କର ଲେଖା ମାଟ୍ରିକୁଲେସନଠାରୁ ଆରମ୍ଭ କରି ଏମ.ଏ. ପର୍ଯ୍ୟନ୍ତ ସବୁ କ୍ଲାସରେ ପାଠ୍ୟ ପୁସ୍ତକ ଭାବରେ ପଢ଼ା ଯାଉଥିଲା । ସେ ତ ଆଉ ଏକ କାହାଣୀ ।

ରାଧାମୋହନ ବାବୁ ଏବଂ ମୁଁ ଉପରକୁ ଉଠିଲୁ । କାହାକୁ ଆମେ ଭେଟିବାକୁ ଯାଉଛୁ ସେ କଥା ରାଧାମୋହନ ବାବୁ ମୋତେ କହି ନଥାନ୍ତି । ଜଣେ ଭଦ୍ରଲୋକ ସ୍ୱାଗତ କଲେ । ରାଧାମୋହନ ବାବୁ ତାଙ୍କୁ ନମସ୍କାର କରି ମୋତେ ପରିଚୟ କରିଦେଲେ ଯେ ମୁଁ ତାଙ୍କର ବନ୍ଧୁପୁତ୍ର । ମୋ ମୁଣ୍ଡରେ ହାତ ଥୋଇ ଆଶୀର୍ବାଦ କଲେ ସେ ।

ଏ କିଏ ? ମୁଁ ଚାରିଆଡ଼କୁ ଅନେଇ ଦେଖୁଥିଲି । ସବୁ ଯେପରି ଭାଜି ପଡ଼ିଚି ଚାରିପଟରେ । ଏକ ବିରାଟ ଭଙ୍ଗା ମହାଦେଶକୁ ମୁଁ ପଶିଆସିଛି ବୋଲି ମନେହେଲା । ତାରି ଭିତରେ କିନ୍ତୁ ମୁଣ୍ଡଟେକି ଠିଆ ହୋଇଛନ୍ତି ସୁନ୍ଦର ମନଲୋଭା ଚିତ୍ର ସବୁ । କେଉଁଠି ନାରୀର ଲାସ୍ୟ ତ କେଉଁଠି ପ୍ରକୃତିର ମନଲୋଭା ଦୃଶ୍ୟ । ବର୍ତ୍ତମାନ ଭଦ୍ରବ୍ୟକ୍ତିଙ୍କୁ ପରିଚୟ କରେଇଦେଲେ ସେ ।

ଶିଳ୍ପୀ ବିଦ୍ୟାଧର ବର୍ମା ।

ସେତେବେଳକୁ ସେ ଅସୁସ୍ଥ ହୋଇଗଲେଣି । ସମାଜ ଉପରେ ଏକ ବିରାଟ ଅଭିମାନର ସ୍ତୂପ ତାଙ୍କର ବୁକୁ ଭିତରେ । ମୁଁ ତନ୍ମୟ ହୋଇ ଦେଖୁଥିଲି ତାଙ୍କର ଚିତ୍ରପଟ

ସବୁକୁ । ହଠାତ୍ ମୋର ମୋହ ଭଗ୍ନକରି ତାଙ୍କର କଣ୍ଠରୁ ଶୁଭିଲା । କ'ଣ ଦେଖୁଚ ? ଏ ସବୁର କିଛି ମୂଲ୍ୟ ନାହିଁ । ଖାଲି ନିଜର କଣ୍ଟ ମାରିବା ସାର ।

ବୟସ କଞ୍ଚା ଥିଲା । ତେଣୁ ଉତ୍ତର ଦେଲି ବାଲ୍ୟସୁଲଭ ଭାଷାରେ । ଆପଣଙ୍କର ଛବି କେତେ ଜନପ୍ରିୟ, କେତେ ସୁନ୍ଦର ମନଲୋଭା ଆପଣଙ୍କର ଚିତ୍ର ସବୁ । ଇମିତି କେତେଜଣ ହୋଇପାରିବେ ? ଏକ ଆକାଶଫଟା ହସରେ ଘରଟା ଦୋହଲିକି ଉଠିଲା । ଏ ହସ ନା ଅଟ୍ଟହାସ୍ୟ ? ମନେହେଲା ଯେମିତି ଏଇ ହସ କାନ୍ଦର ଏକ ବିକାର । ସେ କାନ୍ଦି ପାରୁନାହାନ୍ତି ତ । ସେଇଯୋଗୁଁ ହସୁଛନ୍ତି ।

ଦେଖ ବାଳକ, ତମର ବୟସ ଖୁବ୍ କମ୍ । ଆଗରେ ବିରାଟ ଭବିଷ୍ୟତ ପଡ଼ିରହିବି । ସବୁ ହେବ କିନ୍ତୁ ଶିଳ୍ପୀ ହେବ ନାହିଁ । କବି ରାଧାମୋହନ ଗଡ଼ନାୟକ କଥାରେ ଯୋଡ଼ି ଦେଇ କହିଲେ, କବି ମଧ ହେବ ନାହିଁ । ଦୁହେଁ ମିଶି ହସି ଉଠିଲେ ଏକ ତାନରେ ।

ଦେଖି, ଦେଖି, ତମ ହାତ । ମୁଁ ଜାଣି ନଥିଲି ଶିଳ୍ପୀ ବିଦ୍ୟାଧର ବର୍ମା ହାତ ଦେଖି ଜାଣନ୍ତି । ଜୀବନ ଯୁଦ୍ଧରେ ନିଜ ହାତ ଯେତେବେଳେ ହାରିଯାଇଛି ସେତେବେଳେ ହସ୍ତରେଖା ଉପରେ ନିର୍ଭର କରିବା ଛଡ଼ା ଜଣେ ଆଉ କ'ଣ କରିପାରେ ?

'ଜୀବନ ଯୁଦ୍ଧରେ' ମୁଁ ପରେ ଏଇକଥା ଜାଣି ପାରିଲି । କିନ୍ତୁ ସେତେବେଳେ ସେ କଥା, ସେ ବେଦନା ବୁଝିବାର ବୟସ ହୋଇନଥିଲା । ସେ ହାତ ଦେଖିଲେ । କ'ଣ ସବୁ କହିଥିଲେ ମନେ ନାହିଁ । କାରଣ ମୋ ନିଜ ଜୀବନର ଧାରା ଦ୍ରୁତ ଗତିରେ ଅନ୍ୟ ଦିଗରେ ବୋହିବାକୁ ଆରମ୍ଭ କରିଥିଲା, ସବୁ ଭବିଷ୍ୟତ ବାଣୀକୁ ମିଥ୍ୟା ପ୍ରମାଣିତ କରି ।

କେବଳ ଏତିକି ମନେଅଛି । ସେ କହିଥିଲେ ଯାହା କର ଭଲ କରି କରିବ, ଯେମିତି ସବୁଠୁଁ ଭଲ ବୋଲି ଲୋକେ କହିବେ ।

ଚା' ଆସିଥିଲା ଭଙ୍ଗା କପରେ । ଏକ ବିରାଟ ଭଙ୍ଗାଭଙ୍ଗି ରାଜ୍ୟରେ ଚା' କପଟା ଭଙ୍ଗା ନ ହୋଇଥିଲେ ଅଖାଡୁଆ ଲାଗିଥାଆନ୍ତା । ଆମେ ଦୁହେଁ ଫେରିଥିଲୁ ।

ତା'ପରେ ଗୋଟାଏ ବର୍ଷ କି ଦେଢ଼ ବର୍ଷ ପର୍ଯ୍ୟନ୍ତ ସେଇ ଘରକୁ ମୁଁ ଯାଇଛି କେତେ ଥର । ଶିଳ୍ପୀ ଅସୁସ୍ଥ । ଅସୁସ୍ଥତା ବଢ଼ିଛି । ତଥାପି ଚିତ୍ର ଆଙ୍କୁଛନ୍ତି । ତା'ପରେ ମୋର କାରାବାସ, ଆତ୍ମଗୋପନ, ପୁଣି କାରାବାସ ।

ଫେରିଲାବେଳକୁ ସେ ଆଉ ନାହାନ୍ତି । ଓଡ଼ିଶା ଦରିଦ୍ର ହୋଇଯାଇଛି । ଏକ ବିଶାଳ ପ୍ରତିଭାର ବିଳୟ ଘଟିଛି । ପଲ୍ଲୀବଧୂ ତଥାପି ପ୍ରୋଷିତ- ଭର୍ତ୍ତୃକା । ଗୋଧୂଳି ଲଗ୍ନ ରହିଛି ସେମିତି ଉଜ୍ଜଳ ।

ସ୍ମୃତି ରହିଚି ସେଇପରି ସବୁଜ ।

□□□

# ଅବସାନ ଯୁଗାବସାନ

## (ଂ ବିକ୍ରମ ଦାସ)

ଡାକ୍ତର ବିକ୍ରମ ଦାସ ଆଉ ନାହାନ୍ତି । ୮୬ ବର୍ଷ ବୟସରେ ତାଙ୍କର ପରଲୋକ ହୋଇଯାଇଛି । ତାଙ୍କର ଦରଘା ବଜାର, କଟକ ବାସ ଭବନରେ । ସେ କେବଳ ଏକ ଡାକ୍ତର ନଥିଲେ, ସେ ଥିଲେ ଏକ ଯୁଗର ସନ୍ତକ । ସତ୍ୟବାଦୀ ବକୁଳ ବନର ବୋଧହୁଏ ସେ ହେଉଛନ୍ତି ଶେଷ ସନ୍ତକ । ତାଙ୍କର ପରଲୋକରେ ଗୋଟାଏ ଯୁଗର ସମାପ୍ତି ଘଟିଛି ।

ସତ୍ୟବାଦୀ ଯୁଗର ଅନ୍ୟତମ ନାୟକ ପଣ୍ଡିତ ନୀଳକଣ୍ଠ ଦାସଙ୍କର କନିଷ୍ଠ ପୁତ୍ର । ବାଲ୍ୟକାଳରୁ ସ୍ୱାଧୀନତା ସଂଗ୍ରାମର ଡାକ ତାଙ୍କୁ ଅନୁପ୍ରାଣିତ କରିଥିଲା । ପାଠ ପଢ଼ିଥିଲେ ସତ୍ୟବାଦୀ ବକୁଳ ବନରେ । ପରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ କାରାବରଣ କରିଥିଲେ, ୧୯୪୨ ମସିହାରେ ଯଦିଓ ପିତା ନୀଳକଣ୍ଠ ବା ବଡ଼ଭାଇ ଅଶୋକ ଦାସ ଏହି ଆନ୍ଦୋଳନରେ ଯୋଗ ଦେଇନଥିଲେ, ନୀତିଗତ କାରଣରୁ ।

ଜେଲ୍‌ରୁ ଖଲାସ ହେଲା ପରେ ସେ ପୁଣି ପାଠ ପଢ଼ିଲେ । ମୋର ଯାହା ମନେ ପଡୁଛି ୧୯୫୦ ମସିହାରେ ସେ ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରୁ ସ୍ନାତକ ଡିଗ୍ରୀ ଲାଭ କରିଥିଲେ । ବାପା ଓ ବଡ଼ଭାଇଙ୍କ ପ୍ରେରଣାରେ ସେ ପାରମ୍ପରିକ ପଦ୍ଧତିରୁ ଆପଣାକୁ ମୁକ୍ତ କରିଥିଲେ । ବାମପନ୍ଥୀ ଅନ୍ଦୋଳନ, ମେହନତୀ ମଣିଷର ସଂଗ୍ରାମ ପ୍ରତି ତାଙ୍କର ଦରଦ, ଅନୁରାଗ ବୃଦ୍ଧି ପାଇଥିଲା ତାଙ୍କର ଜୀବନର ଏଇ ଦିଗ ଅଛପା ରହିଗଲା । ତାହାର କୌଣସି ରେକର୍ଡ଼ ନାହିଁ କି ବିକ୍ରମ ବାବୁ ତାହା ରଖିଯାଇ ନାହାନ୍ତି । କିନ୍ତୁ ଏଇ ଅଜଣା ଅଧ୍ୟାୟର ଯେଉଁମାନେ ସାକ୍ଷୀ ସେମାନେ ତାହା ଲିପିବଦ୍ଧ କରିନଗଲେ ତାଙ୍କର ଜୀବନ ପ୍ରତି ଅନ୍ୟାୟ ହେବ ।

ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜରୁ ଉତ୍ତୀର୍ଣ୍ଣ ହେଲା ପରେ ସେ ପଢ଼ିବାକୁ ଗଲେ ଆମେରିକାର ଆଲବାମା ବିଶ୍ୱବିଦ୍ୟାଳୟକୁ । ନିଦାନ ବିଭାଗରେ ଉଚ୍ଚ ଶିକ୍ଷା ଲାଭ କରି ଫେରିଲେ ଏବଂ ଓଡିଶାର ମେଡିକାଲ ସର୍ଭିସରେ ଯୋଗଦେଲେ । କଟକ,

ବ୍ରହ୍ମପୁରରେ ଚାକିରି ଜୀବନ କଟାଇଲେ । କଟକରେ ରହି କଟିକିଆ ପାଲଟିଗଲେ ଏବଂ ବିଭିନ୍ନ ସାଂସ୍କୃତିକ, ସାମାଜିକ, ଜନସେବା କାର୍ଯ୍ୟରେ ଆପଣାକୁ ବିନିଯୋଗ କଲେ ।

ଏବଂ ଲେଖିଲେ । ବାପାଙ୍କଠାରୁ ଉତ୍ତରାଧିକାରୀ ଭାବରେ ପାଇଥିଲେ ଲେଖିବା ଗୁଣ । କଲମ ପାକଳ ହେଲା ଲେଖୁ ଲେଖୁ । ପଚାଶରୁ ଊର୍ଦ୍ଧ୍ୱ ପୁସ୍ତକ ସେ ଲେଖିଛନ୍ତି ବିଭିନ୍ନ ବିଭାଗ ଉପରେ । ବିଜ୍ଞାନ, କଳା ସାହିତ୍ୟ ପ୍ରଭୃତି ବିଭିନ୍ନ ବିଭାଗକୁ ଏହା ପରିବ୍ୟାପ୍ତ ।

ନିଜର ଆତ୍ମଚରିତରେ ଲେଖି ଯାଇଛନ୍ତି ଯାହା ସମସାମୟିକ ସମୟକାଳ ଉପରେ ଆଲୋକପାତ କରେ । ଓଡିଶାର ଅନେକ ଅକୁହା କାହାଣୀରେ ଏହା ଆନନ୍ଦ ଏବଂ ଶିକ୍ଷା ଉଭୟ ଦିଏ ପାଠକକୁ । ପୁରସ୍କାର, ଆୱାର୍ଡ ମିଳିଛି । ବିକ୍ରମ ବାବୁ ରହିଯାଇଛନ୍ତି ସେହିପରି ଅମାୟିକ, ବନ୍ଧୁବତ୍ସଳ । ତାଙ୍କର ଶେଷ ଚିଠି ମୋ ପାଖକୁ ଫେବୃଆରି ମାସରେ । ଆପଣାର ଜୀବନସ୍ମୃତି ବହି ଉପରେ ଶୁଭ କାମନା ଜଣାଇ ଚିଠିଟିଏ ବହି ଉପରେ । ରହିଯିବ ସନ୍ତକ ଜୀବନର ଶେଷ ପର୍ଯ୍ୟନ୍ତ । ଧନ୍ୟବାଦ ଜଣାଇ ଚିଠି ଦେଇଥିଲି । କିନ୍ତୁ ଆଉ ଉତ୍ତର ଆସିଲା ନାହିଁ । ପରେ ଜାଣିଲି ଯେ ସେ ଆଉ ଉତ୍ତରଦେବା ଅବସ୍ଥାରେ ନଥିଲେ । ମହାକାଳ ଗ୍ରାସ କରିଆସୁଥିଲା । ସେ କିନ୍ତୁ କାହାକୁ ଜଣାଇବାକୁ ଚାହୁଁନଥିଲେ ଆପଣାର କଥା । ବୟସ, ବୟସ୍କ, ବାର୍ଦ୍ଧକ୍ୟ ବହିରେ ମାତ୍ର କିଛି ମାସ ତଳେ ସେ ଲିପିବଦ୍ଧ କରିଯାଇଛନ୍ତି ଆପଣାର ବାଣୀ ଉତ୍ତର ପୀଢ଼ି ପାଇଁ । ଲେଖିନାହାନ୍ତି ରୋଗ କଥା, ଲେଖିଛନ୍ତି ଜୀବନ କଥା । ଚରୈବେତି.... ଚରୈବେତି... ଅଗେଇ ଚାଲ ।

ମଣିଷକୁ ଦିନେ ଯିବାକୁ ହେବ । ମଣିଷ ଜରାର ଅଧୀନ, ରୋଗର ଅଧୀନ । ଡାକ୍ତର ଭାବରେ ସେ କଥା, ସେ ବାସ୍ତବ ସତ୍ୟ କଥା ଆହୁରି ଭଲ ଭାବରେ ଜାଣନ୍ତି । ସେଇ ସମୟ ଉପସ୍ଥିତ । ପାଖରେ ପୁଅ ଡାକ୍ତର ସିଦ୍ଧାର୍ଥ, ଦୁଇ କନ୍ୟା, ପରିବାରର ସମସ୍ତେ । ସେମାନେ ପାରି ଉଠିଲେଣି । ଦିହ ଆଉ ବୋଲ ମାନୁନି । ରହିବେ କାହିଁକି ?

ଇତିହାସର ଗୋଟାଏ ପୃଷ୍ଠା ମହାକାଳର ପବନରେ ଓଲଟି ପଡିଛି ।

ooo

# ବିଭୁଦତ୍ତ ତୁମେ ନାହଁ

(୰ ବିଭୁ ଦତ୍ତ )

ବିଭୁଦତ୍ତ ମୋ ଠାରୁ ସାନ । ସେ ଆଉ ନାହାଁ ସେ ଚାଲିଯାଇଛି ସେଇଠିକୁ ଯେଉଁ ଠାରୁ କେହି କେବେ ଫେରିନାହାନ୍ତି । ମୁଁ ଅଛି, ଅଛି ଜୀବନ୍ମୃତ ଭାବରେ, ଗଲା କେତେ ବର୍ଷ ଧରି ବିଭୁଦତ୍ତ ଚାଲିଗଲା ପରେ ମୋତେ କିଏ ଖବର ଦେଇଥିଲା, ଲେଖାଟିଏ ମାଗିଥିଲା ପରି ସ୍ମରଣ ହେଉଛି । କିନ୍ତୁ ଲେଖିବା ଅବସ୍ଥାରେ ନଥିଲି ସେତେବେଳକୁ । ଘଟଣାକୁ ଗ୍ରହଣ କରିବା ମଧ ମୋ ପାଇଁ ସମ୍ଭବ ନଥିଲା ।

ଯିବାର ଦୁଇବର୍ଷ ହୋଇଯାଇଛି ବୋଲି କବି ବିଭୁଦତ୍ତ ସ୍ମୃତି ସଂସଦର ବାତେନି କହୁଛି । ଏଇ ଅବସରରେ ତାର ସ୍ମୃତି ପଖାଳିବାର ଏବଂ ଶ୍ରଦ୍ଧାଞ୍ଜଳି ଜଣାଇବାର ସୁଯୋଗ ଆସିଛି ।

ବିଭୁଦତ୍ତ ସ୍ମୃତି ଉଜ୍ଜୀବିତ କରି ରଖିବାପାଇଁ ଏକ ସ୍ମୃତି ସଂସଦ ଗଠିତ ହୋଇଛି । ସେମାନଙ୍କ ସହିତ ମୋର ବ୍ୟକ୍ତିଗତ ପରିଚିତି ନାହିଁ । ନଥିଲେ ବି ସେମାନେ ଆପଣାର ପାଲଟିଯାଇଛନ୍ତି କାରଣ ଏକଦା ମୋର ଘନିଷ୍ଠ ଥିବା ଏକ ବଂଧୁର ସ୍ମୃତିକୁ ବଂଚାଇ ରଖିବା ପାଇଁ ସେମାନେ ସ୍ମରଣିକା ପ୍ରକାଶ କରୁଛନ୍ତି । ସେମାନଙ୍କୁ ପ୍ରଥମେ ଧନ୍ୟବାଦ । ହଜିଲା ଲୋକକୁ ହେଜିବାପାଇଁ ସେମାନଙ୍କର ଉଦ୍ୟମ ସଫଳ ହେଉ ।

ବିଭୁଦତ୍ତ ବି.ଏ.ପଢ଼ିଲା ବେଳେ ମୋର ସହପାଠୀ ଥିଲେ । କାରାବାସ, ଅଜ୍ଞାତବାସରେ ବେଶ୍ କିଛି ବର୍ଷ କଟାଇ ମୁଁ ବି.ଏ. ପଢ଼ିବାକୁ ଆସିଥାଏ । ବି.ଏ. ପଢ଼ିଲା ବେଳେ ସେ କେବଳ ମୋର ସହପାଠୀ ନଥିଲେ ପଶ୍ଚିମ ଛାତ୍ରାବାସ ରେଭେନ୍ସା କଲେଜରେ ଆମେ ଏକାଠି ଦୁଇବର୍ଷ କଟାଇଛୁ । ପରେ ଏମ୍.ଏ. ପଢ଼ିଲାବେଳେ ମଧ ଆମେ ଏକାଠି ବେଶ କିଛି ସମୟ କଟାଇଛୁ ପୋଷ୍ଟ ଗ୍ରାଜୁଏଟ୍ ହଷ୍ଟେଲରେ, ଯେଉଁଠି ବର୍ତ୍ତମାନ ଜାତୀୟ କବି ବୀର କିଶୋର କଲେଜ ଅବସ୍ଥିତ ।

ଏମ୍.ଏ. ପାଶ କଲାପରେ ସେ ଅଧାପକ ହୋଇଗଲା । ମୋର ଜୀବନ ମଧ କଟିଲା ବିଭିନ୍ନ ରାଜରାସ୍ତାରେ । ସମୟ ଏବଂ ଭୌଗୋଳିକ ବ୍ୟବଧାନ ତାର କାମ ଦେଖାଇଲା । ତଥାପି ଦି'ଚାରିଥର ଯେ ଦେଖା ନ ହୋଇଛି ତା' ନୁହେଁ ବେଳେ ବେଳେ

ଚିଠି ବି ଲେଖେ ସେ, ବିଭିନ୍ନ ସ୍ଥାନରୁ । ତାର ଭାଷା ସୁନ୍ଦର, ଅକ୍ଷର ବି ସୁନ୍ଦର, ଏ ଯାଏ ମୋର ହେତୁ ଅଛି । ସେ ଲେଖୁଥିଲା ଛାତ୍ର ଜୀବନରେ । ଅଧ୍ୟାପକ ଜୀବନରେ ସେ କାବ୍ୟ ଲେଖିଲା, ସମାଲୋଚନା ଲେଖିଲା । ପାଠ ପଢ଼ିଲା ବେଳେ ଭଲ ବକ୍ତୃତା ଦେଉଥିଲା ଓଡିଆରେ । ଅଧ୍ୟାପକ ଜୀବନରେ ସେ ବାଗ୍ମୀ ପାଲଟିଗଲା । ତେବେ ସେ ଜୀବନ ସହିତ ମୋର ପରିଚିତି ବିଶେଷ ନାହିଁ ।

ତା ହେଲେ ତାକୁ ମୁଁ ମନେ ରଖିଛି କିମିତି ?

ସେ ପାଠ ପଢ଼ିଲାବେଳେ ଲେଖୁଥିଲା କବିତା । ପ୍ରକାଶ ପାଉଥିଲା ବିଭିନ୍ନ ମେଗାଜିନରେ । ଉର୍ମି, ଜାଗରଣ ତାହାର ସ୍ୱାକ୍ଷର ବହନ କରେ ।

ସେ ବକ୍ତୃତା ଦେଉଥିଲା । କଲେଜ ୟୁନିଅନର ସଭାମାନଙ୍କରେ ସେ ସକ୍ରିୟ ଅଂଶ ଗ୍ରହଣ କରୁଥିଲା । ଦୁଇଚାରିଟା ଆନ୍ତକଲେଜ ବକ୍ତୃତା ପ୍ରତିଯୋଗିତାରେ ସେ ଅଂଶଗ୍ରହଣ କରିଛି ଏବଂ ପୁରସ୍କୃତ ହୋଇଛି ବୋଲି ମୋର ହେତୁ ହେଉଛି ।

ସେ କଲେଜ ୟୁନିଅନ ଏବଂ ଛାତ୍ରାବାସ ୟୁନିଅନର ସକ୍ରିୟ ସଭ୍ୟ ଥିଲା । ତେଣୁ ତାର ପରିଚିତି ଥିଲା ଓଡିଶାର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ।

ସେ ୧୯୫୫ ମସିହା ଦଳେଇ ଘାଇ ବ୍ୟାପ୍ଲାବିତ ସମୟରେ ରିଲିଫ୍ କାର୍ଯ୍ୟରେ ସକ୍ରିୟ ନେତୃତ୍ୱ ଗ୍ରହଣ କରିଥିଲା ।

ସେ ୧୯୫୬ ମସିହା ଐତିହାସିକ ସୀମା ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲା ଏବଂ ଠିଆ ହୋଇଥିଲା ସାମରିକ ବାହିନୀକୁ ଭ୍ରୂକ୍ଷେପ ନକରି , ନିର୍ଭୀକ ଭାବରେ ।

ସ୍ମୃତି ହାବୁକା ମାରୁଛି । ଆଖି ଝାପସା ହୋଇ ଯାଉଛି । ସମୟ ଅତିକ୍ରାନ୍ତ ହୋଇଛି ବିଭୁଦତ୍ତ ଗଲାଣି ମୁଁ ପଞ୍ଚସ୍ତରୀ ଛୁଇଁଲିଣି । ରହିଲିଣି ଅଚଳ ହୋଇ ଗଲା କେତେବର୍ଷ ହେଲା । ସ୍ମୃତି ଶକ୍ତି କ୍ଷୀଣ ହୋଇଯାଉଛି । ତଥାପି ମନେ ପଡୁଛି ଅତୀତର କଥା ।

ସେ ଦିନ ଯୌବନ ଥିଲା, ରକ୍ତରେ ଅଗ୍ନି ଥିଲା, ଆଖିରେ ସ୍ୱପ୍ନ ଥିଲା । ପରବର୍ତ୍ତୀ କାଳରେ ଜୀବନର କଥାରେ କିଏ କୁଆଡ଼େ ଭାସିଗଲେ ତାର କିଛି ଠିକଣା ରହିଲା ନାହିଁ । କିନ୍ତୁ ବିଭୁଦତ୍ତ ସେମାନଙ୍କ ମଧ୍ୟରେ ଅନ୍ୟତମ । କିନ୍ତୁ ଯେଉଁ କେତେବର୍ଷ ଏକାଠି କଟାଇଛୁ ସେ ସ୍ୱପ୍ନ କ'ଣ ଭୁଲି ହୁଏ । ନା ଭୁଲିହେବ ?

ଉର୍ବଶୀର ଚିଠି କାବ୍ୟର ଲେଖକଙ୍କ ସହିତ ମୋର ପରିଚିତି ନାହିଁ ।

ମୋର ପରିଚିତି 'ଉର୍ବଶୀର ଚିଠି' କାବ୍ୟର ମୁଖ୍ୟବନ୍ଧ ବିଭୁଦତ୍ତ ସହିତ ।

ତାର ସ୍ମୃତି ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି । ଜୀବନରେ ସଂଧ୍ୟା ଉପଗତ । ରାତି ହେବାପାଇଁ ଡେରି ନାହିଁ । ସେଇ ସମୟରେ ଜୀବନର ସକାଳକୁ ଉଖାରି ଦେଲା ବିଭୁଦତ୍ତର ସ୍ମୃତି ପଖାଳିବା ପାଇଁ ଚିଠିଟି ।

□□□

# ମଣିଷପରି ମଣିଷଟିଏ

*(୰ ବିପିନ ବିହାରୀ ପଟ୍ଟନାୟକ)*

ଅନେକ ନୂଆ ନୂଆ ସ୍ୱପ୍ନ ତଥାପି ଭରି ରହିଥିଲା । ସରକାରୀ ଚାକିରି ଥିଲା ପେସା । କିନ୍ତୁ ନିଶା ଥିଲା ଅତିମାନସ ଶକ୍ତିର ଅବତରଣ ପାଇଁ ପ୍ରସ୍ତୁତି । ସେଥିପାଇଁ ଶିଶୁମାନଙ୍କୁ ଗଢ଼ି ତୋଳିବାକୁ ହେବ, ନାରୀମାନଙ୍କୁ ସ୍ୱାବଲମ୍ବୀ କରିବାକୁ ହେବ, ସେମାନଙ୍କୁ ସୁଷମ ଖାଦ୍ୟ ଯୋଗାଇବାକୁ ହେବ । କେତେ ସ୍ୱପ୍ନ । କିନ୍ତୁ ସେଥିପାଇଁ ରାତି କାହିଁ ?

ବିପିନ ବିହାରୀ ପଟ୍ଟନାୟକ ସେଦିନ ହଠାତ୍ ଚାଲିଗଲେ । ଈଶ୍ୱରବିଶ୍ୱାସୀମାନେ କୁହନ୍ତି ଯେ ଆସିବାଟା ଯେମିତି ଅଭିପ୍ରେତ, ଯିବାଟା ବି ସେମିତି । ଅନ୍ୟମାନେ କୁହନ୍ତି ଯେ ବସ୍ତୁର କ୍ଷୟ ହେବା ହେଉଛି ଧର୍ମ । କାହା କ୍ଷେତ୍ରରେ ତାହା ଆଗରୁ ହେଉଛି କାହା କ୍ଷେତ୍ରରେ ବିଳମ୍ବରେ । ଜୀବନ ଏକ ପ୍ରବାହ କାହାରି କ୍ଷେତ୍ରରେ ସବୁ କାମ ପୂରା ହୋଇ ପାରିବ ନାହିଁ । ସବୁ କାମ ଅଧାରେ ରହିଯିବ । ଯାହା ରହିଗଲା ତାକୁ ପୂରଣ କରି ଚାଲିବେ ଉତ୍ତର ପୀଢ଼ି । ସେଇ ଉତ୍ତର ପୀଢ଼ିକୁ ଗଢ଼ି ଯାଇଛନ୍ତି ବିପିନ ବାବୁ । ଖଣ୍ଡଗିରି ପାଖରେ ଥିବା ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ର ତାହାର ସାକ୍ଷୀ ।

ବିପିନ ବାବୁ ସରକାରୀ ଅଫିସର ଥିଲେ ଏବଂ ଯଥା ସମୟରେ ସେଥିରୁ ଅବସର ଗ୍ରହଣ କରିଥିଲେ । ୧୯୬୫ ମସିହାରେ ସେ ରାଜ୍ୟ ପ୍ରଶାସନିକ ସଂସ୍ଥାରେ ଯୋଗ ଦେଇଥିଲେ । ଚାକିରି କାଳ ଭିତରେ ଆଠଗଡ ଅନୁଗୋଳରେ ଏସ୍.ଡି.ଓ. ହୋଇଛନ୍ତି । ଚକବନ୍ଦୀ କାର୍ଯ୍ୟର ଶୁଭାରମ୍ଭ କରିଛନ୍ତି ଓଡିଶାରେ । ଲ୍ୟାଣ୍ଡ୍ ଡେଭଲପମେଣ୍ଟ ବ୍ୟାଙ୍କର ପରିଚାଳନା ନିର୍ଦ୍ଦେଶକ ହୋଇଛନ୍ତି । ପରିଶେଷରେ ସେ ରିଟାୟାର୍ କରିଛନ୍ତି ବା ଅବସର ନେବାର ସମୟ ଆସିଛି । ସେ ହସି ହସି କହନ୍ତି ଯେ ରିଟାୟାର ନୁହେଁ ରିଟ୍ରାଏଡ୍ ବା ପୁନଃ ବିନିଯୋଗ ହେବାର ସମୟ ଆସିଛି । ପେସା ସରିଲା ବର୍ତ୍ତମାନ ନିଶାର ସମୟ ଆସି ପହଞ୍ଚିଛି । ପ୍ରସିଦ୍ଧ ଜରା-ବିଶେଷଜ୍ଞ ଡାକ୍ତର ଭକ୍ତ କିଶୋର କହନ୍ତି ଯେ ଷାଠିଏ ବର୍ଷ ବୟସରେ ହିଁ କାର୍ଯ୍ୟ ଆରମ୍ଭ ହୁଏ । କାରଣ ସେତେବେଳକୁ ତଥାକଥିତ ସାଂସାରିକ କାର୍ଯ୍ୟ ସବୁ ସରି ଯାଇଥାଏ । ବିପିନ ବାବୁଙ୍କ କ୍ଷେତ୍ରରେ ତାହା ପ୍ରଯୁଜ୍ୟ ଠିକ୍ ଭାବରେ ।

ଜରା ତାଙ୍କୁ ଛୁଇଁନାହିଁ । ତାଙ୍କର ଥିଲା ଏକ ସୁଦୂର ପ୍ରସାରୀ ଲକ୍ଷ୍ୟ ଯାହାକୁ ଇଂରାଜୀରେ କୁହାଯାଏ (Eldorado) । ଅତିମାନସ ଶକ୍ତିର ଅବତରଣ ଅବଶ୍ୟମ୍ଭାବୀ ।

ମଣିଷ ପରିଣତ ହେବ ଅତିମାନବରେ । ମାଙ୍କଡ ଯେପରି କ୍ରମ ବିକାଶରେ ମଣିଷ ହୋଇଛି ଏବଂ ସେହିପରି ମଣିଷ ଦିନେ ଅତିମାନବରେ ପରିଣତ ହେବ । ପଛକୁ ଫେରି ସେ ଚାହିଁ ନାହାନ୍ତି । ଚରୈବେତି ଚରୈବେତି ଚରୈବେତି ଆଗେଇଚାଲ, ଆଗେଇ ଚାଲ, ଆଗେଇ ଚାଲ । ବିପିନ ବାବୁ ଏଇ ମହିମ୍ନ ବାକ୍ୟରେ ଉଦ୍‌ବୁଦ୍ଧ ହୋଇଥିଲେ । ବିପିନ ବାବୁ ଜନ୍ମ ହୋଇଥିଲେ ବୋଧହୁଏ ୧୯୩୮ ମସିହାରେ ବା ସେଇ ଦଶକରେ ଜନ୍ମସ୍ଥାନ ବରହମ୍‌ପୁର(ଗଂଜାମ) ବାପା ସରକାରୀ କର୍ମଚାରୀ । ନାମ ବ୍ରଜମୋହନ ପଟ୍ଟନାୟକ । ମାଆଙ୍କ ନାମ ଶକୁନ୍ତଳା । ବିପିନ ବାବୁଙ୍କର ଚାରିଭାଇ, ପାଞ୍ଚ ଭଉଣୀ ।

ରେଭେନ୍ସା କଲେଜିଏଟରୁ ମାଟ୍ରିକ ପାଶ କଲାପରେ ପୁରୀ କଲେଜରୁ ଆଇ.ଏସ୍‌ସି. ପାଶ କରନ୍ତି । ତା'ପରେ ବନାରସ ବିଶ୍ୱବିଦ୍ୟାଳୟରୁ ବି.ଏସ୍‌ସି. ଏବଂ ଏମ୍.ଏସସି. ପାଶ କରନ୍ତି । ଆରମ୍ଭ ... ସରକାରୀ ଚାକିରି । ପୁଅଟିଏ ଝିଅଟିଏ । ଦୁହେଁ ପ୍ରତିଷ୍ଠିତ । ସ୍ତ୍ରୀ ପ୍ରତିଭା ସମାଜସେବୀ ଏବଂ ଶ୍ରୀ ଅରବିନ୍ଦଙ୍କ ଦର୍ଶନରେ ଅନୁପ୍ରାଣିତ ।

କାମ ଚାଲିଛି । ସଂପର୍କ ବହୁ ଲୋକଙ୍କ ସହିତ ବହୁ ବିଭାବ ବହୁ ଶ୍ରେଣୀର । ସବୁ ମଣିଷ ସମାନ । ଦେବତ୍ୱର ସଂଧାନ କର ନର୍ଦ୍ଦମା ଖୋଜିବୁଲ ନାହିଁ । ବିପିନ ବାବୁଙ୍କ ଉପରେ ସମସ୍ତଙ୍କର ଭରସା, ବିଶ୍ୱାସ ଖଣ୍ଡଗିରିରେ ଯେଉଁ ଦ୍ୱିତଳ ପ୍ରାସାଦ ଠିଆହୋଇଛି ଲକ୍ଷ୍ନୌ ଓଡ଼ିଆ ସମାଜର ଅନୁଦାନରେ, ତାହା ଏଇ ବିଶ୍ୱାସର ପ୍ରତୀକ ।

ତଥାପି ଆହୁରି କାମ ବାକି ଅଛି । ପାଉଁରୁଟି କେକ୍ ଫାକ୍ଟ୍ରି, ଉନ୍ନତ ଚାଷ ଉନ୍ନତ ଫସଲ । କେତେ କାମ ସେ ତିଆରି କରିଯିବେ ଏକ ଆଶ୍ରମ, ପଣ୍ଡିଚେରୀ ଭଳି ।

କିନ୍ତୁ ସବୁ ରହିଗଲା । ସେ ହଠାତ୍ ଚାଲିଗଲେ । କୁଆଡେ ଗଲେ, କାହିଁକି ଗଲେ ? ସେ ପ୍ରଶ୍ନ ତ ଅନନ୍ତ । ତାର ଉତ୍ତର ଏ ଯାଏ ମିଳିନାହିଁ । ତାକୁ ଇ ଖୋଜି ଖୋଜି ତ ରାଜକୁମାର ଗୌତମ ପାଲଟିଗଲେ ବୁଦ୍ଧ ।

ସେ ଚାଲିଗଲେ । କିନ୍ତୁ ସମୟର ବାଲିରେ ତାଙ୍କର ପାଦଚିହ୍ନ ଉଜ୍ଜଳି ରହିଛି ଏବଯାଏ । ତାଙ୍କ ଡାକ ଶୁଭୁଛି ଉତ୍ତର ପୀଢ଼ି ଉଦ୍‌ବୁଦ୍ଧ ହେଉଛି ସେଇ ଡାକରାରେ ।

ବୟସ ହୋଇନଥିଲା ଇମିତି କିଛି । କିନ୍ତୁ ମହାକାଳର ନିୟମକୁ ଏଡ଼ାଇ ଦେଇ ପାରିବ କିଏ ?

ବିପିନ ବାବୁଙ୍କ ସହିତ ପରିଚିତି ଅନେକ ଦିନରୁ । ଅମାୟିକ, ହସ ହସ ମଣିଷ । କିନ୍ତୁ ନିୟମରୁ ଟଳିବେ ନାହିଁ ଏତେ ଟିକିଏ । ହସ କିନ୍ତୁ ଲାଖି ରହିଥିବ ମୁହଁରେ । ସେ ମୋ ଠାରୁ ବୟସରେ ସାନ । ମୋର ଯିବା କଥା ଆଗରୁ । କିନ୍ତୁ ସେ ଚାଲିଗଲେ କିମିତି ?

ମୁଁ ଅନେଇଛି ଆକାଶକୁ । ଆଖି ପଥର ହୋଇ ଯାଉଛି । ତାକୁ ଇ ଚିରି ଝରିପଡୁଛି କେତେ ଟୋପା ଲୁହ ।

□□□

# ବିଷ୍ଣୁ ତମେ ଗଲ କୁଆଡେ ?

*(୰ ବିଷ୍ଣୁଚରଣ ଦାସ)*

ବିଷ୍ଣୁ ତମେ ଗଲ କୁଆଡେ ? ଝିଅ ଫୋନ କରୁଛି । ତମେ ନାହିଁ । କୁଆଡେ ଗଲ ? ଏବେ ପରା ଫୋନ କରିଥିଲ ଆସିବ ବୋଲି । ମନ୍ତ୍ର ଅଧାରେ ରହିଯାଇଛି । ତମେ ଆସି ପୁଣି ମନେ ପକାଇ ଦେଇଯିବ । ମୁଁ ସୁସ୍ଥ ହୋଇଯିବି । ତୁମର ବିଶ୍ୱାସ । ଆଉ ଜଣ ନା ତମେ ଚାଲିଗଲ ହଠାତ୍ । ସକାଳୁ ଆଜି ବର୍ଷା ଝରୁଛି ଆକାଶରୁ । ତମ ପାଇଁ କାନ୍ଦୁଛି ଆକାଶ । କାନ୍ଦିବ ନାଇଁ ! ମୋର କେତେ କଥା କେତେ କାମ ବାକି ରହିଗଲା ସତେ ? କ'ଣ ହସୁଛ ନା କ'ଣ ? ସବୁ କଥା ପରି ନିର୍ଲିପ୍ତତା । ସୁଖରେ ଆଉ ଦୁଃଖରେ । ଏହି ଭଳି ମଣିଷ ଥିଲ ତମେ । ସେଇ ଯୋଗୁ ହସୁଛ ନା ! କାମ ସବୁ ଅଧାରେ ରହିଯାଇଛି । ତାରି ନାଆଁ ତ ଜୀବନ । ସବୁ ଅଧାରେ ରହିଯିବ । ବାକି ସବୁ ପୂରଣ କରିବେ ଉତ୍ତର ପୀଢ଼ି । ନାଇଁ ?

କେତେ ଦିନର ପରିଚିତି ଆମ ଭିତରେ । ତମର ଛାତ୍ରବେଳରୁ । ମନେ ପଡୁଚି ତୁମର ? ରେଭେନ୍ସା କଲେଜ ଆମ ଦୁହିଁଙ୍କର ଶିକ୍ଷାଭୂମି, ଦୀକ୍ଷାଭୂମି ମଧ୍ୟ । ଇଂରାଜୀ ସାହିତ୍ୟ ଥିଲା ତମର ପ୍ରିୟ । କିନ୍ତୁ ତମ ପାଖରେ ଥିଲା ଏକ ସ୍ୱତନ୍ତ୍ର ବାସ୍ନା ... ସାଧାରଣତଃ ଇଂରାଜୀ ସାହିତ୍ୟ କହିଲେ ଅଧିକାଂଶ ଛାତ୍ର ଶିକ୍ଷକଙ୍କ ପାଇଁ ତାହା ଇଂରାଜୀ ଲେଖକଙ୍କ ମଧ୍ୟରେ ସୀମିତ । କିନ୍ତୁ ସମସାମୟିକ ଫରାସୀ, ସ୍ପେନୀୟ, ଜର୍ମାନୀ, ଲାଟିନ ଆମେରିକା ଲେଖକମାନଙ୍କୁ ପରିବ୍ୟାପ୍ତ ନୁହେଁ । ତମ ପାଖରେ ଥିଲା ଏକ ସ୍ୱତନ୍ତ୍ର ଧାରା, ଯାହା ମୋତେ ଆକୃଷ୍ଟ କରିଥିଲା । ଟାଣି ନେଇଥିଲା ତୁମ ପାଖକୁ ମନେ ପଡୁଚି ତୁମର ? କେତେ ଅଲୋଚନା ଏହା ଉପରେ । ସବୁ ଛାଡିଦେଇ ଗଲ କୁଆଡେ ?

ରୀନା କହୁଥିଲା ଏଇ ମାତ୍ର କିଛି ଦିନ ତଳେ ତମେ ରେଭେନ୍ସା କଲେଜକୁ ଆସିଥିଲ । ତାକୁ ଦେଖି ପଚାରିଲ ମୋ କଥା । କହିଥିଲ ଆସିବ ବୋଲି ମୁଁ ଅପେକ୍ଷା କରିଛି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅପେକ୍ଷା କରିବି । ନା, ଦେଖା ହେବ ସେଇଠି ଆଲୋଚନା ଚାଲିବ । ସାହିତ୍ୟ ଶିଳ୍ପ ଇତ୍ୟାଦି ସବୁ ବିଷୟରେ ।

ତୁମ ପୁଅ, ଝିଅ ମୋ ସାନ ପୁଅର ସାଙ୍ଗ । ସମ୍ପର୍କ, ପାରିବାରିକ, ସମ୍ପ୍ରସାରିତ । ହୀରା ଭଳି ପୁଅ ଝିଅ । ବାପା ମାଆମାନେ ଗର୍ବରେ ଫାଟି ପଡ଼ନ୍ତି । କିନ୍ତୁ ତୁମେ ନିର୍ଲିପ୍ତ, ନିର୍ବିକାର । ଇମିତି ମଣିଷଟିଏ ହଜିଗଲା କିମିତି ଆମ ଭିତରୁ । କିଏ ଦେବ ଉତ୍ତର ? ସେ ଅନନ୍ତ ପ୍ରଶ୍ନର ଉତ୍ତର ଆଜିଯାଏ ମିଳିନାହିଁ ଅନନ୍ତ କାଳରୁ ।

ତମେ ବୟସରେ କେତେ ସାନ । ତମେ ଥିଲ ସୁସ୍ଥ ଆଉ ମୁଁ ଦୀର୍ଘକାଳ ଧରି ଅସୁସ୍ଥ । ମୋର ଯିବା କଥା ଆଗରୁ । ତମେ କିମିତି ଚାଲିଗଲ ଆଗରୁ, କାହାକୁ ନ କହି ? ଏ ପ୍ରଶ୍ନର ଉତ୍ତର କିଏ ଦେବ ?

ତମେ ଆଉ ଫେରିବ ନାହିଁ । ଜାତସ୍ୟ ହି ଧ୍ରୁବ ମୃତ୍ୟୁ, କିନ୍ତୁ ଏତେ ତରବର କିଆଁ ? ଏହାଠାରୁ କ'ଣ ବେଶି ବଡ଼ କାମର ଡାକରା ପଡ଼ିଲା ନା କ'ଣ ?

ତମେ ନାହିଁ କିନ୍ତୁ ଆମ ଭିତରେ ତମେ ରହିବ ସବୁଦିନ । ସେଇ ଭଳି ହସହସ ସବୁଜ, ନିର୍ଲିପ୍ତ ଭାବରେ । ତମେ ନାହିଁ ଏଇ କଥା ଗ୍ରହଣ କରିବା କ'ଣ ସହଜ ଆମ ପକ୍ଷରେ ?

ପୁଅ ଝିଅ ସବୁ ମଣିଷ ହୋଇସାରିଛନ୍ତି । ତୁମର ନିର୍ଲିପ୍ତତା ସେମାନଙ୍କୁ ତୁମ ବିୟୋଗ ସହ୍ୟ କରିବାର ଶକ୍ତି ଦେଉ । ମୁଁ ତ ଜୀବନ୍ମୃତ ଅବସ୍ଥାରେ । ସେମାନଙ୍କୁ ଯାଇ ସଂଖୋଳି ଆସି ପାରୁ ନାହିଁ । ପୁଅ ଯିବ । ଆମର ତୁମ ସାଙ୍ଗରେ ତ ଦେଖାହେବ ଶୀଘ୍ର । ବେଶି ବ୍ୟସ୍ତ ନୁହେଁ । ଆଖିରୁ ଲୁହ ଶୁଖୁ ନାହିଁ କ'ଣ ।

ବିଷ୍ଣୁ, ତମେ ନାହିଁ । କିନ୍ତୁ ତୁମେ ଅଛ । ଟୋପା ଟୋପା ବର୍ଷା ଝରୁଚି । ଆକାଶ ପୃଥିବୀ ସବୁ ଗମ୍ଭୀର ।

□□□

# କୃଷି ଯାହାଙ୍କ ପାଇଁ ଜୀବନ

## (୰ ବିଶ୍ୱନାଥ ସାହୁ)

ଗଲାକାଲି ଫେବୃଆରୀ ୨୪ ତାରିଖରେ (୧୯୯୧ ମସିହା) କ୍ୟାପିଟାଲ ଡାକ୍ତରଖାନାରେ କୃଷି ବିଶେଷଜ୍ଞ ଡକ୍ଟର ବିଶ୍ୱନାଥ ସାହୁ ଆଖି ବୁଜିଦେଲେ ଚିରଦିନ ପାଇଁ । ୮୪ ବର୍ଷ ବୟସରେ ଏଇ କୃଷି ବିଶାରଦଙ୍କର ଜୀବନଦୀପ ଲିଭିଗଲା । ଅବସାନ ହୋଇଗଲା ଏକ କର୍ମମୟ ଜୀବନର ।

ବିଶ୍ୱନାଥ ସାହୁ କଟକ ଜିଲ୍ଲାରେ ଏକ ଅଖ୍ୟାତ ଗ୍ରାମ କାଳାଡିରାରେ ଜନ୍ମଗ୍ରହଣ କରିଥିଲେ । କେବଳ ନିଷ୍ଠା ଓ ମେଧା ବଳରେ ହିଁ ସେ କୃଷି ବିଜ୍ଞାନର ଏକ ମହାରଥୀରେ ପରିଣତ ହୋଇଥିଲେ । ନାଗପୁରରେ କୃଷି ବିଜ୍ଞାନ୍‌ରେ ସ୍ନାତକ ଡିଗ୍ରୀ ପରେ ସେ କାନାଡ଼ାର ଟରେଣ୍ଟୋ ବିଶ୍ୱବିଦ୍ୟାଳୟରୁ ମାଷ୍ଟର ଡିଗ୍ରୀ ଏବଂ ତା'ପରେ ଯୁକ୍ତରାଷ୍ଟ୍ର ଆମେରିକାର ମିଚିଗାନ୍ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ହାସଲ କରିଥିଲେ । ଏ ତ ଗଲା ପୋଥିଗତ ଡିଗ୍ରୀ କିନ୍ତୁ ଜୀବନର ବିଶାଳ କର୍ମକ୍ଷେତ୍ରରେ ତାଙ୍କ ହସ୍ତ ଓ ମେଧାର ସ୍ପର୍ଶରେ କୃଷି ଜଗତରେ ବିପୁଳ ସମ୍ଭାବନାର ସିଂହଦ୍ୱାର ଉନ୍ମୁକ୍ତ ହେଲା ଧୀରେ ଧୀରେ ।

ଲମ୍ବା, ଦୀର୍ଘକାୟ ଚେହେରା, କୃଷ୍ଣବର୍ଣ୍ଣ ଡକ୍ଟର ସାହୁଙ୍କର ନିୟତ ଦେଖାଯାଏ କର୍ମକ୍ଷେତ୍ରରେ । ବର୍ତ୍ତମାନ ଯେଉଁଠି କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ଅବସ୍ଥିତ ସେଇଠି ଥିଲା କୃଷି ଫାର୍ମ ଏବଂ ସେଇଠି ହିଁ ତାଙ୍କର କର୍ମଜୀବନ ଆରମ୍ଭ ହୁଏ । ପରେ କୃଷି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲାପରେ ସେ ସେଥିରେ ଯୋଗ ଦିଅନ୍ତି । ଆପଣାର ପ୍ରତିଭାର ବିକାଶ ହୁଏ । ସେ ଉକ୍ତ ବିଶ୍ୱବିଦ୍ୟାଳୟର ଡିନ୍ ଭାବରେ ୧୯୭୦ ମସିହାରେ ଅବସର ଗ୍ରହଣ କରନ୍ତି । ଜଣେ ଆଗ୍ରୋନମିଷ୍ଟ ଭାବରେ ତାଙ୍କର ଖ୍ୟାତି ସାରା ପ୍ରଦେଶରେ, ସାରା ଭାରତବର୍ଷରେ । ବହୁ ଛାତ୍ର ତାଙ୍କ ଅଧୀନରେ ଗବେଷଣା କରିଛନ୍ତି । କୃଷିବିଜ୍ଞାନ ଉନ୍ନତ ହୋଇଛି ଏବଂ ଡକ୍ଟର ବିଶ୍ୱନାଥ ସାହୁଙ୍କ ଖ୍ୟାତି ପରିବ୍ୟାପ୍ତ ହୋଇଛି । ସରକାରୀ ପ୍ରତିନିଧି ଭାବରେ ସେ ସିଂହଳ ଯାଇଥିଲେ କୃଷିର ବିକାଶ ଅନୁଧ୍ୟାନ କରିବା ପାଇଁ । ଶସ୍ୟ ଉପରେ ତାଙ୍କର ବ୍ୟୁତ୍ପତ୍ତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

ପଢ଼ିବା ଓ ଲେଖିବା ତାଙ୍କର ନିଶା । କୃଷିର ବିଭିନ୍ନ ବିଭାଗ ଉପରେ ପ୍ରାୟ ୨୪ ଟି ବହି ଓଡିଆରେ ଏବଂ ତିନୋଟି ବହି ଇଂରେଜୀରେ ପ୍ରକାଶିତ ହୋଇ, କୃଷକ ଓ ଗବେଷକମାନଙ୍କର ଅସୀମ ସାହାଯ୍ୟରେ ଆସିଛି । ପାତାଳଗରୁଡ଼ ଉପରେ ତାଙ୍କର ଗବେଷଣା । ଏହି ଉଦ୍ଭିଦର ରକ୍ତଚାପ ଉପରେ ଆଶ୍ଚର୍ଯ୍ୟଜନକ ପ୍ରଭାବ ଲୋକଲୋଚନକୁ ଆସିଛି ଏବଂ ଉଚ୍ଚ ରକ୍ତଚାପର ନିରାକରଣ ପାଇଁ ଏହି ଔଷଧ ବର୍ତ୍ତମାନ ଆନ୍ତର୍ଜାତିକ କ୍ଷେତ୍ରରେ ବ୍ୟବହୃତ । ଓଡ଼ିଶାର କୃଷି ଥିଲା ତାଙ୍କର ନଖଦର୍ପଣରେ । ଓଡିଶାରେ ଜମିର ବ୍ୟବହାର ସମ୍ପର୍କରେ ତାଙ୍କର ବହି ବର୍ତ୍ତମାନ ପର୍ଯ୍ୟନ୍ତ ବିଶେଷଜ୍ଞ ତଥା ଶାସନକଳ ପାଇଁ ଏକ ନିର୍ଭରଯୋଗ୍ୟ ରେଫରେନ୍ସ ଆକାରରେ ସ୍ୱୀକୃତି ଲାଭ କରିଛି ।

ବହୁ ସୋସାଇଟି, ବହୁ ଅନୁଷ୍ଠାନ ତାଙ୍କୁ ପାଇ ସମୃଦ୍ଧ ହୋଇଛି, ସକ୍ରିୟ ହୋଇଛି । ବହୁ ଜାତୀୟ, ଆନ୍ତର୍ଜାତୀୟ କୃଷି ସମ୍ପର୍କୀୟ ଅନୁଷ୍ଠାନ ତାଙ୍କର ଆଲେଖ୍ୟ ବହନ କରେ । ଓଡିଶାରେ ବିଜ୍ଞାନକୁ ଜନପ୍ରିୟ କରାଇବା ପାଇଁ ତାଙ୍କର ଦାନ ଅତୁଳନୀୟ । ପରିବେଶର ରକ୍ଷା ପାଇଁ ତାଙ୍କର ଉତ୍କଣ୍ଠା ରୂପ ପାଇଛି ତାଙ୍କ କଲମରୁ ନିସୃତ ଲେଖାମାନଙ୍କରେ ।

ତାଙ୍କର ମୃତ୍ୟୁରେ ଓଡିଶା ଏକ ପ୍ରତିଭାଶାଳୀ ବିଜ୍ଞାନୀ ଚିନ୍ତକକୁ ହରାଇ ଦରିଦ୍ର ହୋଇଛି । ତାଙ୍କର ଉଦ୍‌ବୁଦ୍ଧ ଅଗଣିତ ଛାତ୍ରମାନେ ହିଁ ତାଙ୍କରିଦ୍ୱାରା ପ୍ରଜ୍ୱଳିତ ମଶାଲକୁ ଜଳାଇ ରଖିବେ । ତାହା ହିଁ ହେବ ତାଙ୍କ ଜୀବନର ସାର୍ଥକତା ।

□□□

# ବୀରେନ୍ ଦା ଆଉ ନାହିଁ

*(ସ୍ୱ ବୀରେନ୍ ମିତ୍ର)*

କଟକ ସହରର ଖଲିଫା, ହାମସାହିର ଦୋସ୍ତ ଏବଂ ସମସ୍ତଙ୍କର 'ଦାଦା' ଆଉ ନାହିଁ । ଏ ଲେଖା ପ୍ରକାଶ ପାଇଲାବେଳକୁ ତା'ର ଶବ ପୋଡ଼ି ପାଉଁଶ ହୋଇ ସାରିଥିବ । ପୋଲିସର ଅନ୍ତିମ ବିଗୁଲ ସହିତ ବହୁ ଲୋକଙ୍କର ଦୀର୍ଘଶ୍ୱାସ, 'ଆହା' ଶବ୍ଦ ମିଶି ଯାଇଥିବ ଅନନ୍ତ ସହିତ । ରାଷ୍ଟ୍ରୀୟ ମର୍ଯ୍ୟାଦା, ଫୁଲମାଳ, ଶୋଭାଯାତ୍ରା ଦେଖିବା ପାଇଁ ସେ ନଥିବ ଏବଂ ସେଥି ସହିତ କଟକ ସହରର ସାମାଜିକ ଏବଂ ରାଜନୈତିକ ଜୀବନର ଏକ ଅଧ୍ୟାୟ ଶେଷ ହୋଇଯାଇଥିବ । ତାର ମୃତ୍ୟୁରେ ଖୁବ୍ ବେଶି ଶୋକ କରିବାର କିଛି ନାହିଁ । କାରଣ ତା'ର ବହୁ ପ୍ରିୟ ବନ୍ଧୁ ଚାହୁଁଥିଲେ ଯେ ଶୀଘ୍ର କିପରି ଦାଦା ଯନ୍ତ୍ରଣାରୁ ମୁକ୍ତି ପାଉ । ସେ ଯନ୍ତ୍ରଣା ଅସାଧାରଣ— ସାମାଜିକ, ରାଜନୈତିକ, ଆର୍ଥିକ ଏବଂ ବ୍ୟକ୍ତିଗତ । ସେ ନିଜେ ଥିଲା ଅସାଧାରଣ ଏକ ମଣିଷ, ତେଣୁ ତାର ଯନ୍ତ୍ରଣା ବି ଥିଲା ଅସାଧାରଣ । ଯିବାକୁ ପଡ଼ିବ ସମସ୍ତଙ୍କୁ, ତା'ର ଯିବାର ବେଳ ହୋଇଯାଇଥିଲା, ସେ ଗଲା । ବଞ୍ଚିବାର ଆବଶ୍ୟକତା ସରିଗଲା ପରେ, ଉପଯୋଗିତା ସରିଗଲା ପରେ ବଞ୍ଚିରହିଲେ କ'ଣ ହୁଏ ତା'ର ପ୍ରତିଛବି ବୀରେନ୍ ମିତ୍ର । ଶଙ୍କରାଚାର୍ଯ୍ୟଙ୍କର ମୋହମୁଦ୍‌ଗର ତା' କ୍ଷେତ୍ରରେ ପ୍ରମାଣିତ ହୋଇଛି । କିନ୍ତୁ ସେ ଗଲା ପରେ ହଠାତ୍ କଟକ ସହରର ହୃଦ୍‌ସ୍ପନ୍ଦନରେ ତରଙ୍ଗ ଦେଖାଦେଇଛି । ଯିବ, ଯିବ, ଗଲା, ଗଲାର ହୁରି ଦୁଇ ଚାରି ଥର ପଡ଼ି ସାରିଥିଲା । ତେଣୁ ସେ ଯେ ପ୍ରକୃତରେ ଚାଲିଗଲା, ଏ ସମ୍ବାଦ କେହି ବିଶ୍ୱାସ କଲେ ନାହିଁ । କିନ୍ତୁ ସମ୍ବାଦ ଶୁଣିଲା କ୍ଷଣି ହଠାତ୍ କଟକ ସହର ମୁହୂର୍ତ୍ତକ ପାଇଁ ଥମକି ଠିଆହେଲା । ଶ୍ରୀ ମନମୋହନ ମିଶ୍ର ତାକୁ କହୁଥିଲେ 'ମାନବିକ ଦୟାର କ୍ଷୀର'— ସେହି କ୍ଷୀର ଶୁଖିଗଲା । ରାଜନୈତିକ, ସାମାଜିକ, ଶାରୀରିକ— ସବୁ ଦୃଷ୍ଟିରୁ ସେ ପହଞ୍ଚି ସାରିଥିଲେ ଶୂନ ଘରେ; କିନ୍ତୁ ତା'ର ମୃତ୍ୟୁର ବସ୍ତି ଭିତରେ, ଚା' ଖଟିରେ, କ୍ଲବ ଘରେ, କୁଟୀରଠାରୁ ପ୍ରାସାଦ ଭିତରେ ଯେଉଁ ସମବେଦନା ସୃଷ୍ଟି ହେଲା ତା'ର କାରଣ କ'ଣ ?

ବୀରେନ ମିତ୍ର ଜଣେ ମହାପୁରୁଷ ନଥିଲେ । ମାନବିକ ଦୋଷଦୁର୍ବଳତା ତାଙ୍କର ସବୁ ଥିଲା । ତାଙ୍କର ଜୀବନ ଏତେ ଖୋଲା ଯେ ସେଥିରେ ଲୁଚାଇବାର କିଛି ନାହିଁ । ଟାଉନହଲର ବାରଣ୍ଡା, କମ୍ୟୁନିଷ୍ଟ ପାର୍ଟିର କମ୍ୟୁନ, ବିହାରୀବାଗର ଘର, ମ୍ୟୁନିସିପାଲିଟି ପଡ଼ିଆ, ଗୌରୀଶଙ୍କର ପାର୍କ ସବୁ ତା'ର ସାକ୍ଷ୍ୟ ବହନ କରି ଠିଆ ହୋଇଛି । କିନ୍ତୁ ଆଜି ତ ଅନ୍ତିମ ହିସାବ ନିକାଶର ସମୟ । କାହିଁକି ତା'ହେଲେ ଏତେ ଭଡ଼ ! କାଲି ଶ୍ରୀ ପ୍ରଦ୍ୟୁମ୍ନ ବଳ କହୁଥିଲେ ଯେ, ତା'ର ଭଲ ଖରାପ ଗୁଣ ଭିତରେ ଭଲ ଗୁଣସବୁର ପରିମାଣ ଏତେ ବେଶି ଥିଲା ଯେ, ଆଜି ସେଇଆ ହିଁ ମନେ ପଡୁଛି ।

ଜୀବନ ତା'ର ଥିଲା ଉତ୍‌ଥାନ, ପତନର ଦୀର୍ଘ କାହାଣୀ । ଜରୁରୀକାଳୀନ ପରିସ୍ଥିତି ବେଳେ ଯେତେବେଳେ ବହୁ କଷ୍ଟରେ ଶ୍ରୀ ନରସିଂହ ତ୍ରିପାଠୀ ତାକୁ ଡାକ୍ତରଖାନାକୁ ନେଲେ ସେତେବେଳେ ନର ସିଂହ ନଥିଲେ ? (ବୀରେନ ମିତ୍ରଙ୍କର ଏକଦା ପ୍ରବଳ ବିରୋଧୀ ନରସିଂହ ।) ଦାଦା କାହାକୁ ଆପଣ ବା ତମେ କହିବା ବୋଲି ଶୁଣି ନାହିଁ । ରାଧାନାଥବାବୁ, ମହତାବବାବୁ ବା ନବବାବୁଙ୍କ ଭଳି ଲୋକଙ୍କୁ ବାଦ ଦେଲେ ସେ ସମସ୍ତଙ୍କୁ ଡାକେ 'ତୁ' ଆଉ ସେ ସେହି ନାମରେ ବି ସମ୍ବୋଧିତ ହେବାକୁ ଭଲ ପାଉଥିଲା । ତା'ର ଜୀବନରେ ବନ୍ଧୁ ଥିଲେ ବହୁତ, ଶତ୍ରୁ ବି ଥିଲେ ବହୁତ । କିନ୍ତୁ ସେଦିନ ଶ୍ରୀ ରାମକୃଷ୍ଣ ପତି ଯେତେବେଳେ ଖବର ପାଇଲେ ଯେ 'ବୀରେନର ଏଇ ଅବସ୍ଥା' — ସେତେବେଳେ ଧାନ ବିକି ସେ କଟକ ଧାଇଁ ଆସିଥିଲେ ଅଥଚ କେତେ ''ଶତ୍ରୁତା'' ନ ଥିଲା ସେ ଦୁହିଁଙ୍କ ଭିତରେ ।

ମନେ ପଡୁଛି, କଟକ ସହରରେ ସାମ୍ପ୍ରଦାୟିକ ଦଙ୍ଗାର ସମୟ । ଡକ୍ଟର ପରିଜାଙ୍କ ଘରେ ବୈଠକ ବସିଥାଏ । ସବୁ ଦଳ, ସବୁ ମତର, ସବୁ ବିଭାଗର ନାୟକମାନେ ଏକାଠି ବସିଥାନ୍ତି । ହଠାତ୍ ମହତାବବାବୁ କହିଲେ ଯେ ଆମେ ସୁସ୍ଥ ଲୋକ ସବୁ ତ ଏକାଠି ହୋଇଛୁ, କିନ୍ତୁ ସେଇ ଅକ୍ଷମ ଲୋକଟି କାଇଁ ? ତାକୁ ନ ଆଣିଲେ ଦଙ୍ଗା ବନ୍ଦ ହେବ କିପରି ? ଏହି ଉକ୍ତି ସହିତ ରାଧାନାଥବାବୁ, ବିଶ୍ୱନାଥ ପଣ୍ଡିତ, ଦୁର୍ଗାଚରଣ ମହାନ୍ତି ସମସ୍ତେ ଏକମତ ହେଲେ । ବୀରେନ ମିତ୍ରଙ୍କୁ ସଭାକୁ ଅଣାଗଲା ।

ସବୁ ମନେ ପଡୁଛି । ବୀରେନ ମିତ୍ରଙ୍କର ପରଲୋକ ହୋଇଯାଇଛି ବୋଲି ଗୁଜବ ରଟିଯାଇଥାଏ । ଜାନକୀ ବାବୁ କହିଲେ ମୋତେ—ଚାଲନ୍ତୁ ଯିବା ଦେଖିଆସିବା । ଗଲୁ । ଦାଦା ଆରମ୍ଭ କଲା ତାର ଦୁଃଖର କାହାଣୀ । ପାଞ୍ଚ ଦଶ ଟଙ୍କା ମାଗିବାକୁ ଲାଜ ମାଡୁଛି ଶହେ ଟଙ୍କା ମାଗୁଛି । ମାଗିଲେ ସେ ଯାଇ ହୁଏତ ଟଙ୍କା କୋଡିଏଟା ପଠାଇ ଦେଉଛି; କିନ୍ତୁ ଆଉ ଆସୁ ନାହିଁ । ମୁଁ ନିଃସଙ୍ଗ ହୋଇ ଯାଇଛି । ଆଉ ଜାନକୀ, ତୋର ମନେଥିବ,

ଏଇ ହାତ କେତେ ଟଙ୍କା ନ ଦେଇଛି । ସିରାଜୁଦ୍ଦିନ ଦେଇଥିବା ବସ୍ତାଏ ନୋଟ ପରା ଦିନକରେ ସାରି ଦେଇଥିଲି, ଗିରିଜା ଥିଲା ଦେଖିଚି ।

ଛାଡ, ଜାନକୀ ତୁ ତ ସରକାରରେ ଅଛୁ । ଦେଖିବୁ ଲୋକେ ଯେମିତି ଶସ୍ତାରେ ଚାଉଳ, ଡାଲି, ଲୁଣ, ତେଲ ପାଇ ପାରିବେ । ଏଇ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ଦର ଚଢ଼ିଗଲେ ଲୋକଙ୍କୁ ବାଧିବ ।

ଜାନକୀ ବାବୁ ଆଉ ମୁଁ ଫେରୁଥିଲୁ ଗାଡ଼ିରେ । ମୁଁ ପଚାରିଲି ଜାନକୀବାବୁଙ୍କୁ । ଏଇ ବୀରେନ ମିତ୍ର ରତ୍ନାକର ନା ଜାନକୀବାବୁ ? ସେ ପ୍ରତିବାଦସୂଚକ ସ୍ୱରରେ କହିଲେ ଆପଣ ଏପରି କାହିଁକି କହୁଛନ୍ତି ? କିନ୍ତୁ ରତ୍ନାକରର ସମ୍ପତ୍ତିରେ ଭାଗୀଦାର ଆମେ ସମସ୍ତେ ନା ନାହିଁ ? ତା'ହେଲେ ତାର ଏପରି ଦୈନ୍ୟ କାହିଁକି ? ଜାନକୀବାବୁ ତୁନି ରହିଲେ । ସେଇଦିନ ରାଧାନାଥବାବୁ ଓ ଜାନକୀବାବୁ ଉଭୟେ ମିଶି ହସ୍ତକ୍ଷେପ କଲେ । ଦାଦାର ଚିକିତ୍ସା ଆରମ୍ଭ ହେଲା ।

ତାଙ୍କୁ ଆମେ କହୁ 'ମବ' (mob) କାରଣ ବିଶୃଙ୍ଖଳ, ବିଭକ୍ତ ଜନସାଧାରଣଙ୍କର ସ୍ପନ୍ଦନ ତାଙ୍କଠି ଯେଉଳି ପ୍ରତିଧ୍ୱନିତ ହେଉଥିଲା ସେଉଳି ଲୋକ କମ ମିଳିବେ । ଶ୍ରୀ ବନମାଳୀ ଦାସ ଥାଆନ୍ତି ଜେଲରେ । ବୀରେନ ମିତ୍ର ମୁଖ୍ୟମନ୍ତ୍ରୀ । ତାଙ୍କର ଦେହ ଖରାପ ଥାଏ । ଯାଇଥିଲି । ବୀରେନ ମିତ୍ରଙ୍କର ଆଖିରେ ବାମ୍ପ ଜମିଥିଲା ତାଙ୍କର ଅସୁସ୍ଥତା ଶୁଣି । ସୀମା ଆନ୍ଦୋଳନ । ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓ ମୁଁ ପଳାତକ । ଦେଖା ହେଲା ବୀରେନ ମିତ୍ରଙ୍କ ସହିତ । ଦାଦା ତ ଦାଦା । ସେ କହିବ ଯେ ମୁଁ ବଡ଼ ହୋଇ ଗାଳି ଦେଲି ବୋଲି ତମେ ସାନ ହୋଇ ମୋତେ ଗାଳି ଦେବ !

ସୋଭିଏତ ପ୍ରତିନିଧିବୃନ୍ଦଙ୍କୁ ନେଇ ପହଞ୍ଚିଲୁ ମୁଖ୍ୟମନ୍ତ୍ରୀଙ୍କ ପାଖରେ । ଦରବାର ବସିଛି । ଖାଲି ଦେହ । ପତଳା ଲୁଙ୍ଗି ପିନ୍ଧି ମୁଖ୍ୟମନ୍ତ୍ରୀ ବସିଛନ୍ତି । ଶହ ଶହ ଲୋକ ଚାରିପଟରେ । ତାରି ଭିତରେ ପଶିଲେ ସୋଭିଏତ ପ୍ରତିନିଧିବୃନ୍ଦ । ମୁଖ୍ୟମନ୍ତ୍ରୀଙ୍କ ସହିତ ପରିଚୟ କରେଇ ଦିଆଗଲା । ସେମାନେ ତଟସ୍ଥ । ଏହି ମୁଖ୍ୟମନ୍ତ୍ରୀ ? ଏତେ ଲୋକ କଅଣ ? ସମ୍ମିଳନୀ, ଜାତୀୟ ସଙ୍ଗଟ ? ତାଙ୍କୁ ବୁଝାଇ ଦିଆଗଲା ଯେ ନା, ଏମାନେ ବ୍ୟକ୍ତିଗତ ସମସ୍ୟା ପାଇଁ ଠୁଳ ହୁଅନ୍ତି ପ୍ରତିଦିନ । ଅବାକ ସେମାନେ । ଆହୁରି ଅବାକ ଯେ ଖୋଦ ମୁଖ୍ୟମନ୍ତ୍ରୀ କହୁଛନ୍ତି କି ତାଙ୍କର ସମାଜ ପଙ୍କିଳ, ଜରାଜୀର୍ଣ୍ଣ ଏବଂ ଧ୍ୱଂସମୁଖୀ ଏବଂ ସେ ଚାହାନ୍ତି ଯେ ଏଠାରେ ଏକ ସୋଭିଏତ ରାଷ୍ଟ୍ର ପ୍ରତିଷ୍ଠା ହେଉ । ସେ ବୀରେନ ମିତ୍ର ।

ସେଥିଯୋଗୁଁ ତାଙ୍କର ମୃତ୍ୟୁ ସମ୍ବାଦ ପାଇ ଯେଉଁମାନେ ଆଗ ଛୁଟି ଯାଇଥିଲେ ସେମାନଙ୍କ ଭିତରେ ଥିଲେ ସବୁ ଦଳର ଲୋକ— ମୁଖ୍ୟମନ୍ତ୍ରୀ, ରାଜସ୍ୱମନ୍ତ୍ରୀ, ତାଙ୍କର ରାଜନୈତିକ ଜୀବନର ବଡ଼ ପ୍ରତିଦ୍ୱନ୍ଦ୍ୱୀ, ଶ୍ରୀ ଭୈରବଚନ୍ଦ୍ର ମହାନ୍ତି, କମ୍ୟୁନିଷ୍ଟ ପାର୍ଟିର ଶ୍ରୀ କେଶବାନନ୍ଦ ଦାସ, କଂଗ୍ରେସ (ଆଇ) ର ଶ୍ରୀ ଗୁରୁପଦ ନନ୍ଦ, ଶ୍ରୀ ମୁସ୍ତାଫିଜ ଅହମ୍ମଦ.... ସମସ୍ତେ । ଆଉ ତା'ପରେ ଛୁଟି ଚାଲିଛି ଅସରନ୍ତି ମଣିଷର ଧାଡ଼ି । ତା' ଭିତରେ ସବୁଠାରୁ ବେଶି ଲୋକ ଅଛନ୍ତି ହାମ ସାହିର, ଯେଉଁମାନଙ୍କର ନାଁ ଭୋଟର ଲିଷ୍ଟରେ କେବଳ ମିଳେ ଏବଂ ବେଳେବେଳେ ମିଳେନା । ସେହିମାନେ ଥିଲେ ବୀରେନ ଦା'ର ସବୁଠାରୁ ପ୍ରିୟ । ସେହିମାନେ ତାକୁ ମନେ ରଖିବେ ।

କାରଣ କଟକ ସହର ବିଚିତ୍ର । ଶ୍ରୀ ବିଶ୍ୱନାଥ ପଣ୍ଡିତ ଅସୁସ୍ଥ । ସେ ଆସିପାରି ନାହାନ୍ତି ଦାଦାକୁ ଦେଖିବା ପାଇଁ । ସେ ଥିଲେ ନିର୍ବାଚନରେ ତା'ର ସବୁବେଳେ ପ୍ରତିଦ୍ୱନ୍ଦ୍ୱୀ । କିନ୍ତୁ ସେହି ମଧ୍ୟରାତ୍ରିରେ ଯେତେବେଳେ ବୀରେନ ମିତ୍ର ପରାଜିତ ସେତେବେଳେ ପଣ୍ଡିତଜୀ କହିଲେ ଯେ କଟକ ସହରରେ ଯେତିକି ଲୋକ ଦାଦାଠାରୁ ବ୍ୟକ୍ତିଗତ ଉପକାର ପାଇଛନ୍ତି ସେହିମାନେ ତ ଭୋଟ ଦେଇଥିଲେ ସେ ଜିତିଥାଆନ୍ତା । କିନ୍ତୁ ଏଇ ତ କଟକ ସହର ।

ରାଜନୈତିକ, ସାମାଜିକ ଜୀବନରେ ଘୂର୍ଣ୍ଣି ବହୁ ବ୍ୟକ୍ତିଙ୍କୁ ବିପର୍ଯ୍ୟସ୍ତ କରିଦିଏ । ତା'ର ଏକ ବଡ଼ ଶିକାର ହେଉଛନ୍ତି ବୀରେନ ମିତ୍ର । ସେ ଆଜି ନାହାନ୍ତି କିନ୍ତୁ କଟକ ସହରରେ ସେ ସ୍ମୃତ ହୋଇ ରହିବେ କାରଣ ତା'ରି ପରି ଲୋକ ଆଉ ଏ ସହର ଜନ୍ମ ଦେଇପାରିବ ନାହିଁ ।

□□□

## ଲୋକ ସାହିତ୍ୟର ମଉଡ଼ମଣି

*(ଁ ବୈଷ୍ଣବ ପାଣି)*

ଓଡିଆ ଲୋକସାହିତ୍ୟର ମଉଡ଼ମଣି ବୈଷ୍ଣବ ପାଣିଙ୍କର କାଲି ପରଲୋକ ହୋଇଗଲା । ଜୀବନର ବହୁ ଯୁଦ୍ଧରେ ଲଢ଼ି ଲଢ଼ି ବୈଷ୍ଣବ ପାଣିଙ୍କର ଜୀବନ ଦୀପ ଲିଭିଗଲା । ଦାରିଦ୍ର୍ୟ, ରୋଗ, ପ୍ରତିକୂଳ ପରିସ୍ଥିତି ଭିତରେ ବୈଷ୍ଣବ ପାଣି ସଂଗ୍ରାମ କରି ଆସିଛନ୍ତି ଜୀବନ ତମାମ । ତାଙ୍କର ପ୍ରତିଭାର କୌଣସି ସ୍ୱୀକୃତି ମିଳି ନାହିଁ । ସ୍ୱୀକୃତି ଆସିଲାବେଳକୁ ସମୟ ଅତିକ୍ରାନ୍ତ ହୋଇଯାଇଥିଲା । ବୈଷ୍ଣବ ପାଣିଙ୍କ ମରଦେହକୁ ପୋଡ଼ିବା ପାଇଁ ବା କାନ୍ଧରେ ବୋହିନେବା ପାଇଁ ଲୋକ ନଥିଲେ । ବନ୍ଧୁ କବି ମୁରାରୀ ମୋହନ ଜେନାଙ୍କ ଉପରେ ସେ ଦାୟିତ୍ୱ ପଡ଼ିଥିଲା । କାରଣ ସେ ହିଁ ବୋଧହୁଏ ସେଇ ହାତଗଣତା ବନ୍ଧୁଙ୍କ ଭିତରେ ଜଣେ ଯିଏ ବୈଷ୍ଣବ ପାଣିଙ୍କ ପାଖରେ ଠିଆହୋଇଥିଲେ ଗଭୀର ଦୁଃଖ ଭିତରେ । ପିଠାପୁରରେ 'ଡଗର' ପ୍ରେସର ଘର ବୈଷ୍ଣବ ପାଣିଙ୍କ ଶେଷ ଆଶ୍ରୟ ସ୍ଥଳ ଥିଲା ।

ବୈଷ୍ଣବ ପାଣି ପିଲାଦିନରୁ ବିଦ୍ରୋହୀ ଥିଲେ । ନାଟକ ଲେଖିବା ତାଙ୍କର ସଉକ ଥିଲା । ପ୍ରତିଭା ପ୍ରସବିନୀ ମାହାଙ୍ଗାର କୋଠପଦାଠାରେ ତାଙ୍କର ଘର । ତାଙ୍କର ଜୀବନ କାହାଣୀ ମୁଁ ବେଶି କହିପାରିବି ନାହିଁ । ହୁଏତ ଭବିଷ୍ୟତରେ ଦିନେ ସେ ଆଦୃତ ହେବେ 'ବିଚାରକ'ମାନଙ୍କ ପାଖରେ, ତାଙ୍କୁ ସ୍ୱୀକୃତି, ପ୍ରତିଷ୍ଠା ସବୁ ମିଳିବ । କିନ୍ତୁ ସେତେବେଳକୁ ସେ ନଥିବେ । ଯୌବନର ପ୍ରାରମ୍ଭରେ କୌଣସି ଏକ ଧୋବଣୀ ଯୁବତୀର ପ୍ରେମରେ ପଡ଼ି ବୈଷ୍ଣବ ପାଣି ତାଙ୍କୁ ବିବାହ କରିଥିଲେ ଏବଂ ଗ୍ରାମରୁ ବିତାଡ଼ିତ ହୋଇ ଏକ ଅପନ୍ତରା ନଈ ତୁଠରେ ଆପଣାର ପ୍ରିୟତମାକୁ ନେଇ ରହୁଥିଲେ ।

କିମିତି, କେବେ ଓ କାହିଁକି ସେ କଟକ ଆସିଲେ ତା' ବି କହିପାରିବି ନାହିଁ । ବନ୍ଧୁ ମୁରାରୀ ମୋହନ ଜେନା ହିଁ ତାଙ୍କ ସାଙ୍ଗରେ ପରିଚିତ କରାଇଦେଲେ । ସେଇ ପରିଚିତି ରହିଥିଲା ମୃତ୍ୟୁ ପର୍ଯ୍ୟନ୍ତ । ତାଙ୍କୁ ଦେଖିଛି । ଦେଖିଲାବେଳେ ମନେପଡିଛି ଦେଶ ବିଦେଶର ବହୁ କବି, ଲେଖକ, କଳାକାରଙ୍କ କଥା । ସେଲି, ନେରୁଦା, ଅଲିଭର ଗୋଲ୍ଡସ୍ମିଥ୍,

ଭାନ୍‌ଗଗ୍, ପିକାଶୋ, ମାୟାକୋଭସ୍କିଙ୍କ କଥା । ଜୀବନର ସ୍ୱର ଥରେ ବେସୁରା ହୋଇଗଲେ ସେ ଆଉ ଫେରେ ନାହିଁ ତାର ଗତିପଥକୁ । ସେଇ ବେସୁରା ରାଗ ହିଁ ତା'ର ନିଜସ୍ୱ ହୋଇଯାଏ । ବୈଷ୍ଣବ ପାଣି ଏଇପରି ଏକ ମଣିଷ ଥିଲେ । ଏକ ଟିପିକାଲ୍ ବୋହେମିଆନ୍ ଚରିତ୍ର । ତଥାପି ତାଙ୍କୁ ଭଲ ଲାଗେ । କାରଣ ତାଙ୍କର ସ୍ପନ୍ଦନ ଥାଏ, ଥାଏ ଏକ ସ୍ୱତନ୍ତ୍ର ରାଗିଣୀ । ବୈଷ୍ଣବ ପାଣିଙ୍କର ନାଟକ ଜୀବନର ବହୁ ବିଭାବକୁ ସ୍ପର୍ଶ କରିଛି, ଅନୁପ୍ରାଣିତ କରିଛି, ପ୍ରେରଣା ଦେଇଛି । ଜାତୀୟ ଆନ୍ଦୋଳନ, ଜାତିଭେଦ, ଯୌତୁକ ପ୍ରଥା ଇତ୍ୟାଦି ବହୁ ବିଷୟ ତାଙ୍କର ଲେଖନୀ ପ୍ରସୂତ ।

ବୁକ୍ ଅଫ୍ ଗିନିସ୍‌କୁ ସେ ଯିବାର କଥା । ଆଜି ହୁଏତ ତା'ର ରେକର୍ଡ଼ ରହିବ ନାହିଁ । କିନ୍ତୁ ଭବିତବ୍ୟରେ ଦିନେ ତାହା ନିଶ୍ଚୟ ପ୍ରତିଭାତ ହେବ ଏଥିରେ କୌଣସି ସନ୍ଦେହ ନାହିଁ । କାରଣ ବୈଷ୍ଣବ ପାଣି ନାଟକ ଲେଖିଯାଇଛନ୍ତି ଚାରିଶହରୁ ଊର୍ଦ୍ଧ୍ୱ । ପୃଥିବୀର ଇତିହାସରେ କୌଣସି ବ୍ୟକ୍ତି ଏତେ ସଂଖ୍ୟକ ନାଟକ ଲେଖି ନାହାନ୍ତି । ବୈଷ୍ଣବ ପାଣି ସରକାରୀ ସ୍ୱୀକୃତି ପାଇନାହାନ୍ତି କିନ୍ତୁ ଓଡିଶାର ସହର ଓ ଗ୍ରାମରେ ତାଙ୍କର ଗୀତିନାଟ୍ୟ ସ୍ୱୀକୃତି ପାଇଛି ।

ସେ ନାଟକ ଲେଖନ୍ତି । ଶୁଣାଯାଏ ଯେ ରାତିରେ କିଛି ମାଂସ ଓ କିଛି ମଦ୍ୟ ନେଇ ଯାଆନ୍ତି ମସ୍‌ଜିଦ୍ ଗଳିକୁ । ସେତେବେଳେ ବାଲୁବଜାର ମସଜିଦ୍ ଗଳିରେ କିଛି ବାରବନିତା ରହୁଥିଲେ । ଆଜି ସେମାନେ ନାହାନ୍ତି । ସେମାନଙ୍କର ଆବଶ୍ୟକତା ଆଉ ପଡୁନାହିଁ । ସେଥିପାଇଁ ଅନେକ ଅଧୁନାତନ ସ୍ଥାନ ବାହାରି ସାରିଲାଣି । ସେଇଠି କୌଣସି ଏକ ବାରବନିତା ଥିଲା ତାଙ୍କର ବନ୍ଧୁ । ସେ ସେଇଠିକୁ ଯାଆନ୍ତି ସନ୍ଧ୍ୟାରେ । ମାଂସ ଓ ମଦ୍ୟ ଖାଇ ବସନ୍ତି ନାଟକ ଲେଖିବା ପାଇଁ । ରାତି ପାହିଯାଏ ଲେଖି ଲେଖି । ସକାଳକୁ ଏକ ନାଟକ ଲେଖା ହୋଇଥାଏ ଏବଂ ସେଇଟିକୁ ସେ ବିକ୍ରୀ କରିଦିଅନ୍ତି ଏକ ଦୋକାନରେ, ଆଗାମୀ ଦିନର ଖାଦ୍ୟ ଓ ପାନୀୟ ପାଇଁ । ଆଉ ସେ ବାରବନିତା ?

ଅନ୍ୟମାନେ କ'ଣ ଜାଣିଛନ୍ତି ମୁଁ କହିପାରିବି ନାହିଁ । କିନ୍ତୁ ମୁରାରୀ ମୋହନ ନିଜେ ମୋତେ କହିଛନ୍ତି ଯେ ସେ ବାରବନିତା ସହିତ ଦୈହିକ ସମ୍ପର୍କ ତାଙ୍କର ନଥିଲା । ସେ ଗପେ । ପାନ ଆଣିଦିଏ । ସେତିକି । ବୈଷ୍ଣବ ପାଣି ଲେଖାରେ ବସିଗଲେ ତନ୍ମୟ ହୋଇଯାଆନ୍ତି । ବନ୍ଧୁମାନେ ଫେରିଆସନ୍ତି । ଏହାର ସତ୍ୟାସତ୍ୟ ମୁଁ କହିପାରିବି ନାହିଁ । କିନ୍ତୁ ଏହା ସତ୍ୟ ହେଲେ ବି କେତେ ସୁନ୍ଦର ! ଧୋବଣୀଟିକୁ ବିବାହ କରିଥିଲେ । ଅନେକ ସାଆନ୍ତ ଲୋକ ତଥାକଥିତ ତଳଶ୍ରେଣୀର କନ୍ୟାକୁ ରକ୍ଷିତା କରନ୍ତି । ତା' ଯୋଗୁଁ ସ୍ତ୍ରୀକୁ

ହତାଦର କରନ୍ତି କିନ୍ତୁ ତାକୁ ସ୍ତ୍ରୀର ସମ୍ମାନ ଦିଅନ୍ତି ନାହିଁ । ବୈଷ୍ଣବ ପାଣି ବିବାହ କରିଥିଲେ ଧୋବଣୀକୁ ଏବଂ ତାକୁ ସ୍ତ୍ରୀର ସମସ୍ତ ସମ୍ମାନ ଦେଇଥିଲେ ।

ଧୀରେନ ଦାସ ବୈଷ୍ଣବ ପାଣିଙ୍କର ଜଣେ ବିରାଟ ସ୍ତାବକ । ସେ ହିଁ ଚେଷ୍ଟା କରିଛନ୍ତି ତାଙ୍କୁ ସ୍ୱୀକୃତି ଦେବାପାଇଁ । ସେ କହନ୍ତି, ଟିକିଏ ସମୟ ଦେଇ ସମ୍ପାଦନା କରିଦେଇଥିଲେ କି ନାଟକ ହୋଇନଥାନ୍ତା ! କି ଉନ୍ନତ, ମହାନ୍ ଚିନ୍ତା, ସରଳ ଭାଷା ପ୍ରକଟିତ ଏଇ ସବୁ ନାଟକରେ ? ସେକ୍ସପିଅର୍‌ଙ୍କ ନାଟକ ପଢ଼ିଲେ ଯେମିତି ଲାଗେ ବୈଷ୍ଣବ ପାଣିଙ୍କର ନାଟକ ପଢ଼ିଲେ ସେଇପରି ଲାଗେ । ଏ ଜାତି କେତେ ହତଭାଗ୍ୟ !

ବୈଷ୍ଣବ ପାଣିଙ୍କ ମରଦେହ ଭସ୍ମୀଭୂତ ହୋଇଯାଇଛି ଖାନନଗର ଶ୍ମଶାନରେ । ଟ୍ରଲିରେ ଠେଲି ଠେଲି ତାଙ୍କର ମରଦେହକୁ ନେଇଛନ୍ତି କବି ମୁରାରୀ ମୋହନ । ଚିତା ଜାଳିଛନ୍ତି । କିନ୍ତୁ ଏତେ ଚିତା ନୁହେଁ । ବାଜି ରାଉତ ପରି–

ଏ ହେଉଛି —
ଏ ଜାତିର ଅଲିଭା ମୁକତି ସଳିତା,
ନୁହେଁ ଏହା ଜଳିବାର ପାଇଁ ।
ଏହାର ଜନମ ଏଠି
ଜାଳି ପୋଡ଼ି ଦଦାକୁ ଧସାଇ ।
ସମାଜର ସବୁ କଳୁଷ,
ଅଳନ୍ଧୁକୁ ସିଏ ପୋଡ଼ିଦେବ ଦିନେ ।

ଇତିହାସର ସେଇ ରାୟକୁ ଅପେକ୍ଷା ହୁଏତ କରିବାକୁ ହେବ । କିନ୍ତୁ ସେତେବେଳକୁ ବୈଷ୍ଣବ ପାଣି ନଥିବେ ।

□□□

## ବଇଭାଇ

*(୰ ବୈକୁଣ୍ଠ ବିହାରୀ ମହାନ୍ତି)*

ବଇଭାଇ ଆଉ ନାହାନ୍ତି । ୧୯୯୫ ମସିହା ଅକ୍ଟୋବର ୧୬ ତାରିଖ ସନ୍ଧ୍ୟା । ହଠାତ୍ ସେ ଆଖି ବୁଜିଦେଲେ । ସକାଳୁ କିମିତି ନିଦୁଆ ନିଦୁଆ ଜଣାପଡୁଥିଲେ । ଡାକ୍ତର ପରୀକ୍ଷା କରି ଦେଖିଲେ ରକ୍ତଚାପ ବଢ଼ିଯାଇଛି ବହୁତ । ଉପରବେଳାକୁ ଭଲ ଥିଲେ । ହଠାତ୍ ଗୋଟାଏ ହିକ୍‌କା । ଆଉ ତା'ପରେ ବଇଭାଇ ପାଲଟିଗଲେ ଇତିହାସର ବସ୍ତୁ ।

ନାଁ ବୈକୁଣ୍ଠ ବିହାରୀ ମହାନ୍ତି । କିନ୍ତୁ ସେ ବଇ ନାମରେ ହିଁ ପରିଚିତ । ବଡ଼ମାନେ ଡାକନ୍ତି ବଇ ଆଉ ସାନମାନେ ବଇଭାଇ । ୧୯୧୬ ମସିହା । ଅକ୍ଷିତୃତୀୟାରେ ଜନ୍ମ ହୋଇଥିଲେ ବାଲିକୁଦାରେ କଣିଆ ଗ୍ରାମରେ । ହାଇସ୍କୁଲରେ ପାଠ ପଢ଼ିବା ଅବସ୍ଥାରେ ହିଁ ବହିରେ ଡୋରବନ୍ଧା ହେଲା ।୧୯୩୦ ମସିହା ମୁଠାଏ ଲୁଣ ପାଇଁ ସାମ୍ରାଜ୍ୟ ଦୁଲୁକୁଛି । ଦାମାମା ଧ୍ୱନି ଶୁଭୁଚି ସତ୍ୟାଗ୍ରହର । ବଇଭାଇ ଝାସଦେଲେ ସେଇ ସଂଗ୍ରାମରେ, ବାନରସେନା ଭାବରେ । ସ୍କୁଲରେ ବେଂତମାଡ଼ ଜାଣିନଥିଲେ, କିନ୍ତୁ ବର୍ତ୍ତମାନ ପିଠି ହାତସବୁ ଫାଟିଗଲା ବେତମାଡ଼ରେ । ହାତରୁ, ପିଠିରୁ ରକ୍ତ ଝରୁଥିଲା । କିନ୍ତୁ କଣ୍ଠରୁ ଶୁଭୁଥିଲା ଗୀତ— ମାର ତୁମେ ଯେତେ ମାରିବ....। କି ଅଝଟିଆ ପିଲାଗୁଡାକ ! ପରିଶେଷରେ ସେ କାରାରୁଦ୍ଧ ହେଲେ ।

୧୯୩୩ ମସିହା । ବଇଭାଇଙ୍କୁ ଡାକିଲା ହିମାଳୟ, କନ୍ୟାକୁମାରୀ, ଡାକିଲା ବ୍ରହ୍ମପୁତ୍ର, ଗଙ୍ଗା, ସିନ୍ଧୁ ତାଙ୍କର କଳକଳ ନାଦରେ, ଡାକିଲା ନଗାଧିରାଜ ହିମାଳୟ । ବଇଭାଇ ସାଜିଲେ ପଦାତିକ । ସାରା ଭାରତବର୍ଷ ବୁଲିବେ । ପରିଚିତ ହେବେ ଏହାର ସଂସ୍କୃତି, ଐତିହ୍ୟ ସହିତ । ବହୁ ଭାଷା, ଭିନ୍ନ ଚାଲିଚଳଣି, ଭିନ୍ନ ବେଶଭୂଷା ଭିତରେ ଖୋଜିବେ ସେଇ ମହାଭାରତୀୟ ଐକ୍ୟ, ବନ୍ଦନା କରିବେ ସେଇ ଭାରତମାତାକୁ । ଏହାରି ସନ୍ଧାନରେ ତ ଇତିହାସ ପୃଷ୍ଠାରେ ଗୌତମ ବୁଦ୍ଧ, ମହାବୀର ଜୈନ, ବିବେକାନନ୍ଦ, ଶଙ୍କରାଚାର୍ଯ୍ୟ, ଚୈତନ୍ୟ, ନାନକଙ୍କଠାରୁ ଆରମ୍ଭ କରି ମହାତ୍ମା ଗାନ୍ଧୀଙ୍କ ପର୍ଯ୍ୟନ୍ତ ସମସ୍ତେ ପାଲଟିଥିଲେ ପଦାତିକ । ୧୯୩୩ ରୁ ୧୯୩୮ । ପାଞ୍ଚବର୍ଷକାଳ ବଇଭାଇ ବୁଲିଲେ

ସାରା ଭାରତବର୍ଷ । ଦେଖିଲେ ତୁଙ୍ଗ ଶିଖରୀ ଚୂଳ, ଦେଖିଲେ କୁଞ୍ଜ କାନନମାଳ, ଦେଖିଲେ କୂଳପ୍ଳାବିନୀ ବ୍ରହ୍ମପୁତ୍ର, ପୁଣ୍ୟତୋୟା ଗଙ୍ଗା । 'ବହୁ ପଥେ ବହୁ ପର୍ଯ୍ୟଟନେ କ୍ଳାନ୍ତ ଯା'ର ପାଦ, ତା'ଶିରେ ଝରଇ ନିତ୍ୟ ପ୍ରଭୁ ଆଶୀର୍ବାଦ' । କବି ବାଣୀ ତାଙ୍କ ପାଇଁ ଆପ୍ତ, ସତ୍ୟ ।

ଫେରିଲେ । ପୁଣି ଦେଶ ମାତୃକାର ମୁକ୍ତି ପାଇଁ ସଂଗ୍ରାମର ଆହ୍ୱାନ । ୧୯୩୦ ରୁ ୧୯୪୨ । ଏଇ ମଧ୍ୟରେ ବଇଭାଇ ସାତବର୍ଷ କାରାବାସରେ କଟାଇଛି । ଅସଂଖ୍ୟ ମଣିଷର ତ୍ୟାଗରେ ଆସିଛି ସ୍ୱାଧୀନତା । କିନ୍ତୁ ସାଧାରଣ ମଣିଷର ସ୍ଥାନ କାହିଁ ? ତା'ପାଇଁ ରୁଟି, କପଡା, ମକାନ କାହିଁ ? କାହିଁ ତା' ପାଇଁ ଶିକ୍ଷା ବା ବୃତ୍ତି ? ଏଇ କ'ଣ ସ୍ୱାଧୀନତା ?

ପୃଥିବୀରେ ସାମ୍ୟବାଦର ଜୟଯାତ୍ରା । ବଇଭାଇ କଂଗ୍ରେସ ଛାଡ଼ିଲେ ଏବଂ ସୋସଲିଷ୍ଟ ପାର୍ଟିରେ ଯୋଗଦେଲେ । ଜୟପ୍ରକାଶ, ଲୋହିଆ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଅଚ୍ୟୁତ ପଟ୍ଟବର୍ଦ୍ଧନ ପ୍ରଭୃତିଙ୍କର ଆଦର୍ଶରେ ଅନୁପ୍ରାଣିତ ବଇଭାଇ ସୋସଲିଷ୍ଟ ଆନ୍ଦୋଳନର ରଥୀ ପାଲଟିଲେ । ଖାଲି ସ୍ଲୋଗାନ ଦେଲେ, ଭାଷଣ ଦେଲେ ଚଳିବ ନାହିଁ । ଲୋକଙ୍କ ଭିତରେ କାମ କରିବା ସହିତ ସେମାନଙ୍କ ପାଖରେ ସାମ୍ୟବାଦର ବାର୍ତ୍ତାକୁ ବିଭିନ୍ନ ମାଧ୍ୟରେ ପହଞ୍ଚାଇବାକୁ ପଡ଼ିବ । ଯେପରି ଗ୍ରହଣୀୟ ହେବ ଲୋକମାନଙ୍କଦ୍ୱାରା, ସେମାନଙ୍କ ପ୍ରାଣକୁ ଯେପରି ଛୁଇଁଯିବ । ଜନ୍ମ ହେଲା କଳାବିକାଶ କେନ୍ଦ୍ର । ବାବୁଲାଲ ଦୋଶୀ, ଡକ୍ଟର ପ୍ରାଣକୃଷ୍ଣ ପରିଜା, ଜଷ୍ଟିସ ହରିହର ମହାପାତ୍ର, ଡକ୍ଟର ସଦାଶିବ ମିଶ୍ର, ସବୁ ମହାରଥୀମାନେ ବାହୁଡ଼ି ସାରିଥିଲେ । ନିର୍ମାତାମାନଙ୍କ ମଧ୍ୟରେ କେବଳ ଥିଲେ ବଇଭାଇ । ତାଙ୍କର ପରଲୋକରେ କଳା ବିକାଶ କେନ୍ଦ୍ରର ଗୋଟାଏ ଯୁଗର ପରିସମାପ୍ତି ଘଟିଲା । ସଂସ୍କୃତି ନିରୁତା ନୁହେଁ, ବାଂଝ ନୁହେଁ । ଏହା ହେଉଛି ଆୟୁଧ । ସମାଜର ପରିବର୍ତ୍ତନ ପାଇଁ ଆୟୁଧ । ସେଇ ବାର୍ତ୍ତା ଯେଉଁ ସାଂସ୍କୃତିକ ଅନୁଷ୍ଠାନ ପରିପ୍ରସାର କରିପାରେ ନାହିଁ, ସେ ରହିଯାଏ ସେଇଠି । କଳାବିକାଶ କେନ୍ଦ୍ରକୁ ସେଇ ଆୟୁଧ ଭାବରେ ଗଢ଼ିବା ପାଇଁ ଯେଉଁମାନେ କଳ୍ପନା କରିଥିଲେ ସେମାନଙ୍କ ମଧ୍ୟରେ ବଇଭାଇ ଜଣେ । ବଇଭାଇର ଦରଦ ନାଚ, ଗୀତ ଓ ସିନେମା ପ୍ରତି ପ୍ରଚୁର । ଆଉ କେଉଁଠି ତାକୁ ଅଭିନୟ କରିବାର ଦେଖି ନାହିଁ କିନ୍ତୁ ଦେଖିଚି ଅଭିନୟ କରିବା କେଦାର ଗୌରୀ ଓ ମା' ଚଳଚ୍ଚିତ୍ରରେ ।

ଏହା ଭିତରେ ବଇଭାଇ ୧୯୫୭ ଓ ୧୯୬୭ ମସିହାରେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ସୋସଲିଷ୍ଟ ପାର୍ଟି ଟିକଟ୍‌ରେ । ସବୁ ରାଜନୀତି ତଥା ସୋସଲିଷ୍ଟ ଆନ୍ଦୋଳନରେ ବିରାଟ ଅବକ୍ଷୟର ଅଧ୍ୟାୟ ଆରମ୍ଭ ହେଲା । ସୋସଲିଷ୍ଟମାନେ ଛିନ୍ନଛତ୍ର ହୋଇ ଭାଜିଗଲେ କିଏ କୁଆଡେ । ବୈକୁଣ୍ଠନାଥ ମହାନ୍ତି ଆଉ ପାରିଲେ ନାହିଁ ତାଳ ଦେଇ ଏଇ ନୂତନ ନାଟକରେ । ରାଜନୀତି ତାଙ୍କ ପାଇଁ ଥିଲା ବିଶ୍ୱାସ, ପେସା ନୁହେଁ ।

ସେ ନିଷ୍କ୍ରାନ୍ତ କରି ନେଇଥିଲେ ନିଜକୁ ସକ୍ରିୟ ରାଜନୀତିରୁ । କଳା ବିକାଶ କେନ୍ଦ୍ର ହିଁ ତାଙ୍କର ସମୟ ନେଉଥିଲା । ତା'ର ଟ୍ରଷ୍ଟବୋର୍ଡର ସେ ସଭ୍ୟ ଥିଲେ ମୃତ୍ୟୁ ପର୍ଯ୍ୟନ୍ତ ।

ବଇଭାଇ ଜୀବନର ବିଭିନ୍ନ ବିଭାବକୁ ଛୁଇଁ ଯାଇଛନ୍ତି । ଜଣେ ଲେଖକ ଭାବରେ ତାଙ୍କର ଖ୍ୟାତି ଥିଲା । ଲାଲରେଖା(ଉପନ୍ୟାସ), ଚାଣକ୍ୟ, ରୁଦ୍ଧ ପ୍ରାଚୀର, ଅଗ୍ନିଯୁଗର ସ୍ଫୁଲିଙ୍ଗ (ନାଟକ), ପିଲାଙ୍କ ପାଇଁ ନାଟିକା ଅଜବ ଦେଶ, ସ୍ମୃତି ସୁରଭି (ଆତ୍ମ-ଜୀବନୀ) ତାଙ୍କର ଲେଖାମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ । ତାଙ୍କର ନାଟକ ଅଭିନୀତ ହୋଇଛି ବିଭିନ୍ନ ସ୍ଥାନରେ । ବଇଭାଇର ଲେଖା ଛୁଇଁଯାଇଚି ବହୁ ଜୀବନକୁ ।

ବଇଭାଇ ଆଉ ନାହାନ୍ତି । କିନ୍ତୁ ଅସ୍ତରାଗର ସୂର୍ଯ୍ୟପରି ତାଙ୍କର ଆଭା ଜନମାନସରେ ରହିବ ବହୁକାଳ ।

□□□

# ସବୁଜ ଯୁଗ-ସନ୍ତକର ସମାପ୍ତି

*(ଂ ବୈକୁଣ୍ଠନାଥ ପଟ୍ଟନାୟକ)*

ଲବ୍ଧପ୍ରତିଷ୍ଠ କବି ବୈକୁଣ୍ଠନାଥ ପଟ୍ଟନାୟକ କାଲି ଚାଲିଗଲେ ତାଙ୍କର ଜନ୍ମଭୂମି ବଡ଼ମ୍ବାରେ । କଟକରେ ଘର କରିଥିଲେ; କିନ୍ତୁ ଆଉ ତାଙ୍କର ରହିବା ସମ୍ଭବପର ହୋଇନଥିଲା । ତୁହାକୁ ତୁହା ଦାରୁଣ ପାରିବାରିକ ବିପର୍ଯ୍ୟୟ ଏବଂ ଅଶାନ୍ତି ତାଙ୍କ ପାଇଁ କଟକରେ ରହିବା ଅସମ୍ଭବ କରି ଦେଇଥିଲା ।

କାଲି ତାଙ୍କର ଚିତା ଜଳିବାବେଳେ ଅନ୍ୟମାନଙ୍କ ଭିତରେ ତାଙ୍କର ବନ୍ଧୁ, ସବୁଜ ଯୁଗର ଅନ୍ୟତମ ସ୍ରଷ୍ଟା କବି କାଳିନ୍ଦୀ ଚରଣ ପାଣିଗ୍ରାହୀ ଉପସ୍ଥିତ ଥିଲେ । ତାଙ୍କର ଶୋକାକୁଳ କଣ୍ଠରୁ ଶୁଭିଲା — ଆମେ ସବୁଜ ଯୁଗ ସୃଷ୍ଟି କରିଚୁ ସତ୍ୟ କିନ୍ତୁ ଆମ ଭିତରେ ଯଦି କେହି ପ୍ରକୃତରେ କବି ଥିଲା, ସେ ହେଉଛି ବୈକୁଣ୍ଠ ।

ନାରୀ ଉପରେ କେତେ କବିତା ଲେଖା ଯାଇନାହିଁ । ପ୍ରେମିକାର ସ୍ମୃତି କେତେ କଲମକୁ ଚଞ୍ଚଳ, ସୃଜନଶୀଳ କରିଛି ବୋଲି କେତେ କବି ଲେଖିଛନ୍ତି । କିନ୍ତୁ ବୈକୁଣ୍ଠନାଥଙ୍କର କବିତାରେ ସେଇ ନାରୀର ଚିନ୍ତା ତାଙ୍କର କଲମକୁ ରୁନ୍ଧି ଦେଇଛି, ଅଚଳ କରି ଦେଇଛି ଏବଂ ପରବର୍ତ୍ତୀ ଜୀବନରେ ସେଇ ଅସାମାନ୍ୟା ସୁନ୍ଦରୀ ଗୁଡାଏ ପିଲା ଜନ୍ମ କରି ରୁଗ୍ଣ, ଶୀର୍ଣ୍ଣ ହୋଇଯିବା ତାଙ୍କର ଲେଖନୀରେ ବର୍ଣ୍ଣିତ ହୋଇଛି ନିଖୁଣ ଭାବରେ । ଓଡିଶା ସରକାରଙ୍କର ପରିବାର ଯୋଜନା ବିଭାଗ ଏହି କବିତାକୁ ବହୁବର୍ଷ ଧରି ପରିବାର ଯୋଜନା ପ୍ରଚାର ପାଇଁ ବ୍ୟବହାର କରୁଥିଲେ ।

ବୈକୁଣ୍ଠନାଥଙ୍କ କାବ୍ୟିକ ଜୀବନ ବୋଧହୁଏ ଆରମ୍ଭ ହୁଏ ରେଭେନ୍‌ସା କଲେଜରୁ, ପୂର୍ବ ଛାତ୍ରାବାସରୁ । ମାର୍କସବାଦ ବା ବସ୍ତୁବାଦ ସହିତ ରହସ୍ୟବାଦର ସମନ୍ୱୟ ଭିତର ଦେଇ ତାଙ୍କର କାବ୍ୟକବିତା ବିକାଶଲାଭ କରିଛି । କିନ୍ତୁ ପରବର୍ତ୍ତୀ କାଳରେ ରହସ୍ୟବାଦ ହିଁ ତାଙ୍କର କବିତାର ମୁଖ୍ୟ ଆଧାର ହୋଇଛି । ଯଦିଓ ବସ୍ତୁବାଦର ଝଲକ ଦେଖିବାକୁ ମିଳେ ତାଙ୍କର କବିତାରେ ।

ବୈଷ୍ଣବୀୟ ଚିନ୍ତାଧାରା କାଳକ୍ରମେ ତାଙ୍କର କବିତାର ମୁଖ୍ୟ ଆଧାର ହୋଇଛି । ଜୀବନର ବହୁ ଝଡ଼ ଝଞ୍ଜା ଭିତର ଦେଇ ଗତିକରିଥିବା ବୈକୁଣ୍ଠନାଥ ସେଇପରି

ହୋଇଯିବାକୁ ବାଧ୍ୟ । ବୈକୁଣ୍ଠନାଥ ତିନି ଚାରୋଟି ବିଷୟରେ ଏମ.ଏ.ପାସ କରିଥିଲେ । ସଂକ୍ଷିପ୍ତ ସମୟ ପାଇଁ ଅଧ୍ୟାପକ ହୋଇଥିଲେ କଲେଜରେ; କିନ୍ତୁ ସ୍ଥାୟୀ ଭାବରେ ରହିପାରିଲେ ନାହିଁ । ସେ ଫେରି ଆସିଲେ ପୁଣି ଶିକ୍ଷକତାକୁ ଏବଂ ଜଣେ ଦକ୍ଷ ଶିକ୍ଷକ ଭାବରେ ତାଙ୍କର ଖ୍ୟାତି ଥିଲା ।

ଯୁଦ୍ଧ ସମୟରେ ସେ ହେଲେ ସେନା ପାଇଁ ବିଭିନ୍ନ ବିଭାଗରେ ନିଯୁକ୍ତି ସକାଶେ ରିକ୍ରୁଟିଂ ଅଫିସର । ଚାକିରି ଛଡା ଫାସିବାଦର ପରାଜୟ ବେଶି ଆବଶ୍ୟକ, ଏହି ଦର୍ଶନ ତାଙ୍କୁ ଏହି ଚାକିରି ଗ୍ରହଣ କରିବା ପାଇଁ ପ୍ରେରଣା ଦେଇଥିଲା । ସାମ୍ରାଜ୍ୟବାଦ ଏବଂ ଫାସିବାଦ ଭିତରେ ସଂଗ୍ରାମ, ଫାସିବାଦର ପରାଜୟ ସମଗ୍ର ପୃଥିବୀ ପାଇଁ ଆବଶ୍ୟକ, ଏହା ଥିଲା ତାଙ୍କର ବିଶ୍ୱାସ ।

ଲଣ୍ଠନ ଥିଲା ଆଲୋକର ମୁଖ୍ୟ ଉତ୍ସ । ବୈକୁଣ୍ଠନାଥ ଲଣ୍ଠନ ଆଲୁଅ ଯେପରି ଆଖିରେ ସିଧା ନବାଜିବ ସେଥିପାଇଁ ଏକ କାଗଜ ଲଣ୍ଠନରେ ନିଶ୍ଚିତ ଭାବରେ ଲଗାଇବେ । ଏଥିରେ କୌଣସି ବ୍ୟତିକ୍ରମ ହେବ ନାହିଁ । ସେ ଆମ ଘରେ ରହିବେ ସମ୍ବଲପୁର ଗସ୍ତରେ । ତେଣୁ ସବୁ ଲଣ୍ଠନରେ କାଗଜ ଲଗାଗଲା ତା' ପୂର୍ବରୁ ।

ବୈକୁଣ୍ଠନାଥ ପଟ୍ଟନାୟକ ବିବାହ କଲେ । ତାଙ୍କର ପୁତ୍ର କନ୍ୟାମାନଙ୍କ ମଧ୍ୟରେ ବିଖ୍ୟାତ କଣ୍ଠଶିଳ୍ପୀ ସୁନନ୍ଦା ପଟ୍ଟନାୟକ । ଠିକ୍ ସେଇପରି ତାଙ୍କର ଦୁଇ ପୁତ୍ର ଆତତାୟୀମାନଙ୍କ ହାତରେ ନିହତ । ଗୋଟିଏ ପୁତ୍ରର ସନ୍ଧାନ ମିଳୁ ନାହିଁ । ମନସ୍ତତ୍ତ୍ୱ କହେ ପ୍ରତିଭା ଓ ପାଗଳାମି ଭିତରେ ବ୍ୟବଧାନ ଖୁବ୍ ସୂକ୍ଷ୍ମ । ବୈକୁଣ୍ଠନାଥ ପଟ୍ଟନାୟକଙ୍କ ଜୀବନରେ ତାହା ହିଁ ଘଟିଛି ଏବଂ ତାହା ତାଙ୍କୁ ବିପର୍ଯ୍ୟସ୍ତ କରି ପାରିଲା ନାହିଁ; କିନ୍ତୁ ନିସ୍ତବ୍ଧ, ନୀରବ, ମୂକ କରିଦେଲା । ରାଣୀହାଟ ଗଉଡସାହିରେ ଘରଟିଏ କରିଥିଲେ । କିନ୍ତୁ ସେ ଘରେ ସେ ରହି ପାରିଲେ ନାହିଁ । ଫେରିଗଲେ ପୈତୃକ ଜନ୍ମଭୂମି ବଡ଼ମ୍ବାକୁ । କୁଆଁରୀ ପ୍ରକୃତି ଘେରା ବଡ଼ମ୍ବାରେ ସେ ଖୋଜିଲେ ଶାନ୍ତି– ମାନସିକ ଏବଂ ଶାରୀରିକ ।

ଚାକିରିରୁ ଅବସର ନେଲାପରେ ସେ କିଛିକାଳ କାମ କରିଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରସ୍ତୁତ ହେଉଥିବା ଓଡିଆ ଜ୍ଞାନକୋଷରେ । କିନ୍ତୁ ସେଠାରୁ ତାଙ୍କୁ ବିଦାୟ ନେବାକୁ ପଡିଲା ଅକାଳରେ । ସମ୍ବେଦନଶୀଳ, ସେନ୍‌ସିଟିଭ ବୈକୁଣ୍ଠନାଥ ଆତ୍ମସମ୍ମାନକୁ ବଳି ଦେଇ ନାହାନ୍ତି କଦାପି । ଆତ୍ମ- ସମ୍ମାନର ରକ୍ଷା ପାଇଁ ସେ ଦାୟିତ୍ୱରୁ ଇସ୍ତଫା ଦେଇ ଫେରି ଆସିଲେ ଆପଣା ଘରକୁ ।

ଜୀବନର ଘୂର୍ଣ୍ଣିରେ ବିପର୍ଯ୍ୟସ୍ତ ବୈକୁଣ୍ଠନାଥ ତଥାପି ଅସନ୍ତୁଷ୍ଟ ନଥିଲେ ସ୍ରଷ୍ଟାଙ୍କ ଉପରେ ।

''ଜୀବନ ପାତ୍ର ମୋ ଭରିଛ କେତେମତେ,
ନ ଦେଲ କିଛି ବୋଲି କହିବି କିହେ ଆଉ,
ଜୀବନ ପ୍ରିୟତମ, ହାରିଛ ମୋ ଭରମ,
ତରଣୀ ମୋର ତବ ସାଗରେ ବୋହିଯାଉ ।''

ଜୀବନ ହେଉଛି ଶ୍ରେଷ୍ଠ । ତେଣୁ ଜୀବନକୁ ଉପଭୋଗ କର ସମସ୍ତ ଝଡଝଞ୍ଜା ଭିତରେ । କିନ୍ତୁ ଭ୍ରମ ନରହୁ । ନରହୁ ପରିବାର, ପିଲାଛୁଆ, ବିଷୟାବିଷରେ । ବୈକୁଣ୍ଠନାଥ ଆପଣାର ଜୀବନରେ ତାହା ହିଁ ପ୍ରମାଣିତ କରି ଯାଇଛନ୍ତି । ତାଙ୍କର ଜୀବନ ହିଁ ରୂପାୟିତ ହୋଇଛି ଏଇ କବିତା ପଂକ୍ତିରେ ।

କଟକ ଛାଡ଼ିବା ଯେପରି ତାଙ୍କ ପାଇଁ ଜୀବନ ଛାଡ଼ିବାର ପ୍ରତୀକ ଥିଲା । ସେ ଆପଣାର ସମଗ୍ର ଲେଖାକୁ ଦେଇଗଲେ ଉତ୍କଳ ସାହିତ୍ୟ ସମାଜକୁ କିଛି ଅର୍ଥ ସହିତ । ଉତ୍କଳ ସାହିତ୍ୟ ସମାଜ ତାକୁ ପ୍ରକାଶନ କରିବ ଏବଂ ସେଇ ଲବ୍ଧ ଅର୍ଥରେ ଦୁସ୍ଥ ସାହିତ୍ୟିକମାନଙ୍କୁ ସାହାଯ୍ୟ ଦିଆଯିବ । ହେ ସ୍ରଷ୍ଟା ! ତମେ ମୋତେ ସବୁ ଦେଇଛ । କିନ୍ତୁ ସେତିକିରୁ ତ ବି ବଞ୍ଚିତ ମୋର ସମଧର୍ମୀ ଅନେକ ଲେଖକ । ମୋର ଏଇ ଲେଖା ସେଇମାନଙ୍କ ସାହାଯ୍ୟରେ ନିବେଦିତ ହେଉ । କବି ବୈକୁଣ୍ଠନାଥ ଦାରୁଣ ଦୁର୍ବିପାକ ମଧ୍ୟରେ ବି ଏଇ ମହାନ ବାଣୀରେ ପ୍ରେରଣା ଦେଇଯାଇଛନ୍ତି ଉତ୍ତର ପୁରୁଷକୁ ।

ତାଙ୍କ ସାଙ୍ଗରେ ମୋର ଜୀବନରେ ବହୁବାର ସାକ୍ଷାତ ହୋଇଛି । ଅନେକ ଦିନ ସେ ମୋର ଆତିଥ୍ୟ ଗ୍ରହଣ କରି ମୋତେ, ମୋର ପରିବାରକୁ ଧନ୍ୟ କରି ଯାଇଛନ୍ତି । କ୍ଲାନ୍ତ, ଅବସନ୍ନ ବୈକୁଣ୍ଠନାଥ ନିମନ୍ତ୍ରଣ ଲୋଡ଼ି ନାହାନ୍ତି । ଘରେ ପହଞ୍ଚିଲା ବେଳକୁ ସେ ଖଟରେ ଶୋଇଯାଇଛନ୍ତି, ନିର୍ଲିପ୍ତ, ଉଦାର ଭାବରେ ।

ସେ ଆଉ ନାହାନ୍ତି । କିନ୍ତୁ ସେ ଏ ଜାତିର ଉଜ୍ଜ୍ୱଳ ଐତିହ୍ୟ, ପରମ୍ପରା ।

❑❑❑

# ମେହନତୀ ମଣିଷ-ମହାରଥୀର ମହାଯାତ୍ରା

## (ୱ ବୈଦ୍ୟନାଥ ରଥ)

ମାର୍ଚ୍ଚ ୨ ତାରିଖ, ୨୦୦୭ ମସିହା ରାତି ଦଶଟା । ମହାକାଳ ସମୟର ଦୀର୍ଘଶ୍ୱାସ । ମେହନତୀ ମଣିଷର ମହାରଥୀ ବୈଦ୍ୟନାଥ ରଥ ଆଖି ବୁଜି ଦେଇଛନ୍ତି । ମାତ୍ର ଦୁଇଦିନ ପୂର୍ବରୁ ସେ ସହଯୋଦ୍ଧା ବନମାଳୀ ଦାସଙ୍କ ପରଲୋକ ସମ୍ବାଦ ମୋ'ଠାରୁ ଶୁଣି ଲଥ୍‌କିନା ବସି ପଡିଥିଲେ । କେତେ ସାନ ମୋ'ଠାରୁ, କିନ୍ତୁ ଚାଲିଗଲା ଆଗ ! ଏତିକି କଥା କେବଳ ପାଟିରୁ ବାହାରିଥିଲା । ପରେ ପ୍ରକୃତିସ୍ଥ ହୋଇ ମୋତେ ଖବର ଦେଇଥିଲେ ଯାମିନୀ ଦେବୀଙ୍କୁ ଜଣାଇଦେବା ପାଇଁ ତାଙ୍କର ଶୋକ । କିନ୍ତୁ ନିଜେ ଉବୁରି ପାରିନଥିଲେ ଶକ୍‌ରୁ । ତା'ପରେ ଷ୍ଟ୍ରୋକ୍ । ଭୁବନେଶ୍ୱର ଆପେକ୍ସ ହସ୍‌ପିଟାଲ । ଆଉ ତା'ପରେ ଯାତ୍ରା-ସାଥୀ ବନମାଳୀ ଦାସଙ୍କ ପାଖକୁ । ଦୀର୍ଘ ସତୁରୀ ବର୍ଷର ସହଯୋଦ୍ଧୃତ୍ୱର ବନ୍ଧନ ଏଡିଦେବା କ'ଣ ସହଜ ? ଆଉ ମାସଟିଏ ହୋଇଥିଲେ ଛୟାନବେ ପୂରିଥାଆନ୍ତା । ୧୯୧୧ ଚୈତ୍ର ପୂର୍ଣ୍ଣିମାରେ ଜନ୍ମ ହୋଇଥିଲେ ସ୍ୱର୍ଗତଃ ସପନୀ ମିଶ୍ରଙ୍କ ପୁଅ ଭାବରେ । ପୁଅ ହୋଇଯାଇ ହେଲେ ବୈଦ୍ୟନାଥ ରଥ । ଗଲାବର୍ଷ କହିଥିଲେ ଯେ, ମୋର ଆତ୍ମବଳ ବୋଧେ ମୋତେ ଦୀର୍ଘଜୀବନ ଦେଇଛି । ମୁଁ ଏତିକି କହିପାରେ ଯେ, ୯୫ ବର୍ଷ ବଞ୍ଚିବା ମଧ୍ୟ ଏକ ସାଫଲ୍ୟ । ଆଶା ପୂରଣ ହୋଇପାରିଲା ନାହିଁ । ଗୋଟିଏ ଶକ୍‌ରେ ଆତ୍ମବଳ ଭାଙ୍ଗିଗଲା କି ଆଉ ?

ସେ ଆଉ ଆସିବେ ନାହିଁ । କହିଥିଲେ ଆସିବେ ବୋଲି, ଗଙ୍ଗାଧର ବାବୁ (ରଥ)ଙ୍କଠାରୁ ମୋର ସ୍ୱାସ୍ଥ୍ୟର ଅବନତି ସମ୍ବାଦ ଶୁଣି, ଗଙ୍ଗାଧର ବାବୁ ମୋ'ଠାରୁ ବନମାଳୀ ଦାସ ଏବଂ ବୈଦ୍ୟନାଥ ରଥଙ୍କ ପରଲୋକ ସମ୍ବାଦ ଶୁଣି ପଚାରୁ ଅଛନ୍ତି, ତମେ କେମିତି ଅଛ ? ତମର ଏଇ ସ୍ୱାସ୍ଥ୍ୟରେ ଏତେ ଖବର ପାଉଛ କେମିତି ? ହଁ, ଆଉ କେତେ ଖବର ଆସିବ କି ? ଭାବିଲି ମନେ ମନେ । ସ୍ତ୍ରୀ କମଳକୁମାରୀ ପଚାରୁଛନ୍ତି, ସେ ଆଉ ସତରେ ଆସିବେ ନାହିଁ । କେମିତି ମନେହେଉଛି ନିଜର କିଏ ଜଣେ ଚାଲିଗଲା । କାନ୍ଥରେ ଦାଦା ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତଃ ବିରଞ୍ଚିନାରାୟଣଙ୍କ ଫଟୋଟା ହଠାତ୍

ଚାଲିଗଲା ପବନରେ । ତାଙ୍କରି ଭଳି ଚେହେରା ବଡ଼ପାଟିରେ ତାଙ୍କର ଡାକ ଶୁଭିବ ନାହିଁ । ରୋଗ ବଇରାଗରେ ପାଖରେ ବସି ରହିବାକୁ ମଣିଷଟେ ମିଳିବ ନାହିଁ । ପାଠ ପଢ଼ିଥିଲେ ବି.ଏସ୍‌ସି. ବି.ଇଡି., ବି.ଏଲ୍. । ଛାତ୍ର ଆନ୍ଦୋଳନରେ ରହିବା ପାଇଁ ଏତେ ପାଠପଢ଼ା । ସେଇଦିନରୁ ସାମ୍ୟବାଦୀ ପାଇଟି ଯାଉଥିଲେ । ୧୯୪୦ ମସିହାରେ ପ୍ରସିଦ୍ଧ ଷଡଯନ୍ତ୍ର ମୋକଦ୍ଦମାରେ ବନ୍ଦୀ ହୁଅନ୍ତି ସେ ଅନୁଗୋଳ ଜେଲ୍‌ରେ । ତା'ପରେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦିଅନ୍ତି । ଓଡିଶାରେ କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠନରେ ଅଗ୍ରଣୀ ଭୂମିକା ଗ୍ରହଣ କରନ୍ତି । କିଛିଦିନ ଡକ୍ଟର ହରେକୃଷ୍ଣ ମହତାବଙ୍କ ଅଗରପଡ଼ା ସ୍କୁଲ୍‌ରେ ପ୍ରଧାନଶିକ୍ଷକତା କରନ୍ତି ।

ସ୍ୱର୍ଗତଃ କୃପାସିନ୍ଧୁ ଖୁଣ୍ଟିଆଙ୍କ ସହିତ ମିଶି ଓଡ଼ିଶାରେ ଟ୍ରେଡ୍ ୟୁନିୟନ୍ ଆନ୍ଦୋଳନ ଗଢ଼ନ୍ତି । ବ୍ରଜରାଜନଗର କାଗଜକଳ, ବାରଙ୍ଗ କାଚ କାରଖାନା, କଟକରେ ପ୍ରେସ୍ ଶ୍ରମିକମାନଙ୍କର ସଙ୍ଗଠନର ନେତୃତ୍ୱ ନିଅନ୍ତି । ୧୯୪୬ ମସିହା ନିର୍ବାଚନରେ ଶ୍ରମିକମାନଙ୍କର ପ୍ରତିନିଧି ଭାବରେ ବିଧାନସଭାକୁ ନିର୍ବାଚିତ ହୁଅନ୍ତି । ତାଙ୍କ ଘର କଳାରାହାଙ୍ଗ ପଟିଆ କିଲ୍ଲାରେ । କନିକା ରାଜାଙ୍କ ଜମିଦାରୀ । ନଈ ବାଲିଚର ଏଇ ଅଞ୍ଚଳ । କିନ୍ତୁ ଟିକସ ଦେବାକୁ ପଡେ ଲୋକଙ୍କୁ । ନଈରେ ବନ୍ଧ ଗଢ଼ିଲେ ସିନା ସମ୍ବଳ ପଡନ୍ତା ! ନଈରେ ବନ୍ଧ ବାନ୍ଧିବ କିଏ ? ଇତିହାସ ରଚନା ହେଲା ନୂଆ ଇତିହାସ । ସାଧାରଣ ମଣିଷ ଅଣ୍ଟା ଭିଡିଲେ । ସେମାନଙ୍କର ଅନ୍ୟତମ ସାରଥୀ ହେଲେ ବୈଦ୍ୟନାଥ ରଥ । ମୁକ୍ତକା ହାତରେ ନଈବନ୍ଧ ତିଆରି ହେବ । ବାରଙ୍ଗ ଦାଢ଼ାଠାରୁ ଟାଙ୍ଗୀବନ୍ତ । 'ମାଟିର ମଣିଷ'ର ଲେଖକ କାଳିନ୍ଦୀ ଚରଣ ପ୍ରଥମ ମାଟି ବୋଝ ପକାଇଲେ । ମନମୋହନ ମିଶ୍ର, ମାଧବ ସିଂ ଗୀତ ବୋଲିଲେ- ''ଚଲା କୋଦାଳ, ଚଲା କୋଦାଳ । ପଟିଆ ବନ୍ଧେ ଛନ୍ଦେ ଛନ୍ଦେ ଭରିଦେ ମାଟି ଲାଲ୍ ।'' ସେ ଇତିହାସ ଅଭିନବ । ସେଇ ବନ୍ଧ ଉପରେ ଚାଲିଛି ସାଧାରଣ ମଣିଷର ଶୋଭାଯାତ୍ରା । ବନ୍ଧର ନିର୍ମାତାଙ୍କ ମରଦେହକୁ ବହନ କରି ।

୧୯୯୪ ମସିହା । ବୈଦ୍ୟନାଥ ରଥଙ୍କୁ ଧରିବା ପାଇଁ ୱାରେଣ୍ଟ ଜାରି ହେଲା ସେ ହେଲେ ପଳାତକ । କାମରେ କଠୋର, କିନ୍ତୁ ହୃଦୟଟା କୋମଳ । ସେଇ କୋମଳତାକୁ ଘୋଡ଼ାଇ ପକାଇବାକୁ ସେ ପାଟିକରନ୍ତି ଜୋର୍‌ରେ । ପଳାତକ ଜୀବନରେ ତାଙ୍କର ସାଥୀ ହେବାର ସ୍ମୃତି ଆଜି ମଧ ଆଖିରେ ଲୁହ ଭର୍ତ୍ତି କରିଦିଏ । ପାର୍ଟି ଲାଇନ୍ ସହିତ ମତଭେଦ ହେତୁ ସେ ଫେରି ଆସନ୍ତି ପୁଣି ବିଧାନସଭାକୁ । କିନ୍ତୁ ଭୂମିକା ଅକ୍ଷୁର୍ଣ୍ଣ । ଭାରତର ପ୍ରଥମ ପାର୍ଲାମେଣ୍ଟରେ ରାଜ୍ୟସଭାକୁ ସେ ନିର୍ବାଚିତ ହୁଅନ୍ତି । ରାଷ୍ଟ୍ରପତି ରାଧାକ୍ରିଷ୍ଣନ୍ ଆସିଛନ୍ତି ହୀରାକୁଦ ବନ୍ଧ ଦେଖିବାକୁ । ସାଙ୍ଗରେ ଥିବା ମନ୍ତ୍ରୀ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ପଚାରିଲେ

ବୈଦ୍ୟନାଥ ରଥଙ୍କର ଘର ଏଠାରୁ କେତେ ଦୂର ? ଅନେକ ଦୂର କହି ବିଶ୍ୱାସରାୟ କାରଣ ପଚାରିଲେ । ପାଖ ହୋଇଥିଲେ ଯାଇଥାଆନ୍ତି ବୋଲି ଉତ୍ତର ଦେଲେ ରାଧାକ୍ରିଷ୍ଣନ୍ । ସେ ତ ମାତ୍ର ଦୁଇବର୍ଷ ପାଇଁ ପାର୍ଲାମେଣ୍ଟ ସଭ୍ୟ ଏବଂ ସେ ବି ବେଶ୍ କିଛିବର୍ଷ ହେଲାଣି । ଆପଣ କେମିତି ମନେରଖିଛନ୍ତି ତାଙ୍କୁ ? ଦୁଇଟି କାରଣରୁ, ରାଧାକ୍ରିଷ୍ଣନ୍ ଉତ୍ତରଦେଲେ ପ୍ରଥମ କାରଣ ହେଉଛି, ସେ ସବୁ ବିଷୟରେ ପ୍ରସ୍ତୁତହୋଇ ଆସନ୍ତି ପାର୍ଲାମେଣ୍ଟକୁ ଏବଂ ଦ୍ୱିତୀୟ କାରଣ ହେଲା, ସେ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ଭୟ କରନ୍ତି ନାହିଁ ।

ବୈଦ୍ୟନାଥ ବାବୁ ଫେରିଲେ । ସାମାଜିକ କାର୍ଯ୍ୟରେ ଆପଣାକୁ ବିନିଯୋଗ କଲେ । ୧୯୫୫ ଦଳେଇଘାଇ ପରେ ସେ ରାଜ୍ୟ ରିଲିଫ୍ କମିଟିର ସମ୍ପାଦକ ହେଲେ ନବକୃଷ୍ଣ ଚୌଧୁରୀଙ୍କ ଅନୁରୋଧରେ । ସୀମା ଆନ୍ଦୋଳନଠାରୁ ଆରମ୍ଭ କରି ୧୯୬୦ ମସିହା ବନ୍ୟା କମିଟିର ରିଲିଫ୍ କାର୍ଯ୍ୟ ତାଙ୍କୁ ଦେଖିଲା ନେତୃତ୍ୱରେ । ସଂକ୍ଷିପ୍ତ ସମୟ ପାଇଁ ସେ ଓକିଲାତି କରିବା ଲାଗି ଇଚ୍ଛା କରିଥିଲେ । ଭାରତ-ସୋଭିଏତ ମୈତ୍ରୀ ସମିତିର ଜାତୀୟ ସମ୍ମିଳନୀ ପାଇଁ ପ୍ରସ୍ତୁତି କମିଟିର ଅନ୍ୟତମ ପୁରୋଧା ଥିଲେ । ପରିଶେଷରେ, କଳିଙ୍ଗ ଖବରକାଗଜରେ ପ୍ରକାଶକ ଓ ପରିଚାଳକ ହେଲେ ନବକୃଷ୍ଣ ଚୌଧୁରୀ ଓ ବିଜୁ ପଟ୍ଟନାୟକଙ୍କ ଅନୁରୋଧରେ । କଳିଙ୍ଗ ଖବରକାଗଜ ଛାଡିବା ପରେ କଟକ ସହରରେ କିଛିବର୍ଷ ରହି ଫେରିଗଲେ ଗାଁକୁ । ବୟସ ଅତିକ୍ରାନ୍ତ ହୋଇଛି । ସମୟ ବି ବଦଳିଛି । କିନ୍ତୁ ସେ ବଦଳିନାହାନ୍ତି । ସ୍ୱାଧୀନତା ଆସି ନାହିଁ ସାଧାରଣ ମଣିଷ ପାଇଁ । ସେ ତାଙ୍କର ମତରେ ଦୃଢ଼ ରହିଛନ୍ତି । ରହିଯାଇଛନ୍ତି ଆଗ୍ନୋଷ୍ଟିକ୍, ନିରୀଶ୍ୱରବାଦୀ । ପତ୍ନୀ ଚାଲିଯାଇଛନ୍ତି ବହୁଦିନରୁ । ସେ ଏକାକୀ; କିନ୍ତୁ ଅବିଚଳ, ଅନମନୀୟ । ସେ କୌଣସି ଦଳରେ ନେତା ନାହାନ୍ତି । ସେ କିନ୍ତୁ ରହିଯାଇଛନ୍ତି ମେହନତୀ ମଣିଷର ମହାରଥୀ ହୋଇ । ବନ୍ଧୁ, ସହଯୋଦ୍ଧାମାନେ ଧୀରେ ଧୀରେ ଚାଲିଯାଉଛନ୍ତି । କେବଳ ବୟସ୍କ ରହିଯାଇଛନ୍ତି ଗୋକୁଳ ମୋହନ ରାୟ ଚୂଡାମଣି । ପରିଶେଷରେ ସେହି ସମୟ ଆସି ପହଞ୍ଚିଛି । ସେ ଇତିହାସ ପାଲଟି ଯାଇଛନ୍ତି । ଆଖିରୁ ଲୁହ ପୋଛୁଛନ୍ତି ଗୁରୁଚରଣ ପଟ୍ଟନାୟକ, ଆଡ୍‌ଭୋକେଟ ଗଙ୍ଗାଧର ରଥ, ଆଡ୍‌ଭୋକେଟ ଜଗନ୍ନାଥ ପଟ୍ଟନାୟକ । ପୁଷ୍ପ ବୃଷ୍ଟି ହେଉଛି । ବୃଷ୍ଟି କରୁଛନ୍ତି ପଟିଆ କିଲ୍ଲାର ସାଧାରଣ ମଣିଷ, ଯାହାଙ୍କ ପାଇଁ ଇତିହାସ ସୃଷ୍ଟି କରିଯାଇଛନ୍ତି ବୈଦ୍ୟନାଥ ରଥ ।

□□□

# ଅନ୍ଧାରି ମୁଲକର ଅନ୍ୟତମ ଦିହୁଡି ନିର୍ବାପିତ

*(୰ ବ୍ରଜକିଶୋର ପଟ୍ଟନାୟକ)*

ବ୍ରଜ କିଶୋର ପଟ୍ଟନାୟକ ଆଉ ନାହାନ୍ତି । ଗଲା କାଲି ତାଙ୍କର ଆଠଗଡ ଟାଉନରେ ନିଜ ଘରେ ପରଲୋକ ହୋଇଯାଇଛି । ଏହା ସହିତ ଇତିହାସର ଗୋଟିଏ ପୃଷ୍ଠା ଓଲଟି ପଡିଛି । ବ୍ରଜକିଶୋର ପଟ୍ଟନାୟକ ଆଠଗଡରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନେ ସେ ଜଣେ ସୁଦକ୍ଷ ଫୁଟବଲ ଖେଳାଳୀ ଥିଲେ । ଓଡ଼ିଶାର ଚବିଶ ଗଡଜାତ ରାଜାମାନଙ୍କ ମଧ୍ୟରୁ ଏକମାତ୍ର ଆଠଗଡ ରାଜା ଜାତିରେ କରଣ । ପିଲାଦିନେ ତାଙ୍କ ସାଙ୍ଗରେ ଫୁଟବଲ ଖେଳିବା ଥିଲା ବ୍ରଜ ପଟ୍ଟନାୟକଙ୍କର ସଉକ । ଜଣେ ମଲ୍ଲଯୋଦ୍ଧା ଭାବରେ ମଧ୍ୟ ତାଙ୍କର ଖ୍ୟାତି ଥିଲା । ପରବର୍ତ୍ତୀ ଜୀବନରେ ସେଇଯୋଗୁଁ ପୁଲିସମାନେ ତାଙ୍କୁ ଖାଲି ହାତରେ ଧରିବା ପାଇଁ ଭୟ କରୁଥିଲେ । ହାତ ଛିଞ୍ଚାଡ଼ିଦେଲେ ଧରିଥିବା ଲୋକର ହାଡ଼ ଭାଙ୍ଗି ଯାଉଥିଲା ।

ବ୍ରଜବାବୁ ପିଲାଦିନୁ ଜାତୀୟ ଆନ୍ଦୋଳନରେ ଆପଣାକୁ ସାମିଲ କରିଥିଲେ । ଓଡ଼ିଶାର ଜାତୀୟ ଆନ୍ଦୋଳନରେ ଗଡଜାତ ମୁକ୍ତି ଆନ୍ଦୋଳନ ଏକ ଅବିଭାଜ୍ୟ, ଗୌରବମୟ ଅଂଶ । ପାଠପଢ଼ାରେ ଡୋରି ବନ୍ଧା ହୋଇଥିଲା । ବ୍ରଜବାବୁ କେବଳ ନିଜେ ମୁକ୍ତି ଆନ୍ଦୋଳନ ଭିତରକୁ ଆସିଥିଲେ ଏବଂ ଆପଣାର ସାନଭାଇ ନନ୍ଦ କିଶୋର ପଟ୍ଟନାୟକଙ୍କୁ ମଧ୍ୟ ମୁକ୍ତି ଆନ୍ଦୋଳନରେ ଯୋଗଦେବା ପାଇଁ ଅନୁପ୍ରାଣିତ କରିଥିଲେ ।

ଆଠଗଡ ରାଜା ବୋଧହୁଏ ଓଡ଼ିଶାର ପ୍ରଥମ 'ସି' କ୍ଲାସ ବୈମାନିକ । ତାଙ୍କର ଗୋଟାଏ ଉଡ଼ାଜାହାଜ ମଧ୍ୟ ଥିଲା । ମନେହୁଏ ଆଧୁନିକ ପୃଥିବୀ ସହିତ ଏହି ସମ୍ପର୍କ ତାଙ୍କୁ ଅନ୍ୟ ରାଜାମାନଙ୍କଠାରୁ ସ୍ୱତନ୍ତ୍ର କରିଥିଲା । 'ସମାଜ' ସମ୍ପାଦକ ରାଧାନାଥ ରଥଙ୍କ ପାଖରେ ଆଠଗଡ ରାଜା ୧୯୩୮ ମସିହାରେ ତତ୍କାଳୀନ ପଲିଟିକାଲ ଏଜେଣ୍ଟ ଏବଂ ଭାଇସରାୟଙ୍କୁ ଲେଖିଥିବା ଏକ ଗୁପ୍ତ ଚିଠି ରହିଛି । ସେଥିରେ ସେ ଲେଖିଛନ୍ତି ସମୟର ସୁଅରେ ଉଜାଣି ବାହିବା ଭାରି କଷ୍ଟକର । ଏହା ଅସମ୍ଭବ ମଧ୍ୟ । ଦେଶରେ ମୁକ୍ତି ଆନ୍ଦୋଳନର ଜୁଆର ଉଠୁଚି । ମୋ ନିଜ ରାଜ୍ୟ ଆଠଗଡରେ ମଧ୍ୟ ପ୍ରବଳ ଜନ ଉଦ୍‌ବେଳନ । କେତେ ଦିନ ଏହାକୁ ଅଟକାଇ ରଖା ଯାଇପାରିବ ? ମୋ ମତରେ ନିର୍ବାଚିତ

ଜନପ୍ରତିନିଧିଙ୍କ ହାତରେ ଆମେ କ୍ଷମତା ଦେଇଦେଲେ ହିଁ ରକ୍ଷା । ନଚେତ୍ ଇତିହାସ ଆମକୁ ଅଳିଆଗଦାକୁ ଫୋପାଡି ଦେବ । ମୁଁ ଏହା ଲେଖିଲାବେଳେ ଆଠଗଡ ସହର କମ୍ପୁଛି । ବିକ୍ଷୁବ୍ଧ ନରନାରୀଙ୍କର ଯୁଦ୍ଧଂ ଦେହି ଡାକରାରେ ।

ଏହି ଜନ ଉଦ୍‌ବେଳନର ଫିଲ୍ଡ କମାଣ୍ଡର ଥିଲେ ବ୍ରଜ କିଶୋର ପଟ୍ଟନାୟକ ଆଠଗଡରେ, ଯେପରି ବନମାଳୀ ଦାସ ନୀଳଗିରିରେ, ବୈଷ୍ଣବ ପଟ୍ଟନାୟକ ଢେଙ୍କାନାଳରେ, ଗଙ୍ଗାଧର ମିଶ୍ର ରଣପୁରରେ, ଦୟାନନ୍ଦ ଶତପଥୀ ବାମଣ୍ଡାରେ, ଯୁଧିଷ୍ଠିର ମିଶ୍ର ବଲାଙ୍ଗୀରରେ ।

ଅନେକ ବୋଧହୁଏ ଜାଣନ୍ତି ନାହିଁ ଏହି ପ୍ରକାର ଚିଠି ଯୋଗୁଁ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ଆଠଗଡ ରାଜାଙ୍କର ଜାପାନ ସହିତ ସମ୍ପର୍କ ରହିଛି ବୋଲି ସନ୍ଦେହ କରି ବ୍ରିଟିଶ ସରକାର ତାଙ୍କୁ ଯୁଦ୍ଧ ସମୟରେ ରାଜ୍ୟରୁ ବହିଷ୍କାର କରିଥିଲେ ଏବଂ ଆଠଗଡ କୋର୍ଟ ଅଫ୍ ୱାର୍ଡସ ହୋଇ ଯାଇଥିଲା ।

ବ୍ରଜ କିଶୋର ପଟ୍ଟନାୟକ, ଭାଇ ନନ୍ଦ କିଶୋର ପଟ୍ଟନାୟକ ବ୍ରହ୍ମପୁର ଜେଲରେ ବନ୍ଦୀ ହୁଅନ୍ତି ୧୯୪୨ର ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ । ସେଇଠି ସାମ୍ୟବାଦର ମହାମନ୍ତ୍ରରେ ଦୀକ୍ଷିତ ହୁଅନ୍ତି ଏବଂ ପରବର୍ତ୍ତୀକାଳରେ ସେମାନେ ସଂଗଠିତ କରନ୍ତି କମ୍ୟୁନିଷ୍ଟ ପାର୍ଟିକୁ ଗଡଜାତ ମୁକ୍ତି ଆନ୍ଦୋଳନରେ ଅଗ୍ରଗାମୀ ବାହିନୀ ହେବା ପାଇଁ । ଏବଂ ଇତିହାସରେ ଲିପିବଦ୍ଧ ରହିଛି ଯେ ଏହି ଜନ ଆନ୍ଦୋଳନ ଯୋଗୁଁ ନୀଳଗିରି ହିଁ ଭାରତବର୍ଷର ପ୍ରଥମ ଗଡଜାତ ରାଜ୍ୟ ଯାହାର ମିଶ୍ରଣ ଓଡିଶା ପ୍ରଦେଶ ସହିତ ହେଲା ଏବଂ ଏହାହିଁ ଉନ୍ମୁକ୍ତ କରିଦେଲା ଭାରତବର୍ଷର ସବୁ ଗଡଜାତମାନଙ୍କର ମିଶ୍ରଣ ଭାରତ ସହିତ ।

ଆଠଗଡ ଲୋକଶାସନ ପାଇଁ ନିର୍ବାଚନ ହୁଏ । ବ୍ରଜ କିଶୋର ପଟ୍ଟନାୟକ ନିର୍ବାଚିତ ହୁଅନ୍ତି ଆଠଗଡ ଟାଉନରୁ ।

ଭାରତବର୍ଷ ସ୍ୱାଧୀନତା ପାଏ ୧୯୪୭ରେ । ଗଡଜାତମାନଙ୍କର ମିଶ୍ରଣ ହୋଇଯାଏ ୧୯୪୮ ମସିହାରେ । କିନ୍ତୁ କାହିଁ ସେ କଳ୍ପିତ ସ୍ୱାଧୀନତା ? କ'ଣ ଫରକ ହୋଇଛି ଗଣତନ୍ତ୍ର ରାଜତନ୍ତ୍ରଠାରୁ ? କାହିଁ ଚାଷୀ ପାଇଁ ଜମି, ଶ୍ରମିକ ପାଇଁ ମଜୁରି, ଶିକ୍ଷାର୍ଥୀ ପାଇଁ ବିଦ୍ୟାଳୟ, ରୋଗୀ ପାଇଁ ଡାକ୍ତରଖାନା, ଔଷଧ ? ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା । ୧୯୪୮ ମସିହାରୁ ୧୯୭୬ । ୨୮ ବର୍ଷ ପରେ ଏକଦା କମ୍ୟୁନିଷ୍ଟମାନଙ୍କର ବିରୋଧୀ ଲୋକନାୟକ ଜୟପ୍ରକାଶ ମଧ୍ୟ ଆରମ୍ଭ କଲେ ଦ୍ୱିତୀୟ ସ୍ୱାଧୀନତା ଆନ୍ଦୋଳନ । ବ୍ରଜ ପଟ୍ଟନାୟକ କାରାରୁଦ୍ଧ ହେଲେ ପୁଣି ଥରେ । କଟକ

ଜେଲରେ ଦୀର୍ଘ ୪୮ ଦିନ ଧରି ଅନଶନ କଲେ ଅନ୍ୟାନ୍ୟ ସହଯୋଦ୍ଧାମାନଙ୍କ ସହିତ ଏବଂ ୧୯୫୦ ମସିହାର ପ୍ରାରମ୍ଭରେ ଆଠଗଡ ଜେଲରୁ କଟକ ଜେଲକୁ ଆସିଲାବେଳେ ସେ ଓ ତାଙ୍କର ସହଯୋଦ୍ଧା ଦୀନବନ୍ଧୁ ମିଶ୍ର ପୁଲିସ ହାତରୁ ଖସି ଯାଆନ୍ତି ଛତ୍ରବଜାର ରାସ୍ତାରେ । ଧରିବା ପାଇଁ ଶହ ଶହ ସଶସ୍ତ୍ର ପୁଲିସ ଖୋଜନ୍ତି । ଛତ୍ରବଜାରରୁ ଖାନନଗର, ଖାନନଗରଠାରୁ ନୂଆବଜାର । (ସେତେବେଳକୁ ଲିଙ୍କରୋଡ ହୋଇ ନାହିଁ । ସେ ଅଞ୍ଚଳ ଥିଲା ଦୁରାରୋଧ । ବାଇଗଣ କିଆରି, କିଆ ବୁଦା, ଗୋଖର ସାପର) ଅଞ୍ଚଳ ଅବରୁଦ୍ଧ ହେଲା ଘଣ୍ଟାକ ଭିତରେ । ତଥାପି ପତ୍ତା ମିଳିଲା ନାହିଁ ତାଙ୍କର ।

୧୯୫୨ ମସିହା ନିର୍ବାଚନ ବେଳକୁ ବ୍ରଜ କିଶୋର ପଟ୍ଟନାୟକ ଜେଲରୁ ଖଲାସ ହେଲେ । ନିର୍ବାଚନ ଲଢ଼ିଲେ ମହାରଥୀ ରାଧାନାଥ ରଥଙ୍କ ବିରୋଧରେ ସୀମିତ ସମ୍ବଳରେ । ରାଧାନାଥବାବୁ ଏକଦା ତାଙ୍କର ନେତା, ସହଯୋଦ୍ଧା ଥିଲେ । ଆଜି ତାଙ୍କରି ବିରୋଧରେ ସେ ରଣାଙ୍ଗନରେ ଅବତୀର୍ଣ୍ଣ । କିନ୍ତୁ ରାଧାନାଥବାବୁଙ୍କ ପ୍ରତି ତାଙ୍କର ଭକ୍ତି ଊଣା ହୋଇ ନାହିଁ କି ରାଧାନାଥ ବାବୁଙ୍କର ତାଙ୍କ ପ୍ରତି ସ୍ନେହ ଊଣା ହୋଇ ନାହିଁ । ମତାନ୍ତର ହୋଇଛି କିନ୍ତୁ ମନାନ୍ତର ହୋଇ ନାହିଁ । ଆଜି କାଲି ମତ ନାହିଁ । ରାଜନୀତି ଏକ ବ୍ୟବସାୟ । ତେଣୁ କଥାକଥାକେ ପ୍ରତିପକ୍ଷ ଉପରେ ବୋମାମାଡ, ଢେଲାମାଡ,ଗାଳି । ସମୟ ବଦଳି ଯାଇଛି ।

ଓଡିଶାର ରାଜନୈତିକ ଦଳମାନଙ୍କ ଭିତରେ ବୋଧହୁଏ ବ୍ରଜବାବୁଙ୍କଦ୍ୱାରା ଆୟୋଜିତ ଏବଂ ସଂଗଠିତ ପାଲାଦଳ ଅନନ୍ୟ । ବିଧିବଦ୍ଧ ରାଜନୈତିକ ପାଲା । ପ୍ରତିପକ୍ଷମାନେ ମଧ୍ୟ ଆନନ୍ଦ ଉପଭୋଗ କରନ୍ତି ଏହାର ଶୈଳୀ, ଭାଷା ଓ ଭାବଦ୍ୱାରା ।

ସମୟ ଅତିକ୍ରାନ୍ତ ହୋଇଛି । ବୟସ ବଢ଼ିଛି । କ୍ଲାନ୍ତ ଲାଗିଲାଣି । ବିରାଟ ବପୁ । ବୟସର ଭାରା ଆଉ ସମ୍ଭାଳି ପାରୁ ନାହିଁ ଦେହ । ବ୍ରଜବାବୁ ଅସୁସ୍ଥ ହୋଇ ପଡ଼ିଲେଣି । ତଥାପି ବାଡି ଖଣ୍ଡିଏ ଧରି ଆସନ୍ତି ବଜାରକୁ ବୁଲିଯିବା ପାଇଁ । ସମସାମୟିକ ଲୋକେ ବାହୁଡି ଗଲେଣି । ନିଃସଙ୍ଗ ଲାଗିଲାଣି ଜୀବନ । ରାଜନୀତି ମଧ୍ୟ ଘୁଣ ଧରିଲାଣି । ଆଉ ପ୍ରେରଣା ଦେଇପାରୁ ନାହିଁ । ମନ ଓ ଦେହ ଉଭୟ ଭାଜି ପଡୁଛି ।

ବ୍ରଜ କିଶୋର ପଟ୍ଟନାୟକ ଆଖି ବୁଜି ଦେଇଛନ୍ତି ।

❏❏❏

# ସୁରତ ଅଲ୍ଲୀ

*(ଂ ବଂଶୀଧର ମିଶ୍ର)*

ରେଭେନ୍‌ସା କଲେଜର ପଦାର୍ଥ ବିଜ୍ଞାନର ଅଧ୍ୟାପକ ବ୍ରହ୍ମାନନ୍ଦ ମିଶ୍ର ଯାଇଥାନ୍ତି ଇଂଲଣ୍ଡ ପିଏଚ.ଡି ଉପାଧି ପାଇଁ ଗବେଷଣା କରିବା ସକାଶେ । ତାଙ୍କର ସନ୍ଦର୍ଭର ବିଷୟବସ୍ତୁ ଥିଲା, ଶକ୍ତି ବା ଆଲୋକକୁ ଯେପରି ତରଙ୍ଗରେ ପରିଣତ କରାଯାଇ ପୁନଶ୍ଚ ରେଡିଓ ବା ଟି.ଭି. ଜରିଆରେ ଧରାଯାଇ ପାରୁଛି ବହୁ ଦୂର ଦୂରାନ୍ତରକୁ ଠିକ୍ ସେଇପରି ବସ୍ତୁକୁ ମଧ ପଠାଯାଇପାରିବ । ଅର୍ଥାତ୍ ଏହା ସମ୍ଭବ ହେଲେ ଜଣେ ଲୋକ ଇଂଲଣ୍ଡ ଯିବାକୁ ଚାହିଁଲେ ସେ ଏଇଠି ଗୋଟାଏ ଅନୁରୂପ ଯନ୍ତ୍ର ଭିତରକୁ ପଶିଯାଇ ପାରିବ ଏବଂ ପରମୁହୂର୍ତ୍ତରେ ସେ ଇଂଲଣ୍ଡରେ ଆଉ ଏକ ଯନ୍ତ୍ରରେ ବାହାରି ଯାଇପାରିବ । ଏହା ସମ୍ଭବ ହେଲେ ଏହା ହେବ ଏକ ଯୁଗାନ୍ତକାରୀ ଉଦ୍‌ଭାବନ । ବ୍ରହ୍ମାନନ୍ଦ ମିଶ୍ରଙ୍କ ନାଁ ନୋବେଲ ପ୍ରାଇଜ ପାଇବାର ତାଲିକାକୁ ଗଲା । ଓଡିଶାର ଜଣେ ଲୋକ ନୋବେଲ ପ୍ରାଇଜ ପାଇବ ଏପରି ଏକ ସମ୍ବାଦ ସବୁ ଓଡିଆଙ୍କୁ ଉଲ୍ଲସିତ କଲା । କିନ୍ତୁ ବ୍ରହ୍ମାନନ୍ଦ ମିଶ୍ରଙ୍କର ଥିସିସ୍‌କୁ ତାଙ୍କ ଗାଇଡ୍ ଗ୍ରହଣ କଲେ ନାହିଁ ଏବଂ ତାଙ୍କୁ ଶେଷ ମୁହୂର୍ତ୍ତରେ ଗ୍ରହଣ କରିବା ପାଇଁ ବା ପିଏଚ୍. ଡି ଉପାଧି ପାଇବା ପାଇଁ ସୁପାରିଶ କରିବାକୁ ମନା କରିଦେଲେ । ଇଂଲଣ୍ଡରେ ଗାଇଡ୍ ହେଉଛନ୍ତି ସର୍ବେସର୍ବା । ଆମେରିକା ଭଳି ପିଏଚ.ଡି. ସେଠାରେ ଏକ କୋର୍ସ ନୁହେଁ । ବର୍ତ୍ତମାନ ବ୍ରହ୍ମାନନ୍ଦ ମିଶ୍ର ଯାଆନ୍ତି କୁଆଡେ ? ସେ ପାଗଳ ପ୍ରାୟ ହୋଇଗଲେ ଏବଂ ଟେମସ ନଈ କୂଳରେ ହେ ଭଗବାନ ହେ ଭଗବାନ କହି ଉଦ୍‌ଭ୍ରାନ୍ତ ହୋଇ ବୁଲିବାକୁ ଲାଗିଲେ । ଏତିକିବେଳେ ସେଇ ବାଟ ଦେଇ ଏକ 'ଇଂଲିଶ ଦମ୍ପତି' ଯାଉଥିଲେ । ବ୍ରହ୍ମାନନ୍ଦ ବାବୁଙ୍କ ପାଟି ତାଙ୍କ କାନରେ ବାଜିଲା । ଭଦ୍ରଲୋକ ଜଣକ ତାଙ୍କୁ ପାଖକୁ ଡାକିଲେ । କେଉଁଠୁ ଆସିଚ ? ବ୍ରହ୍ମାନନ୍ଦବାବୁ ଉତ୍ତର ଦେଲେ ଭାରତବର୍ଷରୁ । ସେ ଭଦ୍ରଲୋକ ଇଂରାଜୀରେ କହିଲେ ଯେ ତମେ ଓଡିଶାରୁ ଆସିଚ, ତମ ଓଡିଆ କଥାରୁ ଜଣା ପଡୁଚି । କିନ୍ତୁ ତମ ନାଁ କ'ଣ, କେଉଁଠି ତମ ଘର ?

ବ୍ରହ୍ମାନନ୍ଦ ବାବୁ ଚକିତ ହେଲେ । କିନ୍ତୁ ଭାବିଲେ ଯେ ପ୍ରଶ୍ନକର୍ତ୍ତା ହେଉଛନ୍ତି ବୋଧହୁଏ ଓଡ଼ିଶାରେ କାମ କରିଥିବା କୌଣସି ଇଂରେଜ ଅଫିସର । ସେ କହିଲେ ଯେ ମୋ ନାଁ

ବ୍ରହ୍ମାନନ୍ଦ ମିଶ୍ର, ଘର ଖଣ୍ଡସାହୀ, ଜିଲ୍ଲା କଟକ । ପ୍ରଶ୍ନକର୍ତ୍ତା ହଠାତ୍ ବ୍ରହ୍ମାନନ୍ଦ ବାବୁଙ୍କ ଡାକ ନାଁରେ ତାଙ୍କୁ ପଚାରିଲେ କିରେ ତୁ, ଏଇଠି କେତେ ଦିନ ହେଲା ଅଛୁ ? କ'ଣ କରୁଚୁ ? ବ୍ରହ୍ମାନନ୍ଦ ବାବୁ କହନ୍ତି ଯେ ତାଙ୍କ ମୁଣ୍ଡ ଯାହା ଖରାପ ହୋଇଥିଲା ତା'ଠାରୁ ବେଶି ଖରାପ ହେଲଗଲା ଏହା ଶୁଣି । କିଏ ଏଇ ଭଦ୍ରଲୋକ ? ମୋତେ କିମିତି ଜାଣିଲେ ? ଯାହାହେଉ ବ୍ରହ୍ମାନନ୍ଦ ବାବୁଙ୍କ ସମସ୍ୟା ଶୁଣି ତାଙ୍କର ପତ୍ନୀ ତାଙ୍କୁ ଆଉ ଏକ ଅଧ୍ୟାପକଙ୍କ ପାଖକୁ ନେଇଗଲେ । ବ୍ରହ୍ମାନନ୍ଦ ବାବୁ ପିଏଚ୍.ଡି. ଉପାଧି ପାଇଲେ ଏବଂ ଭାରତକୁ ଫେରିଲେ ।

ଉପରିସ୍ଥ ବକ୍ତବ୍ୟ ବ୍ରହ୍ମାନନ୍ଦବାବୁଙ୍କ ରେଡିଓ ଭାଷଣରୁ ନିଆଯାଇଛି ଏବଂ ୧୯୫୦ ମସିହା ପର୍ଯ୍ୟନ୍ତ ଠିକ୍ ଏଇ କଥା କହୁଥିଲେ । କିନ୍ତୁ ପରେ ସେ ଏହାକୁ କେବଳ ଅସ୍ୱୀକାର କଲେ ନୁହେଁ ପ୍ରଶ୍ନକର୍ତ୍ତାଙ୍କ ପ୍ରତି ସେ ବିଦ୍ରୂପ ମଧ୍ୟ କଲେ । କାରଣ ପାରିବାରିକ କଳହ ଏବଂ ବିବାଦ ଲାଗିଥିଲା ଦୁହିଁଙ୍କ ଭିତରେ । କିନ୍ତୁ କିଏ ଏଇ ମଣିଷ ?

ପ୍ରଫେସର ଏନ୍.ଜି. ରଙ୍ଗା ସେତେବେଳେ ସ୍ୱତନ୍ତ୍ର ପାର୍ଟିର ନେତା । ସେ ଓଡ଼ିଶା ଆସିଥାନ୍ତି । ଟାଉନହଲରେ ସଭା ହେଉଥାଏ । ଅଧ୍ୟାପକ ରଙ୍ଗା ବୟସ୍କ ରାଜନୀତିଜ୍ଞ । ସମ୍ମାନିତ ସମସ୍ତଙ୍କଦ୍ୱାରା । ସମସ୍ତେ ତାଙ୍କୁ ଅଧ୍ୟାପକ ରଙ୍ଗା ବୋଲି ଡାକନ୍ତି । ଅଧ୍ୟାପକ ରଙ୍ଗାଙ୍କ ଭାଷଣ ସରିଲା । ପ୍ରଶ୍ନ ଆରମ୍ଭ ହେଲା । ହଠାତ୍ ଜଣେ ଖଦଡ ଧୋତି ପଞ୍ଜାବୀ ପରିହିତ ଭଦ୍ର ବ୍ୟକ୍ତି ପ୍ରଶ୍ନ କଲେ ଅଧ୍ୟାପକ ରଙ୍ଗାଙ୍କୁ । ରଙ୍ଗା, ତୁମକୁ ମୁଁ କହିଥିଲି.... ରଙ୍ଗା, ତୁମ ସାଙ୍ଗରେ ଯେତେବେଳେ ଆଲୋଚନା ହୋଇଥିଲା ...ରଙ୍ଗା, ଆମେ ଯେତେବେଳେ ଇଂଲଣ୍ଡର ପ୍ରଧାନମନ୍ତ୍ରୀଙ୍କୁ ଭେଟିଥିଲେ । ପାଟିରୁ ଅନର୍ଗଳ କୁଇନସ୍ ଇଂଲିଶରେ ବଛା ବଛା ଶବ୍ଦ ଛୁଟି ଚାଲିଛି । ଅଧ୍ୟାପକ ରଙ୍ଗା ଆଶ୍ଚର୍ଯ୍ୟ । ସମସ୍ତେ ତାଙ୍କୁ ଅଧ୍ୟାପକ-ରଙ୍ଗା ବୋଲି ଡାକନ୍ତି । କିଏ ଏଇ ବ୍ୟକ୍ତି ଯେ ତାଙ୍କୁ କେବଳ ରଙ୍ଗା ବୋଲି କହୁଚି । କ'ଣ ତାର ପରିଚୟ ? ସେ ପଚାରିଲେ ତାଙ୍କର ନାମ । ସେଠାରେ ଯେତେ ବ୍ୟକ୍ତି ଉପସ୍ଥିତ ଥିଲେ ସେମାନଙ୍କ ଭିତରୁ କିଛି ଲୋକ ତାଙ୍କୁ ଜାଣିଥିଲେ । ସେମାନେ ଅଧ୍ୟାପକ ରଙ୍ଗାଙ୍କୁ କହିଲେ ଯେ ତାଙ୍କ ନାଁ ହେଉଛି ବଂଶୀଧର ମିଶ୍ର । ଏ ବଂଶୀଧର ମିଶ୍ର କିଏ ? ରଙ୍ଗା ତ ତାଙ୍କୁ ଚିହ୍ନି ପାରୁନାହାନ୍ତି । ସେଇଠି ଜଣେ ଭଦ୍ରଲୋକ ବସିଥିଲେ । ସେ ମଧ୍ୟ ଆଉ ସଂସାରରେ ନାହାନ୍ତି । ସେ ଅଧ୍ୟାପକ ରଙ୍ଗାଙ୍କୁ କହିଲେ ଯେ ଆପଣ ତାଙ୍କୁ ଚିହ୍ନିଛନ୍ତି; କିନ୍ତୁ ଚିହ୍ନିଛନ୍ତି ସୁରତ ଅଲ୍ଲୀ ନାମରେ ।

ସୁରତ୍ ଅଲ୍ଲୀ...... ? ଅଧ୍ୟାପକ ରଙ୍ଗା ବିସ୍ମିତ ହୋଇ ଅନେଇଲେ । ସେ କ'ଣ ଅଦ୍ୟାପି ଜୀବିତ ? ଅନେକ ଦିନ ହେଲା ତାଙ୍କର ତ କୌଣସି ଖବର ନାହିଁ ସେ ସୁରତ୍ ଅଲ୍ଲୀ କ'ଣ ଓଡ଼ିଶାର ? ସୁରତ୍ ଅଲ୍ଲୀ, ସୁରତ୍ ଅଲ୍ଲୀ । ସେ ଏଇଠି ଓଡ଼ିଶାରେ । ବୃଦ୍ଧ

ରଙ୍ଗା ଡେଇଁପଡ଼ିଲେ ମଞ୍ଚ ଉପରୁ । ଯାଇ ତାଙ୍କୁ ଭିଡିନେଲେ ନିଜ ଛାତି ପାଖକୁ । ଆଣି ପରିଚୟ କରାଇ ଦେଲେ ସମସ୍ତଙ୍କୁ । ଏଇ ହେଉଛନ୍ତି ପ୍ରସିଦ୍ଧ ସୁରଦ୍ ଅଲ୍ଲୀ । ସୁରଦ୍ ଅଲ୍ଲୀଙ୍କ ସହିତ ମୋର ରାଜନୈତିକ ମତଭେଦ ଅନେକ । କିନ୍ତୁ ସୁରଦ୍ ଅଲ୍ଲୀ ନ ଥିଲେ ଭାରତବର୍ଷର ସ୍ୱାଧୀନତା ପାଇବାରେ ବିଳମ୍ବ ହୋଇଥାନ୍ତା । ଇଂଲଣ୍ଡ ଏବଂ ଇଉରୋପରେ ଭାରତର ସ୍ୱାଧୀନତା ଦାବୀକୁ ଜନପ୍ରିୟ କରିବାରେ ସୁରଦ୍ ଅଲ୍ଲୀଙ୍କ ଭୂମିକା ପ୍ରଭୂତ । ବ୍ରିଟିଶ ଲେବର ପାର୍ଟିର ଜଣେ ବରିଷ୍ଠ ନେତା ଭାବରେ, ବିଲାତ କମ୍ୟୁନିଷ୍ଟ ପାର୍ଟିର ଜଣେ ବରିଷ୍ଠ ନେତା ଏବଂ ପ୍ରସିଦ୍ଧ ଦରିଆପାରି ବ୍ରିଟିଶ ନୌଶ୍ରମିକ ୟୁନିଅନର ସଭାପତି ଭାବରେ ତାଙ୍କର ସମ୍ମାନ ସାରା ଇଂଲଣ୍ଡରେ..... ।

ସୁରଦ୍ ଅଲ୍ଲୀଙ୍କ ପ୍ରକୃତ ନାମ ହେଉଛି ବଂଶୀଧର ମିଶ୍ର । ପ୍ରସିଦ୍ଧ ଆଡଭୋକେଟ୍ ଶ୍ରୀନିବାସ ମିଶ୍ରଙ୍କ ପରିବାରର ସେ । ଲୁଣାନଦୀ ଆରପଟେ ଥିବା ଖଣ୍ଡସାହୀ ଗ୍ରାମର ସେ ବାସିନ୍ଦା । ସେ ଥିଲେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ଅଫିସ ସମ୍ପାଦକ । ଏଠାରେ ଗିରିଫଦାରୀ ପରବାନା ଜାରିହେଲା । ସେ ଚାଲିଗଲେ କଲିକତା । ସେଠାରେ ଶ୍ରମିକ ସଂଗଠନ କଲେ, ଖବରକାଗଜ ପ୍ରକାଶ କଲେ । ସେଠାରେ ସେଇ ଅବସ୍ଥା । ତେଣୁ ସେ ପଳେଇଲେ ରେଙ୍ଗୁନ୍ । ରେଙ୍ଗୁନ୍‌ରେ ମଧ୍ୟ ତାଙ୍କ ନାଁରେ ୱାରେଣ୍ଟ ବାହାରିଲା । ବର୍ତ୍ତମାନ ଉପାୟ କ'ଣ । ସେ ଚାଲିଲେ ଏକ ଜାହାଜରେ ନିଜ ନାଁ ବଦଳାଇ । ତାଙ୍କ ନାଁ ହେଲା ସୁରଦ୍ ଅଲ୍ଲୀ ଏବଂ ସେ ସେଇ ନାମରେ ହିଁ ବିଖ୍ୟାତ ହେଲେ । ଇଂଲଣ୍ଡରେ ପହଞ୍ଚି ସେ ଆରମ୍ଭ କଲେ ଏକ ନୂତନ ରାଜନୈତିକ ଜୀବନ । କ୍ରମେ ସେ ବ୍ରିଟିଶ ଲେବର ପାର୍ଟିର କାର୍ଯ୍ୟକାରୀ କମିଟିର ସଭ୍ୟ ଏବଂ ତା'ପରେ ବ୍ରିଟିଶ କମ୍ୟୁନିଷ୍ଟ ପାର୍ଟିର କର୍ମକର୍ତ୍ତା ହେଲେ ।

ରମାରାଣୀ ରାୟ ଆଉ ନାହାନ୍ତି । ନର୍ସିଂରେ ଉଚ୍ଚଶିକ୍ଷା ପାଇଁ ସେ ଯାଇଥିଲେ ଇଂଲଣ୍ଡ । ସେ ୧୯୪୯ ମସିହାରେ ଚିଠି ଲେଖନ୍ତି । ଏଇଠି ଅଛନ୍ତି ସୁରଦ୍ ଅଲ୍ଲୀ । ଓଡ଼ିଶାର ଲୋକ । ସାରା ଇଂଲଣ୍ଡରେ ସବୁ ଶ୍ରେଣୀର ଲୋକଙ୍କ ପାଖରେ ସେ ସମ୍ମାନିତ । ତାଙ୍କର ସୁପାରିଶ ପାଇଲେ ବହୁ କଷ୍ଟସାଧ୍ୟ କାମ ହୋଇଯାଇ ପାରିବ ।

ସୁରଦ୍ ଅଲ୍ଲୀ କ୍ରମେ ଦରିଆପାରି ନୌଶ୍ରମିକ ସଂଘର ସଭାପତି ହୁଅନ୍ତି । ପ୍ରଚଣ୍ଡ ଶକ୍ତିଶାଳୀ ୟୁନିଅନ । ସୁରଦ୍ ଅଲ୍ଲୀ ଭାରତର ସ୍ୱାଧୀନତା ପାଇଁ ଜନମତ ସୃଷ୍ଟି କରନ୍ତି ଇଂଲଣ୍ଡ ଓ ଇଉରୋପରେ । ବ୍ରିଟିଶ ଲେବର୍ ପାର୍ଟିରେ ତାଙ୍କର ପ୍ରଭାବ ଯୋଗୁଁ ଲେବର ପାର୍ଟି ଭାରତର ସ୍ୱାଧୀନତାକୁ ନୀତିଗତ ଭାବରେ ଗ୍ରହଣ କରିଥିଲେ । ଭାରତରୁ ଆଲୋଚନା ପାଇଁ ଯାଉଥିବା ସବୁ ପ୍ରତିନିଧି ଦଳରେ ସେ ସାମିଲ ହେଉଥିଲେ । ଭାରତର ନେତୃବୃନ୍ଦଙ୍କ ପାଖରେ ତାଙ୍କର ପରିଚିତି ଥିଲା ନିବିଡ଼ ।

କିନ୍ତୁ କେବେ ଏବଂ କାହିଁକି ସେ ବିଲାତର ରାଜନୈତିକ ଜୀବନରୁ ସନ୍ନ୍ୟାସ ନେଇଗଲେ ତାହା ରହସ୍ୟମୟ ହୋଇ ରହିଗଲା । କାରଣ ସେ ଭାରତକୁ ଫେରିଲା ପରେ ସେ ବିଷୟରେ ଚର୍ଚ୍ଚା କଲେ ନାହିଁ କି କିଛି କହିଲେ ନାହିଁ ।

୧୯୫୦ ମସିହାରେ ସୁରତ ଅଲ୍ଲୀ ଭାରତବର୍ଷକୁ ଫେରିଆସିବାର ସମ୍ବାଦ ଖବରକାଗଜମାନଙ୍କରେ ବଡ଼ ହରପରେ ପ୍ରକାଶିତ ହେଲା । ସୁରତ ଅଲ୍ଲୀ ଫେରୁଛନ୍ତି ଭାରତ, ସେ କେଉଁ ଦଳରେ ଯୋଗଦେବେ, ଭାରତବର୍ଷର ରାଜନୈତିକ ଜୀବନକୁ ତାହା କିପରି ପ୍ରଭାବିତ କରିବ ସେ ସମ୍ପର୍କରେ ବହୁ କଳ୍ପନା ଜଳ୍ପନା ପ୍ରକାଶ ପାଇଲା ବେଶ୍ କିଛି ଦିନ ଧରି । ଏ ଲେଖକ ସେତେବେଳକୁ କରାଗାରରେ । ସାରା ଭାରତର ସବୁ ଖବରକାଗଜରେ ଫ୍ରଣ୍ଟ୍ ପେଜ୍ ସମ୍ବାଦ ହେଉଛନ୍ତି ସୁରତ ଅଲ୍ଲୀ ।

ସେ ଫେରିଲେ । କିନ୍ତୁ କେବଳ ହରେକୃଷ୍ଣ ମହତାବ, ରାଧାନାଥ ରଥଙ୍କୁ ଭେଟି ଗାଁକୁ ଫେରିଗଲେ । ସେଇଠି ସ୍କୁଲରେ ଶିକ୍ଷକତା କଲେ, ଗ୍ରାମୀଣ ଉନ୍ନତି ପାଇଁ ଚେଷ୍ଟା କଲେ । ରାଜନୀତି କଥା କି ତାଙ୍କର ପୂର୍ବ ଜୀବନ କଥା କିଛି କହିଲେ ନାହିଁ । ତାଙ୍କର ପ୍ରଥମ ସ୍ତ୍ରୀ ଗାଁରେ ଥିଲେ । ତାଙ୍କ ସହିତ ଭେଟ ହେଲା ବହୁ ବର୍ଷ ପରେ । ଦ୍ୱିତୀୟ ସ୍ତ୍ରୀଙ୍କ ଖବର ମଧ କିଛି କହିଲେ ନାହିଁ । ରାଜନୀତିରେ ଦୌଡୁଥିବା ଘୋଡ଼ାର ଖବର ନିଆଯାଏ । କିନ୍ତୁ ସେ ଘୋଡା ଜୀବନଯାକ ଯେତେ ଭଲ ଦୌଡୁଥିଲେ ମଧ ଥରେ କ୍ଲାନ୍ତ ହୋଇଗଲେ ଆଉ ତାର କେହି ଖବର ରଖନ୍ତି ନାହିଁ । ସେ ଭୂତପୂର୍ବ ହୋଇଯାଏ । ସୁରତ୍ ଅଲ୍ଲୀଙ୍କର ସେଇଆ ହେଲା । ସେ ପୁଣି ହୋଇଗଲେ ବଂଶୀଧର ମିଶ୍ର ।

ତାଙ୍କର ପରଲୋକ ହୋଇଗଲା ଗଲା ସପ୍ତାହରେ । ଖବରକାଗଜର ଏକ ଛୋଟିଆ ସମ୍ବାଦରୁ ଜାଣିଲି । ଚମକି ପଡ଼ିଲି । ଝିଅ ଡାକ୍ତରାଣୀ । ସେଇଠି କୁଆଡେ ତାଙ୍କର ପରଲୋକ ହେଲା । ଯେଉଁ କେତେଜଣ ମଶାଣିରେ ତାଙ୍କୁ ସମ୍ମାନ ଦେବାପାଇଁ ଉପସ୍ଥିତ ଥିଲେ ସେମାନଙ୍କ ମଧରେ ସ୍ୱାସ୍ଥ୍ୟମନ୍ତ୍ରୀ ହରିହର କରଣ ଥିଲେ ବୋଲି ଖବରକାଗଜ କୁହେ । ସେ କିମିତି ଗଲେ ସେଠିକୁ ଜାଣିବାର ଉପାୟ ନାହିଁ । କିନ୍ତୁ ଖୁସି ଲାଗିଲା ଯେ ଅନ୍ତତଃ ଜଣେ ମନ୍ତ୍ରୀ ଉପସ୍ଥିତ ଥିଲେ । ଅବଶ୍ୟ ସେ ବୋଧହୁଏ ମନ୍ତ୍ରୀ ଭାବରେ ସେଠାକୁ ଯାଇନଥିବେ । ଇତିହାସର ସ୍ରଷ୍ଟାକୁ ଇତିହାସର କ୍ରୁର ହାତ ପୋଛିଦେଲା । ଯା'ର ଜୀବନ ବଡ଼ ହରପର ସମ୍ବାଦ, ଯା'ର ଭାରତ ପ୍ରତ୍ୟାବର୍ତ୍ତନ ଜାତୀୟ ଓ ଆନ୍ତର୍ଜାତିକ ଖବରକାଗଜର ଫ୍ରଣ୍ଟ୍ ପେଜ୍ ନିଉଜ୍, ତାହାରି ପରଲୋକରେ କ୍ରୋଡପତ୍ରରେ ଏକ ଛୋଟିଆ ସମ୍ବାଦ ! ହାୟରେ ଜାତି !

□□□

# ପ୍ରବାଦ ପୁରୁଷର ପରଲୋକ

*(ଏ ବଂଶୀଧର ଜେଠୀ)*

ସେ ଦିନ ସେପ୍ଟେମ୍ବର, ୨୦୦୫ ମସିହା ୧୨ ତାରିଖ ଅପରାହ୍ନ । ବର୍ଷାତୁର । ସତେ ଯେମିତି ମାଡି ଆସୁଚି ସଂଧ୍ୟା ଅଚାନକ । ସଂଧ୍ୟା ହେବା ପୂର୍ବରୁ ତାଙ୍କର ଜୀବନର ସଂଧ୍ୟା ନଇଁ ଆସିଥିଲା । ଫୁଟବଲ ଏବଂ ପାଳିତ ପଶୁର ପ୍ରବାଦ ପୁରୁଷ ଡାକ୍ତର ବଂଶୀଧର ଜେଠୀ ଆଖିବୁଜି ଦେଇଥିଲେ ଚିରଦିନ ପାଇଁ, କିଛି ଦିନ ଅସୁସ୍ଥତା ପରେ । ୧୯୨୨ ମସିହା ନବବର୍ଷର ନହବତ ଭିତରେ ଜାନୁଆରୀ ଦୁଇ ତାରିଖରେ ଜନ୍ମଗ୍ରହଣ କରିଥିବା ଖୋଦ ହାମସାଇ କଟକୀ ବଂଶୀଧର ପାଇଟିଗଲେ ଇତିହାସ ଉତ୍ତର ପୀଢ଼ି ପାଇଁ ।

ମାନସିଂପାଟଣା, କଟକ ସହରରେ ଜନ୍ମ ବଂଶୀଧର ପାଠ ପଢ଼ିଲେ ପ୍ୟାରୀମୋହନ ଏକାଡେମୀରେ । ୧୯୩୮ ମସିହାରେ ମାଟ୍ରିକ ପାଶ କଲେ ପ୍ରଥମ ଶ୍ରେଣୀରେ । ପାଠ ଭଲ ପଢୁଥିଲେ ତା ସହିତ ଫୁଟବଲ ଖେଳିବା ମଧ ତାଙ୍କର ନିଶା ଥିଲା ସେଇ ପିଲାଦିନରୁ, ସ୍କୁଲ ଜୀବନରୁ ।

ପଶୁ ବିଜ୍ଞାନରେ ସେ ଗ୍ରାଜୁଏଟ ହେଲେ ପାଟନା(ବିହାର) ପଶୁ ବିଜ୍ଞାନ କଲେଜରୁ ୧୯୪୧ ମସିହାରେ । ଫୁଟବଲ ଓ ପାଳିତ ପଶୁ ନିଶା ହୋଇଗଲା । ୧୯୪୬-୪୭ ମସିହାରେ ସେ ବାଙ୍ଗଲୋର ଇମ୍ପେରିଆଲ ଡେୟରୀ ଇନଷ୍ଟିଚ୍ୟୁଟରେ ଆସୋସିଏଟ ହେଲେ । ଫୁଟବଲରେ ପ୍ରତିନିଧିତ୍ୱ କରିଥିଲେ ଉଭୟ ଅନୁଷ୍ଠାନରୁ ।

ଉଚ୍ଚଶିକ୍ଷା ପାଇଁ ଗଲେ ନିଉଜ଼ିଲ୍ୟାଣ୍ଡ ଏବଂ ଛିଟିକିଗଲେ ଜାତୀୟ, ଆନ୍ତର୍ଜାତୀୟ ସମ୍ବାଦପତ୍ରକୁ ଆପଣାର କ୍ରୀଡା ନୈପୁଣ୍ୟ ଏବଂ ଫୁଟବଲ ଖେଳରେ ପରାକାଷ୍ଠା ପାଇଁ । ସେତେବେଳେ ସତ୍ୟବ୍ରତ ପଟ୍ଟନାୟକଙ୍କୁ ଛାଡିଦେଲେ ବାକି ସମସ୍ତେ ଫୁଟବଲ ଖେଳୁଥିଲେ ବିନା ବୁଟରେ । ଅଷ୍ଟ୍ରେଲିଆ ବିପକ୍ଷରେ ଗୋଲ ଦେଇ ଏଇ ଖାଲିପାଦର ଭାରତୀୟ ଫୁଟବଲ୍ ଖେଳାଳୀ Bare footed Indians ଛିଟିକିଗଲେ ସମ୍ବାଦପତ୍ରକୁ ଚମକ ସୃଷ୍ଟି କରି । ସେଠାରୁ ବି.ଏସ୍‌ସି. ଡିଗ୍ରୀନେଇ ଫେରିଲେ ବଂଶୀଧର ୧୯୪୯ରେ । ୧୯୫୮ ମସିହାରେ ବିଶ୍ୱକୃଷି ଅନୁଷ୍ଠାନଦ୍ୱାରା ପ୍ରେରିତହୋଇ ଗଲେ ଡେନମାର୍କକୁ ଉପାଧ୍ୟାୟତର

ଶିକ୍ଷା ପାଇଁ । ପଶୁମାନଙ୍କ ପ୍ରତି ଦରଦ, ସେମାନଙ୍କର ଉପରେ ଜ୍ଞାନ ପାଇଁ ଯେମିତି ପ୍ରତିଷ୍ଠା ମିଳିଲା ସେମିତି ମିଳିଲା ଫୁଟବଲ ଖେଳ ପାଇଁ ।

ଚାକିରି ଜୀବନ କଟିଛି ବିଭିନ୍ନ ଜିଲ୍ଲାରେ । କଟକ, ବାଲେଶ୍ବର, ଭଦ୍ରକ, କେଉଁଝରରେ । ସବୁଠି ମିଳିଛି ଯଶ । ପଶୁ ପାଇଁ, ଫୁଟବଲ ପାଇଁ ।

ସେ ଥାଆନ୍ତି ଚିପିଲିମାରେ । କେନ୍ଦ୍ରୀୟ ଗୋ-ପ୍ରଜନନ କେନ୍ଦ୍ରର ପରିଚାଳକ । ସେଇଠି ମଧ୍ୟ ଥାଏ ରାଜ୍ୟସରକାରଙ୍କର ଏକ ଗୋ-ପ୍ରଜନନ କେନ୍ଦ୍ର । ବିଶେଷଜ୍ଞ ଦଳ ଆସିଲେ ତଦାରଖ ପାଇଁ । ଲୁଙ୍ଗି ପିନ୍ଧି ପରିଚାଳକ ବସିଥିଲେ କେନ୍ଦ୍ରୀୟ ଗୋ-ପ୍ରଜନନ କେନ୍ଦ୍ର ଭିତରେ । ତିନିଶହରୁ ଊର୍ଦ୍ଧ୍ୱ ଗାଈ । ଚାଲନ୍ତୁ, ଦେଖିବାକୁ ଯିବା ସେମାନଙ୍କୁ ତଦାରଖ ଦଳର ମୁଖ୍ୟ କହିଲେ । ବସନ୍ତୁ, ଡାକିଲେ ସେମାନେ ଆସିବେ ନାଇଁ ? ବିସ୍ମିତ ଚକ୍ଷୁରେ ଅନାଇଲେ ତଦାରଖ ଦଳ ।

ଡାକିଲେ ବଂଶୀଧର, ଗୋଟି ଗୋଟି କରି ଗାଈମାନଙ୍କୁ ନାମ ଧରି । ଦୁର୍ଗା, ଇନ୍ଦିରା, ନନ୍ଦିନୀ, ମାଡିଳୀ, ଅହଲ୍ୟା । କିଏ କୁଆଡେ ସବୁ ଚରୁଥିଲେ ଗୋଟି ଗୋଟି କରି ଆସି ଠିଆହେଲେ ଟିମ୍ ପାଖରେ । ଟକାଡୋଳା ବନିଯାଇଥିଲେ ପରିଦର୍ଶକ ବୃନ୍ଦ । ଆଉ ଦେଖିବା ଦରକାର ନଥିଲା । ପଛକୁ ଫେରି ଚାହିଁ ନାହାନ୍ତି ବଂଶୀଧର । ଜୀବନ ପାଲଟି ଯାଇଛି ଫୁଟବଲ ଖେଳ ପଡିଆ । ଚାଲ, ଚାଲ ଆଗକୁ ଚାଲ । ଚରୈବେତି, ଚରୈବେତି, ଚରୈବେତି ।

ବିଭିନ୍ନ ପଦବୀକୁ ଉନ୍ନୀତ ହୋଇ ସେ ଅବସର ଗ୍ରହଣ କରିଛନ୍ତି ୩୧.୧.୧୯୮୦ ମସିହାରେ ପଶୁ ବିଭାଗର ଡାଇରେକ୍ଟର ଭାବରେ । ଚାକିରିରୁ ଅବସର ନେଇଛନ୍ତି କର୍ମରୁ ନୁହେଁ ।

ଷ୍ଟେଟ ବ୍ୟାଙ୍କ ଅଫ୍ ଇଣ୍ଡିଆର ସ୍ପେଶାଲ ଅଫିସର, ଖ୍ରୀଷ୍ଟ କଲେଜ, ଷ୍ଟୁଆର୍ଟ ସାଇନ୍ସ କଲେଜର ପରିଚାଳନା କମିଟିର ସଭ୍ୟ, ଇନ୍ଦିରାଗାନ୍ଧୀ ମହିଳା କଲେଜର ସଭାପତି, ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଂଘର ସଭାପତି, ଓଡିଶା ପ୍ରବୀଣ ଖେଳାଳି ସଂଘର ସଭାପତି, ସ୍ୱାମୀ ବିଚିତ୍ରାନନ୍ଦ ଅନାଥାଶ୍ରମର ସଂପାଦକ ପ୍ରଭୃତି ବିଭିନ୍ନ କାର୍ଯ୍ୟରେ ଜୀବନ କଟି ଯାଇଛି । ନିଜର ଆତ୍ମଜୀବନୀ 'ମୋ କୃତି ମୋ ଅନୁଭୂତି'ର ଦୁଇଟି ଭାଗ ପ୍ରକାଶିତ ହୋଇଛି ।

'' ଆମେ ଯାହା ସ୍ୱପ୍ନ ଦେଖିଥିଲୁ ତାହା ସଫଳ ହୋଇନାଇଁ । ଆମର ଯୁବକ ମାନଙ୍କୁ ସାକାର କରିବାକୁ ହେବ ସେଇ ସ୍ୱପ୍ନ'' ଜାନୁଆରୀ ୨୬ ରେ ପତାକା ଉତ୍ତୋଳନ କରି ଖେଦ ପ୍ରକାଶ କରିଥିଲେ ଡାକ୍ତର ବଂଶୀଧର ଜେଠୀ ।

ପାଞ୍ଚକନ୍ୟା, ଚାରିପୁଅଙ୍କର ଗର୍ବିତ ପିତା ଥିଲେ ସେ । ଜୋଇଁମାନଙ୍କ ମଧ୍ୟରେ ବ୍ରଜେନ୍ଦ୍ର ବେହେରା, ଅବସରପ୍ରାପ୍ତ ଶିକ୍ଷ ବିଭାଗର ଯୁଗ୍ମ ପରିଚାଳକ, ଅନ୍ୟତମ ଜାମାତା ପ୍ରସିଦ୍ଧ ସଙ୍ଗୀତଜ୍ଞ ଏବଂ ଚିକିତ୍ସକ ଡାକ୍ତର ମନୋରଂଜନ ପୃଷ୍ଟି, ଶ୍ରୀରାମଚନ୍ଦ୍ର ଭଂଜମେଡିକାଲ କଲେଜର ଅବସରପ୍ରାପ୍ତ ପ୍ରିନ୍ସିପାଲ ଏବଂ ପ୍ରସିଦ୍ଧ ୟୁରୋଲସିଷ୍ଟ ଡାକ୍ତର ଲକ୍ଷ୍ମୀକାନ୍ତ ସାହୁ ତୃତୀୟ ଜାମାତା । ମୁମ୍ବାଇ ଭାବା ପରମାଣୁ ଗବେଷଣା କେନ୍ଦ୍ରର ପରିଚାଳକ କିଶୋର ଚନ୍ଦ୍ର ସାହୁ ଚତୁର୍ଥ ଜାମାତା ଏବଂ ଷ୍ଟେଟବ୍ୟାଙ୍କ ଅଫ୍ ଇଣ୍ଡିଆ, ତାଳଚେର ଶାଖାର ମ୍ୟାନେଜର ଈଶ୍ୱର ଚନ୍ଦ୍ର ସାହୁ ପଞ୍ଚମ ଜାମାତା, ଚାରିପୁଅଙ୍କ ମଧ୍ୟରୁ ଜ୍ୟେଷ୍ଠ ବୀରେନ୍ଦ୍ର ଏବଂ କନିଷ୍ଠ ମନୋରଂଜନ ବ୍ୟବସାୟ କରନ୍ତି । ଦ୍ୱିତୀୟ ପୁତ୍ର ରବୀନ୍ଦ୍ର ବିଦେଶରେ ଅବସ୍ଥାପିତ ଏବଂ ଚତୁର୍ଥପୁତ୍ର ଚିତ୍ତରଂଜନ ଆଡଭୋକେଟ । ସମସ୍ତେ ପ୍ରତିଷ୍ଠିତ ।

କିଛି ବର୍ଷ ତଳେ ପତ୍ନୀ ବାହୁଡ଼ି ସାରିଛନ୍ତି । ପିଲାମାନେ ପାରି ଉଠିଲେଣି । ଦେହ ଆଉ ବୋଲ ମାନୁନି । ଜୀବନର ଫୁଟବେଲ, ଅରଣା ପଶୁ ପରି ଅମାନିଆ ହୋଇଯାଉଛି । ''ମୁଁ ତଥାପି ସକ୍ରିୟ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସକ୍ରିୟ ରହିବି'' ଲେଖୁଛନ୍ତି ଡାକ୍ତର ବଂଶୀଧର ଜେଠୀ, ଯୋଗାଚାର୍ଯ୍ୟ ଡାକ୍ତର ପଞ୍ଚଶୀଳା ଦାଶଙ୍କର ପ୍ରକାଶୋନ୍ମୁଖୀ ବହି ପାଇଁ ।

ପରିଶେଷରେ ସେଇ ସମୟ ଆସିଚି । ସମସ୍ତଙ୍କୁ ଯିବାକୁ ହେବ । ଜନ୍ମିଲେ ମରଣ ସତ୍ୟ । ପରିବାର ବର୍ଗ ଘେରି ରହିଛନ୍ତି । ସେ ପାଲଟିଗଲେ ଆମର ପରମ୍ପରା, ଇତିହାସ । ସମୟର ବାଲିରେ ସେ ଉଜଳି ରହିବେ ଆଗାମୀ ପୀଢ଼ି ପାଇଁ । ସେଇ ତ ତାଙ୍କର ଜୀବନର ସାର୍ଥକତା ।

□□□

# ଜିରୋ ଆୱାର୍‌ର ହିରୋ

## (୰ ଭୂପେଶ ଗୁପ୍ତ)

ସକାଳୁ ଖବର ପହଞ୍ଚିଲା ଯେ ଭୂପେଶ ଗୁପ୍ତ ଆଉ ନାହାନ୍ତି । ବହୁକାଳ ଧରି ଭୂପେଶ ଗୁପ୍ତ ରାଜ୍ୟସଭାରେ କମ୍ୟୁନିଷ୍ଟ ପାର୍ଟିର ନେତା ଥିଲେ । ତାଙ୍କର ବିୟୋଗ ହେଲା ପରେ ଶବାଧାରରେ ପୁଷ୍ପମାଲ୍ୟ ଅର୍ପଣ କରି ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ କହିଲେ, ''ଭୂପେଶ ବିନା ପାର୍ଲ୍ୟାମେଣ୍ଟ ହିଁ ତାହାର କଳ୍ପନା କରିବ'' । ଭୂପେଶ କମ୍ୟୁନିଷ୍ଟ ଦଳର ନେତା ଥିଲେ ସତ୍ୟ କିନ୍ତୁ ସବୁ ଦଳ ସହିତ ତାଙ୍କର ବନ୍ଧୁତା ଥିଲା । ତାଙ୍କ ବିୟୋଗରେ ଜନସଂଘର ନେତାମାନେ ମଧ୍ୟ ଏକ ବ୍ୟକ୍ତିଗତ ବନ୍ଧୁ ହରାଇଛନ୍ତି ବୋଲି ଶୋକ ପ୍ରକାଶ କରିଛନ୍ତି । ଅମାୟିକ, ଭଦ୍ର ଭୂପେଶ ଆପଣାର ଆକ୍ରମଣରେ କିନ୍ତୁ ଥିଲେ ଶାଣିତ, ତୀବ୍ର । ପାର୍ଲ୍ୟାମେଣ୍ଟର ଏକ 'ଜିରୋ ଅୱାର' ରହିଛି । ମୁଲତବୀ ପ୍ରସ୍ତାବ ପାଇଁ ନିର୍ଦ୍ଧାରିତ ସମୟ ପରେ ଧାରାବାହିକ ବିଲ୍ ପାଇଁ ଆଲୋଚନା ହେବାର ପୂର୍ବ ସମୟକୁ 'ଶୂନ୍ୟ ସମୟ' ବା ଜିରୋ ଆୱାର କୁହାଯାଏ । ଏଇ ସମୟରେ ଯେକୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା ପାଇଁ ପାର୍ଲ୍ୟାମେଣ୍ଟର ଦୃଷ୍ଟି ଆକର୍ଷଣ କରିପାରନ୍ତି । ଏଇ ସମୟଟିକୁ ପ୍ରାୟ ଦଖଲ କରିନେଇଛନ୍ତି ଭୂପେଶ ଗୁପ୍ତ । ଅନ୍ୟ ପାର୍ଲ୍ୟାମେଣ୍ଟ ସଭ୍ୟମାନେ ମଧ୍ୟ ଏଥିରେ ଅଭ୍ୟସ୍ତ ହୋଇଯାଇଛନ୍ତି । ଏପରିକି ଭୂପେଶ ଗୁପ୍ତଙ୍କର ରାଜନୈତିକ ବିରୋଧୀମାନେ ମଧ୍ୟ ଖୁବ୍ କ୍ୱଚିତ୍ ତାଙ୍କୁ ବାଦ୍ ଦେଇ ନିଜେ ବିଷୟଟିକୁ ଉତ୍‌ଥାପନ କରନ୍ତି । ଏହାର ଅନ୍ୟତମ କାରଣ ହେଲା ଭୂପେଶ ସବୁବେଳେ ଜାତୀୟ ସମସ୍ୟା ଉତ୍‌ଥାପନ କରନ୍ତି, ଆପଣା ଦଳ ବା ସଂକୀର୍ଣ୍ଣ ସମସ୍ୟା ପାଇଁ ନୁହେଁ । ଦ୍ୱିତୀୟତଃ ଭୂପେଶ ଏଥିପାଇଁ ପ୍ରସ୍ତୁତ ହୋଇ ଆସିଥାନ୍ତି ।

ତାଙ୍କ ଘରେ ଫିରୋଜଶାହ ରୋଡ଼ରେ ରହିବାର ସୌଭାଗ୍ୟ ଘଟିଛି ବହୁବାର । ଭୂପେଶ ବାବୁଙ୍କ ବଂଗ୍ଳୋ । କିନ୍ତୁ ଗୋଟିଏ ମାତ୍ର କୋଠରୀ ତାଙ୍କର । ବହି, କାଗଜପତ୍ର, ନିଉଜ ପେପର, ପେପର କଟିଂରେ ଘରଯାକ ଭର୍ତ୍ତି । ଭୂପେଶ ବାବୁଙ୍କର ୱାର୍ଡରୋବ ଏବଂ ଖଟଟି ପାଇଁ ମାତ୍ର ସ୍ଥାନ ଅଛି । ସେ ଘରକୁ କେହି ପଶନ୍ତି ନାହିଁ । ଭୂପେଶ ବାବୁ ବହୁତ ରାତି ପର୍ଯ୍ୟନ୍ତ ପଢ଼ନ୍ତି ଏବଂ ନୋଟ୍ କରନ୍ତି । ବଡ଼ି ସକାଳୁ ଉଠି ମଧ୍ୟ ତାଙ୍କର ସେଇ କାମ । କେବଳ ସକାଳ ଚାହା ଏବଂ ପରେ ଜଳଖିଆ ଖାଇଲାବେଳେ ହିଁ ଭେଟ ମିଳେ । ଗମ୍ଭୀର

ପ୍ରକୃତିର, କିନ୍ତୁ ଥରେ ପ୍ରାଚୀର ଭାଙ୍ଗିଗଲେ ବେଶ୍ ଗପ ଜମେ । ଆପଣଙ୍କ ପଞ୍ଜାବିରେ ବୋତାମ ନାହିଁ କି କାଜ ମଧ ନାହିଁ । କ'ଣ ବୋତାମ ନ ଲଗାଇବାକୁ ଆପଣ ଏକ ଷ୍ଟାଇଲରେ ପରିଣତ କରିବାକୁ ଚାହାନ୍ତି ? ମୁହଁରେ ତାଙ୍କର ହସର ଏକ କ୍ଷୀଣ ରେଖା । ନା, ସେ କଥା ନୁହେଁ । ବୋତାମ ଲଗାଇବାକୁ କେହି ନାହାନ୍ତି । ତେଣୁ ବୋତାମ ଥରେ ଭାଙ୍ଗିଗଲେ ଏକ ସମସ୍ୟା । ତେଣୁ କାଜ ନ ରଖିଲେ ଗଲା । ବୋତାମ ନାହିଁ କି କାଜ ମଧ ନାହିଁ । ଆମ ଭିତରେ ସୁଖେନ୍ଦୁ ସିନିୟର ବୟସରେ । ସେ ସାହସ ବାନ୍ଧି ପଚାରିଲା । ତା'ହେଲେ ଦାଦା.... । ପ୍ରଶ୍ନର ଶେଷ ଅକ୍ଷର ନ ବାହାରିବା ପୂର୍ବରୁ ଉତ୍ତର ଭୂପେଶ ବାବୁଙ୍କର । ଟୁ ଲେଟ୍, ଟୁ ଲେଟ୍ । ଭୂପେଶ ବାବୁ ଉଠି ଠିଆହେଲେଣି । ଜଳଖିଆ ଖାଇବାର ସମୟ ଅତିକ୍ରାନ୍ତ ହୋଇଛି । ଭୂପେଶ ବାବୁ ଅବିବାହିତ । ଅବିବାହିତ ହିଁ ରହିଗଲେ ସେ । ବିବାହ କରିବାକୁ ସମୟ ପାଇ ନାହାନ୍ତି । ପାଠ ପଢ଼ିବାକୁ ଯାଇଥିଲେ ଇଂଲଣ୍ଡ । ସେଇଠି ସମାଜବାଦର ମହାମନ୍ତ୍ରରେ ଦୀକ୍ଷିତ ହୁଅନ୍ତି । ପାଠ ପଢ଼ା ଶେଷ କରି ଆସନ୍ତି ଦେଶର ମୁକ୍ତିସଂଗ୍ରାମରେ ଯୋଗଦେବା ପାଇଁ । ରଜନୀପାମି ଦତ୍ତ ତାଙ୍କର ରାଜନୈତିକ ଗୁରୁ । ବହୁ ଭାରତୀୟ ଛାତ୍ରଙ୍କୁ ସେ ସାମ୍ୟବାଦର ମନ୍ତ୍ରରେ ଦୀକ୍ଷିତ କରିଛନ୍ତି । ଅସୁମାରୀ ସେ ତାଲିକା । ଜ୍ୟୋତି ବସୁ, ମୋହନ କୁମାର ମଙ୍ଗଳମ୍, ଏନ୍.କେ. କ୍ରିଷ୍ଣନ୍, ଇନ୍ଦ୍ରଜିତ ଗୁପ୍ତ । ସେ ତାଲିକା ସରିବ ନାହିଁ । ଇନ୍ଦିରା ଗାନ୍ଧୀ ଏବଂ ସେ ଏକାସାଙ୍ଗରେ ଫେରିଥିଲେ ଇଂଲଣ୍ଡରୁ । ରାଜନୈତିକ ମତଭେଦ ସତ୍ତ୍ୱେ ବନ୍ଧୁତା ଥିଲା ପ୍ରଗାଢ଼ । ପରସ୍ପର ପ୍ରତି ସମ୍ମାନ ଥିଲା ବେଶ୍ ।

ଭୂପେଶ ବାବୁ ଇଂଲଣ୍ଡରୁ ଫେରି ପ୍ରତ୍ୟକ୍ଷ ରାଜନୀତିରେ ଝାସ ଦେଲେ । ଜାତୀୟ ଆନ୍ଦୋଳନରେ ଯୋଗଦେବା ସହିତ କମ୍ୟୁନିଷ୍ଟ ପାର୍ଟି ଗଠନରେ ମନୋନିବେଶ କଲେ । ପାର୍ଟି ଗଠନ ତାଙ୍କର ଥିଲା ମୁଖ୍ୟ କାର୍ଯ୍ୟ । କିଷାନ ସଭା, ଟ୍ରେଡ୍ ୟୁନିୟନ କଂଗ୍ରେସ ଗଢ଼ିବାରେ ସାହାଯ୍ୟ କଲେ । କିନ୍ତୁ ତାହା ତାଙ୍କର ମୁଖ୍ୟ କାର୍ଯ୍ୟ ନଥିଲା । ସରଳ ଜୀବନ । ବିବାହ ବନ୍ଧନ ନାହିଁ । ଭୂପେଶ ବାବୁ ସମସ୍ତଙ୍କର ପ୍ରିୟ କିନ୍ତୁ କାର୍ଯ୍ୟକ୍ରମର ହିସାବ ନେଲାବେଳେ ଅନମନୀୟ । ତାତ୍ତ୍ୱିକ ଲେଖା ଲେଖିବାରେ ନୈପୁଣ୍ୟ ଲାଭ କଲେ । ଦର୍ଶନର ଜଟିଳ ତତ୍ତ୍ୱକୁ ବଖାଣିବାରେ, କାର୍ଯ୍ୟକ୍ରମକୁ ଉପସ୍ଥାପିତ କରିବାରେ ସେ ଧୂରନ୍ଧର । ସେଇଯୋଗୁଁ ପାର୍ଟି ଅର୍ଗାନ ବା ମୁଖପତ୍ରର ସେ ବହୁଦିନ ଧରି ସମ୍ପାଦକ । ବହୁ ବର୍ଷ କଟିଛି କାରାବାସ ଏବଂ ଆତ୍ମଗୋପନରେ । ଭୂପେଶ ବାବୁ ପ୍ରଥମ ସାଧାରଣ ନିର୍ବାଚନ ପରେ ରାଜ୍ୟସଭାକୁ ନିର୍ବାଚିତ ହୁଅନ୍ତି ଏବଂ ମୃତ୍ୟୁ ପର୍ଯ୍ୟନ୍ତ ରାଜ୍ୟସଭାର ସଭ୍ୟ ହୋଇ ରହିଆସିଛନ୍ତି । ରାଜ୍ୟସଭାରେ ସେ ଥିଲେ ସବୁଠାରୁ ସିନିଅର ସଭ୍ୟ ।

ତାଙ୍କ ସମ୍ପର୍କରେ ଅନେକ ଗଳ୍ପ ଅଛି । ଅନେକ ଦିନରୁ ତାଙ୍କର ଶ୍ରବଣଶକ୍ତି କମି ଯାଇଥିଲା । ତେଣୁ ସେ ଇଅର ଫୋନ ବ୍ୟବହାର କରୁଥିଲେ । କଥିତ ଅଛି ଯେ ସେ

ବକ୍ତୃତା ଦେବାକୁ ଉଠିବା ମାତ୍ରେ ଇଅର ଫୋନ ବାହାର କରିଦିଅନ୍ତି । ତାଙ୍କୁ ଇଣ୍ଟରପ୍ଟ କରିବା ବା ବାଧା ଦେବା ତେଣୁ ତାଙ୍କୁ ଶୁଣାଯାଏନା । ସେ କହିଚାଲନ୍ତି ଅନର୍ଗଳ । ହୋସ୍ ପାଇପରୁ ପାଣି ବାହାରିଲାପରି କଥା ବାଟୁଳି ବାଜେନା । କେବଳ କୁଆଡେ ରାଜ୍ୟସଭାର ତତ୍କାଳୀନ ସଭାପତି, ଉପ-ରାଷ୍ଟ୍ରପତି ରାଧାକ୍ରିଷ୍ଣଙ୍କର ପ୍ରଭାବ ତାଙ୍କ ଉପରେ ବେଶ୍ ପ୍ରଗାଢ଼ ଥିଲା । ସେ ହିଁ ତାଙ୍କୁ ସମ୍ଭାଳି ପାରନ୍ତି । ଭୂପେଶ ବାବୁଙ୍କୁ ପଚାରିଲେ ହସିଦେଇ କହନ୍ତି, ତମେ ବି ସେ ବଜାର ଗପରେ ମାତିଲଣି ନା ।

ଭୂପେଶ ବାବୁଙ୍କର ଓଡିଶା ପ୍ରତି ଦରଦ ଥିଲା ପ୍ରଚୁର । ଓଡିଶାର କଳା, ସାହିତ୍ୟ, ସଂସ୍କୃତି ପ୍ରତି ତାଙ୍କର ସମ୍ମାନ ଥିଲା ପ୍ରଗାଢ଼ । ଓଡିଶାର ସହକର୍ମୀମାନଙ୍କ ପ୍ରତି ମଧ ତାଙ୍କର ଦରଦ ଥିଲା ବହୁତ । ମନେପଡୁଛି, ସୀମା ଆନ୍ଦୋଳନ ପରେ ସେ ଏବଂ ଗୋପାଳନ୍ ଆସିଥିଲେ ଓଡ଼ିଶା ।·କୌଣସି ଏକ ମନ୍ତବ୍ୟ ବିଷୟରେ ସେ ଦୁହିଁଙ୍କ ସାଙ୍ଗରେ ସଂଘର୍ଷ ଲାଗିଗଲା ବେଶ୍ ଜୋରରେ । ଭୂପେଶ ବାବୁ କିନ୍ତୁ ତାହା ହୃଦୟକୁ ଆଦୌ ନେଇ ନାହାନ୍ତି । ସେତେବେଳେ କମ୍ୟୁନିଷ୍ଟ ପାର୍ଟିର ଜେନେରାଲ ବଡ଼ି ବୈଠକମାନଙ୍କରେ ସ୍ୱାଧୀନତା ଥିଲା ପ୍ରଚୁର । ତରୁଣ କର୍ମୀମାନେ ମଧ ପ୍ରବୁଦ୍ଧ ଜନନାୟକମାନଙ୍କ ଉପରେ ପ୍ରଚଣ୍ଡ ସମାଲୋଚନା କରୁଥିଲେ । ଭୂପେଶ ବାବୁ ଥିଲେ ଉଦାର । ସେ ସମାଲୋଚନାକୁ ସମ୍ମାନ ଦେଉଥିଲେ, ଅପମାନିତ ମନେ କରୁନଥିଲେ । ସେଇ ଥିଲା ତାଙ୍କର ବିଶେଷତ୍ୱ । ତାଙ୍କର ପାର୍ଲ୍ୟାମେଣ୍ଟ ସଭ୍ୟ ଭାବରେ ମିଳିଥିବା ଘର ଥିଲା ଏକ ଅତିଥିଶାଳା । ତ୍ରିପୁରାର ମୁଖ୍ୟମନ୍ତ୍ରୀ ଦଶରଥ ଦେବ ମଧ ସେଇଠି ରହୁଥିଲେ । ସେଇଠାକୁ ଶେଖ୍ ଅବଦୁଲ୍ଲା, ଗୋଲାମ ମହମ୍ମଦ, ସିଦିକ୍, ଡି.ପି.ଧର ପ୍ରଭୃତି କାଶ୍ମୀରର ବିଶିଷ୍ଟ ଜନନାୟକମାନଙ୍କୁ ଆସିବା ଦେଖିଚି । ଦେଖିଚି ସେମାନଙ୍କ ସହିତ ଭୂପେଶ ବାବୁଙ୍କର ଆଲୋଚନା ।

ଭାରତର ଘରୋଇ ମନ୍ତ୍ରୀ, ପ୍ରସିଦ୍ଧ କଂଗ୍ରେସ ନେତା ଗୋବିନ୍ଦ ବଲ୍ଲଭ ପନ୍ଥ ବହୁକାଳ ଧରି ଅସୁସ୍ଥ ଥିଲେ । ପରଲୋକ ହେବା ଦିନ ଖବରକାଗଜମାନେ ଲେଖିଥିଲେ ଯେ ଆଜି ଦୀର୍ଘକାଳ ଅଚେତ ଅବସ୍ଥାରେ ରହିବାପରେ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କର ପରଲୋକ ହୋଇଗଲା । ଏଇ ଚିହ୍ନା ମଣିଷଟି ହଜିଗଲା ଏବଂ ଏହା ସହିତ ଆଉ ଏକ ଚିହ୍ନା ମୁହଁ ମଧ ଏଇ ଘରେ ଦେଖା ମିଳିବ ନାହିଁ । ସେ ହେଉଛନ୍ତି ଗୋବିନ୍ଦ ବଲ୍ଲଭ ପନ୍ଥଙ୍କର ତୀବ୍ର, କଠୋର ରାଜନୈତିକ ବିରୋଧୀ ନେତା । ମାସ ମାସ ଧରି ଏଇ ମଣିଷଟି ପ୍ରତିଦିନ ପାର୍ଲ୍ୟାମେଣ୍ଟକୁ ଯିବା ବାଟରେ ଆସିବେ ଏବଂ ଘଣ୍ଟାଏକାଳ ମେଡିକାଲ ବୁଲେଟିନକୁ ଶୁଖିଲା ମୁହଁରେ ତର୍ଜମା କରିବେ । ତା'ପରେ ଆଖି ପୋଛି ଯିବେ ପାର୍ଲ୍ୟାମେଣ୍ଟକୁ । ଫେରିଲାବେଳେ ମଧ ସେଇ ଏକାକଥା । ଦିନେ ମଧ ଏଥିରୁ ତ୍ରୁଟି ହୋଇନାହିଁ । ସେ ହେଉଛନ୍ତି କମ୍ୟୁନିଷ୍ଟ ପାର୍ଟିର ନେତା ଭୂପେଶ ଗୁପ୍ତ ।

ସେ ଆଉ ନାହାନ୍ତି ।

ooo

# ମରଣରେ ଜୀବନର ଜୟଗାନ

*(୰ ଭୈରବ ଚନ୍ଦ୍ର ମହାନ୍ତି)*

ମୃତ୍ୟୁ କୁଆଡେ ସୁନ୍ଦର, ତାହା କାଳେ ଘରବାହୁଡ଼ା ଭଳି । କିନ୍ତୁ ପ୍ରକୃତରେ ଜୀବନ ସିନା ସୁନ୍ଦର ହୁଏ । ମରଣ କିମିତି ସୁନ୍ଦର ହେବ ? ମସ୍କୋରେ ରାତି ବାରଟା । ଭୈରବବାବୁ ଉଠିଲେ ଟେଲିଭିଜନରେ ହକି ଖେଳ ଦେଖିସାରି । ଦେହ କ୍ଳାନ୍ତ ଲାଗୁଥିଲା । ଦିନଯାକ ଭାରତୀୟ ଖେଳାଳୀଙ୍କୁ ଭେଟିବାରେ କଟିଛି । ପିଲାଏ ପୂର୍ବ ଦିନ ହକି ଖେଳରେ ଭଲ କରି ନାହାନ୍ତି । ମନ ଭାରି ଖରାପ । ସେଇଯୋଗୁଁ ନିଜେ ସବୁ ଖେଳାଳୀଙ୍କୁ ଭେଟିଥିଲେ । ନା, ଶୋଇବାକୁ ଯିବା । ବନ୍ଧୁ ଟି.ଏନ୍. ସିଂହଙ୍କର କୋଠରୀରୁ ଫେରିଲେ ଆପଣା କୋଠରୀକୁ । ଜୁଲାଇ ମାସ । ବାହାରେ ରାତ୍ରି ଖୁବ୍ ପତଳା । ପର୍ଦ୍ଦାକୁ ଟାଣି ଶୋଇବାକୁ ଗଲେ । ରାତି ବାରଟା ଦଶ । ହଠାତ୍ ସିଂହଙ୍କର ଦରଜାରେ ଖଟ୍ ଖଟ୍ ଆବାଜ । ଦରଜା ଖୋଲିଲା । ଭୈରବବାବୁ ଠିଆ ହୋଇଛନ୍ତି ଏବଂ ବାଁ ପଟ ଛାତିକୁ ଦେଖାଇ କହୁଛନ୍ତି ଯନ୍ତ୍ରଣା ହେଉଛି, ହାତରେ ରୋଗର ସବୁ କାଗଜ, ଶୁଆଇ ଦିଆଗଲା ତାଙ୍କୁ ଖଟ ଉପରେ ପାଖ କୋଠରୀରୁ ଏଫ.ଏମ୍.ଖାଁକୁ ଖବର ଦିଆଗଲା । ଭୈରବବାବୁ ପାଟି ଖୋଲିଲେ । ମୋତେ କଟକ ନେଇଯାଅ ବେଶ୍ ସେତିକି ।

ହଠାତ୍ ସବୁ ନିସ୍ତବ୍ଧ ହୋଇଗଲା । ଅଲମ୍ପିକ ପତାକା ଉଡିଲା ଅର୍ଦ୍ଧନମିତ ହୋଇ । ଯୋଗ ଦେଇଥିବା ୮୬ ଟି ଦେଶର ପତାକା ଅର୍ଦ୍ଧନମିତ କରାଗଲା । ଅଲମ୍ପିକ୍ସ ବନ୍ଦ ହୋଇଗଲା କେତେ ମିନିଟ ପାଇଁ । ସାରା ବିଶ୍ୱର କ୍ରୀଡାପ୍ରେମୀ ଜନସାଧାରଣ ଓ କ୍ରୀଡାବିତ୍‌ମାନେ ମଥାବନତ କରି ସମ୍ମାନ ଜଣାଇଲେ ସେଇ ଲୋକକୁ, ଯାହାର ଶୀତଳ ଦେହକୁ କଫିନରେ ସଂରକ୍ଷିତ କରାଯାଇଥିଲା ପଠାଇବା ପାଇଁ ଭାରତକୁ, ତା'ପୂର୍ବରୁ ଶବାଧାର ଉପରେ ପୁଷ୍ପମାଲ୍ୟ ଅର୍ପଣ କରି ସମ୍ମାନ ଜଣାଇଲେ ସୋଭିଏତ୍ ନେତୃବୃନ୍ଦ ବିଶ୍ୱର କ୍ରୀଡା ସଂଗଠନମାନେ । ମସ୍କୋ ରେଡିଓରୁ ରୁଦ୍ଧ କଣ୍ଠରେ ଘୋଷଣା ଶୁଭୁଥିଲା, ଭୈରବବାବୁଙ୍କର ମୃତ୍ୟୁରେ ବିଶ୍ୱ ଅଲମ୍ପିକ୍ସ ଦରିଦ୍ର ହୋଇଛି ।

ସମସ୍ତେ ତ ଦିନେ ଯିବେ । ରହିବ କିଏ ? କିନ୍ତୁ ବଡ଼ ଡାକ୍ତରଖାନାର ଖଟିଆରେ ଘୋଷରା ହୋଇ ନାହିଁ । ଭାରି ଘାଣ୍ଟି ହେଉଛି ବୋଲି ଶବ୍ଦ ଶୁଣା ହୋଇନାହିଁ । ଚିକିତ୍ସା

ପାଇଁ ନିବେଦନ ନାଇଁ ? ପୂର୍ଣ୍ଣ ଶାରୀରିକ ଓ ମାନସିକ ଦକ୍ଷତାରେ ଏବଂ ବିଶ୍ୱ କ୍ରୀଡ଼ା କ୍ଷେତ୍ରରେ ଜୀବନର ଅବସାନ । ଏହାଠାରୁ ବଳି ଗୌରବମୟ ମୃତ୍ୟୁ ଜୁଟେ କାହା ଭାଗ୍ୟରେ ?

କ୍ରୀଡା କ୍ଷେତ୍ରରେ ସରକାରୀ ହସ୍ତକ୍ଷେପ ପାଇଁ ମସ୍କୋ ଅଲମ୍ପିକ୍ସ ଖ୍ୟାତ ହୋଇ ରହିବ । ଭୈରବଚନ୍ଦ୍ର ମହାନ୍ତି ଏହି ହସ୍ତକ୍ଷେପର ଥିଲେ ତୀବ୍ର ବିରୋଧୀ । ନିଜେ ଶାସକ ଦଳର ସଭ୍ୟ ଥିଲାବେଳେ ମଧ୍ୟ ସେ ଠିଆ ହୋଇଛନ୍ତି ସରକାରୀ ହସ୍ତକ୍ଷେପ ବିରୁଦ୍ଧରେ । ସେଥିପାଇଁ ତାଙ୍କୁ ମୂଲ୍ୟ ଦେବାକୁ ପଡିଛି ବହୁବାର । ଆଜି ସେହି ସରକାରୀ ହସ୍ତକ୍ଷେପର ପ୍ରତିବାଦରେ ଆସିଛନ୍ତି ବିଶ୍ୱର ବହୁ ଖେଳାଳୀ । ଏହାପରେ ଅଲମ୍ପିକ୍ସର ଭବିଷ୍ୟତ ? ତାହା ଦେଖିବା ପାଇଁ ସେ ଆଉ ନାହାନ୍ତି । ରହନ୍ତେ କାହିଁକି ? ଜୁଲାଇ ତେର ତାରିଖ ଜନ୍ମଦିବସ ତାଙ୍କର । ସେଦିନ କାଉନ୍‌ସିଲ ବୈଠକ । ସେଇଦିନ ସେ ମସ୍କୋ ଯିବେ । ଷ୍ଟେସନରେ ସମସ୍ତଙ୍କଠାରୁ ବିଦାୟ ନେଲାବେଳେ କିମିତି ବେଶି ବେଶି ନିବିଡ ଶୁଣାଗଲା ତାଙ୍କର କଣ୍ଠ, ବ୍ୟବହାର । ମସ୍କୋରୁ ନନ୍ଦ ପଟ୍ଟନାୟକଙ୍କ ପାଖକୁ ଚିଠି ଲେଖିଛନ୍ତି ଯେ ଏଠି ପହଞ୍ଚି ତୁମକୁ ହିଁ ପ୍ରଥମେ ଚିଠି ଲେଖୁଛି । କାରଣ ମସ୍କୋ ଆଜି କେବଳ ରୁଷିଆର ରାଜଧାନୀ ନୁହେଁ, ମନେହେଉଛି ଯେପରି ଅଲମ୍ପିକ୍ସର ସରକାର ଚାଲିଛି ଏଠି । ଏଇ ଦେଶ ସହିତ ମୈତ୍ରୀ ସ୍ଥାପନା ପାଇଁ ଉଦ୍ୟମ ମୋର ସାର୍ଥକ ହୋଇଛି । ଗଲେ କହିବି । ସେ ଆସିଲେ ସତ୍ୟ; କିନ୍ତୁ..... ।

ମସ୍କୋରୁ ଦିଲ୍ଲୀ । ଦିଲ୍ଲୀରୁ ଭୁବନେଶ୍ୱର । ତା'ପରେ କଟକ । ତା'ପରେ ସତୀଚଉରା । ଆଉ ତା'ପରେ.... ଖୁସ୍ତୁ ହାତରେ ମୁଖାଗ୍ନି । ଜଳିବ ଚିତା ଆଉ ଟିକକ ପରେ, ପିଲାଟିଏ ପଶିଆସୁଛି ଭିଡ଼ ଭିତରକୁ । ଜଣେ ପୋଲିସ ଅଫିସର ତାକୁ ଅଟକାଉଛନ୍ତି । ସେ ପିଲା କହୁଛି ଯେ ମୁଁ ହେଉଛି ଭୈରବବାବୁଙ୍କ ପୁଅ । କିଏ ଖୁସ୍ତୁ, ଲାଲି, ପିପି ? ସେ ପିଲା କହୁଛି ଯେ ବାରବାଟୀ ଷ୍ଟାଡିୟମକୁ ଖେଳିବାକୁ ଯାଇଛି ସେ ହେଉଛି ଭୈରବବାବୁଙ୍କ ପୁଅ । ପୋଲିସ ଅଫିସରଙ୍କ ଆଖିରେ ଲୁହ । ସେ ବାଟଛାଡ଼ି ଦେଉଛନ୍ତି ସେ ପିଲାକୁ ! ଆଖି ପୋଛୁଚନ୍ତି ସମସ୍ତେ.... ହାଇକୋର୍ଟର ଜଜ୍, ଅଲିଶାବଜାରର ପାନ ଦୋକାନୀ, ଖ୍ରୀଷ୍ଟିଆନ, ଓଡିଆ, ବଙ୍ଗାଳୀ,ତେଲୁଗୁ । ହେ ଜଗନ୍ନାଥ ! ହେ ଆଲ୍ଲା ! ହେ ଯୀଶୁ ଦିଅ ଏଇପରି ଜୀବନ, ଦିଅ ଏଇପରି ମରଣ ! ଅଗ୍ନି ଲାଗିଲାଣି ଆଉ ଟିକକ ପରେ ସବୁ ପାଉଁଶ ହୋଇଯିବ ।

କିନ୍ତୁ କ'ଣ ପାଉଁଶ ହେବ ? ଦେହ.... ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନ କୁତଃ । ସେ ଆଉ ଫେରିବେ ନାହିଁ । ସେ କିନ୍ତୁ ରହିବେ ଏଇଠି । ବାରବାଟୀ ଷ୍ଟାଡିଅମ୍ ଚାରିପଟର ଆମ୍ବଗଛରେ ଫଳ ଫଳି ନାଇଁ, ଏପଟରେ ଜାମୁକୋଳି ଗଛ ଲାଗି ନାଇଁ । ଏ

ସବୁ କରିବ କିଏ ? ସେଇ କାଳରାତ୍ରିରେ ହଠାତ୍ ଗେଟ୍ ହାଉସ୍ ଆଗରେ ଏକ ବିରାଟ ଶବ୍ଦ । ପବନ ନାହିଁ, ବତାସ ନାହିଁ, କୋଣାର୍କ ଘୋଡ଼ା ସାମନାରେ ଥିବା ବିରାଟ ଗଛ ଫାଟି ଦୁଇଫାଳ ହୋଇ ଖସିପଡ଼ିଲା ଦୁଇପଟକୁ । ଭୈରବବାବୁଙ୍କ ଅଫିସରେ ବସି ଅନେଇଲେ ସେଇ ଗଛଟା ପଡ଼େ ଆଖି ଆଗରେ । ସେ ଗଛଟା ଆଉ ନାହିଁ । ଏ କ'ଣ ସେଇ ଅଶୁଭ ସଙ୍କେତ । ଅଗ୍ନି ଜଳୁଛି ଚିତାରେ । ଆସିଲାବେଳେ ପ୍ରକୃତି କାନ୍ଦୁଥିଲା । ବର୍ତ୍ତମାନ ମଣିଷକୁ କାନ୍ଦିବା ପାଇଁ ବାଟ ଛାଡି ଦେଇଛି ।

ହେ ଆଲ୍ଲା, ଉପରକୁ ଅନେଇ ନିବେଦନ କରୁଛନ୍ତି ଓଡ଼ିଆ ବଜାରର ମୁସଲମାନମାନେ । କଟକ ସହରରେ ସାମ୍ପ୍ରଦାୟିକ ଦଙ୍ଗା । କର୍ଫ୍ୟୁ ଜାରି ହୋଇଛି । ମଣିଷର ବିବେକ ଅସହାୟ ହୋଇ ଠିଆ ହୋଇଛି । ଭୈରବବାବୁ ଚାଲିଛନ୍ତି ତାରି ଭିତରେ ଓଡ଼ିଆ ବଜାରରୁ ଦେବାନ ବଜାର ସେଠାରୁ କେଶରପୁର, ଆମେନ୍ ଆମେନ୍ ଆମେନ୍.... କଟକଚଣ୍ଡୀ ପାଖରେ ସେଇ ଶିକ୍ଷୟିତ୍ରୀଙ୍କର ଚାପାକଣ୍ଠ । ଦୌଡ ଦୌଡ ଭୈରବବାବୁ ଠିଆହୋଇ ଉତ୍ସାହିତ କରୁଛନ୍ତି, ଫିଜିକାଲ ଏଜୁକେଶନ ପାଉଥିବା ପୁଅ ଝିଅମାନଙ୍କୁ । ଏଇ ଝିଅ ଥିଲା ତାଆରି ଭିତରେ ।

ସର୍ବହରା ସେ । ଷ୍ଟାଡ଼ିଅମ୍ କରିବାକୁ ହେବ । ରାଜନୀତି ପ୍ରତି ବିତସ୍ପୃହ ହୋଇଯାଇଥିଲେ ସେ । କିନ୍ତୁ ୧୯୬୭ରେ ପୁଣି ଫେରିଲେ ରାଜନୀତିକୁ ଷ୍ଟାଡିଅମ୍ ଭିତରେ ଶକୁନିର ଛାଇ ପଡି ଆସୁଥିଲା । କ୍ରୀଡାର 'ଦାଦା' ଆଉ 'ମ୍ୟାନେଜର' ମାନେ ଏହାକୁ ଜୀବିକାରେ ପରିଣତ କରିସାରିଥିଲେ । ତରୁଣ ଖେଳାଳୀମାନଙ୍କର କଣ୍ଠରୁଦ୍ଧ ହୋଇଯାଉଥିଲା । ରାଫଲ ହୋଇଛି, ବନ୍ଦ ହୋଇଛି, ପୁଣି ଚାଲିଛି । ତାକୁ କେନ୍ଦ୍ର କରି କେତେ ବାଦ, ବିସମ୍ବାଦ, କମିଶନ, ଧମକ । ତାହାରି ଭିତରେ ସେ ଥିଲେ ଅଚଳ ଓ ସର୍ବଂସହା । ନୀଳମଣିବାବୁ କହୁଥିଲେ ଯେ କମିଶନ ବସାଇବା ପାଇଁ ଓ ଗିରଫ କରିବା ପାଇଁ ଉଦ୍ୟମର କଥା । ମହତାବବାବୁ କହୁଥିଲେ ବାରବାଟୀ ରାଫଲକୁ ଜୁଆଖେଳ ବୋଲି କହି ବନ୍ଦ କରିଦେବା ପାଇଁ ଉଦ୍ୟମର କଥା, ଜର୍ଜ ପଟ୍ଟନାୟକ କହୁଥିଲେ ଭୈରବବାବୁଙ୍କୁ ତଡିବାକୁ ଉଦ୍ୟମର କଥା । ଆଉ କିଏ କହୁଥିଲା, ଏବେ ନିକଟରେ ଧମକଦେବାର କଥା । କିନ୍ତୁ ସେ ସବୁ ପରାସ୍ତ ହୋଇଛି । କାରଣ..... ଭୈରବ ମହାନ୍ତି ଥିଲେ ଜଣେ ମଣିଷ । ମାନବିକ ଦୁର୍ବଳତା ତାଙ୍କର ବି ଥିଲା । କିନ୍ତୁ ସେ ଥିଲେ ମଣିଷ ଭିତରେ ମଣିଷଟିଏ, ଆଉ ତାଙ୍କ ଯାଗାରେ ବିକଳ୍ପ ମଣିଷଟିଏ ପାଇବା ସମ୍ଭବପର ନଥିଲା । ବନ୍ୟାର ସୁଅ ଛୁଟୁଛି, ୧୯୫୫ । ସେ ମନ୍ତ୍ରୀ । ବନ୍ୟା ପୁଣି ଆସିଛି ୧୯୭୦ । ସେ ମନ୍ତ୍ରୀ ନାହାନ୍ତି । ବୟସ ମଧ୍ୟ ବଢ଼ିଛି । କିନ୍ତୁ ସେ ଚାଲିଛନ୍ତି କଟକ ସହରର ରାସ୍ତାରେ ଦିନ ପରେ ଦିନ, ହାତରେ ଭିକ୍ଷାର ଥାଳ । ସହାନୁଭୂତିର ହାତ ଥାପୁଦେଇ ଦେଉଛି ପାଖର

ସ୍ୱେଚ୍ଛାସେବୀମାନଙ୍କୁ । ହେ ଜଗନ୍ନାଥ ! ଆଖିରୁ ଲୁହ ପୋଛୁଚି କଟକଚଣ୍ଡୀର ମାଳୀ । ଟେନିସ ଏକ ଅଲମ୍ପିକ୍ ଖେଳ ନୁହେଁ । କିନ୍ତୁ ମୁଖରିତ ହେବ ତ ଷ୍ଟାଡ଼ିଅମ ଏଇ ଖେଳରେ । ବାଞ୍ଛାନିଧି ହୋତା ପିଲାଦିନର ସାଙ୍ଗ । ତାଙ୍କୁ ଡକାଯାଇଛି ଖେଳର ଆୟୋଜନ କରିବା ପାଇଁ ଆଉ ଟେନିସ୍ ର୍ୟାକେଟ୍ ଧରି ନିଜେ କୋର୍ଟରେ ହାଜର ହୋଇ ଖେଳିବା ପାଇଁ ।

ପଖଳା ସ୍ମୃତି । ଲୁହର ଆଉ କୋହର । ଚିତା ଜଳିଉଠିଲାଣି । ଲେଲିହାନ ଶିଖା । ଆଉ ଟିକକକୁ ସବୁ ପାଉଁଶ । ସେ ବାହୁଡ଼ିଲେଣି । ଅନ୍ୟମାନେ ବି ବାହୁଡ଼ିବେ । କିନ୍ତୁ ଏ କ'ଣ ମରଣର ଯାତ୍ରା ନା ଜୀବନର ଜୟଗାନ ? ମନେ ପଡୁଚି । ବାପା ମୋର ହଠାତ୍ ଚାଲିଗଲେ..... ଭୈରବବାବୁ ଥିଲେ । ମୋର ଆଉ କିଛି ମନେ ନାହିଁ । ସେ ସବୁ ବୁଝିଲେଣି । ତାଙ୍କର ଖୁଡୀ ସେଦିନ ଗଲେ ଚାଲି...... ଭୈରବବାବୁ କହୁଛନ୍ତି ଆଖିରୁ ଲୁହ ପୋଛି ପୋଛି..... ଏଥରକ ଆମ ଯିବା ପାଳି ଆସିଲା ।

ଚିତାର ଶିଖା ଉଠିଲାଣି ଉପରକୁ । ଏଇ ଚିତା ଇତିହାସ ହାତରେ ହାତ ଟେକି ଦାନ ଦେଇ ଯାଇଛି ବାରବାଟୀ ଷ୍ଟାଡ଼ିଅମ । ଏଇ ଚିତାରେ ଶୋଇଥିବା ମଣିଷ ଆଉ ମାସକ ପରେ ହୋଇଥାନ୍ତା କ୍ରିକେଟ କଣ୍ଟ୍ରୋଲ୍ ବୋର୍ଡ଼ର ସଭାପତି । କୈଳାସବାବୁ ଲୁହଭରା ଆଖିରେ ଦେଖୁଛନ୍ତି ସେଇ ନୋଟିସକୁ । ପ୍ରଧାନମନ୍ତ୍ରୀ କହିଥିଲେ ଏସିଆଡ଼ ଗେମ୍‌ସରେ ଉପସଭାପତି ହେବାପାଇଁ । ସେ ସବୁ ରହିଗଲା ସେଇପରି । କିନ୍ତୁ ସବୁ ଖେଳ କ'ଣ ସେ ସାରିପାରନ୍ତେ ନା ସବୁ ଖେଳ ସେ ଜିତି ବି ପାରନ୍ତେ ?

ତାଙ୍କର ଚୌକୀର ପଛପଟରେ ଝୁଲୁଛି ଏକ ଫଳକ । ସେଥିରେ ଲେଖାଅଛି—

"When the great scorer comes to write against your name.
He writes not whether you won or lost.
But how you played the game.

ଅସୁମାରି ମଣିଷ ଭିଡ଼ । ଉଡାଜାହାଜ ମାଟି ଛୁଇଁଲାବେଳକୁ ସତେ ଯେପରି ପ୍ରକୃତି ଅଥୟ ହୋଇଥିଲା । ବର୍ତ୍ତମାନ ମଣିଷର ମୁହଁରେ ସତୀଚଉରା ଅଥୟ । ସେ କିନ୍ତୁ ଶୋଇଛନ୍ତି ନିର୍ବିକାର ଭାବରେ । ଜୀବନରେ ସେ ଅଥୟ ହୋଇ ନାହାନ୍ତି, ଆଉ ଆଜି ?

ଅଜୟ ରାୟ କହୁଛନ୍ତି ତାଙ୍କୁ ହରାଇଲୁ ସତ୍ୟ । କିନ୍ତୁ ଏପରି ମରଣ ତ ମୁଁ କାମନା କରିବି ଆଉ ଇମିତି ମରିବାକୁ ଚାହିଁବି ତିନି ଥର । ସେ ରହିଲେ ନାଇଁ, ଫେରିବେ ବି ନାଇଁ । କିନ୍ତୁ ଏ ଜାତିକୁ ସେ ଆପଣାର ଯେଉଁ ଦାନରେ ସିକ୍ତ କରି ଯାଇଛନ୍ତି ତାହା ତାଙ୍କୁ ରଖିବ ଅମ୍ଳାନ । ଚିର ମଧୁର କରି, ଠିକ୍ ତାଙ୍କରି ପରି । କୌଣସି ଚିତା ତାଙ୍କୁ ଜାଳିଦେଇ ପାରିବ ନାହିଁ ।

□□□

# ମନ୍ଦାକିନୀର ମହାଯାତ୍ରା

## [ ୰ *ମନ୍ଦାକିନୀ ପାଣିଗ୍ରାହୀ (ବକ୍ସିପାତ୍ର)* ]

ବୟସରେ ମୋଠାରୁ ବହୁତ ସାନ । କିନ୍ତୁ ସେ ଚାଲିଗଲା ଆଗ । ମୋତେ ଲେଖିବାକୁ ପଡିବ ତାପାଇଁ । ତା'ର ଭାଇ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଚାଲିଗଲା ପରେ । ମୁଁ ତାକୁ କହିଥିଲି ମୋ ପାଇଁ ଲେଖିବା ସକାଶେ ମୁଁ ଚାଲିଗଲା ପରେ । କାରଣ ସେ ଥିଲା ସୁଲେଖିକା ଲୁହଭରା ଆଖିରେ କହିଥିଲା, ଭାଇ ପାଇଁ ଲେଖୁଚ ମୋ ପାଇଁ ! ଲେଖିବନି ତୁ ଲେଖିବୁ ମୋ ପାଇଁ । ମୁଁ ପରା ତୋଠାରୁ ବହୁତ ବଡ଼ । ଦେଖିନୁ ଭାଇ ଆଗ ଗଲା । ସେ ଦିନର ସେଇ କଥା ମନେ ପଡୁଚି । ନୀଳଚକ୍ରର କ୍ରୁର ପରିହାସ । ସେ ଆଖିବୁଜି ଦେଲା । ଜାନୁୟାରୀ ୩ ତାରିଖ, ୨୦୦୨ ମସିହାରେ କ୍ୟାନସର ରୋଗରେ ପୀଡିତ ହୋଇ । ଜାଣିପାରିଲି ନାହିଁ । ଯାଇ ମଧ ପାରନ୍ତି ନାହିଁ । ସେଇ ଯୋଗୁଁ ଖବର ବି କେହି ଦେଇ ନାହାନ୍ତି । ସ୍ୱାମୀ ପ୍ରମୋଦ ମୋର ବଂଧୁ । ଆମେ ଏକା ମେସ୍ ଆଗାମୀ ମେସ୍ ରେ ରହିଛୁ ବହୁଦିନଧରି । ବହୁ ସ୍ମୃତି ବିଜଡ଼ିତ କଲେଜ ଜୀବନ । ସଂଖୋଳି ବି ଯାଇ ପାରୁନି ।

ଓଡ଼ିଆ ଭାଷା, ଓଡ଼ିଶା ପ୍ରଦେଶ ଗଠନର ଅନ୍ୟତମ ପ୍ରବାଦ ପୁରୁଷ ଗୋପୀନାଥ ବକ୍ସିପାତ୍ରଙ୍କ କନ୍ୟା ମନ୍ଦାକିନୀର ରକ୍ତରେ ବୋହୁଥିଲା ଜାତୀୟତାର ମନ୍ଦାକିନୀ । ଭାଇମାନେ ସମସ୍ତେ ପ୍ରତିଷ୍ଠିତ ଏବଂ ସ୍ୱନାମଧନ୍ୟ । ବଡ଼ଭାଇ କୃଷ୍ଣଚନ୍ଦ୍ର ବିଜୁ ଜନତାଦଳର ନେତା । ବୟସ୍କ ରାଜନୀତିଜ୍ଞ । ଭାଇ ୰ ହରିଶ୍ଚନ୍ଦ୍ର ଉତ୍କଳ ସମ୍ମିଳନୀର ସଭାପତି ଥିଲେ । ଭାଇ ରାମଚନ୍ଦ୍ର ଜଣାଶୁଣା ଆଡଭୋକେଟ ଏବଂ ଶ୍ରମଜୀବୀ ମଣିଷର ବାବଦୂକ । ଅନ୍ୟତମ ଭାଇ ବୃନ୍ଦାବନ ଉଗ୍ର ବାମପନ୍ଥୀ ନେତା ଭାବେ ପରିଚିତ । ଭାଇ ଜଗଦୀଶ ସମାଜସେବୀ । ପୁତୁରା ଭୃଗୁ ଭାରତୀୟ ଜନତା ପାର୍ଟିର ନେତା । ବହୁ ମତ ବହୁ ଚିନ୍ତାର ସମନ୍ୱୟର ରକ୍ତ ବୋହୁଥିଲା ତା'ର ଦେହରେ । ତାହାରି ପ୍ରତୀକ ଥିଲା ସେ ।

ଜଡ଼ିତ ଥିଲା ବହୁ ସଂଗଠନ ସହିତ । ଏବଂ ରଖିଯାଇଛି ତା'ର ଆଲେଖ୍ୟ । ମହିଳାମାନଙ୍କର ବିକାଶଠାରୁ ଆରମ୍ଭ କରି ସାହିତ୍ୟ ପର୍ଯ୍ୟନ୍ତ ବହୁ ବିଭାବକୁ ତାହା ପରିବ୍ୟାପ୍ତ । ସେମାନେ ସମସ୍ତେ ସ୍ତବ୍ଧ ଶୋକାର୍ତ୍ତ । ମନ୍ଦାକିନୀର ବିଦାୟର ଶୋକ ପରିବାରର ସୀମା ଲଂଘି ଯାଇଛି । ଗ୍ରାସକରି ଯାଇଛି ସମାଜର ବିଭିନ୍ନ ଶ୍ରେଣୀ, ଜୀବିକା ଓ ବୟସର ମଣିଷଙ୍କୁ ।

କୌଣସି ନିର୍ଦ୍ଦିଷ୍ଟ ମତବାଦ ତାର ନଥିଲା । ସେ ଚେଷ୍ଟା କରୁଥିଲା ସବୁଥିରୁ ଯାହା ଭଲ ତାହା ଗ୍ରହଣ କରିବା ପାଇଁ ଏବଂ ରୂପାୟିତ କରିବା ପାଇଁ ଆପଣା ଜୀବନରେ ।

ଅପୂର୍ଣ୍ଣ ରହିଛି ଏବଂ ଛାଡ଼ି ଚାଲିଯାଇଛି ଆମ ସମସ୍ତଙ୍କୁ । ତାହାରି ନାଆଁ ତ ଜୀବନ । ଏବଂ ସେଇ ଜୀବନ ସେତିକି ସାର୍ଥକ ଯାହାପାଇଁ ବହୁ ମଣିଷର ଆଖି ଭିଜିଯାଏ ।

ମନ୍ଦାକିନୀ ଆଉ ନାହିଁ । ଭିଡ଼ ଜମିଛି ଘର ଆଗରେ କୋହଭରା ଲୁହଭରା ମଣିଷର ।

❑❑❑

# ଉଖୁରା ସ୍ମୃତି

## (୰ ମହାମାୟା ପଟ୍ଟନାୟକ)

ହଠାତ୍ ସେ ଦିନ ଖବର ପାଇଲି ଯେ ଡାକ୍ତର ମହାମାୟା ପଟ୍ଟନାୟକ ଆଉ ନାହାନ୍ତି । ଅଚାନକ ସଂବାଦ । ଦେହ ମନରେ ହଠାତ୍ ଯେମିତି ବିଜୁଳି ସକ୍ । ସ୍ମୃତି ପହଁରିଗଲା ଅନେକ ଦିନ ତଳକୁ । ପଖାଳିବାକୁ ନ ଚାହିଁଲେ ବି ସ୍ମୃତି ପଖାଳି ହୋଇ ଯାଉଛି । ଦେହ ଭୀଷଣ ଅସୁସ୍ଥ । ବିଛଣାରୁ ଉଠିବାର ଉପାୟ ନାହିଁ ଦେହ ସିନା ଅଚଳ କିନ୍ତୁ ମନ ତ ଅଚଳ ହୋଇନାହିଁ । ସ୍ମୃତି ଉଖୁରି ଯାଉଛି, ମନ ଓ ଆଖିକୁ ଭିଜାଇ ଭିଜାଇ ।

ମହାମାୟା ମୋର ସମସାମୟିକ । ଠିକ୍ ଆଉ ମନେ ପଡୁନି । ତେବେ ଯୋଗମାୟା, ମହାମାୟା ଦୁଇ ଭଉଣୀଙ୍କୁ ମୁଁ ଜାଣିଥିଲି କଲେଜରୁ । ପରେ ସେମାନେ ମେଡିକାଲ କଲେଜରେ ପଢ଼ିଲାବେଳେ ଆତ୍ମୀୟତା ପ୍ରତିଷ୍ଠା ହୋଇଥିଲା । ତାହା ଏ ପର୍ଯ୍ୟନ୍ତ ମଉଳି ନାହିଁ । ସମୟ ଅତିକ୍ରାନ୍ତ ହୋଇଛି କିନ୍ତୁ ଆତ୍ମୀୟତା ଉପରେ ମଳଣ ପଡ଼ିନାହିଁ । ଦି' ଭଉଣୀ ପ୍ରତିଷ୍ଠିତ ହୋଇଛନ୍ତି । ନାମ କରିଛନ୍ତି ନିଜର କାମ ପାଇଁ । ସେମାନଙ୍କୁ ଦେଖିଲେ କିନ୍ତୁ ମନେପଡେ ମେଡିକାଲ କଲେଜର ଛାତ୍ର ଜୀବନ କଥା ।

ମହାମାୟା ପ୍ରଗଳ୍ଭ ନଥିଲେ । ନୀରବରେ, ଚୁପ୍‌ଚାପ୍ ସେ କାମ କରିଯାଆନ୍ତି । ସେ ଆସର୍ଟିଭ (Asertive) ନଥିଲେ ମନ ଜାହିରି କରିବାକୁ ଚାହାନ୍ତି କିନ୍ତୁ ନିଜ ମତରେ ରହିଛନ୍ତି ଅତୁଟ । ସେଥିରୁ ସେ ଓହରି ଯାଇନାହାନ୍ତି । କି ବିଚ୍ୟୁତ ହୋଇ ନାହାନ୍ତି । ନିଜର ବ୍ୟକ୍ତିଗତ ଜୀବନରେ ମଧ୍ୟ ସେଇକଥା ଘଟିଛି ବିବାହ ନ କରିବା ପାଇଁ ନିଷ୍ପତ୍ତି ନେଲେ । କାହିଁକି ନେଲେ ସେ ଅଲଗା କଥା । ଅବିବାହିତା ରହିବେ । ତା ସହିତ ଉଚ୍ଛୃଙ୍ଖଳତାର ଗଂଧ ବି ନାହିଁ । ଧୀର, ଶାନ୍ତ, ପବିତ୍ର ନିଷ୍ପତ୍ତି । ସତେ ଯେପରି ସନ୍ନ୍ୟାସିନୀ ହେବା ପାଇଁ ନିଷ୍ପତ୍ତି । ମହାପଣ୍ଡିତ ସଦାଶିବ ମିଶ୍ର (ଯାହାଙ୍କ ନାମରେ ପୁରୀରେ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ) କହୁଥିଲେ ଯେ ଯିଏ ଶଙ୍କରାଚାର୍ଯ୍ୟ ହୁଏ ସେ ହୁଏ ଯୌବନରେ, (ଉଦାହରଣ ଦେଇ ସେ ବିବେକାନନ୍ଦଙ୍କ କଥା କହୁଥିଲେ) ବାର୍ଦ୍ଧକ୍ୟରେ ନୁହେଁ ।

ମହାମାୟା ତ ଠିକ୍ ସେହିଭଳି । ବଂଗର କୁମାରୀ ପାଇଁ ଏପରି ଏକ ନିଷ୍ଠାଭି ଆଉରି କଠୋର । ମୋ ସ୍ତ୍ରୀ କମଳକୁମାରୀଙ୍କ ଜଣେ ଡାକ୍ତର ମାମୁଁ ସେଇପରି ଅବିବାହିତ । ନିର୍ମଳ, ଶାନ୍ତ, ପବିତ୍ର ନିଷ୍ଠାଭିର । ଅବିଚଳ, ଉଚ୍ଛୃଙ୍ଖଳତାର ଗଂଧ ବି ନାହିଁ ।

ମେଡିକାଲ କଲେଜ ଥିଲା ଏକ ଆରିଷ୍ଟୋକ୍ରାଟିକ କଲେଜ୍ କିନ୍ତୁ ସେଇ ପ୍ରାଚୀର ଭେଦକରି ବାମପନ୍ଥୀ ଚିନ୍ତା ଏବଂ ସର୍ବୋପରି ଛାତ୍ର ଆନ୍ଦୋଳନର ପବନ ବୋହିବାକୁ ଆରମ୍ଭ କଲା ମେଡିକାଲ ସ୍କୁଲ ( ଏହାର ଐତିହାସିକ ଛାତ୍ରଧର୍ମଘଟ ଅବିସ୍ମରଣୀୟ । ଏହି ଧର୍ମଘଟରେ ଶେଷ ନେତା ଡାକ୍ତର ନବକିଶୋର ଆଖିବୁଜି ଦେଇଛନ୍ତି ଦୁଇବର୍ଷ ତଳେ) ର ଐତିହ୍ୟକୁ ଯେଉଁମାନେ ଫେରାଇ ଆଣିଲେ ସେମାନଙ୍କ ମଧ୍ୟରେ ୰ ଡାକ୍ତର ବସନ୍ତ ମିଶ୍ର, ଡାକ୍ତର ନିରୂପମା ରଥ ପ୍ରଭୃତି ମନେପଡ଼ନ୍ତି । ତାରି ଠିକ୍ ପର ପୀଢ଼ିରେ ଯେଉଁମାନେ ଥିଲେ ସେମାନଙ୍କ ମଧ୍ୟରେ ଯୋଗମାୟା, ମହାମାୟା ଅନ୍ତର୍ଭୁକ୍ତ । ଅନ୍ୟମାନଙ୍କ ନାମ ଏଠାରେ ଉଲ୍ଲେଖ କରୁନାହିଁ । ତେବେ ଡାକ୍ତର କିଶୋର ମିଶ୍ର, ଡାକ୍ତର ବିଜୟ ନନ୍ଦ, ଡାକ୍ତର ଲମ୍ବୋଦର ସାହୁ, ଡାକ୍ତର ସରଳା ଦାସ, ଡାକ୍ତର ଦମୟନ୍ତୀ ପାଣି, ଡାକ୍ତର ଅଶ୍ୱିନୀ ଷଡ଼ଙ୍ଗୀଙ୍କ ନାମ ମନେପଡୁଛି ।

ଛାତ୍ର ସଂଘ ତରଫରୁ ମେଡିକାଲ କଲେଜ ଦାୟିତ୍ୱରେ ଥିଲେ ଯୋଗେନ୍ ଦା' (ଅବସରପ୍ରାପ୍ତ ଆଇଏ.ଏସ୍) ଏବଂ ବିଶ୍ୱମ୍ଭର ସାମନ୍ତ । ତେବେ ଅଫିସ ସେକ୍ରେଟେରୀ ଭାବରେ ଖବର ରଖିବା ଥିଲା ମୋର କାମ । ଦି'ଭଉଣୀଙ୍କ ଭିତରୁ କିଏ ବେଶି ସକ୍ରିୟ ଥିଲେ ମୋର ମନେ ପଡୁନି । ତେବେ ଯୋଗମାୟା ବେଶି ସକ୍ରିୟ ଥିଲେ କିନ୍ତୁ ମହାମାୟା ଯେଉଁ ଦାୟିତ୍ୱ ନେଉଥିଲେ ତାହା ନିଶ୍ଚିତ ଭାବରେ କରୁଥିଲେ । ସେଥିପାଇଁ କୌଣସି ଆଟୋପ୍ ବା ପବ୍ଲିସିଟି ଦରକାର ନଥିଲା କି ତାହା ସେ କଦାପି ଲୋଡିନାହାନ୍ତି ।

ଉତ୍ତର ଜୀବନରେ ମଧ୍ୟ ସେ ରହିଗଲେ ସେଇପରି । ମୋର ମନେ ପଡୁଛି, ତାଙ୍କୁ ଦିଆଯାଇଥିବା ଏକ ସଂବର୍ଦ୍ଧନାର ଉତ୍ତରରେ ସେ କହିଲେ ଯେ ଏହା ତାଙ୍କର ପ୍ରାପ୍ୟ ନୁହେଁ, ପ୍ରାପ୍ୟ ନିଶ୍ଚିତ ଭାବରେ ସଂପାଦିକାଙ୍କର । ମୁଁ ସେଇ ସଭାରେ ଉପସ୍ଥିତ ଥିଲି । ଦରିଦ୍ର ମଣିଷର ସେବା, ରୋଗୀର ସେବା କରିବାକୁ ସେ ଆଦରି ନେଇଥିଲେ । ମାମୁଁ ରବୀନ୍ଦ୍ର ମୋହନ ଦାସ ଥିଲେ ତାଙ୍କର ଅନ୍ୟତମ ପ୍ରେରଣାର ଉତ୍ସ । ବିନମ୍ର, ଧୀର, ଶାନ୍ତ ରହିବା ପାଇଁ ସେ ଯେପରି ଶପଥ ନେଇଛନ୍ତି ବୋଲି ମୋର ମନେ ହୋଇଛି । ଉଚ୍ଚ ବା ଉତ୍ତେଜିତ କଣ୍ଠରେ ତାଙ୍କୁ କହିବାର ମୁଁ କେବେ ଶୁଣିନାହିଁ ।

ବସୁନ୍ଧରାର ସେ ସଭାନେତ୍ରୀ । କିନ୍ତୁ କ୍ରେଡିଟ ନେବାପାଇଁ ସେ ରାଜିନୁହନ୍ତି । ବୋଝ ନେବାପାଇଁ ପ୍ରସ୍ତୁତ । ଇମିତି ମଣିଷଟିଏ ମିଳିବା କଠିନ ସତରେ ।

ସଂସାରକୁ ଆସିଥିଲେ । ସଂହାର କଲେ ନାହିଁ । କିନ୍ତୁ ସେ ପାଲଟିଗଲେ ଗାନ୍ଧାରୀ, କିଏ କହିଲା ତାଙ୍କର ପୁତ୍ର କନ୍ୟା ନାହାନ୍ତି ? ସେ ପରା ସହସ୍ର ପୁତ୍ର କନ୍ୟାଙ୍କର ମାଆ !

ଗଳ୍ପଟିଏ ମନେ ପଡୁଛି ।

ଲୋକଟିଏ ମରିଗଲା । ପଡ଼ୋଶୀ ବୁଢ଼ୀଟି ତାର ଚାକରକୁ କହିଲା । ଗଲୁ, ଦେଖିଆସିବୁ । ସେ ସ୍ୱର୍ଗକୁ ଗଲା କି ନାହିଁ । ସେଇଠି ବସିଥିଲେ ଜଣେ ପଣ୍ଡିତ । ସେ ଆଶ୍ଚର୍ଯ୍ୟ ହେଲେ । ମୁଁ ଏତେ ପାଠ ପଢ଼ିଲି, କିଏ ସ୍ୱର୍ଗକୁ ଗଲା କି ନାହିଁ, ଜାଣି ପାରିଲି ନାହିଁ । ଆଉ ଏଇ ଅଶିକ୍ଷିତ ବୁଢ଼ୀ ତାହା ଜାଣିଛି ? ସେ ବୁଢ଼ୀକୁ ପଚାରନ୍ତେ, ବୁଢ଼ୀ କହିଲା ପଣ୍ଡିତେ ଏତେପାଠ ପଢ଼ି ତମେ ଜାଣିପାରିଲ ନାହିଁ ଏଇ ଛୋଟ କଥାଟା ? ଯିଏ ମରିଗଲେ ଲୋକେ ଆହା କରନ୍ତି ଯିଏ ମରିଗଲେ ଲୋକ କାନ୍ଦନ୍ତି ସିଏ ଯାଏ ସ୍ୱର୍ଗକୁ ।

''ଦୁର୍ଗା ଭବନ'' ରେ ଭିଡ ଜମିଛି, ବିଭିନ୍ନ ବୟସ, ବିଭିନ୍ନ ଜୀବିକା, ବିଭିନ୍ନ ଶ୍ରେଣୀର ମଣିଷ । ସମସ୍ତଙ୍କ କଣ୍ଠରେ 'ଆହା' ! ସମସ୍ତଙ୍କ ଆଖି ଭିଜା ।

ମହାମାୟା ଆଉ ନାହାନ୍ତି । □□□

# ସମାଜସେବୀର ସମାଧିରେ ସ୍ତବକ

*(ଂ ମାଧବାନନ୍ଦ ପାଳ)*

ବନ୍ଧୁ ମାଧବାନନ୍ଦ ପାଳ କେବେ ବାହୁଡିଗଲେଣି ଜାଣି ପାରିଲି ନାହିଁ । ବନ୍ଧୁ, ସହକର୍ମୀ ମାଧବାନନ୍ଦ ପାଳ ଶିକ୍ଷାରେ ଥିଲେ ଟେକ୍ସଟାଇଲ ଇଂଜିନିଅର କିନ୍ତୁ ଦୀକ୍ଷା ଥିଲା ସମାଜସେବା । ଶେଷ ଦେଖା ହୋଇଥିଲା ସତୀଚଉରାରେ ବୋଧହୁଏ ସାରଙ୍ଗଧର ଦାସଙ୍କର ସମାଧି ପୀଠରେ ଅନୁଷ୍ଠିତ ସ୍ମୃତି ସଭାରେ । ଆଉ ଦେଖାହୋଇ ନାଇଁ କିନ୍ତୁ ଏହା ହୁଏତ ଶେଷ ଦେଖା ନୁହେଁ । ଦେଖା ହେବ ପୁଣି ସେଇଠି, ଯେଉଁଠାରୁ କେହି କେବେ ଫେରିନାହାନ୍ତି ।

ଆମେ ସବୁ ଥିଲୁ ହସ୍ତତନ୍ତ ନିଗମର ପରିଚାଳନା ମଣ୍ଡଳୀରେ ବେସରକାରୀ ସଭ୍ୟ । ପରମାନନ୍ଦ ହଜିଗଲେ କୁଆଡେ କୌଣସି ପତ୍ତା ନାହିଁ ଅନେକ ବର୍ଷ ଧରି । ମେହେର ବାହୁଡିଗଲେ ହଠାତ୍ । ତାଙ୍କୁ ଚିଠି ଦେଇଥିଲି । ବୁଣାକାରମାନଙ୍କ ସଂପର୍କରେ, ଚିଠି ଫେରି ଆସିଲା । ସେ ଆଉ ନାହାନ୍ତି । ବାକି ଥିଲୁ ଆମେ ଦୁଇଜଣ ମାଧବାନନ୍ଦ ବାବୁ ଓ ମୁଁ । ବର୍ତ୍ତମାନ ମୁଁ ଏକାକୀ ମାଧବ ବାବୁ ଆଉ ନାହାଁନ୍ତି । ସେ ବାହୁଡ଼ିଯିବା ଖବର କେହି ଦେଇ ନାହାନ୍ତି ।

ମାଧବ ବାବୁ ଜନ୍ମ ହୋଇଥିଲେ ୧୯୨୭ ମସିହା ଜୁନ୍ ୬ ତାରିଖରେ ଜଗତସିଂହପୁର(ସେତେବେଳେ ଅବିଭକ୍ତ କଟକ) ଜିଲ୍ଲା କୁଶିଙ୍ଗା ଗ୍ରାମରେ ପିତା ହୃଷୀକେଶ ପାଳ, ମାତା ମାଣିକ୍ୟ ଦେବୀଙ୍କ ଔରସରୁ ।

ପାସ କରିଥିଲେ ଟେକ୍ସଟାଇଲ ଇଂଜିନିଅରିଂ ଶାନ୍ତିନିକେତନରୁ । ମିଶନ ସ୍କୁଲରୁ ମାଟ୍ରିକ ପାଶ କଲାପରେ । ମହାତ୍ମାଗାନ୍ଧୀଙ୍କ ଡାକରା ଶୁଭୁଥିଲା । ବିଦେଶୀ ଲୁଗା ବର୍ଜନ କର ଡାକରା । ଟେକ୍ସଟାଇଲ ଇଂଜିନିଅର ଲୁଗା ବୁଣିବେ କ'ଣ, ଲୁଗା ପୋଡିବାର ମହାପର୍ବରେ ଝାସ ଦେଲେ ଆପଣାର ସବୁ ସାର୍ଟିଫିକେଟକୁ ଜାଳିଦେଇ ।

ସେ ଆଉ ପଛକୁ ଫେରି ଅନେଇ ନାହାନ୍ତି । କାରାବରଣ କରିଛନ୍ତି ଲବଣ ସତ୍ୟାଗ୍ରହରେ, କାରାବରଣ କରିଛନ୍ତି ସୋମନାଥ ପୋଡି ଘଟଣାରେ ଏବଂ କାରାବରଣ

କରିଛନ୍ତି ଯୌତୁକ ପ୍ରଥା ଉଚ୍ଛେଦ ଲାଗି ସଂଗ୍ରାମରେ । ଜୀବନର, ସମାଜର କୌଣସି ବିଭାବକୁ ସେ ଛାଡି ନାହାନ୍ତି । କାରଣ ସ୍ୱାଧୀନତା ପାଇଁ ତାଙ୍କର ସଂଗ୍ରାମ କେବଳ ରାଜନୈତିକ ସ୍ୱାଧୀନତା ପାଇଁ ସଂଗ୍ରାମ ନଥିଲା, ଥିଲା ଏକ ସାମାଜିକ କଳଙ୍କହୀନ, ସାମ୍ୟର ସମାଜ ।

ସେଇ ଯୋଗୁଁ ୧୯୪୦ ମସିହାରେ ସେ ଯେତେବେଳେ ଆତ୍ମଗୋପନ କରି ଗୁପ୍ତରେ ରାଜନୈତିକ କାର୍ଯ୍ୟ କରୁଥିଲେ ସେତିକିବେଳେ ସେ ସମାଜବାଦୀ ଦର୍ଶନ ପ୍ରତି ଆକୃଷ୍ଟ ହୋଇଥିଲେ । ସାମ୍ୟବାଦୀ ଦର୍ଶନରେ ଅନୁପ୍ରାଣିତ ହୋଇ ସେ ସୋସଲିଷ୍ଟ ପାଲଟିଯାଇଥିଲେ ।

୧୯୪୭ ମସିହାରେ ଭାରତର ରାଜନୈତିକ ସ୍ୱାଧୀନତା ସେଇଯୋଗୁଁ ତାଙ୍କ ଭିତରେ କ୍ଷମତାର ସିଡି ଚଢ଼ିବା ପାଇଁ ମୋହ ସୃଷ୍ଟି କଲା ନାହିଁ । ସେ ଆପଣାକୁ ନିଷ୍କ୍ରାନ୍ତ କରିନେଲେ କ୍ଷମତାର ଅଳିନ୍ଦରୁ ସମାଜସେବା ପାଇଁ ।

କିଛି କାଳ ସେ ଖଦୀବୋର୍ଡ଼ର ଡାଇରେକ୍ଟର ଏବଂ କିଛି କାଳ ଦଳର ଉପସଭାପତି ଥିଲେ ବୋଲି ମୋର ହେତୁ ହେଉଛି ।

ସାରଙ୍ଗଧର ଶିଶୁ ଉଦ୍ୟାନ, ନିଜ ଗ୍ରାମ କୁସିଙ୍ଗାର ଗାଦୀବ୍ରହ୍ମ ବିଦ୍ୟାପୀଠ, କାଦୁଆପଡ଼ା ବାଳିକା ବିଦ୍ୟାଳୟ ତାଙ୍କର ଆଲେଖ୍ୟ ବହନ କରେ । ବିଡ଼ାନାସୀ ଶିଶୁ ଭାରତୀ ବିଦ୍ୟାଳୟର ସେ ଥିଲେ ସଭାପତି । ବହୁ ଅନୁଷ୍ଠାନରେ ସେ ଆପଣାର ଅମଳିନ ସ୍ୱାକ୍ଷର ରଖି ଯାଇଛନ୍ତି ।

ସମ୍ମାନ ପାଇଛନ୍ତି ଆପଣାର ତ୍ୟାଗ ପାଇଁ, କାର୍ଯ୍ୟ ପାଇଁ । ୧୯୯୯ ମସିହାର ସ୍ୱାଧୀନତା ଦିବସରେ, ସେ ପାଇଥିଲେ ମହାନଗରପାଳଙ୍କଦ୍ୱାରା ସମ୍ମାନ । ଠିକ୍ ସେଇପରି ୨୦୦୩ ମସିହାରେ ପାଇଥିଲେ ସମ୍ମାନ, ସମାଜବାଦ ପାଇଁ ଆପଣାର ସଂଗ୍ରାମ ପାଇଁ । ଏଇ ଭଳି ରହିଛି ବହୁ ସମ୍ମାନ ।

କିନ୍ତୁ ସେ ରହିଯାଇଛନ୍ତି ସେଇପରି ବିନୀତ କିନ୍ତୁ ଦୃଢ଼ ।

ସେ ଆଉ ନାହାନ୍ତି । କେହି ରହିବେ ନାହିଁ । ସେ କିନ୍ତୁ ରହିବେ ସ୍ମୃତି ହୋଇ ଚିରକାଳ ଅପାର ଅଗଣିତ ବନ୍ଧୁ, ସହଯୋଦ୍ଧାମାନଙ୍କ ଭିତରେଏବଂ ସେମାନଙ୍କ ମଧରେ ମୁଁ ଜଣେ ।

□□□

# ଯୁଗଳ ଭାଇ

## (ଂ ଯୁଗଳ କିଶୋର ମହାନ୍ତି)

ସେ ଦିନ । ବାଲେଶ୍ୱରକୁ ଯାତ୍ରା ଯେ ମହାଯାତ୍ରାରେ ପରିଣତ ହୋଇଯିବ ଏ କଥା କିଏ ଜାଣିଥିଲା ? ଶୁଣିଥିଲି ଯେ ପ୍ରସିଦ୍ଧ ସାମ୍ବାଦିକ ଚକ୍ରପତି ରାଓଙ୍କ ମରଦେହ ଚିହ୍ନଟ ହୋଇ ନପାରି ବେଶ କିଛି ସମୟ ପଡିରହିଥିଲା ଏକ ଛୋଟ ରାସ୍ତାକଡ ଚାହା ଦୋକାନରେ । ସେମିତି ପଡି ରହିଲା ଜଷ୍ଟିସ୍ ଯୁଗଳ କିଶୋର ମହାନ୍ତିଙ୍କର ମରଦେହ ଏକ ଛୋଟିଆ ରେଲ୍‌ଷ୍ଟେସନର ପ୍ଲାଟଫର୍ମରେ । କୌଣସି ଦାବି, ଅନୁରୋଧ ସେ ସହଜରେ ନାହିଁ କରନ୍ତି ନାହିଁ । ଦିଲ୍‌ଦାର ମଣିଷ ।

ତା'ପୂର୍ବରୁ କିଛି ଦିନ ଆଗରୁ ଏକ ସଂଧ୍ୟା ସଭା ଟାଉନହଲରେ । ଜଷ୍ଟିସ୍ ରାଜକିଶୋର ଦାସ ତାଙ୍କର ଶ୍ୱଶୁର, ମୋର ମଉସା । ସେ ଅସୁସ୍ଥ ଥିଲେ । ମୁଖ୍ୟ ଅତିଥି ଯୁଗଳବାବୁ ଫେରିବାକୁ ଚାହୁଁଥିଲେ ସଭାରୁ ଟିକିଏ ଶୀଘ୍ର । ମୁଁ ସେଦିନ ବକ୍ତା ।

ଜଷ୍ଟିସ୍ ହରିହର ମହାପାତ୍ର, ଅଧାପକ ଡକ୍ଟର ସଦାଶିବ ମିଶ୍ର, ଅଧାପକ ଶ୍ରୀରାମ ଚନ୍ଦ୍ର ଦାଶଙ୍କର ସଭାସମିତି ପାଇଁ କାଟ୍‌ତି ବହୁତ । ବହୁ ପ୍ରକାର ସଭାସମିତିକୁ ସେମାନଙ୍କୁ ନିମନ୍ତ୍ରଣ ମିଳେ । ସେମାନେ ସମସ୍ତେ ବାହୁଡି ସାରିଛନ୍ତି । କଟକ ସହରଟା ଧୀରେ ଧୀରେ ମୁରବୀଶୂନ୍ୟ ହୋଇଯାଉଛି ।

ମୁଁ ସେଇ କଥା କହୁଥିଲି । ଏହା ପରେ ଯେଉଁମାନେ ଅଛନ୍ତି ସେମାନଙ୍କ ମଧ୍ୟରେ ଜଷ୍ଟିସ୍ ଯୁଗଳ କିଶୋର ମହାନ୍ତି ଅନ୍ୟତମ । ସେ ତାଙ୍କ ଭାଷଣରେ ଉତ୍ତର ଦେଇ କହିଲେ ଯେ I am a poor substitute and let us see for, how long.

ଯୁଗଳ ଭାଇଙ୍କ ଦେହ ଖରାପ ହେବାକୁ ଆରମ୍ଭ କରିଥିଲା ଏବଂ ସେ ସେଇ କଥାକୁ ଉପଲକ୍ଷ୍ୟ କରି କହୁଥିଲେ । ବିନୟୀ ମଣିଷ । ତେଣୁ ଭାଷା ବି ବିନୀତ । କଠୋର ଭାଷାରେ କହନ୍ତି ନାହିଁ, କହି ପାରିନାହାନ୍ତି ।

ବହୁ ସଭା ସମିତିକୁ ଡାକରା ଆସେ । ନମନ୍ତ୍ରଣକୁ ସେ ମନା କରିପାରନ୍ତି ନାହିଁ । ସେ ଦିନ ବି ନିମନ୍ତ୍ରଣ ଆସିଥିଲା ବାଲେଶ୍ୱରରୁ । ସେ ଟ୍ରେନରେ ଯାଉଥିଲେ । କିନ୍ତୁ ଏଇ ଯାତ୍ରା ଯେ ସରିବ ନାହିଁ ଏବଂ ସେ ଆଉ ଫେରିବେ ନାହିଁ ଏକଥାର ତ କୌଣସି ଇସାରା ନଥିଲା ।

ତେବେ ଗଲେ କାହିଁକି ? ଏବଂ ଗଲେ କୁଆଡେ ? ଏହାର ଉତ୍ତର କିଏ ଦେବ ?

ଯୁଗଳ ବାବୁ ମୋର ବନ୍ଧୁ ଏବଂ ବାନ୍ଧବ । ତାଙ୍କର ସ୍ତ୍ରୀ ମୋ ସ୍ତ୍ରୀଙ୍କର ସମ୍ପର୍କୀୟା ଭଉଣୀ । ଜଷ୍ଟିସ ରାଜକିଶୋର ଦାସଙ୍କ ଘରେ ମୋ ସ୍ତ୍ରୀ ତାଙ୍କ ଛାତ୍ର ଜୀବନର ବହୁ ବର୍ଷ କଟାଇଛନ୍ତି । ସେ ସମ୍ପର୍କ ନିବିଡ ରହିଥିଲା । ଯୁଗଳ ବାବୁ କଲେଜରେ ମୋର ସିନିଅର । ତାଙ୍କ ସହିତ ପରିଚିତ କଲେଜ ଜୀବନରୁ । ସେଇ ହସ ହସ ମୁହଁ କଥିଁକ କଥା ସେଇ ଦିନରୁ ।

ଓକିଲ (ପରେ ଜଷ୍ଟିସ୍) ରାଜକିଶୋର ଦାସ ଆମ ଓକିଲ, ଦରିଦ୍ର ମଣିଷର ଓକିଲ । ଚାଷୀ, ମୂଲିଆ, ଛାତ୍ରଙ୍କ ଓକିଲ । ଯେଉଁମାନଙ୍କୁ ପାଖକୁ ବିନା ଫିସରେ ଲଢ଼ିବାକୁ ଅନୁରୋଧ କରାଯାଇପାରେ ସେମାନଙ୍କ ମଧ୍ୟରେ ଜଷ୍ଟିସ୍ (ଆଗ ଓକିଲ) ହରିହର ମହାପାତ୍ର, ରାଜକିଶୋର ଦାସ, ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ ମନେପଡନ୍ତି । ପର ପୀଢ଼ିରେ ରଣଜିତ୍, ପ୍ରବୀର ଦା, ଯୁଗଳଭାଇ, ରାମଚନ୍ଦ୍ର ରାମ ପ୍ରଭୃତି କେତେ ବନ୍ଧୁ । ଯୁଗଳବାବୁ ଜଷ୍ଟିସ୍ ରାଜକିଶୋର ଦାସଙ୍କ ଜାମାତା ହେବାପରେ ଦାବୀ ଦୁଇଗୁଣ ହୋଇଛି । ସେ କଦାପି ନାହିଁ କରି ନାହାନ୍ତି । ବର୍ତ୍ତମାନ ଆମ ଭିତରେ ସେଇ ପୀଢ଼ିର କୁନିଭାଇନା ଅଛି ।

ଓକିଲାତି ପରେ ବିଚାରପତି । ମନେ ପଡୁଚି । କେତେଥର ନିମନ୍ତ୍ରଣ କରିଛନ୍ତି । ଆସୁନ ଥରେ ଗ୍ୟାଙ୍ଗଟକ୍ କମଳ ଆଉ ପିଲାମାନଙ୍କୁ ନେଇ । ଥରେ ନୁହେଁ, ଅନେକଥର ଏଇ ନିମନ୍ତ୍ରଣ । ହେଲେ ଯାଇ ପାରିନି । ସେ ଗଲେ ଚାଲି । ମୁଁ ଯାଉ ଯାଉ ଅଟକି ଯାଇଛି । ଏଥରକ ଡାକିଲେ ଯିବି । ହେଲେ ଫେରିବାର ତ ଆଉ ପ୍ରଶ୍ନ ଉଠୁନି । ତମେ ତ ବ୍ୟସ୍ତ ଥିବ ନିଶ୍ଚୟ । ମୁଁ ବି ମିଶିଯିବି ତମ ସାଂଗରେ ।

ଯୁଗଳଭାଇ ହଠାତ୍ ବିପତ୍ନୀକ ହୋଇଗଲେ । ଯାଇଥିଲେ ଧାଇଁ ସପରିବାର । ଯୁଗଳବାବୁ ନିର୍ଲିପ୍ତ । ସେ ଚାଲିଗଲେ ବୋଲି ତମ ସହିତ ସମ୍ପର୍କ କଟିଗଲା ନାହିଁ ତ ? ସେ ମୋ ସ୍ତ୍ରୀଙ୍କୁ କହିଲେ । ଗିରିଜା କଥା ସ୍ୱତନ୍ତ୍ର । ତମ ସହିତ ସମ୍ପର୍କ ଲିଲି (ତାଙ୍କ ସ୍ତ୍ରୀ) ଯୋଗୁଁ । କାରଣ ତମେ ଓ ବିଲି (ତାଙ୍କ ଶାଳୀ) ସମାନ ।

ଯୁଗଳବାବୁ ନାହାନ୍ତି । କେହି ରହିବେ ନାହିଁ । ତେବେ କଟକ ସହରର ସେ ଥିଲେ ଅନ୍ୟତମ ମୁରବୀ । ଭଲ ମନ୍ଦରେ ତାଙ୍କୁ ଖୋଜା ପଡୁଥିଲା, ବିଭିନ୍ନ ଶ୍ରେଣୀ, ସାହୀର ଲୋକେ ତାଙ୍କୁ ଲୋଡୁଥିଲେ । ସଭା ସମିତିଠାରୁ ଆରମ୍ଭ କରି ପର୍ବପର୍ବାଣୀ ପର୍ଯ୍ୟନ୍ତ । ତାଙ୍କର ପରଲୋକରେ ଏଇ ସହର ଦରିଦ୍ର, ମୁରବୀହୀନ ହୋଇଛି ।

ସେଇ ତ ତାଙ୍କର ଜୀବନର ସାର୍ଥକତା ।

□□□

## ସ୍ତମ୍ଭକାର ପୁଲିସ

(୰ ରବି ଦାସ)

ରବିଙ୍କୁ ମୁଁ ଜାଣିଥିଲି ସ୍କୁଲ ଜୀବନରୁ । ସେ ରେଭେନ୍ସା କଲେଜିଏଟରେ ଛାତ୍ର ଥିଲେ । ସେଇ ଦିନରୁ ପରିଚିତ । ସେଇଟା ବୋଧହୁଏ ୧୯୫୬ ମସିହାର କଥା । ଆନ୍ଦୋଳନ, ସାମାଜିକ କାର୍ଯ୍ୟ, ଛାତ୍ର ସଂଗଠନ ପାଇଁ ସଭ୍ୟ ଓ କର୍ମୀ ସଂଗ୍ରହ ଏଇସବୁ କାମ ପାଇଁ ତାଙ୍କର ସଂଧାନ ମିଳିଥିଲା । ପରେ ସେ ଖ୍ରୀଷ୍ଟ କଲେଜରେ ଛାତ୍ରଥିବା ଅବସ୍ଥାରେ ସମ୍ପର୍କ ନିବିଡ ହୋଇଥିଲା ।

ତେଣୁ ରବି ମୋପାଇଁ ପୁଲିସ ଅଫିସର ବା ପୁଲିସ ଆସୋସିଏସନର ନେତା ନଥିଲେ, ଥିଲେ ବ୍ୟକ୍ତିଗତ ବନ୍ଧୁ । ଖ୍ରୀଷ୍ଟ କଲେଜରୁ ରାଜସ୍ୱ କମିଶନର ଅଫିସର କିରାନୀ ତାପରେ ୧୯୬୫ ରେ ପୁଲିସ ସବ୍‌ଇନସପେକ୍ଟର ଚାକିରି ଆରମ୍ଭ । ଦେଖା ହୋଇଛି ବାରମ୍ବାର । ସେଇ ପୁରୁଣା ଆତ୍ମୀୟତା ଭୁଲିନାହୁଁ । ମୋଠାରୁ ଦଶବର୍ଷ ସାନ ତେଣୁ କନିଷ୍ଠର ସବୁ ଅଧିକାର, ଜିଗର ତାର ପ୍ରାପ୍ୟ । ଚାକିରି କରିଛି ପୁଲିସ । କ୍ରାଇମ ବ୍ରାଞ୍ଚ, ସ୍ପେଶାଲ ବ୍ରାଞ୍ଚ, ମାନବିକ ଅଧିକାର ସୁରକ୍ଷା କମିଶନ୍ ପ୍ରଭୃତି ବିଭିନ୍ନ ବିଭାଗରେ କାର୍ଯ୍ୟ କରିଛି । କିଛି ଦିନ ଲାଲବାଗ ଥାନାରେ ଥିଲା ବୋଲି ହେତୁ ହେଉଛି ।

ନେତୃତ୍ୱ ନେବାର ଇଚ୍ଛା ଥିଲା । ଛାତ୍ର ଜୀବନରୁ । ୧୯୭୯ ରୁ ୧୯୯୫ ପର୍ଯ୍ୟନ୍ତ ପୁଲିସ ଆସୋସିଏସନ୍‌ରେ ସଭାପତି । ଏତେ ଦୀର୍ଘକାଳ ନିରବଛିନ୍ନ ଭାବରେ ସଭାପତିତ୍ୱ ଅଭୂତପୂର୍ବ କେବଳ ନୁହେଁ ରବିର ଜନପ୍ରିୟତାର ଲକ୍ଷଣ ମଧ୍ୟ ।

ଦେଖା ହୋଇଛି । ଜୀବନର ଧାରା ବଦଳି ଯାଇଛି । ବର୍ତ୍ତମାନ ବ୍ୟାରିକେଡର ଦୁଇ ପାଖରେ । କିନ୍ତୁ ଆତ୍ମୀୟତା କ୍ଷୁର୍ଣ୍ଣ ହୋଇନାହିଁ କାରଣ ରବିର ଚାକିରି ଯେପରି ଜୀବିକା ପାଇଁ, ସେଇପରି ସାମାଜିକ ଅଙ୍ଗୀକାର ପାଇଁ । ତେଣୁ ବୈରତାର ପ୍ରଶ୍ନ କେଉଁଠି ? ବରଂ ସାହାଯ୍ୟ ମିଳିଛି । ସେ କଥା ମନେ ପଡ଼ିଲେ ଆଖି, ମନ ଭୁଲି ହୋଇଯାଏ । ସମୟ ଅତିକ୍ରାନ୍ତ ହୋଇଛି । ରବି ଅଣନିଶ୍ୱାସୀ ହୋଇ ଉଠିଲେଣି । ଚାକିରି ଯଥେଷ୍ଟ ହୋଇଗଲା । ତେଣୁ ସେ ସ୍ୱେଚ୍ଛାକୃତ ଅବସର ନେଇଗଲେ । ୧୯୯୫ ମସିହାରେ ।

ନେତା ହେବା ପାଇଁ ଇଚ୍ଛା ଥିଲା ପିଲା ଦିନରୁ । ରାଜନୀତି କଲେ କିମିତି ହୁଅନ୍ତା ? ନିର୍ବାଚନଟାଏ ଲଢ଼ିଲେ କିମିତି ହୁଅନ୍ତା ? ଦେଖାଯାଉ । ରବି ରାଷ୍ଟ୍ରବାଦୀ କଂଗ୍ରେସରେ ଯୋଗଦେଲେ ଏବଂ ନିର୍ବାଚନଟାଏ ମଧ୍ୟ ଲଢ଼ିଲେ । କିନ୍ତୁ ପୁଣି ଫେରିଗଲେ ଲେଖାଲେଖି କରିବା ପାଇଁ । ଜଣେ ଜଣାଶୁଣା ପାରିବାର ସ୍ତମ୍ଭକାର ପାଲଟିଗଲେ । ଲେଖିଲେ ବିଭିନ୍ନ କାଗଜରେ, ବିଭିନ୍ନ ବିଷୟରେ । ପୁଣି ଦେଖାହୁଏ ରବି ସେଇପରି କର୍ମଠ, ଚଳଚଞ୍ଚଳ ଏବଂ ବଡପାଟିଆ ।

ଆପଣ ତ ୟୁନିଭର୍ସ କରିଛନ୍ତି । କରପ୍ଟ ଭ୍ରଷ୍ଟାଚାରୀମାନଙ୍କୁ.... ବିଷୟରେ ରାସ୍ତା ଉପରେ ରବିର ଭାଷଣ । ଚୁପ୍ ରବି, ବିଜୟ ପାଣିଗ୍ରାହୀ ଆମର କାର୍ଯ୍ୟକ୍ରମ ସଂପାଦକ ଜାଣିଛୁ ତ ? ସରି । କାନଧରୁଛି । ଭୁଲ୍ ହୋଇଗଲା ମୋର । ରବିର ଉକ୍ତି । ଆଉ ଏ ଭୁଲ୍ ହେବ ନାହିଁ ।

ରବି ଏବଂ ମୁଁ ଉଭୟେ ମଧୁମେହ ରୋଗରେ ଆକ୍ରାନ୍ତ । ଫୋନରେ ପଚାରେ । କିମିତି ଅଛନ୍ତି ? ଚାଉଳିଆଗଂଜରେ ରହେ । ଅନେକ ବାଟ ସତରେ, ଆମ ଭଳି ବ୍ୟକ୍ତିମାନଙ୍କ ପାଇଁ । ରବି ଆଉ ମୁଁ ଉଭୟେ ଅସୁସ୍ଥ । ସାଇକେଲ ଆଉ କରି ହେଉନି । ହଠାତ୍ ରବିର ମୃତ୍ୟୁ ସଂବାଦ ଖବରକାଗଜରୁ । ଠିକଣା ହଜି ହଜି ଗଲାଣି । ଖବରକାଗଜରୁ ଜାଣିବାକୁ ହେବ ଖବର ।

ଜନ୍ମିଲେ ମରଣ ସତ୍ୟ । କେହି ରହିବେ ନାହିଁ କିନ୍ତୁ ରବି ରହିବ ସ୍ମୃତ ହୋଇ ତାର ଅଗଣିତ ବନ୍ଧୁଙ୍କ ଗହଣରେ । ପୁଲିସ ବଂଧୁ ନୁହନ୍ତି, ସମସାମୟିକ ସବୁ ବନ୍ଧୁଙ୍କ ଭିତରେ । ଦଶ ବର୍ଷ ସାନ । ଆଗରୁ ଚାଲିଗଲା । ମୁଁ ଅଛି ଜୀବନ୍ମୃତ ହୋଇ ।

□□□

# ସହଯୋଦ୍ଧାର ଅବର୍ତ୍ତମାନରେ

*(୰ ରାମକୃଷ୍ଣ ବେହେରା)*

ରାମକୃଷ୍ଣ ବେହେରା ଆଉ ନାହାନ୍ତି । କଳିଙ୍ଗ ହସ୍‌ପିଟାଲରେ ସେ ଆଖି ବୁଜିଦେଇଛନ୍ତି ଅଗଷ୍ଟ ଦୁଇ ତାରିଖ, ୨୦୦୬ ମସିହାରେ । ଖବର ପାଇଲି ଦୂରଦର୍ଶନରୁ । ଯାଇ ଶେଷ ଦର୍ଶନ କରିବାର ଶକ୍ତି ନାହିଁ । ଲେଖି ମଧ୍ୟ ହେଉନାହିଁ ଦି'ପଦ ଶ୍ରଦ୍ଧାଞ୍ଜଳି ଦେବାପାଇଁ ।

ସେ ଓ ମୁଁ ଏକା ବୟସର । ୭୫ ପୂରିଚି । ଆମେ ସହପାଠୀ, ମୁଁ ରେଭେନ୍‌ସା କଲେଜରେ, ସେ ଖଲିକୋଟ କଲେଜରେ । ଦୁହେଁ ଆସିଥିଲୁ ସ୍ୱାଧୀନତା ସଂଗ୍ରାମକୁ ଛାତ୍ରାବସ୍ଥାରେ । ଦୁହେଁ ବାମପନ୍ଥୀ ଆନ୍ଦୋଳନକୁ ଆସିଥିଲୁ ଏକା ସଂଗରେ । ନିଖିଳ ଭାରତ ଛାତ୍ରସଂଘର କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ହୋଇଥିଲୁ ଏକା ବର୍ଷ, ୧୯୫୧ ମସିହାରେ । ସେ ଫଟୋକୁ ଅନେଇଲା ବେଳକୁ ଆଖି ଭରିଯାଉଛି ଲୁହରେ । ସେ ଫଟୋରେ ଥିବା କେତେ ହଜିଗଲେଣି । ଗାନ୍ଧିକ ଅଖିଳମୋହନ, ବ୍ରଜବଂଧୁ ମିଶ୍ର, ଆଡଭୋକେଟ ପ୍ରବୀର ପାଲିତ, ଗୋକୁଳାନନ୍ଦ ଓ ଆଜି ଗଲେ ରାମକୃଷ୍ଣ । ଅଧବାଟରେ ରହିଯାଇଛୁ ଆମେ । ମୁଁ ଆଉ କେତେକ । ଆମେ ଦୁହେଁ ଏକ ସମୟରେ ମସ୍ତିଷ୍କ ରକ୍ତସ୍ରାବରେ ଆକ୍ରାନ୍ତ ହେଲୁ । ଏକା ସଂଗରେ କାମ କରିଥିଲୁ ବହୁ ଦଶନ୍ଧି ଧରି । ସେ ସ୍ମୃତି ଅଭୁଲା । ବହୁ ପ୍ରକାର କାର୍ଯ୍ୟ ସଂଗଠନ, ଆନ୍ଦୋଳନ, ରିଲିଫ୍, ସ୍ମୃତିକମିଟି ଇମିତି କେତେ ପ୍ରକାରର କାମ ।

ସେ କଲେଜ ପଢ଼ାସାରି ବ୍ରହ୍ମପୁରରେ ସାମ୍ବାଦିକ ହେଲେ । ବୋଧହୁଏ ମାତୃଭୂମିର ପ୍ରତିନିଧି ଭାବରେ । ତାଙ୍କୁ କଟକକୁ ଆଣିଲେ ୰ ଅଧ୍ୟାପକ କୃଷ୍ଣ ପଟ୍ଟନାୟକ । କୃଷ୍ଣ ବାବୁ ଜେଲଖାନାରୁ ଫେରି ଯୋଗଦେଇଥାନ୍ତି ମାତୃଭୂମିରେ । ଆନ୍ତର୍ଜାତିକ ସଂବାଦ ଲେଖିବା ଥିଲା ତାଙ୍କର ସ୍ୱତନ୍ତ୍ର ଦାୟିତ୍ୱ । ସେ ଅସୁସ୍ଥ ହୋଇଉଠିଲେ । ଜଣେ ସହଯୋଗୀ ଆବଶ୍ୟକ । ୰ ବାଳକୃଷ୍ଣ କର ତାଙ୍କୁ ଅନୁରୋଧ କଲେ । ସେ ବାଛିଲେ ରାମକୃଷ୍ଣଙ୍କୁ । ରାମକୃଷ୍ଣ ଆସିଲେ କଟକ, ମାତୃଭୂମି ଖବର କାଗଜକୁ । ଜୀବନର ନୂତନ ଦିଗନ୍ତ ଉନ୍ମୋଚିତ ହେଲା । ସେ

ଆଉ ପଛକୁ ଫେରି ଚାହିଁ ନାହାନ୍ତି । ସେଇ କଥା ସେ ପଖାଳନ୍ତି ପ୍ରତିବର୍ଷ ଅଧ୍ୟାପକ କୃଷ୍ଣ ପଟ୍ଟନାୟକଙ୍କ ସ୍ମୃତି ସଭାରେ, ଯେଉଁଠି ଗଲା ୧୦/୧୨ ବର୍ଷ ହେବ ଆମେ ଏକାଠି କାମ କରିଛୁ ।

ମାତୃଭୂମିରୁ ପି.ଟି.ଆଇ., କଟକରୁ ଭୁବନେଶ୍ୱର, ପ୍ରତିନିଧି ପଦବୀରୁ ପି.ଟି.ଆଇ.ର ଆଞ୍ଚଳିକ ମୁଖ୍ୟ । ତାଙ୍କର ପ୍ରତିଷ୍ଠା ବଢ଼ିଛି, ସମ୍ମାନ ବଢ଼ିଛି । ପରିଚିତି ବ୍ୟାପକ ହୋଇଛି । ସେ କିନ୍ତୁ ରହିଯାଇଛନ୍ତି ସେଇପରି ବିନୀତ, ନିର୍ଭୀକ ଏବଂ ନିରପେକ୍ଷ । ସମ୍ବାଦ ପରିବେଷଣରେ ତାଙ୍କର ନିରପେକ୍ଷତା, ସାଧୁତା ଉପରେ କେହି ସନ୍ଦେହ କରିନାହାନ୍ତି, ଦଳମତ ନିର୍ବିଶେଷରେ, ଯଦିଓ ତାଙ୍କର ନିଜର ମତବାଦ ଉପରେ କାହାରି ସନ୍ଦେହ ନଥିଲା । କେବଳ କଥାରେ ନୁହେଁ କାର୍ଯ୍ୟରେ ମଧ୍ୟ ସେ ଥିଲେ ରାଡିକାଲ । ଆମ ଭଳି ବନ୍ଧୁମାନଙ୍କର ତାଙ୍କ ପ୍ରତି ସମ୍ମାନ ବଢ଼ିଯାଇଥିଲା ।

ସାମ୍ବାଦିକ ଭାବରେ ସେ ୰ ଏନ୍.ଆର. ସ୍ୱାମୀଙ୍କ ଉଦାହରଣ ଦିଅନ୍ତି । ସମ୍ବାଦ ନିରପେକ୍ଷ ଭାବରେ ପରିବେଷଣ କର, କିନ୍ତୁ ସମ୍ବାଦ କେଉଁଠାରୁ ପାଇଲ ତାହା ଦର୍ଶାଅ ନାହିଁ । ସେଥିପାଇଁ କୌଣସି ପ୍ରଲୋଭନର ଶିକାର ହୁଅ ନାହିଁ । ରାମକୃଷ୍ଣଙ୍କ ଜୀବନୀ ତାହା ପ୍ରମାଣିତ କରେ । ଘରଟିଏ କରିଥିଲେ, ତାକୁ ବିକିବାକୁ ବାଧ ହେଲେ । ପରେ ବୀର ସୁରେନ୍ଦ୍ର ସାୟ ନଗରରେ ଘରଟିଏ କଲେ, ଅବସର ପରେ ନିଜଘରେ ରହିବାପାଇଁ ।

ନିର୍ଭୀକ, ନିରପେକ୍ଷ ସାମ୍ବାଦିକତା ପାଇଁ ଜଣେ ସାମ୍ବାଦିକଙ୍କୁ ପୁରସ୍କୃତ କରିବା ପାଇଁ ସ୍ଥିର ହେଲା । ନାମ ଚୟନ ପାଇଁ ଏକ କମିଟି ଗଠନ କରାଯିବ । ତତ୍‌କାଳୀନ ସମାଜ ସଂପାଦକ ରାଧାନାଥ ରଥ କିନ୍ତୁ ପ୍ରସ୍ତାବ କଲେ ରାମକୃଷ୍ଣଙ୍କ ନାମ ଏବଂ ଉପସ୍ଥିତ ସବୁ ବ୍ୟକ୍ତି ସଂପାଦକ, ସାମ୍ବାଦିକ ଏଥିରେ ଏକମତ ହେଲେ । ଗଲା ଦୁଇବର୍ଷରେ ମନୋନୟନ କରି ନାହାନ୍ତି, କିନ୍ତୁ ପ୍ରତିବର୍ଷ ସେ ଏକାକୀ ଏହି ମନୋନୟନ କରିଆସିଛନ୍ତି । ତାଙ୍କର ନିରପେକ୍ଷ ମନୋନୟନରେ କାହାରି ଆପତ୍ତି ଉଠିନାହିଁ ।

ଜନ୍ମ ହୋଇଥିଲେ ବ୍ରହ୍ମପୁର ସହରର ଲାଞ୍ଜିପଲ୍ଲୀରେ । ଅନାମଧେୟ ସାମ୍ବାଦିକତାରୁ ସେ ଉଠି ହେଲେ ପି.ଟି.ଆଇ.ର ଆଞ୍ଚଳିକ ମୁଖ୍ୟ । ଅବସର ନେଲାପରେ ସେ ଆଉ କୌଣସି ପଦପଦବୀ ଲୋଡିନାହାନ୍ତି । କେବଳ କିଛି କାଳ ପାଇଁ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ ବୋଲି ହେତୁ ହେଉଛି ।

ସେ ଥିଲେ ବଂଧୁ, ସହପାଠୀ, ସହଯୋଦ୍ଧା, ସମଧର୍ମୀ । ପିଲାମାନଙ୍କୁ କରି ଯାଇଛନ୍ତି ନିର୍ଭୀକ, ସାହସୀ । ସେମାନେ ପାରି ଉଠିଲେଣି । ତାଙ୍କର ରହିବାର ଆବଶ୍ୟକତା

ମୋ ଭଳି ନାହିଁ । ରହିବେ କାହିଁକି ? କିନ୍ତୁ ସେଇଟା କ'ଣ କାହା ଉପରେ ନିର୍ଭର କରେ ? ରାମକୃଷ୍ଣ ଥିଲେ ରେସ୍‌ନାଲ, ବିଶାଳ, ଠିକ୍ ଭାରତୀୟ ପରମ୍ପରା ପରି । ସଂକୀର୍ଣ୍ଣତା ତାଙ୍କୁ ଆଦୌ ଗ୍ରାସ କରିନଥିଲା । ଦରମାବୃଦ୍ଧି ବିରୋଧୀ ଆନ୍ଦୋଳନ, ଦଳେଇଘାଇ, ସୀମାଆନ୍ଦୋଳନ, ରିଲିଫ କାର୍ଯ୍ୟ..... ସ୍ମୃତି ହାବୁକା ମାରୁଚି ।

ସେ ସ୍ମୃତି ହୋଇ ରହିବେ ତାଙ୍କର ମଣିଷପଣିଆ, ଉଦାରତା, ନିର୍ଭିକତା ଏବଂ ନିରପେକ୍ଷତା ପାଇଁ । ଗଲା ଥର ଆସିଥିଲେ ଖାଲି କହିଲେ ଝିଅ ଗାଡି ଦେଇଚି, ଆଉ ତ କିଛି କହିପାରିଲେ ନାହିଁ । କୁଆଡ଼େ ଗଲ ରାମକୃଷ୍ଣ ?

ତମ ପାଇଁ ଧାରେ ଲୁହ ।

ଆଖି ପଥର ପାଲଟି ଯାଇଛି ।

ଲୁହ ନିଗୁଡୁ ନାହିଁ ।

□□□

# ଆନାଟୋମିର ଏନ୍‌ସାଇକ୍ଲୋପେଡିଆ

*(ଂ ରାୟକୃଷ୍ଣ ମହାନ୍ତି)*

ଅଧ୍ୟାପକ ଡାକ୍ତର ରାୟକୃଷ୍ଣ ମହାନ୍ତିଙ୍କର ଆଜି ପରଲୋକ ହୋଇଗଲା । ବର୍ଷାତୁର ସକାଳ । ସଦ୍ୟ ଭିଜାମାଟିର ଗନ୍ଧରେ ଧରଣୀ ଭାରାକ୍ରାନ୍ତ । ଜୁନ୍ ପହିଲା । ୧୯୯୩ ମସିହା । ରାୟକୃଷ୍ଣ ମହାନ୍ତି ଆଉ ନାହାନ୍ତି । ବୟସ ହୋଇଥିଲା; କିନ୍ତୁ ଥିଲେ କର୍ମଠ । ଜନ୍ମ ହୋଇଥିଲେ ୧୯୦୬ ମସିହାରେ । ଘର ବେଣ୍ଟକାର, କଟକ ଜିଲ୍ଲା । ପାଠ ପଢ଼ିଥିଲେ ପୁରୀ ଜିଲ୍ଲା ସ୍କୁଲ ଓ ରେଭେନ୍‌ସା କଲେଜରେ । ତା'ପରେ ପାଟନା ମେଡିକାଲ କଲେଜ । ମେଡିକାଲ କଲେଜରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲା ପରେ ଓଡିଶା ପ୍ରତ୍ୟାବର୍ତ୍ତନ ଏବଂ ଗୋପବନ୍ଧୁ ଚୌଧୁରୀଙ୍କ ନିର୍ଦ୍ଦେଶରେ ଓଡିଶା ଯାତ୍ରା ସମୟରେ ମହାତ୍ମା ଗାନ୍ଧୀଙ୍କ ଡାକ୍ତର । ମହାତ୍ମା ଗାନ୍ଧିଙ୍କ ସହିତ ରହି ରାୟକୃଷ୍ଣ ମହାନ୍ତିଙ୍କର ଭୟ ତୁଟିଯାଇଥିଲା । ଓଡିଶା ସରକାରଙ୍କର ଅଧୀନରେ କିଛି ବର୍ଷ ଚାକିରି । ତା'ପରେ ଆମେରିକା ଯାତ୍ରା । ୧୯୪୯ ମସିହା । ଦ୍ୱିତୀୟ ମହାଯୁଦ୍ଧର ସମୟ । ତଥାପି ରାୟକୃଷ୍ଣ ମହାନ୍ତି ଚାଲିଲେ ଆମେରିକା ଉଚ୍ଚ ଶିକ୍ଷା ପାଇଁ । ଆକାଶ, ସମୁଦ୍ର ସବୁ ବିପଦସଙ୍କୁଳ । ତଥାପି ଯିବାର ଦୁର୍ବାର କାମନା ତାଙ୍କୁ ନେଇଗଲା ଆମେରିକା । ଆମେରିକାରେ ଟରେଣ୍ଟୋ ବିଶ୍ୱବିଦ୍ୟାଳୟରେ ଆନାଟୋମି । ଆନାଟୋମି ବା ଶରୀର ତତ୍ତ୍ୱ ମେଡିକାଲ ପାଠ୍ୟକ୍ରମର ସବୁଠାରୁ କିଟିମିଟିଆ ପାଠ । ଗ୍ରେଙ୍କର ଆନାଟୋମିକୁ ଯିଏ ଯେତିକି ଦୋରସ୍ତ କରିପାରିଛି ମେଡିକାଲ ପାଠ ତା'ର ସେତିକି ଆୟତ୍ତ ହୋଇଛି । ଆନାଟୋମି ବହିକୁ ରାୟକୃଷ୍ଣ ମୁଖସ୍ଥ କରି ଦେଇଥିଲେ । ବହୁକାଳ ଧରି ସେ ସ୍ମୃତ ହୋଇ ରହିଥିଲେ ଟରେଣ୍ଟୋ ବିଶ୍ୱବିଦ୍ୟାଳୟରେ ଏଇଥି ପାଇଁ । ଟରେଣ୍ଟୋରେ ପାଠପଢ଼ା ସରିଲା । ସେ ବଲଟିମୋରର ପ୍ରସିଦ୍ଧ ହପ୍‌କିନ୍‌ସ ଇନ୍‌ଷ୍ଟିଚ୍ୟୁଟରେ ଯୋଗଦେଲେ ଦୁଇ ବର୍ଷ ପାଇଁ ଗବେଷଣା ସକାଶେ । ୧୯୪୩ ରୁ ୧୯୪୯ । ବିଦେଶ ରହଣୀ ସାରି ରାୟକୃଷ୍ଣ ମହାନ୍ତି ଯୋଗଦେଲେ କଟକ ମେଡିକାଲ କଲେଜର ଆନାଟୋମି ବିଭାଗରେ । ଯଥା ସମୟରେ ସେ ହେଲେ ଏହି ବିଭାଗର ପ୍ରଫେସର । ନୋଟବହି ଦରକାର ନାହିଁ ପଢ଼ାଇବା ପାଇଁ । ସଂପୂର୍ଣ୍ଣ ଆନାଟୋମି ମୁଖସ୍ଥ ରହିଛି କଣ୍ଠରେ ।

ପିଲାମାନେ ମୁଗ୍ଧ ହୋଇ ଶୁଣନ୍ତି । 'ଚିରି ଭିତରେ ଦେଖ, କି ନାରଖାର' । ପାଠ ବହୁତ ଜଟିଳ । କିନ୍ତୁ ରାୟକୃଷ୍ଣ ବାବୁଙ୍କ କଣ୍ଠରେ ତାହା ମଧୁର ପାଲଟିଯାଏ । ରାୟକୃଷ୍ଣ ମହାନ୍ତି ପ୍ରିନ୍‌ସିପାଲ ଏବଂ ପରେ ସୁପରିଟେଣ୍ଡେଣ୍ଟ ହୋଇ ଅବସର ଗ୍ରହଣ କଲେ । ଅବସର ଗ୍ରହଣ ସହିତ ତାଙ୍କର କର୍ତ୍ତୃପକ୍ଷଙ୍କ ସହିତ ସଂଘର୍ଷ ହୁଏ । ପରେ କର୍ତ୍ତୃପକ୍ଷ ତା'ର ଏକ ମୀମାଂସା କରନ୍ତି ରାୟକୃଷ୍ଣ ମହାନ୍ତି ଆଉ ଚାକିରିରେ ରହିବା ପାଇଁ ଇଚ୍ଛା କଲେ ନାହିଁ । ଶ୍ରୀକୃଷ୍ଣ ମହାନ୍ତି, ଗୌରକୃଷ୍ଣ ମହାନ୍ତିଙ୍କର ଭାଇ ସେ ଏବଂ ମୁଣ୍ଡରେ ଅନମନୀୟତା ବସା ବାନ୍ଧିଛି ପିଲାଦିନରୁ । ସେ ଚାଲିଲେ କେରଳ ରାଜ୍ୟକୁ ଦୀର୍ଘ ବାରବର୍ଷ କଟିଗଲା କେରଳରେ । ୧୯୬୧ରୁ ୧୯୭୩ ମସିହା । କେବଳ ସେ କେରଳ ମେଡିକାଲ କଲେଜର ପ୍ରିନ୍‌ସିପାଲ ନଥିଲେ । କୋଟାୟମ, ତ୍ରିଭେନ୍ଦ୍ରମ, କାଲିକଟରେ ମେଡିକାଲ କଲେଜ ପ୍ରତିଷ୍ଠା କରିବା ପାଇଁ ସାହାଯ୍ୟ କଲେ । ଆଜି ବି ସେହି ସ୍ଥାନମାନଙ୍କରେ ସେ ସ୍ମୃତ ।

ତା'ପରେ ଅବସର ।

ଏବଂ ତା'ପରେ ଆସିଲା ଶେଷ ଚିଠି । ଚିର ଅବସରର ସମୟ । ସମସ୍ତଙ୍କୁ ଯିବାକୁ ହେବ । ଜନ୍ମିଲେ ମରଣ ସତ୍ୟ ।

ଆଜି ଜୁନ୍ ପହିଲା, ୧୯୯୩ ମସିହା । ରାୟକୃଷ୍ଣ ମହାନ୍ତି ଆଖି ବୁଜି ଦେଇଛନ୍ତି । ସେ ଆଉ ଆସିବେ ନାହିଁ । ଆନାଟୋମି ଏନ୍‌ସାଇକ୍ଲୋପେଡିଆର ଗୋଟାଏ ପୃଷ୍ଠା ଓଲଟି ପଡିଛି ।

□□□

# ଅଜାତଶତ୍ରୁ

## (୰ ଶତ୍ରୁଘ୍ନ ନାଥ)

ଇମିତିକା ମଣିଷଟିଏ ମିଳିବା କ୍ରମଶଃ କଠିନ ହୋଇଯିବ । ନିଜର ବିଶ୍ୱାସରେ ଦୃଢ଼; କିନ୍ତୁ ଭିନ୍ନ ମତ ପାଇଁ ଏପରି ମଣିଷ ସମାଜରେ ଆଉ ମିଳିବା ସହଜ ନୁହେଁ । ଏଇଭଳି ମଣିଷ ଦେହରେ ଦାନ୍ତ ଭଳି, ଥରେ ହଜିଗଲେ ଆଉ ମିଳେନା । ମଣିଷ ଥରେ ଗଲାପରେ ।

ଏଇପରି ଜଣେ ମଣିଷ ଥିଲେ ଅଧ୍ୟାପକ ଶତ୍ରୁଘ୍ନ ନାଥ । ଉତ୍କଳ ସାହିତ୍ୟ ସମାଜର ଯେଉଁ ସଭାରେ ତାଙ୍କୁ ଉତ୍କଳ ରତ୍ନ ସମ୍ମାନରେ ସମ୍ମାନିତ କରାଯାଇଥିଲା, ସେଇଠି ତାଙ୍କ ସାଂଗରେ ମୋର ଶେଷ ଦେଖା । ଅସୁସ୍ଥତା ହେତୁ ଯେଉଁମାନଙ୍କୁ ସଭା ଶେଷ ହେବା ପୂର୍ବରୁ ଯିବାକୁ ରଙ୍ଗନାଥ ବାବୁ (ଜଷ୍ଟିସ୍ ରଙ୍ଗନାଥ ମିଶ୍ର) କହିଥିଲେ ସେମାନଙ୍କ ମଧ୍ୟରେ ଥିଲୁ ଶତ୍ରୁଘ୍ନ ବାବୁ ଏବଂ ମୁଁ । ପରେ ତାଙ୍କର ଜୀବନ ଶୈଳୀ ଲେଖିବା ପାଇଁ ମୋର ଅନୁରୋଧର ଉତ୍ତରରେ ସେ ଲେଖିଥିଲେ ତାଙ୍କର ଅସମର୍ଥତା ବିଷୟରେ । ସତକୁ ସତ ତାଙ୍କର ଜୀବନ ଦୀପ ଲିଭିଗଲା ମାର୍ଚ୍ଚ ୧୦ ତାରିଖ, ୨୦୦୬ ମସିହାରେ ।

ଜୀବନଶୈଳୀ ସିନା ସେ ଲେଖି ପାରିଲେ ନାହିଁ କିନ୍ତୁ ସେଇ ଜୀବନଶୈଳୀର ପରମ୍ପରା ରହିଗଲା ପ୍ରେରଣା ଦେବା ପାଇଁ ଉତ୍ତର ପୀଢ଼ିକୁ । ସେ ପାଲଟିଗଲେ ଇତିହାସ, ଭବିତବ୍ୟର ଆଲୋକ ବର୍ତ୍ତିକା ।

ତାଙ୍କ ସହିତ ମୋର ପରିଚୟ ଆରମ୍ଭ ହୁଏ ୧୯୫୧ ମସିହାର ଶେଷ ଭାଗରେ । ମୋ ଠାରୁ ୧୬ ବର୍ଷ ବଡ଼ ବୟସରେ । ଫେବୃଆରୀ ୧ତାରିଖ ୧୯୧୫ ମସିହାରେ, ଭଦ୍ରକ ଜିଲ୍ଲା ଉତ୍ତରବାହିନୀରେ ଜନ୍ମଗ୍ରହଣ କରିଥିବା ଶତ୍ରୁଘ୍ନ ବାବୁ ସେତେବେଳକୁ ଥାଆନ୍ତି ମୌଳିକ ଶିକ୍ଷା ସଂଗଠକ । ଇଂଲଣ୍ଡରୁ ଶିକ୍ଷାରେ ଏମ୍.ଏ.ପାସ କରି ସେ ଫେରନ୍ତି ୧୯୪୮ ମସିହାରେ । କଟକ ଟ୍ରେନିଂ କଲେଜରେ ଅଧ୍ୟାପକ ଭାବରେ କାମ କଲେ । ପରେ ଯାଆନ୍ତି ଅନୁଗୋଳ । ମୌଳିକ ଶିକ୍ଷାସଂଗଠକ ହୋଇ । ବାସସ୍ଥାନ ଅମଲାପଡା । ଆମର ପ୍ରାୟ ପଡୋଶୀ ।

ମୁଁ ଥାଏ ଅନ୍ତରୀଣ ବନ୍ଦୀ । ସଦ୍ୟ ଫେରିଥାଏ ଦୀର୍ଘ କାରାଗାରରୁ ମୁକ୍ତି ପାଇ । ଅନୁଗୋଳ ସେତେବେଳେ ଛୋଟିଆ ସହରଟିଏ ରାସ୍ତାରେ ଆଲୁଅ ନାହିଁ । ଅମଲାପଡ଼ାରେ ପ୍ରାୟ ରହନ୍ତି ଅମଲା । ସଂଧ୍ୟା ନଇଁ ଆସେ ଶୀଘ୍ର । ମୋର ଜନ୍ମ ସିନା ଅନୁଗୋଳର ଗହନ ଜଂଗଲରେ କିନ୍ତୁ ପରିଚିତି ଖୁବ୍ କମ୍ । କାରଣ ଶିକ୍ଷା ଦୀକ୍ଷା ସବୁ ବାହାରେ । କିରାନୀର ସହର । ମୋର ଜଣାତରେ ମୋର ଜଣେ ଦାଦା ୰ନେତ୍ରାନନ୍ଦ ପଟ୍ଟନାୟକ, ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରାକ୍ତନ ଛାତ୍ର । ତାଙ୍କରି ଘର ପାଖରେ ରହନ୍ତି ଶତ୍ରୁଘ୍ନ ନାଥ । ସେତେବେଳେ ଅନୁଗୋଳରେ ବିଲାତ ଫେରନ୍ତା ଲୋକ ହାତଗଣନ୍ତା । ଯଦିଓ ବିଲାତୀ ଅଫିସର, ବ୍ୟବସାୟୀ ଦେଖିବାରେ ଅନୁଗୋଳ ବାସୀ ଅଭ୍ୟସ୍ତ, ଓଡ଼ିଶାର ବହୁ ଜିଲ୍ଲା ଠାରୁ ବେଶି ।

ତାରି ଭିତରେ ବିଲାତଫେରନ୍ତା 'ସାଇବ ' ଶତ୍ରୁଘ୍ନ ନାଥ । କିନ୍ତୁ ସେ ସାଇବ ନୁହନ୍ତି । ଘନଶ୍ୟାମଳ ସାଇବ ପିନ୍ଧନ୍ତି ଗେରୁଆ ବସ୍ତ୍ର । କାରଣ ସେ ଥିଲେ ମହିମା ଧର୍ମରେ ବିଶ୍ୱାସୀ । ସାଇବଙ୍କ ଘରେ ଜମନ୍ତି କଉପୀନ ପିନ୍ଧା ବଲ୍କଳଧାରୀ ବାବାଜୀମାନେ ଅତିଥି ହୋଇ । ଶତ୍ରୁଘ୍ନ ବାବୁ ଗାନ୍ଧିବାଦୀ, ଅହିଂସାରେ ବିଶ୍ୱାସୀ । ମୁଁ ଗାନ୍ଧିବାଦୀ ନୁହେଁ । ସଶସ୍ତ୍ର ବିପ୍ଳବର ସ୍ୱପ୍ନକୁ ଆଧାର ରଖି ଆମେ ଆସିଛୁ ନୂତନ ସମ୍ବିଧାନ ମାଧମରେ ସ୍ୱପ୍ନକୁ ସାକାର କରିବା ପାଇଁ । ଏହା ସତ୍ତ୍ୱେ ଶତ୍ରୁଘ୍ନ ବାବୁଙ୍କ ସହିତ ବଂଧୁତା ଗଢ଼ିଉଠିଥିଲା । କାରଣ କ'ଣ ? କାରଣ ହେଉଛି ବିଦଳିତ ମଣିଷ ପାଇଁ ଉଭୟଙ୍କର ଅଙ୍ଗୀକାର । ମହାତ୍ମା ଗାନ୍ଧୀ, ମହିମାଧର୍ମ, ମାର୍କ୍ସବାଦ ସବୁର ମୂଳ ତତ୍ତ୍ୱ ସେଇଠି । ସେଇ ବଂଧୁତା ସମୟର ପର୍ଯ୍ୟାୟରେ ନିବିଡ ହୋଇଛି । ଚାନ୍ଦନିଚୌକ ମହିମାପୀଠରେ ଏକାଠି ଅନେକ କାର୍ଯ୍ୟକ୍ରମ କରିଛୁ । କମିଟିରେ ଏକାଠି ରହିଛୁ ।

ଶତ୍ରୁଘ୍ନ ବାବୁ ଆଠ ବର୍ଷ ବୟସରେ ନିମ୍ନ ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ ଏବଂ ୧୯୩୪ ମସିହାରେ ଅବିଭକ୍ତ ବାଲେଶ୍ୱର ଜିଲ୍ଲାରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ କରିଥିଲେ ଦୁଇଜଣ ଛାତ୍ରଙ୍କ ମଧରେ ଅନ୍ୟତମ ଥିଲେ । ରେଭେନ୍ସା କଲେଜରେ ବି.ଏ. ପାସ କରନ୍ତି । ଡିପୋଟି ନହୋଇ ଶିକ୍ଷକ ହୁଅନ୍ତି । ଶିକ୍ଷା ନିଶା ଏବଂ ପେସା ଉଭୟ ପାଲଟିଯାଏ । ୧୯୪୧ ମସିହାରେ ବି.ଇଡି. ପାସ କରି ସାରିଲା ପରେ ଶିକ୍ଷାବିଭାଗରେ ସ୍କୁଲ ସବ ଇନସ୍‌ପେକ୍ଟର ହୁଅନ୍ତି କିନ୍ତୁ ପରେ ରେଭେନ୍ସା କଲେଜିଏଟରେ ଶିକ୍ଷକ ହେବାକୁ ପସନ୍ଦ କରନ୍ତି । ନୂଆକରି ମୌଳିକ ଶିକ୍ଷା ଉପରେ ପରୀକ୍ଷା-ନିରୀକ୍ଷା ହେଉଥାଏ । ସେ ତାକୁ ଇ ଗ୍ରହଣ କରନ୍ତି ଏବଂ ଅନୁଗୋଳର ନୂତନ ପ୍ରତିଷ୍ଠିତ ମୌଳିକ ଶିକ୍ଷା ମହାବିଦ୍ୟାଳୟର ଅଧକ୍ଷ ହୁଅନ୍ତି ୧୯୫୫ ମସିହାରେ । ସେଇଠି କଟିଯାଏ ନଅବର୍ଷ ।

୧୯୬୪ ମସିହାରେ ରାଧାନାଥ ଟ୍ରେନିଂ କଲେଜର ଅଧ୍ୟକ୍ଷ ଏବଂ ୧୯୬୯ ମସିହାରେ ସଂକ୍ଷିପ୍ତ ସମୟ ପାଇଁ ଭଦ୍ରକ କଲେଜର ଅଧ୍ୟକ୍ଷ ହେବାପରେ ୧୯୭୦ ମସିହାରେ ସରକାରୀ ଚାକିରିରୁ ଅବସର । ରିଟାୟାର୍ଡ୍ ନୁହେଁ ରିଟ୍ରାଏଡ ଜୀବନର ଆରମ୍ଭ । ୧୯୭୧ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଉନ୍ନୟନ ଅଧିକାରୀ । ସେଇଠାରୁ ଅବସର ନେଲା ପରେ ଭୁବନେଶ୍ୱର ଏକାମ୍ର କଲେଜର ଅଧ୍ୟକ୍ଷ, ନଳିନୀ ଦେବୀ ମହାବିଦ୍ୟାଳୟର ଅଧ୍ୟକ୍ଷ ପଦବୀରେ ୧୯୮୪ ମସିହା ପର୍ଯ୍ୟନ୍ତ କଟିଯାଏ ।

ବିଶ୍ୱନାଥ ବାବୁ ସ୍ମୃତିକମିଟି ସମେତ ବହୁ ଅନୁଷ୍ଠାନରେ ତାଙ୍କ ସହିତ ସମୟ କଟିଛି । ସେ ରହିଛନ୍ତି ସେଇପରି ବିନୀତ, ନମ୍ର, ମିଷ୍ଟଭାଷୀ କିନ୍ତୁ ନିଜ ମତରେ ଦୃଢ଼ । ନିଜକଥା ଖୁବ୍ କମ୍ କହନ୍ତି, ସ୍ତ୍ରୀ ହେମଲତା ବା ପରିବାର ସମ୍ପର୍କରେ ପ୍ରାୟ କିଛି କହନ୍ତି ନାହିଁ । ସାରା ବିଶ୍ୱକୁ ଆପଣାର ପରିବାର ମଣିଥିବା ବ୍ୟକ୍ତି ପାଇଁ ନିଜର ପରିବାର ସମ୍ପର୍କରେ କହିବା ପାଇଁ ସମୟ କାହିଁ, ଇଚ୍ଛା କାହିଁ ?

ଗାନ୍ଧୀବାଦୀମାନଙ୍କର ଅବକ୍ଷୟ ତାଙ୍କୁ ଯେମିତି ବାଧୁଛି, ସେଇପରି ବାଧୁଛି ପ୍ରାକ୍ତନ ବିପ୍ଲବୀମାନଙ୍କର ଅବକ୍ଷୟ, ମହିମା ଧର୍ମ ଭିତରେ ବିବାଦ ତାଙ୍କୁ ସେଇପରି ଘାରିଛି, ପ୍ରତିବାଦ କରିବା ତାଙ୍କର ଧର୍ମ ନୁହେଁ; କିନ୍ତୁ ଆପଣାର ବ୍ୟଥାକୁ ପ୍ରକାଶ କରିବାରେ ସେ କୁଣ୍ଠିତ ନୁହନ୍ତି ।

ପରିଶେଷରେ ସେଇ ସମୟ ଆସିଛି । ଅଲେଖ ନିରଞ୍ଜନ ହିଁ ସତ୍ୟ । ଆଉ ସବୁ ମିଥ୍ୟା । ଅଧ୍ୟାପକ ପାଲଟି ଯାଇଛନ୍ତି ଇତିହାସ । ଆମର ଉଜ୍ଜ୍ୱଳ ପରମ୍ପରା । ସେଇ ତ ତାଙ୍କର ଜୀବନର ସାର୍ଥକତା । ମୋ ଜାତିର ଗର୍ବିତ ଇତିହାସ ।

□□□

# ନିଷ୍ପ୍ରଭ ଆକାଶ ଧୂସର ପୃଥିବୀ

*(୰ ଶରତ କୁମାର ମହାରଣା)*

ମଇ ମାସ ୨୯ ତାରିଖ, ୨୦୦୭ ମସିହା ରାତି, ହଠାତ୍ ଆକାଶଟା ନିଷ୍ପ୍ରଭ ହୋଇଗଲା ଗୋଟିଏ ଜ୍ୟୋତିଷ୍କ ଯେମିତି ହଠାତ୍ ଖସି ପଡିଛି । ସକାଳଟା ପାଲଟି ଯାଇଛି ଧୂସର । ଶରତ ମହାରଣା କାଲି ରାତିରେ ଆଖି ବୁଜି ଦେଇଛନ୍ତି କଟକ ବଡ ଡାକ୍ତରଖାନାରେ । ଶରତ ମହାରଣା କିଏ ? ପ୍ରଶ୍ନ ପଚାରୁଛି ନାତୁଣୀ ।

ମନେ ପଡୁଛି । ୧୯୯୪ ମସିହା ଅଗଷ୍ଟ ୧୫ ତାରିଖ । ସ୍ୱାଧୀନତା ଦିବସ । ପତାକା ଉତ୍ତୋଳନ ହେବ ପ୍ରାକ୍ତନ କଟକ, ଜେଲ (ଦରଘା ବଜାର) ୧୫ ନମ୍ବର ୱାର୍ଡରେ । ସ୍ୱାଧୀନତା ସଂଗ୍ରାମୀ ଓ ଅନ୍ୟାନ୍ୟ ବ୍ୟକ୍ତିମାନେ ଏକାଠି ହୋଇଥିଲେ । ପତାକା ଉତ୍ତୋଳନ କରିବ କିଏ ? ପାଖରେ ଥିଲେ ୰ ବିଶ୍ୱନାଥ ପଣ୍ଡିତ । ତାଙ୍କୁ କିଏ ଜଣେ ଅନୁରୋଧ କଲେ ପତାକା ଉତ୍ତୋଳନ ପାଇଁ । ସେ ପ୍ରସ୍ତାବକୁ ତୁରନ୍ତ ପ୍ରତ୍ୟାଖ୍ୟାନ କରି ପଣ୍ଡିତଜୀ କହିଲେ– ଏଇ ତ, ଶରତ ବାବୁ ଥାଉଁ ଥାଉଁ ମୁଁ ପତାକା ଉତ୍ତୋଳନ କରିବି ? ଜ୍ଞାନ, ଗୁଣ, ଗାରିମା ଆଉ ତ୍ୟାଗରେ ତାଙ୍କର ସରି କିଏ ?

ସମସ୍ତଙ୍କର ଆଖି ଫେରିଲା ସବାପଛ ଧାଡିକୁ, ଠିଆ ହୋଇଛନ୍ତି ବାଙ୍ଗରା ମଣିଷଟିଏ । ଆଣ୍ଠୁ ଲୁଚୁନଥିବା ଖଦଡ଼ ଲୁଗା । ଫତେଇଟିଏ ଦେହରେ । କାନ୍ଧରେ ମୁଣାଟିଏ । ଖଦଡ ମୁଣା । ପାଦରେ ଚପଲ ଥିଲା କି ନାଇଁ ମନେ ପଡୁନି । ବୋଧହୁଏ ନଥିଲା । ପାଚିଲା ବାଳ । ଛାମୁ ଦାନ୍ତ ନାହିଁ । ହସ ହସ ମୁହଁ ଠିଆ ହୋଇଛନ୍ତି ବିନୀତ ଭାବରେ । ନିର୍ଲିପ୍ତ ଚେହେରା, ନିର୍ଲିପ୍ତ ଆଖି ।

ସମସ୍ତଙ୍କର ଅନୁରୋଧ ରକ୍ଷା କରି ସେ ସେଦିନ ପତାକା ଉତ୍ତୋଳନ କଲେ । ତାଙ୍କର ଆଖିରୁ ଲୁହ ଝରି ଝରି ଆସୁଥିଲା । କ'ଣ ଥିଲା ସ୍ୱପ୍ନ, କ'ଣ ହୋଇଛି ପରିସ୍ଥିତି ? ତଥାପି ଆମକୁ ଆଗେଇବାକୁ ହେବ । କଣ୍ଠ ଗମ୍ଭୀର ହୋଇ ଉଠୁଥିଲା ।

ସାରଲ୍ୟର ପ୍ରତୀକ ଶରତ । ସେଇମିତି ଥିଲେ, ସେଇମିତି ରହିଗଲେ ଆଉ ଶେଷରେ ସେଇମିତି ଚାଲିଗଲେ । କିଛି ନ ଲୋଡି କିଛି ନ କହି । ଯାହା ସେ ଦେଇଛନ୍ତି....

ନେଇ ତ ନାହାନ୍ତି କିଛି । ବାଲେଶ୍ୱର ଜିଲ୍ଲାରେ ଘର । କଲେଜରେ ସ୍ନାତକ ଡିଗ୍ରୀ ଲାଭ କରିଥିଲେ । ସେତିକିବେଳେ ଦେଶରେ ସ୍ୱାଧୀନତା ଆନ୍ଦୋଳନର ପ୍ରବଳ ଧ୍ୱନି । ମହାତ୍ମା ଗାନ୍ଧୀଙ୍କର ଡାକରା । ପାଠ ପଢ଼ାରେ ଡୋରିବଂଧା ହେଲା । ତା'ପରେ ଯାହା ପଢ଼ିଛନ୍ତି ଜୀବନର ଚାଟଶାଳୀରୁ । ଶରତ ବାବୁ ଆଉ ପଛକୁ ଫେରି ଚାହିଁ ନାହାନ୍ତି । ତାର ଅବକାଶ ମଧ ଘଟି ନାହିଁ । କାରଣ ତା'ପରେ ସେ ଗାନ୍ଧିଜୀଙ୍କ ଜୀବନାଦର୍ଶକୁ ଅକ୍ଷରେ ଅକ୍ଷରେ ପାଳନ କରିଆସିଛନ୍ତି ।

ଖଦୀ ପିନ୍ଧିଛନ୍ତି । କାରାବରଣ କରିଛନ୍ତି ପୁଲିସ ଅତ୍ୟାଚାର ସହ୍ୟ କରିଛନ୍ତି । ସବୁଠାରୁ ସରଳ ଜୀବନଯାପନ କରିଛନ୍ତି ବାଟ ଦେଖାଇଛନ୍ତି, ବାଟ ଛୁଡ଼ି ନାହାନ୍ତି । ନିଜର ସଂସାର କହିଲେ ସ୍ତ୍ରୀ ଅନ୍ନପୂର୍ଣ୍ଣା ମହାରଣା, ଦୁଇ ପୁଅ । ସେମାନେ ଅଧାପନା ଗବେଷଣାକୁ ମନ୍ତ୍ର କରିଛନ୍ତି ଜ୍ଞାନଦେବ, କର୍ମଦେବ ଗବେଷକ, ପଦାର୍ଥବିତ୍ ପାଲଟିଛନ୍ତି । ଶରତବାବୁ ନିଜେ ଟିକଟ, ନିର୍ବାଚନ ଟିକଟ ଖୋଜି ନାହାନ୍ତି ସ୍ତ୍ରୀ ବା ପୁଅ ବି ଖୋଜି ନାହାନ୍ତି । ପ୍ରସିଦ୍ଧ ଚୌଧୁରୀ ବଂଶର କନ୍ୟା । ନିର୍ବାଚନ ପ୍ରତି ବିମୁଖ । ସେମାନେ ଦେଶର ନିରନ୍ନ ଜନସାଧାରଣ, ଆଦିବାସୀ ଗଣଙ୍କର ଡାକରା ଶୁଣିଛନ୍ତି । ଟିକଟ ପାଇଁ ବେଳ କାଇଁ ?

ସ୍ୱାଧୀନତା ଆସିଛି । କିନ୍ତୁ ଏଇ କ'ଣ ତାଙ୍କର ସ୍ୱପ୍ନର ସ୍ୱାଧୀନତା ? ସେମାନେ କ୍ଷମତା ପାଇଁ ପାଗଳ ହୋଇଛନ୍ତି ଏକଦା ସ୍ୱାଧୀନତା ସଂଗ୍ରାମର ସେନାନୀ । କିନ୍ତୁ ଶରତବାବୁ ନୁହଁନ୍ତି । ବିନୋବା ଭାବେଙ୍କର ଆହ୍ୱାନ । ଭୂଦାନ, ଜୀବନ ଦାନର ଡାକରା ଚାଲ, ଚାଲ । ସେ ଚାଲିଲେ ବିନୋବାଙ୍କ ସାଙ୍ଗରେ, ଗାଁ ପରେ ଗାଁ ଓଡିଶାରେ ଭୂଦାନ, ଜୀବନଦାନର ଆହ୍ୱାନ ଶୁଣାଇଲେ । କୋରାପୁଟ, କନ୍ଧମାଳ ତାଙ୍କର ବସତି ପାଲଟିଗଲା । କ୍ଷମତାର ଅଳିନ୍ଦ ରହିଗଲାଣି ବହୁ ଦୂରରେ । ଇମିତି ପରିବାର ଖାଲି ଓଡ଼ିଶାରେ କାହିଁକି ଭାରତବର୍ଷରେ ବିରଳ । ନିଜେ ବିଚ୍ୟୁତ ହୋଇନାହାନ୍ତି କି ପରିବାରକୁ ବିଚ୍ୟୁତ ହେବାକୁ ଦେଇନାହାନ୍ତି ।

ନିଜ କଥା କିଛି କହିବାକୁ ନାରାଜ । ଡିଗ୍ରୀ, ଉପାଧି, ସମ୍ମାନ ସବୁ ପଡ଼ିରହିଛି ତାଙ୍କର ଚଲାବାଟରେ । କାଠଯୋଡି ନଦୀ କୂଳରେ ସାନ୍ଧ୍ୟ ଭ୍ରମଣରେ ଯାଉଥିବା ସେଇ ବାଙ୍ଗରା ମଣିଷ ରହିଯାଇଛି ତୀଖ ପାହାଡ଼ ଭଳି । ବୟସ୍କମାନଙ୍କର ଜୀବନୀ ସଂଗ୍ରହ ପାଇଁ ପଞ୍ଚଶୀଳାଙ୍କ ଉଦ୍ୟମ ପ୍ରାୟ ପରାସ୍ତ ହୋଇଛି ତାଙ୍କ କ୍ଷେତ୍ରରେ । ନିଜ କଥା କହି ଲାଭ କ'ଣ ? ଦେଶ କଥା କହେ, ମଣିଷ କଥା କହେ । ସେ ରହି ଯାଇଛନ୍ତି ସେଇପରି ନିର୍ଲିପ୍ତ, ନିର୍ଭୀକ ଆଉ ବିସ୍ମୟ ! ମଣିଷ ନା ଆଉ କିଛି ! ସଂସାର ଧାଇଁଛି ନିଜ ପାଇଁ... ଆଉ ଏଇ ବିଚିତ୍ର ମଣିଷ ଧାଇଁଛି ଓଲଟା ସଂସାର ପାଇଁ ।

ନିଜର ଜୀବନରେ କିଛି ଲୋଡ଼ି ନାଇଁ, ତା' ପାଇଁ ମରଣ ହେଉଛି ଜୀବନର ଅମୃତ ସୋପାନ । ମଲେ ପତାକା ଅର୍ଦ୍ଧନମିତ ହେବ କି ନାହିଁ, ପୁଲିସ ବିଗୁଲ ବାଜିବ କି ନାହିଁ, ବିଧାନସଭାରେ ଶୋକ ପ୍ରସ୍ତାବ ଆଗତ ହେବ କି ନାଇଁ, ତା' ପାଇଁ ଏସବୁ କ'ଣ ? ଜୀବନରେ ଯେ ଟିକଟ ଖୋଜି ନାହିଁ, କ୍ଷମତା ଖୋଜି ନାହିଁ, ଗାଡ଼ି ମୋଟର ଲୋଡ଼ି ନାହିଁ ତା' ପାଇଁ ମରଣ ପରେ କ'ଣ ହେବ... ସେଥିରୁ କ'ଣ ମିଳିବ ?

ବୟସ ଶହେ ବର୍ଷ ହୋଇଛି । ସରଳ, କାମନାହୀନ, ବାସନାହୀନ ଜୀବନ ତାଙ୍କୁ ଦୀର୍ଘାୟୁ କରିଛି । ମଣିଷର, ସାଧାରଣ ମଣିଷର ଆଶିଷ ତାଙ୍କର ଏକମାତ୍ର ପାଥେୟ । ତାକୁ ହିଁ ସାଥୀ କରି ସେ ଚାଲିଯାଇଛନ୍ତି ଗୋଟିଏ ଯୁଗର ଅବସାନ ଘଟାଇ । ଅବସାନ... ଯୁଗାବସାନ ।

ଖାନନଗରରେ ଚିତା ଜଳୁଛି । ଲେଲିହାନ ଚିତା । ଆଦିବାସୀ ରମଣୀ ତଥାପୋଇ ଆଖି ପୋଛୁଛି କୋରାପୁଟରେ । କେନ୍ଦୁପତ୍ର ତୋଳାଳୀ ମାଣିକର ହାତ ଥରୁଛି ଏ ସଂବାଦ ପାଇ ଦେବଗଡରେ । ସେଇ ତ ତାଙ୍କର ଲାଷ୍ଟ ପୋଷ୍ଟ । କ୍ଷମତାର ନୁହେଁ ।

ସେଇ ସାଧାରଣ ମଣିଷର ପ୍ରତିନିଧିମାନେ ଠିଆ ହୋଇଛନ୍ତି ଚିତାଗ୍ନି ଚାରିପଟରେ । କ୍ଷମତା ସବୁଦିନ ପରି ଦୂରରେ... ସେଇତ ତାଙ୍କର ଜୀବନର ସାର୍ଥକତା କ'ଣ ? ମରଣ ଉପରେ ଜୀବନର ଜୟଗାନ ।

ㅁㅁㅁ

# ନାନୀର ବାହୁଡା

(୰ ଶରତପ୍ରିୟା ତ୍ରିପାଠୀ)

ଶ୍ରୀମତୀ ଶରତ ପ୍ରିୟା ତ୍ରିପାଠୀ ଆମର ନାନୀ, ପରିଚିତ, ଆତ୍ମୀୟତା ପିଲାଦିନରୁ । ବାପା ସିଦ୍ଧେଶ୍ୱର ରଥ ମୋର ଦାଦାଙ୍କ ସହକର୍ମୀ । ନାନୀର ମାଆ ମୋ ବୋଉର ମଇତ୍ର । ସେ ଦୃଷ୍ଟିରୁ ଶ୍ରୀ ସଚ୍ଚିଦାନନ୍ଦ ତ୍ରିପାଠୀ ଆଉ ତାଙ୍କ ଭାଇ ଡାକ୍ତର ବିଭୂତି ଭୂଷଣ ତ୍ରିପାଠୀ (ଦୁଇସଢୁ) ଦୁଇ ଭାଇ ଆମ ଘରର ଜ୍ୱାଇଁ ବି । ସିଦ୍ଧେଶ୍ୱର ବାବୁଙ୍କ ଷଢୁ ହେଉଛନ୍ତି ଇଂଜିନିଅର ଉଦୟନାଥ ମିଶ୍ର (ଡାକ୍ତର ଅମ୍ବିକା ମିଶ୍ରଙ୍କ ବାପା) ମୋର ଏବଂ ମୋ ସ୍ତ୍ରୀଙ୍କର ବହୁଦିନ ଧରି ପଡ଼ୋଶୀ । ତାଙ୍କ ଭାଇ ହେଉଛନ୍ତି ସାମ୍ୟବାଦୀ ନେତା ପୂର୍ବତନ ଏମ୍.ପି. ଏବଂ ଏମ୍. ଏଲ.ଏ ବୈଦ୍ୟନାଥ ରଥ (ଡାକ୍ତର ରାଧାଶ୍ୟାମ କରଙ୍କ ଶ୍ୱଶୁର) ନାନୀର ମଉସା ଉଦୟନାଥ ମିଶ୍ର ହେଉଛନ୍ତି ଡାକ୍ତର ସନାତନ ରଥଙ୍କ ଶ୍ୱଶୁର । ସଂପର୍କ ଏଇପରି ନିବିଡ ଛନ୍ଦାଛନ୍ଦି ଏବଂ ପୁରାତନ ପିଲା ଦିନର ।

ମନେପଡୁଚି, ୧୯୪୮ ମସିହାର କଥା । ସିଦ୍ଧେଶ୍ୱର ବାବୁଙ୍କ ପରିବାର ଏବଂ ଆମ ପରିବାର ପଡ଼ୋଶୀ ହୋଇ ରହିଥିଲୁ ପିଲଗ୍ରୀମ୍ ରୋଡରେ । ସେଇଟା ଆମ ପରିବାର ପାଇଁ ଏକ ଦୁଃଖଦ ସମୟ ଥିଲା । ନାନୀ ବୋଧହୁଏ ପାଠ ପଢୁଥିଲା ପାଟନାରେ । ଦର୍ଶନରେ ଏମ୍.ଏ. । ସେତେବେଳେ ନାନୀର ସେବା ଆମ ପରିବାର ଭୁଲି ପାରିବ ନାହିଁ । ଡାକ୍ତର ବିଭୂତି ଭୂଷଣ ତ୍ରିପାଠୀ ବୋଧହୁଏ ହାଉସ ସର୍ଜନ । ମୋର ରୁଗ୍ଣ ସାନଭାଇର ଚିକିତ୍ସା ପାଇଁ (ପରେ ମୋ ପାଇଁ ବି) ତାଙ୍କର ଅବଦାନ ଅତୁଳା । ସେ ଆତ୍ମୀୟତା ଏ ପର୍ଯ୍ୟନ୍ତ ଅତୁଟ ରହିଛି ।

୧୯୫୦ ମସିହାର କଥା । ମୁଁ ଜେଲରେ । ବାପା ଚାକିରି କରୁଥାନ୍ତି ବନ୍ୟ ବିଭାଗରେ, ସଚ୍ଚିଦାନନ୍ଦ ବାବୁ ପୁଲିସ ବିଭାଗରେ ଦୁହେଁ ଆଠଗଡ଼ରେ ଅବସ୍ଥାପିତ । ଆତ୍ମୀୟତା ଘନିଷ୍ଠ ହୋଇଛି । ଏପର୍ଯ୍ୟନ୍ତ ଯେଉଁ କେତେଜଣ ମୁଷ୍ଟିମେୟ ଲୋକ ମୋତେ ମୋ ଡାକ ନାମରେ ଡାକନ୍ତି ସେମାନଙ୍କ ମଧ୍ୟରେ ନାନୀ ଅନ୍ୟତମ । ହଠାତ୍ ନାନୀ ହଜିଗଲା । କାଲି ଡାକ୍ତର ପଞ୍ଚଶୀଳା ଦାଶ କହୁଥିଲେ ତା'ର ସନ୍ ହସପିଟାଲରେ ଭର୍ତ୍ତିହେବା

କଥା । ଆଜି ସେ ନାହିଁ । ଚାଲି ଯାଇଛି ସେଇଠିକୁ ଯେଉଁଠାରୁ କେହି ଫେରି ନାହାନ୍ତି । ପାଲଟି ଯାଇଛି ଇତିହାସ ।

ବିବାହ କରିଥିଲା ଡାକ୍ତର ବିଭୂତି ଭୂଷଣ ତ୍ରିପାଠୀଙ୍କୁ । ତାର ଚାକିରିକାଳ ସଂକ୍ଷିପ୍ତ । ଶିକ୍ଷୟିତ୍ରୀ ଚାକିରି । ସେ ପାଲଟି ଯାଇଥିଲା ଘରଣୀ ଏବଂ ନୀରବ ସମାଜସେବୀ । ସେ ଅନେକ କଥା କରେ କିନ୍ତୁ ତାହାର ପବ୍ଲିକେଶନ ଆଦୌ କରେନାହିଁ । ସେଥିପାଇଁ ସାହାଯ୍ୟ ପାଇବା ଲୋକ ଛଡା ଅନ୍ୟ କେହି କିଛି ଜାଣନ୍ତି ନାହିଁ । ସେ ନାରୀ ସେବା ସଂଘ ସଦନ ସହିତ ସଂଶ୍ଳିଷ୍ଟ ଥିଲା ଏବଂ ତାହାର କୋଷାଧ୍ୟକ୍ଷା ମଧ୍ୟ ଥିଲା ।

ଡାକ୍ତର ବିଭୂତି ଭୂଷଣ ତ୍ରିପାଠୀ ଏକାଡେମିକ ଏବଂ ପ୍ରଚଣ୍ଡ ଶୃଙ୍ଖଳିତ । ମେଡିକାଲ କଲେଜର ଚାକିରିକାଳ ଭିତରେ ଅନେକ ସାଫଲ୍ୟ ଏବଂ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛନ୍ତି । ସେ ଇତିହାସ ପଖାଳି ଲାଭ ନାହିଁ । କିନ୍ତୁ ତାଙ୍କ ପାଖରେ ସ୍ଥିର, ନିର୍ଲିପ୍ତ, ଅବିଚଳ ହୋଇ ଠିଆ ହୋଇଛି ନାନୀ । ବିଭୂତି ବାବୁଙ୍କର ଗବେଷଣା, ଏକାଡେମିକ୍ ପରସୁଟ୍‌ରେ କୌଣସି ବ୍ୟାଘାତ ଘଟିନାହିଁ । ମଧୁମେହ ରୋଗର ଚିକିତ୍ସାର ସେ ପିତା (ବର୍ତ୍ତମାନ ପିତାମହ) ପାଲଟିଛନ୍ତି । ଅବଦାନ ବିପୁଳ ନାନୀର ।

ସେ ଆଉ ନାହିଁ । ମୁଁ ଅଚଳ, ଯିବା ବାଟରେ, ବିଭୂତି ବାବୁ ମୋର ପାରିବାରିକ ବଂଧୁ, ଚିକିତ୍ସକ । ତାଙ୍କର ଅସୁସ୍ଥତା ବେଳକୁ ମୋର ସ୍ୱାସ୍ଥ୍ୟ ବିପର୍ଯ୍ୟୟ ଆରମ୍ଭ ହେଲା ନାନୀ ଯିବା ଖବର ପାଇ ପାରିଲି ନାହିଁ ।

ସେ କିନ୍ତୁ ଉଜଳି ରହିବ ଚିରଦିନ ଆମ ସମସ୍ତଙ୍କ ଭିତରେ, ସଂଧ୍ୟା ଆକାଶର ତାରା ପରି ।

❑❑❑

# ବନ୍ଧୁର ବିୟୋଗ

## (୰ ସନ୍ତୋଷ କୁମାର ସାହୁ)

ବନ୍ଧୁ ସନ୍ତୋଷ କୁମାର ସାହୁ ଆଉ ନାହାନ୍ତି । ଗଲା କାଲି ନଭେମ୍ବର ୨ ତାରିଖ, ୨୦୦୬ ମସିହାରେ ୭୨ବର୍ଷ ବୟସରେ ତାଙ୍କର ପରଲୋକ ହୋଇଯାଇଛି ତାଙ୍କର ଭୁବନେଶ୍ୱର, ସତ୍ୟନଗର ବାସଭବନରେ । ବୟସରେ ମୋ ଠାରୁ ସାନ, ଆଗରୁ ଚାଲିଗଲେ କିମିତି ? ଏ ପ୍ରଶ୍ନର ଉତ୍ତର କିଏ ଦେବ ?

ସ୍ମୃତି ପହଁରି ଗଲା ଦୂର ଅତୀତକୁ । ଆମର ବନ୍ଧୁତା ବହୁକାଳର । ସେ ବାରିପଦା କଲେଜର ଛାତ୍ର ଅବସ୍ଥାରୁ ହିଁ ତାଙ୍କ ସହିତ ପରିଚିତି । ସେ କଂଗ୍ରେସ ଦଳର ସଭ୍ୟ, ଛାତ୍ର ୟୁନିଅନର ନେତା । ମୁଁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଏବଂ ନିଖିଳ ଭାରତ ଛାତ୍ର ସଂଘ ସହିତ ସମ୍ପୃକ୍ତ । ତଥାପି ଆମ ଭିତରେ ବ୍ୟକ୍ତିଗତ ବଂଧୁତା ନିବିଡ ଏବଂ ଏହା ସମୟର ସହିତ ତାଳ ଦେଇ ନିବିଡ଼ତର ହୋଇଛି । କଦାପି ମଳିନ ପଡିନାହିଁ ।

ବାରିପଦା କଲେଜରୁ ସେ ଆସନ୍ତି କଟକ ମଧୁସୂଦନ ଆଇନ କଲେଜକୁ । ଏତିକିବେଳେ ଦେଖାଦିଏ ୧୯୬୬ ମସିହାରେ ଐତିହାସିକ ସୀମା ଆନ୍ଦୋଳନ । ସେ ଓ ମୁଁ ଉଭୟ କାଉନସିଲ ଅଫ୍ ଆକ୍ସନର ସଭ୍ୟ । ଆମେ ଏକାଠି ରହିଗଲୁ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସରେ । ଉଭୟଙ୍କ ନାମରେ ଗିରଫଦାରୀ ୱାରେଣ୍ଟ । ସାମରିକ ପୁଲିସ ରକ୍ତମୁଖା, ହିଂସ୍ର ପାଲଟିଛି । ସହରରେ ଜାରି ହୋଇଛି ୧୪୪ ଧାରା । ତାକୁ ଭାଙ୍ଗି ସଭାସମିତି ପଟୁଆର ହେଉଛି । ସନ୍ତୋଷ ସାହୁ ଆମ ସାଂଗରେ । ମନେପଡୁଚି ଶହୀଦ ସୁନିଲ ଦେଙ୍କର ମରଶରୀରକୁ ନେଇ କଟକ ସହରରେ ଅଭୂତପୂର୍ବ ଶୋଭାଯାତ୍ରା । ଶୁଭୁଛି ୰ ମନମୋହନ ମିଶ୍ରଙ୍କ ଉଦାତ୍ତ କଣ୍ଠସ୍ୱର, ଜାତିର ପରୀକ୍ଷାର ସମୟ । ଆସ କିଏ ଅଛ ଚାଲ ଆଗକୁ । ଚରୈବେତି, ଚରୈବେତି, ଆଗରେ ରକ୍ତମୁଖା ମିଲିଟାରୀ, ଗୁର୍ଖା, ଘରୱାଲି ସୈନ୍ୟ । ଶୁଭୁଛି ୰ ବିଶ୍ୱନାଥ ପଣ୍ଡିତଙ୍କ କଣ୍ଠ । ମୁଁ ଅଛି । ଆମ ସାଂଗରେ ସନ୍ତୋଷ ।

ଅଗ୍ନି ପରୀକ୍ଷା ଭିତରେ ବଂଧୁତା ଆହୁରି ନିବିଡ ହୋଇଛି । ମତ ପାର୍ଥକ୍ୟର ପାଚିରୀ ଭାଙ୍ଗି ପଡିଛି ସଂଗ୍ରାମର ଡାକରାରେ ।

ସନ୍ତୋଷ ପାଲଟିଛନ୍ତି ରାଜନୈତିକ ନେତା । ହୋଇଛନ୍ତି ମନ୍ତ୍ରୀ । ହୋଇଛନ୍ତି ସାହିତ୍ୟ ଏକାଡେମୀର ସଭାପତି । ପୁଣି ସମବାୟ ଆନ୍ଦୋଳନର ବାବଦୂକ ।

ତା'ପରେ ଯାଇଛନ୍ତି ରାଜ୍ୟସଭାକୁ ତିନିଥର । ବୋଧହୁଏ ଭବାନୀ ପଟ୍ଟନାୟକ ତିନିଥର ରାଜ୍ୟସଭାକୁ ଯିବାରେ ଦ୍ୱିତୀୟ ବ୍ୟକ୍ତି । ସନ୍ତୋଷ ନରମ ସ୍ୱଭାବର ଲୋକ । ଉପରେ ପଡ଼ି କାମ କରିବା ଲୋକ ସେ ନୁହନ୍ତି । କିନ୍ତୁ ବେଶ୍ ବନ୍ଧୁବତ୍ସଳ, ଅତିଥିବତ୍ସଳ ମଧ୍ୟ । ଦିଲ୍ଲୀରେ ତାଙ୍କ ଘରେ ମୋ ଭଳି ବହୁତ ମଣିଷ ତାଙ୍କର ଆତିଥ୍ୟ ଲାଭ କରିଛନ୍ତି । ପଖଳା, ଲୁହଭରା ସ୍ମୃତି ମୋର ମନେ ପଡୁଚି ତାଙ୍କ ସହିତ ଦିଲ୍ଲୀରେ ବହୁ ସମ୍ମିଳନୀରେ ଯୋଗଦାନ । ମୋ ପୁଅ ଯାଉଛି ମସ୍କୋ ପାଠ ପଢ଼ିବା ପାଇଁ ବିମାନ ବନ୍ଦରରେ ଛାଡ଼ିବା ପାଇଁ ଯାଇଛନ୍ତି ବନ୍ଧୁ ସନ୍ତୋଷ ସାହୁ । ଗୋଟାଏ ପୂରା ଦିନ ବିମାନ ବନ୍ଦରରେ କଟାଇଛନ୍ତି, ଭାରତୀୟ ଛାତ୍ରମାନଙ୍କର ଯିବାର ବନ୍ଦୋବସ୍ତରେ ।

ଦିଲ୍ଲୀରୁ ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ ସତ୍ୟନଗରରେ ବାସଗୃହ ନିର୍ମାଣ । ସେଇଠି ଭେଟ ହୁଏ ଅନେକ ବାର । ସନ୍ତୋଷ କାହାକୁ ନାହିଁ କରନ୍ତି ନାହିଁ । ମୋର ମନେ ପଡୁଚି ସେଇଠି ଦିନେ ଦେଖାହୁଏ ରାସ୍ତା ଉପରେ ସୋମନାଥଙ୍କ ସହିତ । ଏକ ଛୋଟକାଟର ରାସ୍ତା ଦୁର୍ଘଟଣା ଏବଂ ପରେ ଚାହା ପାନରେ ସମାପ୍ତ ବୈଠକ । ସେ ଆସନ୍ତି କଟକ । ଆସିଲେ ନିଶ୍ଚୟ ଆସିବେ ଘରକୁ ଆମର ବିଶେଷତଃ ମୋର ଅଚଳାବସ୍ଥା ପରେ ।

ସମୟ ଅତିକ୍ରାନ୍ତ ହୋଇଛି । ସେ ବି ଆଉ ସୁସ୍ଥ ରହୁନାହାନ୍ତି ଦେଖା ସାକ୍ଷାତ କମିଯାଇଛି । କିନ୍ତୁ ନିବଡ଼ତା, ବଂଧୁତାର ଉଷ୍ଣତା ରହିଛି ସେମିତି, ଫୋନରେ କଥାବାର୍ତ୍ତା ସୀମିତ ।

ହଠାତ୍ ସେ ଚାଲିଗଲେ । ଯିବାକୁ ତ ହେବ ସମସ୍ତଙ୍କୁ । କିନ୍ତୁ ଏମିତି ଏକୁଟିଆ ଚାଲିଗଲେ ସତରେ ସମସାମୟିକ ମଣିଷ ହଜି ହଜି ଗଲେଣି । ଏକୁଟିଆ ଲାଗୁଛି । ସନ୍ତୋଷ ଚାଲିଯିବା ପରେ ଆଉରି ନିଛାଟିଆ ଏକାକୀ ଲାଗୁଛି । ସ୍ମୃତି ପଖାଳିଲା ବେଳେ ସମସାମୟିକ ମଣିଷ ହାତଗଣତା । ବର୍ତ୍ତମାନ ସନ୍ତୋଷର ବିଦାୟ ସେ ସଂଖ୍ୟାକୁ ଆହୁରି କମାଇ ଦେଇଛି ।

ସନ୍ତୋଷ ଥିଲେ ମେଳାପୀ, ଅତିଥି ପରାୟଣ । ଦଳମତ ନିର୍ବିଶେଷରେ ତାଙ୍କର ବଂଧୁତା ଥିଲା ପରିବ୍ୟାପ୍ତ । ତାଙ୍କର ବିୟୋଗରେ ଏଭଳି ଜଣେ ମଣିଷ ହଜିଯାଇଛି ଯା'ର ପରଲୋକରେ ବହୁ ବଂଧୁଙ୍କ ଆଖି ଲୋତକରେ ଭରିଯାଇଛି ।

ସେଇତ ତାଙ୍କର ଜୀବନର ସାର୍ଥକତା ।

□□□

# ନୁହେଁ ଏହା ଜଳିବାର ପାଇଁ

*(୰ ସଚ୍ଚି ରାଉତରାୟ)*

'' ଏବଂ ତବ ମଧ୍ୟେ ମୁହିଁ,
ମୁହିଁ ତାର ବକ୍ତା ଭବିତବ୍ୟ
ଜଗତର ପ୍ରତିବିନ୍ଦୁ ଲୋତକ ପ୍ଲାବନେ
ମୁଁ ବି ନିଜେ ହୁଏ କ୍ରୁଶବିଦ୍ଧ'' ।

ଆଜି ମଧ୍ୟ ଲୋତକର ପ୍ଲାବନ ସେମିତି ରହିଛି । ଭିଟାହରା, କୁଳବାଳାର ଅରଣ୍ୟ ରୋଦନରେ ମେଦିନୀ କମ୍ପୁଛି । ଆଜି ମଧ୍ୟ ବହୁ ଦେଶରେ କ୍ରୁଶବିଦ୍ଧ କବି ଲେଖିଚାଲିଛି ବେଦନାତୁର ମଣିଷର ସଂଗୀତ । ପାବ୍‌ଲୋ ନେରୁଦାଙ୍କ କବିତା ଯେମିତି ଲାଟିନ୍ ଆମେରିକାର ବିଭିନ୍ନ ଦେଶରେ ମୁଖରିତ ଠିକ୍ ସେଇପରି ଆନ୍ଧ୍ରକବି ଗଦ୍ଦରର ଗୀତ ଗାଉଛି ନକ୍ସଲବାଦୀ ତରୁଣ ।

ଏତିକିବେଳେ । ଅଗଷ୍ଟ୨୦ ତାରିଖ୨୦୦୪ ମସିହାରେ ଶୋଇଗଲେ ଚିରନିଦ୍ରାରେ ପ୍ରସିଦ୍ଧ ପ୍ରଥିତଯଶା ସାମ୍ୟବାଦୀ ରୋମାଣ୍ଟିକ୍ କବି ସଚ୍ଚି ରାଉତରାୟ ଏବଂ ତାଙ୍କର ପରଲୋକରେ ଓଡ଼ିଶାର ଚିନ୍ତନ କ୍ଷେତ୍ରରେ ଗୋଟାଏ ଯୁଗର ଅବସାନ ହୋଇଗଲା । ବୟସ ହୋଇଥିଲା । ୧୯୧୬ (ତାଙ୍କର ଜନ୍ମ ୧୯୧୬ କି ୧୯୧୫ କି ୧୯୧୩ ତାହା ଠିକ୍ କହିହେବ ନାହିଁ) ମସିହାରେ ଜନ୍ମ ସଚ୍ଚି ରାଉତରାୟଙ୍କର ଦେହ ଆଉ ବୋଲ ମାନୁ ନଥିଲା । କିଛି ବର୍ଷ ତଳେ ତାଙ୍କର ସ୍ତ୍ରୀ ଭୂଦେବୀଙ୍କର ପରଲୋକ ହୋଇଯାଇଥିଲା । ପିଲାମାନେ ସବୁ ବାହାରେ । ସେବକ, ପାଠକ ଏବଂ ପ୍ରଶଂସକମାନଙ୍କ ଭିତରେ ସେ ବଂଚି ରହିଥିଲେ । ସାହିତ୍ୟ ଏକାଡେମୀ ତାଙ୍କର କୃତିକୁ ତିନିଖଣ୍ଡରେ ପ୍ରକାଶ କରିବାକୁ ସ୍ଥିର କରିଛନ୍ତି । ଖଣ୍ଡିଏ ବୋଧହୁଏ ଛପା ହୋଇଛି । ଅର୍ଥାଭାବରୁ ଆଉ ଦୁଇଖଣ୍ଡ ରହିଯାଇଛି ସେଇପରି । ଏବେ ନବୀନ ବାବୁ ନିର୍ଦ୍ଦେଶ ଦେଲେ ହୁଏତ ପ୍ରକାଶିତ ହୋଇପାରିବ । ସମ୍ମାନ, ଆୱାର୍ଡ, ପଦବୀ ବହୁତ ମିଳିଛି । ଜ୍ଞାନପୀଠ ପୁରସ୍କାର, ସାହିତ୍ୟ ଭାରତୀ ସମ୍ମାନ, ସୋଭିଏଟ ଲ୍ୟାଣ୍ଡ ଆୱାର୍ଡ, ସାହିତ୍ୟ ଏକାଡେମୀର ସଭାପତିତ୍ୱକୁ ମିଳିଛି । କିନ୍ତୁ ମିଳିଛି ଲେଖା ପାଇଁ । ଆଉ ଯଦି ଲେଖି ନପାରିବେ ରହିବେ କାହିଁକି ?

ସମସାମୟିକ ସମସ୍ତେ ଗଲେଣି । କେବଳ ରହି ଯାଇଛନ୍ତି ଗୁରୁଚରଣ ପଟ୍ଟନାୟକ । ସେ ଦିନ ସଚ୍ଚିବାବୁଙ୍କ ଜନ୍ମ ଦିବସର ବଂଧୁ ମିଳନରେ ସ୍ମୃତି ପଖାଳୁଥିଲେ । ସଚ୍ଚିବାବୁ କଲେଜରୁ ଫେରନ୍ତି ମେସକୁ । ଭୀଷଣ ଭୋକ । ଗୁରୁଚରଣ ବାବୁ ବରାଦ କରନ୍ତି କବିତା । ସେଇଥିରେ ଲେଖନ୍ତି !

ହସି ଉଠେ କଳାରାତି, କୃଷ୍ଣମେଘ ଜିଣି

ଅହିଫେନ (ଶୈଳେନ୍)

କଳାରାତିର ହସ, ଅହିଫେନ ଭଳି କଳା– ଓଡ଼ିଆ ସାହିତ୍ୟରେ ନୂଆ ଉପମା, ଉପମେୟର ସୃଷ୍ଟି ।

ସଚ୍ଚିବାବୁ ସ୍କୁଲରେ ପଢ଼ିଲାବେଳେ ହିଁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିବା ଯୋଗୁଁ ସ୍କୁଲରୁ ବହିଷ୍କୃତ ହୁଅନ୍ତି । ବୋଧହୁଏ କୋଲକାତାରୁ ସେ ମାଟ୍ରିକ ପାଶ୍ କରନ୍ତି । ତା'ପରେ ରେଭେନ୍‌ସା କଲେଜରେ ବି.ଏ. ପର୍ଯ୍ୟନ୍ତ ପଢ଼ନ୍ତି । ବାଜିରାଉତର ଶବ ଶୋଭାଯାତ୍ରାରେ ଯୋଗ ଦିଅନ୍ତି ଏବଂ ଲେଖନ୍ତି 'ବାଜିରାଉତ' ।

ନୁହେଁ ବଂଧୁ ନୁହେଁ ଏହା ଚିତା,

x x x

ନୁହେଁ ଏହା ଜଳିବାର ପାଇଁ

x x x

ସଚ୍ଚିବାବୁ ଆଖି ବୁଜିଦେଇଛନ୍ତି । ଏ ଭଳି ଏକ ଲେଖକ, କବି, ସମାଲୋଚକ ପାଇବା ପାଇଁ ଏ ଦେଶକୁ ବହୁଯୁଗ ଲାଗିବ । ଏହି ସୃଜନଶୀଳ ପ୍ରତିଭା ସାହିତ୍ୟର ସବୁ ବିଭାବକୁ ସବୁ ଫର୍ମକୁ କେବଳ ଛୁଇଁଯାଇ ନାହାନ୍ତି, ସବୁଥିରେ ଏଭଳି ଆଲେଖ୍ୟ ରଖି ଯାଇଛନ୍ତି ଯାହା ଯୁଗ ଯୁଗ ଧରି ତାଙ୍କୁ ଅବିସ୍ମରଣୀୟ କରି ରଖିବ, ସେ ବ୍ୟକ୍ତିର ମୃତ୍ୟୁ ହୋଇପାରେ, କିନ୍ତୁ ତାର କୃତିର ମୃତ୍ୟୁ କାହିଁ ? ଏ ଚିତା ତ ଜଳିବାପାଇଁ ନୁହେଁ, ଏହା ସମାଜର ସବୁ ଅଳନ୍ଧୁ, ଅଂଧକାରକୁ ଜାଳିପୋଡ଼ି ଧସାଇଦେବା ପାଇଁ ଉଦ୍ଦିଷ୍ଟ ଏବଂ ତାହା ଆଲୋକିତ କରିବ ଭବିତବ୍ୟକୁ, ଉତ୍ତର ପୀଢ଼ିକୁ ।

''ସଂଜର ଚଉରା ମୂଳେ, ପ୍ରଦୀପର ନିରୁକ୍ତ ବଂଦନ
ଜଳିଉଠି କ୍ଷଣ ପାଇଁ ଯାହା
ସାର୍ଥକ କରଇ ଜୀବନର ଅବଶିଷ୍ଟ ଯାହା
ଗର୍ଭେ ତାର ହୋଇଛି ଜନମ,
ତାହାରି ବନ୍ଦନା କରେ ଆୟୁଷ୍ମାନ ଶିଖା ପ୍ରିୟତମ ।''

ସେଇପରି ସତୀଚଉରାର ଏହି ଲେଲିହାନ ଶିଖା ଏ ଜାତି ପାଇଁ ବନ୍ଦନୀୟ, ଚିର ବନ୍ଦନୀୟ ।

ସଚ୍ଚିବାବୁ ଆସିଥିଲେ ଖୁର୍ଦ୍ଧାର ଗୁରୁଜଙ୍ଗ ଗାଁରୁ । ପାଇକର ବିଦ୍ରୋହୀ ରକ୍ତ ତାଙ୍କର ଧମନୀରେ ପ୍ରବାହିତ ହେଉଥିଲା । ସ୍କୁଲରେ ପାଠ ପଢ଼ିଲାବେଳେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ସ୍କୁଲରୁ ବହିଷ୍କୃତ ହୋଇଥିଲେ । କୋଲକାତାରେ ପଢ଼ିବା ବେଳେ ସେ ମାର୍କ୍ସବାଦ-ଲେନିନବାଦରେ ଦୀକ୍ଷିତହୋଇଥିଲେ ଏବଂ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ । ପରେ ସେ ଫେରିଥିଲେ କଟକ, ରେଭେନ୍ସା କଲେଜରେ ପଢ଼ିବା ପାଇଁ, ଗଡ଼ଜାତ ଆନ୍ଦୋଳନର ମହାରଥୀ ଭଗବତୀ ଚରଣ ପାଣିଗ୍ରାହୀ ତାଙ୍କର ରାଜନୈତିକ ସହଯୋଦ୍ଧା ଥିଲେ । ଢେଙ୍କାନାଳ ପ୍ରଜାମଣ୍ଡଳ ସହିତ ତାଙ୍କର ଘନିଷ୍ଠ ସଂପର୍କ ସ୍ଥାପିତ ହେଲା । ଏବଂ ଲେଖିଥିଲେ 'ବାଜିରାଉତ' ମହାକାବ୍ୟ, ଯାହା ତାଙ୍କୁ ଆଣିଦେଇଥିଲା ଆନ୍ତର୍ଜାତିକ ଖ୍ୟାତି ଏବଂ ସେ ପ୍ରବାଦ ପୁରୁଷ ପାଲଟି ଯାଇଥିଲେ ।

''ମାଟି ଖାଲି ମାଟି,
ତାର ଲାଗି ଗଢ଼ିଗଲା ନୂଆ ବାରବାଟୀ''

(ବାଜିରାଉତ)

ଏଇ ମାଟିର ବନ୍ଦନା ସବୁବେଳେ ଗାଇ ଯାଇଛନ୍ତି । ଆପଣାର କବିତା, ଗଳ୍ପ, ଉପନ୍ୟାସରେ । ଏଇ ମାଟିର ଜୟଗାନ ହିଁ ତାଙ୍କର କାବ୍ୟ କବିତାର ମୂଳ ମନ୍ତ୍ର । ମାଟିକୁ ଯେ ଭଲପାଏ, ସେ ମଧ ସବୁଠାରୁ ବଡ ରୋମାଣ୍ଟିକ୍ । ବିପ୍ଳବଠାରୁ ବଡ଼ ରୋମାଣ୍ଟିକ୍ କଣ ଅଛି ? ତାଙ୍କର ବଂଧୁ ୰କାଇଫି ଆଜମୀ ( ଅଭିନେତ୍ରୀ ସାବ୍‌ନା ଆଜ୍‌ମୀଙ୍କର ବାପା) ଯେତେବେଳେ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ(ମାସିକ ଭତ୍ତା ଦଶ ଟଙ୍କା) ସେତିକିବେଳେ ଏକ ବାଦଶାହୀ କନ୍ୟାକୁ ପ୍ରେମ କରି ବିବାହ କରିବାକୁ ସ୍ଥିର କଲେ । କେତେକ ବନ୍ଧୁ ଏଥିରେ ଆପତ୍ତି କଲେ । ଏଇନା ସଂଗ୍ରାମର ସମୟ, ଏଇନା ଯୁଦ୍ଧର ସମୟ, କିଏ କହିଲା ତମେ ଏକ ସର୍ବହରା, ସେ ଏକ ବାଦଶାହର କନ୍ୟା ! ହସି, ହସି କାଇଫି କହିଲେ ସଂଗ୍ରାମ ନା ଯୁଦ୍ଧ ସହିତ ପ୍ରଣୟ ବା ରୋମାଣ୍ଟିକ୍ ମନୋଭାବର ତ ବିରୁଦ୍ଧାଚରଣ ବା ବିରୋଧୀ ଭାବ ନାହିଁ, ଆଉ ସେ ବାଦଶାହୀ କନ୍ୟା ହେଲେ କ'ଣ ହେଲା ? କିଏ କାହାକୁ କ୍ଲାସିଫାଇ କରୁଚି ଦେଖାଯାଉ । ସେ ବିବାହ କଲେ ଏବଂ ପ୍ରଣୟିନୀକୁ ନେଇ ଲେଖିଲେ 'ପ୍ରେମ କବିତା ମୁମ୍ବାଇ ସହରର ଫୁଟ୍‌ପାତରେ ।

ସଚ୍ଚିବାବୁ ସେଇ ପରି ବିବାହ କଲେ ପିଠାପୁରମ୍ ରାଜବଂଶର କନ୍ୟା ଭୂ ଦେବୀଙ୍କୁ

''ତମେ ଛୁଅଁ ନୂଆ ମଣିଷର ଛାତି''
କନ୍ୟାକୁ ଲେଖିଲେ;
''ଧୂଳିମୟ ଆପଣା ବକ୍ଷରେ, ସ୍ୱତନ୍ତ୍ର ଅକ୍ଷରେ
ଅଙ୍ଗେ ଯେହୁ ବହିଥିବ ସର୍ବହରା ନାମ

ତା' ପଦେ ମାଂଜୁଶ୍ରୀ ତୁହି କରିବୁ ପ୍ରଣାମ ।
ସକାଳର ଶୁଭ ଅଭିଷେକ,
ତୋ ଶିରେ ଢାଳିବ ମାଂଗଳ ନିଷେକ ।

ସଚ୍ଚି ରାଉତରାୟ ବହୁ ରୋମାଣ୍ଟିକ କବିତାର ମଧ୍ୟ ସ୍ରଷ୍ଟା । ବିପ୍ଳବୀ ସର୍ବହରା ଯେ ରୋମାଣ୍ଟିକ ହୋଇପାରେ ତାହାର ଭୁରି ଭୁରି ପ୍ରମାଣ ମିଳେ । ସଚ୍ଚିବାବୁ ଓଡିଆ ସାହିତ୍ୟର ସବୁ ବିଭାବରେ, ସବୁ ଫର୍ମରେ ଆପଣାର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ମାତ୍ର ଏଗାର ବର୍ଷ ବୟସରୁ ସେ କଲମ ଚାଳନା କରିଚାଲିଛନ୍ତି ପ୍ରାୟ ମୃତ୍ୟୁ ପର୍ଯ୍ୟନ୍ତ । ସ୍ତ୍ରୀ ଛାଡ଼ି ଚାଲିଯାଇଛନ୍ତି ଚିରଦିନ ପାଇଁ ଚକ୍ଷୁଶକ୍ତି ନଷ୍ଟହୋଇଯାଇଛି ତଥାପି ଲେଖିବାର ଉଦଗ୍ର ପିପାସା ତାଙ୍କର କଲମକୁ ଜୀବନ୍ତ କରି ରଖିଚି ମୃତ୍ୟୁ ପର୍ଯ୍ୟନ୍ତ । ମରିବାର ମାତ୍ର କେଇମାସ ପୂର୍ବ ପର୍ଯ୍ୟନ୍ତ ସେ ମାର୍କ୍ସବାଦୀ ସଭା, ଶ୍ରମିକ ମାନଙ୍କର ସଭା, ପ୍ରଗତିଶୀଳ ସାହିତ୍ୟ ସଭା ମାନଙ୍କରେ ଯୋଗ ଦେଇଛନ୍ତି ଆଗ୍ରହର ସହିତ । ଦେହ ଭାଙ୍ଗି ପଡୁଛି, କିନ୍ତୁ ମନ ରହିଛି ସେଇ ପରି ଶାଣିତ, ତୀକ୍ଷ୍ଣ ଏବଂ ସତେଜ ।

ସଚ୍ଚିବାବୁ ବସ୍ତୁବାଦୀ, ନିରୀଶ୍ୱରବାଦୀ, ହେତୁବାଦୀ । ତାଙ୍କର ସମାଲୋଚନା ପୁସ୍ତକ ସାହିତ୍ୟରେ ମୂଲ୍ୟବୋଧ ବହୁ ପଣ୍ଡିତଙ୍କୁ ଶିକ୍ଷିତ କରିବ । କାରଣ ବ୍ୟକ୍ତିକୁ କେନ୍ଦ୍ର କରି ନୁହେଁ ସମାଜକୁ କେନ୍ଦ୍ରକରି ସେ ଲେଖିଛନ୍ତି ଏଇ ପୁସ୍ତକ । ଜଣେ ତାଙ୍କର ସବୁ ବକ୍ତବ୍ୟ ଅଭିମତ ସହିତ ଏକମତ ନ ହୋଇପାରେ । କିନ୍ତୁ ଏହା ଓଡ଼ିଆ ସାହିତ୍ୟକୁ ଏକ ଅନବଦ୍ୟ ଅବଦାନ ଏଥିରେ କେହି ଦ୍ୱିମତ ହେବେ ନାହିଁ ।

ପଲ୍ଲୀଶ୍ରୀ, ଅଭିଯାନ, ହସନ୍ତ, ପାଣ୍ଡୁଲିପି, ଭାନୁମତୀର ଦେଶ, କବିତା-୧୯୬୨, କବିତା-୧୯୬୯ ପ୍ରତ୍ୟେକ ବହି ତାଙ୍କର, କେବଳ ନୂଆ ସୃଜନୀ ନୁହେଁ, ଓଡିଆ ସାହିତ୍ୟ ନୂଆ ଫର୍ମର ପରିଚାୟକ । ପାଣ୍ଡୁଲିପି ପରେ ଆପଣ ଯେଉଁ ସବୁ କବିତା ଲେଖିଛନ୍ତି ତାହା ଆଉ ମନେ ରହୁନାଇଁ,ମୋର ଏଇ ପ୍ରଶ୍ନରେ ସେ କହିଲେ ଯେ ତମେ ପୁରୁଣା ଯୁଗରେ ରହିଯାଇଛ, ସେଇଯୋଗୁଁ । ଯୁଗ ସହିତ ସମୟ ସହିତ ସେ ବଦଳିଛନ୍ତି, କବିତାର ଫର୍ମ, ଉପମା, ଉପମେୟ ବଦଳିଛି ।

କିନ୍ତୁ ସେ ରହିଯାଇଛନ୍ତି ମାଟିର କବି ହୋଇ ଏବଂ ପରିଶେଷରେ ମାଟିକୁ ଫେରି ଯାଇଛନ୍ତି । ଏ ମାଟି, ଏ ମଣିଷ ଥିବା ପର୍ଯ୍ୟନ୍ତ ମହାକାଳ ବକ୍ଷରେ ତାଙ୍କର ସେଇ ମାଟି ବନ୍ଦନାର ଦୁନ୍ଦୁଭି ନିନାଦିତ ହେଉଥିବ ।

□□□

# ମୋତେ ଲେଖିବାକୁ ହେବ...

## (ୱ ସନ୍ତୋଷ କୁମାର ରାୟଚୌଧୁରୀ)

ଏଇ ବାରଣ୍ଡା । ଏଇଠି ୧୯୭୫ ମସିହାରେ ସନ୍ତୋଷ ସହିତ ପ୍ରଥମ ଭେଟ । ସେ ବି.ଏସସି. ପାଶ କରିଥାଏ । ଭବାନୀ ତାକୁ ନେଇ ଆସିଥିଲେ ସାଂଗରେ । କ'ଣ ଗୋଟାଏ କରିବାକୁ ହେବ । ମୋର ସ୍ୱପ୍ନ – ଓଡିଶା ତାର, ସଂସ୍କୃତି, ଐତିହ୍ୟକୁ କିମିତି ଜାଣିବେ ବିଶ୍ୱବାସୀ, ଆଉ ସେମାନଙ୍କର ଐତିହ୍ୟ, ସଂସ୍କୃତି ସହିତ କିମିତି ପରିଚିତ ହେବେ ଆମର ଜନସାଧାରଣ । ଆଉ ଓଡିଶାରେ କ'ଣ ବିତର୍କ ହେବ ନାହିଁ ସମସ୍ୟାମାନଙ୍କ ଉପରେ ? ଖାଲି ଯିଏ ଯାହା କଥା କହି ଚାଲିଥିବେ, ଝଗଡା କରୁଥିବେ । ସାଧାରଣ ଗୁଣିତକ କେହି ଖୋଜିବେ ନାହିଁ ? ସନ୍ତୋଷକୁ ସେ ସ୍ୱପ୍ନ ଘାରିଲା । ସେ ସ୍ୱପ୍ନ ତା'ର ରହିଗଲା ମୃତ୍ୟୁ ପର୍ଯ୍ୟନ୍ତ । ବହୁ ଉତ୍ଥାନ, ପତନ ଭିତରେ ।

ନଭେମ୍ବର ୬, ୨୦୦୭ ମସିହା । ସକାଳୁ ଫୋନ ବାଜୁଛି । ସେ ପଟରେ ଡାକ୍ତର ଭବାନୀ ଦାସ । ସେ ସଂବାଦ ଦେଉଛନ୍ତି । ସନ୍ତୋଷ ଆଉ ନାହିଁ । ହଠାତ୍ ବିଶ୍ୱାସ କରିବା କଠିନ । ମୋ ସ୍ତ୍ରୀକୁ ଡାକିଲି କାରଣ ମୁଁ ଅଚଳ । ସାଧାରଣତଃ ମୁଁ ଥରେ ଡାକିଲେ କେହି ଶୁଣନ୍ତି । ଅଚଳ ଲୋକର ଡାକରା ବାରମ୍ବାର । ପୁଅ (ବ୍ୟାପ୍ତି) ଖାଇ ବସିଛି । ଅଫିସ ଯିବ । ଅଧାରୁ ସେ ଉଠିଆସି ପଚାରିଲା କାରଣ । ମୋ ପାଟି ଖନି ବାଜିଲାଣି । ଖବର ଶୁଣି ତାର ଖାଇବା ସେଇଠି ବନ୍ଦ ହୋଇଗଲା ।

ମନ ଫେରିଗଲା ସେହି ଚାରି ଦଶନ୍ଧି ତଳକୁ । ଫୋନ୍ କରୁଚି ବିଭିନ୍ନ ଲୋକଙ୍କୁ । କିନ୍ତୁ ମନ ଫେରି ଫେରି ଯାଉଛି । ନ୍ୟାସନାଲ ଫୋରମ୍, ଭାରତ -ଜାପାନ ମୈତ୍ରୀ ସଂଘ । ପ୍ରଥମ କାମ । 'ପ୍ରଗତିବାଦୀ' ପ୍ରେସ୍ ଝାଂଜିରୀମଂଗଳା, ସେଇଠି ଛାପା ହୁଏ କାର୍ଡ । ଶାନ୍ତି ରଂଜନ, ସନ୍ତୋଷ ତାକୁ ବାଣ୍ଟନ୍ତି କଟକ ସହରରେ । କିଛି ଡାକରେ ପଡେ । କାମ ଚାଲିଲା ।

ଫୋନ୍ ପରେ ଫୋନ୍ । ସୀତାକାନ୍ତ ମହାପାତ୍ର, ଅଧାପକ ବୈଦ୍ୟନାଥ ମିଶ୍ର, ସତ୍ୟରଂଜନ ପାଲ, ବିଜୟକୃଷ୍ଣ ମହାନ୍ତି, ବଟକୃଷ୍ଣ ତ୍ରିପାଠୀ, ଅନାମ ଚରଣ ସାହୁ ଫୋନ୍

ପରେ ଫୋନ । ସମସ୍ତଙ୍କୁ ଖବର ଦେବାକୁ ହେବ । ସନ୍ତୋଷ ଆସିଲା ବେଳକୁ ସେମାନଙ୍କ ମଧ୍ୟରୁ ଅନେକ ନଥିଲେ । କିନ୍ତୁ କେତେକ ଥିଲେ । କିନ୍ତୁ ସମସ୍ତେ ତାକୁ ଜାଣନ୍ତି । ନେସନାଲ ଫୋରମରୁ କାଉନ୍‌ସିଲ ଅଫ କଲଚରାଲ୍ ଗ୍ରୋଥ ଏଣ୍ଡ କଲଚରାଲ ରିଲେସନ୍ସ (ସି ସି ଜି ଆର୍) ୭, ରାଷ୍ଟ୍ରଭାଷା ରୋଡରୁ ଉର୍ଦ୍ଦୁ ଲାଇବ୍ରେରୀର (ଉପର ମହଲା, ଆନ୍ତର୍ଜାତିକ ସେମିନାର ବୌଦ୍ଧଜୈନ ଦର୍ଶନ) ରୁ ୟୁନିଭର୍ସ ଅନେକ ଲମ୍ବା ବାଟ । ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟ, ନନ୍ଦିନୀ ଶତପଥୀ, ନୀଳମଣି ରାଉତରାୟ, ବିଜୁ ପଟ୍ଟନାୟକ, ହେମାନନ୍ଦ ବିଶ୍ୱାଳ । ଗୋଟିକ ପରେ ଗୋଟିଏ ଆନ୍ତର୍ଜାତିକ ସେମିନାର, ପରିଶେଷରେ କଟକ ସହରର ସହସ୍ର ବର୍ଷ ପାଳନ । ଜଷ୍ଟିସ୍ ହରିହର ମହାପାତ୍ର, ଡକ୍ଟର ସଦାଶିବ ମିଶ୍ର । କେତେ ବହି ପ୍ରକାଶନ । ୟୁନିଭର୍ସର ସମ୍ପ୍ରସାରଣ । ସନ୍ତୋଷ ସବୁଠି ଅଛି । ସବୁଥିରେ ।

ୟୁନିଭର୍ସର ସମ୍ପ୍ରସାରଣ– କାର୍ଯ୍ୟରେ ଏବଂ ଆକାରରେ । ଉମେଶର ଯୋଗଦାନ । ନୂଆ ପ୍ରକାର କାର୍ଯ୍ୟକ୍ରମ । ପ୍ରିଣ୍ଟୋଭର୍ସ ଗଠନ । କିଶୋରର ଯୋଗଦାନ । ବାତ୍ୟା ଓ ବନ୍ୟା । ଓଡିଶା ରିଲିଫ କମିଟି ଗଠନ । ରାଧାନାଥ ରଥଙ୍କ ନେତୃତ୍ୱ । ସେମିନାର ପାଇଁ, ରିଲିଫ ପାଇଁ । ସନ୍ତୋଷ ତମ ବାଳ କ'ଣ ଉଇଗ୍ ନା ନାଚୁରାଲ ? ରାଧାନାଥ ବାବୁ ପରିହାସରେ ପଚାରନ୍ତି । କେତେ ଦେଶୀ ବିଦେଶୀ ଅତିଥିଙ୍କର ଆଗମନ । ପରିଚର୍ଯ୍ୟାରେ କୁଶଳୀ ସନ୍ତୋଷ ଉପରେ ଅନେକ ଦାୟିତ୍ୱ ।

ଗପ ଜମେ । ଗପ ଜମାଏ । ୟୁନିଭର୍ସର କର୍ମୀ ନେତା ସମସ୍ତଙ୍କର ସେ ପାରିବାରିକ ବନ୍ଧୁ । କମ୍ପ୍ଲେକ୍ସ ନାହିଁ । ସମସ୍ତଙ୍କୁ ଭେଟି ପାରିବ, କହିପାରିବ । ସ୍ନେହୀ ମଣିଷ । ଡେକୋରେଶନ, ଆର୍ଟ ପାଇଁ ଆଗ୍ରହ ବେଶ୍ । ୟୁନିଭର୍ସର ବାର୍ଷିକ ଉତ୍ସବରେ ସେ ଅନ୍ୟତମ ମୁଖ୍ୟ ଆୟୋଜକ ।

ଦେହ ଖରାପ ଆରମ୍ଭ ହୋଇଛି । ଶ୍ୱାସରୁ ହୃଦଯନ୍ତ୍ର । ୟୁନିଭର୍ସ ଉପରେ ବିପଦ । ସନ୍ତୋଷ ଅସୁସ୍ଥ, ମୁଁ ଅସୁସ୍ଥ । ରାଧାନାଥ ବାବୁ, ସଦାଶିବ ବାବୁ, ଜଷ୍ଟିସ୍ ହରିହର ମହାପାତ୍ର ବିଦାୟ ନେଲେଣି । ଉମେଶ, କିଶୋର ବୁଝାବୁଝି କରୁଛନ୍ତି ୟୁନିଭର୍ସ କଥା । ନୂଆ କମିଟି ଗଢ଼ା ହୋଇଛି । ସନ୍ତୋଷର ଦେହ ଖରାପ । ତେଣୁ ବିଶେଷ ଖବର ଦିଆଯାଇନାହିଁ । ସେ ଅଭିମାନ କରିଛି । କହିଛି, ଦେହ ଖରାପ, ପାରୁନାହିଁ । ତଥାପି କିଛି କିଛି କରିବି । ସଂପାଦନା ମଣ୍ଡଳୀରେ ଅନ୍ତର୍ଭୁକ୍ତ ହୋଇଛି ।

କିନ୍ତୁ, ମହାକାଳ ସର୍ବଜୟୀ ! ଅସୁସ୍ଥତା ବଢ଼ିଛି । ସେ ଆସି ପାରି ନାହିଁ ଆଉ ୟୁନିଭର୍ସକୁ ।

ଆଉ,

ପରିଶେଷରେ ସେଇ ଦିନ ଆସିଛି । ସେ ପାଲଟି ଯାଇଛି ଇତିହାସ ।

ନୂଆ କମିଟି ଗଢା ହୋଇଛି । ଆର୍ଥିକ ଦୁସ୍ଥିତି ସାଂଗକୁ କର୍ମୀର ଅଭାବ । ନେତା ମିଳିବେ । କର୍ମୀ କାହାନ୍ତି ? ସମୟ ବଦଳି ଚାଲିଛି । ନିଜେ ଓ ନିଜର ପବ୍ଲିସିଟି ପ୍ରତିଷ୍ଠା ପାଇଁ ବ୍ୟାକୁଳ ସମସ୍ତେ । ତମେ ତେଣୁ ମନେ ପଡ଼ିବ । ଅର୍ଥ ଓ କର୍ମୀର ଅଭାବ ଭିତରେ ତମେ ସନ୍ତୋଷ ମନେ ପଡ଼ିବ ସବୁଦିନେ ।

ମୋ ପାଇଁ ତମେ ଆୟୋଜନ କରିଥାନ୍ତ । ଇତିହାସର କ୍ରୁର ପରିହାସରେ ମୋତେ ଲେଖିବାକୁ ପଡୁଛି । ଉମେଶ, କିଶୋର, ବ୍ୟାପ୍ତି ....... ତମର ଉତ୍ତରପୀଢି ଭାବରେ ସବୁ ବୁଝୁଛନ୍ତି ତମ କାମ ୟୁନିଭର୍ସରେ । ସବୁ ତମର, ଆମର କାମ ।

ତମ ସାଂଗରେ ଦେଖାହେବ । ଚା' କରି ରଖିଥିବ । କେତେଥର ୟୁନିଭର୍ସରେ ଚାହା କରିଛ । ଆଜି କ'ଣ କରି ରଖିବ ନାହିଁ ? ଅପେକ୍ଷା କରିଥିବ । ଯେମିତି ଅପେକ୍ଷାକର ତମେ ୟୁନିଭର୍ସରେ । ସବୁ ଯେମିତି ସଜାଇ ରଖିଥାଅ । ତମେ ପରା ମମତାକୁ ଲାଇବ୍ରେରୀ, ଅଫିସ୍ ସଜାଇବା ଶିଖାଇଦେବ ବୋଲି କହିଥିଲ । କେବେ ଆସୁଚ ?

ତମେ ଆସିବ ନାହିଁ । ଅସନ୍ତୋଷ ସବୁବେଳେ ରହିବ । ତେଣୁ ତମେ ସନ୍ତୋଷ ମନେପଡ଼ିବ ସବୁଦିନେ ।

ହଁ, ସବୁଦିନେ ।

□□□

# ଇତିହାସରୁ ପୃଷ୍ଠାଟିଏ

## (୪ ଲିଓନିଡ୍ ବ୍ରେଜନେଭ)

ମଣିଷ ଆସେ, ଯାଏ । କେହି କ'ଣ ସବୁଦିନେ ତମ୍ବାପଟା ଧରି ରହେ କି ? ସେ ଯାଏ । କବରରେ ମାଟି ମୁଠାଏ ପଡି ସାରିଲା ପରେ, କି ଚିତାର ରଡନିଆଁ ହୁକୁହୁକୁ ହୋଇ ଲିଭି ଆସିଲା ବେଳକୁ ମହାକାଳ ତାର ସ୍ମୃତିକୁ ଖାଇବାକୁ ଆରମ୍ଭ କରେ । ଆଖିରୁ ଲୁହ ପୋଛି ପୁଅ, ଝିଅ, ବନ୍ଧୁବାନ୍ଧବ ଯିଏ ନିଜ ନିଜ ଧନ୍ଦାରେ ଲାଗି ଯାଆନ୍ତି । ସେ ହଜିଯାଏ ବିସ୍ମୃତିର ଗର୍ଭରେ । ଏଇ ତ ଜୀବନ !

କିନ୍ତୁ ସଭିଙ୍କ ପାଇଁ ଏଇଟା ଲାଗୁ ନୁହେଁ । ଇମିତି କେତେକ ଲୋକ ଆସନ୍ତି ଯିଏ ଆସିଲାବେଳେ ଶଙ୍ଖ ମହୁରୀ ବାଜେ ନାହିଁ । ସିଏ ଆସେ ଯିମିତି ଆସନ୍ତି ପ୍ରତ୍ୟେକ ମୁହୂର୍ତ୍ତରେ ହଜାର ହଜାର ଶିଶୁ । ସିଏ କିନ୍ତୁ ଗଲାବେଳେ ବହୁ ଲୋକଙ୍କର ଆଖିରୁ ଲୁହ ଝରେ । 'ଆହା'ର ଶବ୍ଦରେ ମେଦିନୀ ଭରିଯାଏ । ସିଏ ନ ଜାଣିଥିବା ବହୁଲୋକ ତାଙ୍କୁ ଝୁରନ୍ତି । ସମୟର ବାଲିରେ ତାଙ୍କର ପଦଚିହ୍ନ ଜୁକୁଜୁକୁ ହୋଇ ଉଜ୍ଜଳି ଉଠେ ।

ସେଇଭଳି ଜଣେ ଥିଲେ ବ୍ରେଜନେଭ । ୟୁକ୍ରେନ-ଗହମ କ୍ଷେତ, ଅଙ୍ଗୁରକୋଳିର ରାଜ୍ୟ । ଖାଦ୍ୟର ଗନ୍ତାଘର । ତାହାରି ଭିତରେ ଏକ ଅଖ୍ୟାତ ସହରରେ ସେ ଜନ୍ମଗ୍ରହଣ କଲେ ୧୯୦୬ ମସିହାରେ । ୧୯୦୫ ମସିହାରେ ବିପ୍ଳବ ପରାସ୍ତ ହୋଇଥାଏ । ଦେଶ ଭିତରେ ନୈରାଶ୍ୟ, ଦାରିଦ୍ର୍ୟ ଓ ଅତ୍ୟାଚାରର ଅନ୍ଧକାର ଓହ୍ଲାଇ ଆସିଥାଏ । ସେଇ ଅନ୍ଧକାର ଭିତରେ ଆଶାର ଦିହୁଡ଼ି ଜାଳି ରଖିଥାନ୍ତି ଲେନିନ୍ ଓ ତାଙ୍କର ସହକର୍ମୀମାନେ । ମାର୍ଚ୍ଚ ମାସ । ହାଲପା ପବନ ବୋହି ଆସୁଛି ସାଇବେରିଆରୁ । ବରଫ ତରଳା ପବନ । ଇଂରାଜୀରେ ଏହାକୁ କୁହନ୍ତି 'ଥ' । ସେଇ ସମୟରେ । ପରିବାରକୁ ଉଜ୍ଜଳା କରି ମା'ଙ୍କର କୋଳ ପୂରେଇ ଆସିଥିଲା ଏଇ ଶିଶୁ ।

ସେ ପିଲାଦିନୁ ସ୍ୱପ୍ନ ଦେଖିଥିଲା । ସେ ଇଞ୍ଜିନିୟର ହେବ । ତା'ର ହାତର ସ୍ପର୍ଶରେ ଭଲଗା ଶୋଇପଡିବ ପାଣିର କୁଣ୍ଡଳୀ ଭିତରେ, ତା'ର ହାତର କୁଆଁରୀ ଛୁଆଁରେ ଉଜ୍ଜଳି ଉଠିବ ସାରା ଦେଶର ଇଣ୍ଡଷ୍ଟ୍ରିଆଲ ବେଲ୍ଟ । ସେ ହେବ ଶିଳ୍ପର ଶିଳ୍ପୀ । କିନ୍ତୁ କିଏ ଜାଣିଥିଲା ଯେ ଏଇ ଶିଶୁ ପାଲଟିବ ଅଯୁତ ବିନ୍ଧାଣୀ । ତା'ର ହାତର ସ୍ପର୍ଶରେ ଗୋଟିଏ ଶିଳ୍ପ ନୁହେଁ ସାରାଦେଶର, ଶିଳ୍ପ, କୃଷି, ସଂସ୍କୃତି ନୂଆ ରୂପ ପାଇବ । ତାର ହାତ ସମ୍ପ୍ରସାରିତ ହେବ, ଦେଶଦେଶକୁ । ସେଇ ବନ୍ଧୁତାର ହାତ ଭାରତବର୍ଷରେ ତିଆରି କରିବ ନୂତନ ଇସ୍ପାତ

କାରଖାନା, ଭିଏତ୍‌ନାମରେ ତାହା ଦେବ ମୁକ୍ତି ସଂଗ୍ରାମ ପାଇଁ ନୂତନ ଦ୍ୟୋତନା, କ୍ୟୁବାର ଚାରିପଟରେ ତାହା ସୃଷ୍ଟି କରିବ ରକ୍ଷାକବଚ, ୟୁରୋପ ଆକାଶରେ ସେ ହେବ ନୂତନ 'ଥ' ବା ବରଫ ତରଳା ପବନ, ଯାହା ଯୁଦ୍ଧର ଭୟକୁ ଦୂର କରିବା ପାଇଁ ସାହାଯ୍ୟ କରିବ । କାହିଁ ସୋଭିଏତ ରୁଷ, କାହିଁ ଭାରତ ମହାସାଗର ! ନୀଳ ସମୁଦ୍ର ବିଷାକ୍ତ ହୋଇ ଉଠୁଛି । ସାଧବପୁଅର ବୋଇତ ପରିବର୍ତ୍ତରେ ଭାସିବାକୁ ଆରମ୍ଭ କରିଛି ହିଂସ୍ର ପଶୁର ଯୁଦ୍ଧ-ତରୀ । ସାଧବାଣୀର ବନ୍ଦାଣ ପରିବର୍ତ୍ତରେ ମଳିନର ହେସ୍ତ୍ରାଧ୍ୱନି ଶୁଭୁଛି, ଅସ୍ତ୍ରର ଝନ୍‌ଝନ୍‌ନି ଶୁଭୁଛି ନୂପୁର ପରିବର୍ତ୍ତରେ । ଏଇ ସାଗର ଶାନ୍ତିର ସାଗର ହେଉ, ସେଠାରେ ପୁଣି ଶୁଭୁ 'ଦେ' ରେ ପାଲ ଉଡାଇ, ବୋଇତିଆଳ ଭାଇ.....' ର ସଙ୍ଗୀତ । ସେଥିପାଇଁ ଏଇ ଶିଶୁ ଝୁରିବ ।

ସେଇ ଶିଶୁ ଗଢ଼ି ଉଠିଲା ମାଟିରୁ ଶକ୍ତି ପାଇ । ଗ୍ରୀକ ଉପକଥାର ବୀର ହର୍କୁଲସ୍ ପରି । ସେ ଇଞ୍ଜିନିୟର ହେଲା ଏବଂ ହେଲା ଇଞ୍ଜିନିୟରମାନଙ୍କର ଇଞ୍ଜିନିୟର । ଆରମ୍ଭ ହେଲା ଦ୍ୱିତୀୟ ମହାଯୁଦ୍ଧ । ସାରା ପୃଥିବୀରେ ହାହାକାର । ନାଜୀ ଝଟିକା ବାହିନୀ ଛୁଟି ଚାଲିଛନ୍ତି ୟୁରୋପର ବୁକୁ ଭେଦକରି । ମୈତ୍ରୀ, ସାମ୍ୟ ଓ ଭ୍ରାତୃତ୍ୱର ଫ୍ରାନ୍‌ସ ଅବନତ ହୋଇଛି । ସୂର୍ଯ୍ୟ ଅସ୍ତ ଯାଉ ନ ଥିବା ବ୍ରିଟିଶ ସାମ୍ରାଜ୍ୟର ରବି ଅସ୍ତମିତ ହୋଇଯାଇଛି, କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପମାନଙ୍କରେ ଲକ୍ଷ ଲକ୍ଷ ବନ୍ଦୀ ଜୀବନର ଶେଷ ବିନ୍ଦୁରେ ପହଞ୍ଚିଛନ୍ତି । ସାରା ପୃଥିବୀ ତଟସ୍ଥ ହୋଇ ଠିଆ ହୋଇଛି । ପୃଥିବୀ ତା'ହେଲେ କ'ଣ ବୁଡ଼ିଯିବ ଅନ୍ଧକାର ଭିତରେ ? ନା, ନାଜୀ ଜାତି ପାଇଁ ଯୁଦ୍ଧ । ବସୁନ୍ଧରାକୁ ରକ୍ଷା କରିବା ପାଇଁ ବଳିଦାନ ଦେବାକୁ ହେବ । ଇତିହାସରେ ସେ ବଳିଦାନର ପଟାନ୍ତର ନାହିଁ । ପ୍ରତ୍ୟେକ ଇଞ୍ଚ ଭୂଇଁ ପାଇଁ ସଂଗ୍ରାମ ଚାଲିବ; କିନ୍ତୁ ସେମାନଙ୍କୁ ଫେରିବାକୁ ହେବ । ଆକ୍ରମଣକାରୀର କବର ଖୋଳା ହେବ ଏଇଠି, ସମଗ୍ର ମଣିଷଜାତି ପାଇଁ । ଆତ୍ମ-ଜୀବନୀ 'ପୁନରୁଜ୍ଜୀବନ' ସେଇ କଥା ବହନ କରେ । ପ୍ରାଣ ପାଇଁ ପ୍ରାଣର ଭାଷା । ଲାଲ ଫୌଜଙ୍କୁ ସେଇ ଆନ୍ତର୍ଜାତିକତା ଶିକ୍ଷା ଦିଅନ୍ତି ପଲିଟିକାଲ କମିଶାର ବ୍ରେଜନେଭ ।

ଯୁଦ୍ଧର ଶେଷ । କିନ୍ତୁ ଅରି ଫେରି ନାହିଁ, ଯୁଦ୍ଧ ସରି ନାହିଁ । ପୃଥିବୀକୁ ପୂରା ଥରେ ଯୁଦ୍ଧ ଭିତରକୁ ଟାଣିନେବା ପାଇଁ ଉଦ୍ୟମ ସେହିପରି ରହିଛି । ରଣଚଣ୍ଡୀର ତୃଷ୍ଣା ସତେ ଯେପରି ମେଣ୍ଟି ନାହିଁ । ନୂଆ ନୂଆ ଅସ୍ତ୍ର ତିଆରି ହୋଇଛି । ମଣିଷକୁ ମାରିବାପାଇଁ ମଣିଷ ତିଆରି କରିଛି ଭୟାନକ ଅସ୍ତ୍ର । କିନ୍ତୁ ଏଇ ଯୁଦ୍ଧରେ କେହି ବିଜିତ୍ ବା ବିଜେତା ରହିବେ ନାହିଁ । ସମସ୍ତେ ପୋଡି ପାଉଁଶ ହୋଇଯିବେ । କ୍ରେମଲିନକୁ ଧ୍ୱଂସ କରିବାପାଇଁ ଚେଷ୍ଟାରେ 'ମୁକ୍ତିର ମୂର୍ତ୍ତି' ଆମେରିକାରେ ଧ୍ୱଂସ ପାଇଯିବ, ଧ୍ୱଂସ ପାଇବ ତାଜମହଲ, କୋଣାର୍କ, ଆଇଫେଲ ଟାୱାର୍, ପିକାଶୋର କଳା, ବିଥୋଭେନର ସଙ୍ଗୀତ । ଏଇ ଉଦାତ୍ତ ବାଣୀ ଶୁଭିଲା ବ୍ରେଜନେଭଙ୍କର କଣ୍ଠରୁ । ସେ ବୁଲିଲେ ଦେଶ ଦେଶାନ୍ତର ଶାନ୍ତିର ବାର୍ତ୍ତା ବହି ।

ଆସ, ବସ, ଆଲୋଚନା କର ଟେବୁଲ ଚାରିପଟରେ ବସି ଦେଖ ତମର ନଥିପତ୍ର । ଗୋଟିଏ ବୋମା ତିଆରି ନ କଲେ କେତେଟା ସ୍କୁଲ ହୋଇପାରିବ, କେତେଟା

ଡାକ୍ତରଖାନା ହୋଇପାରିବ । ଅନାଥ । ବନ୍ୟା, ବାତ୍ୟା, ମରୁଡିର କରାଳ କବଳରେ ପୃଥିବୀର ବହୁ ଅଞ୍ଚଳ । ସେଇ ଦେଶର ସମ୍ପତ୍ତି ଲୁଟ କରି ଯେଉଁମାନେ ଧନାଢ୍ୟ ସେହିମାନେ ହିଁ ଆଜି ସେହି ଧନରେ ପାଗଳ ଏବଂ ପୃଥିବୀକୁ ଧ୍ୱଂସ କରିଦେବା ପାଇଁ ବ୍ୟଗ୍ର ।

ପ୍ରସ୍ତାବ ପରେ ପ୍ରସ୍ତାବ । ୟୁରୋପ ପାଇଁ, ଏସିଆ ପାଇଁ, ଭାରତ ମହାସାଗର ପାଇଁ, ନିରସ୍ତ୍ରୀକରଣ ପାଇଁ, ପରମାଣୁ ବୋମାର ନିଷିଦ୍ଧିକରଣ ପାଇଁ ବ୍ରେଜନେଭଙ୍କର ପ୍ରସ୍ତାବ ଗୋଟିକ ପରେ ଗୋଟିଏ । ସମ୍ମାନ ମିଳିଛି, ପଦକ ମିଳିଛି, ଲେନିନ୍ ପୁରସ୍କାର, ଅର୍ଡର ଅଫ୍ ସୋଭିଏତ୍ ୟୁନିୟନ, ବିଶ୍ୱଶାନ୍ତି ସମ୍ମିଳନୀର ପୁରସ୍କାର । କିନ୍ତୁ ଯାତ୍ରା ସରି ନାହିଁ । ଆହ୍ୱାନ ଶୁଭିଛି । ଆସ ମୋ ଶିବିରେ ଆସ ଭାଇ । ଏହି ଶିବିର ହେଉଛି ଶାନ୍ତିର ଶିବିର ।

ମଣିଷ ଜାତି ପାଇଁ ତୁମକୁ ବଳି ଦେବାକୁ ପଡିବ— ଏହି ବାଣୀ ଯିଏ ଆପଣାର ଲୋକଙ୍କୁ ଶୁଣାଉଥିଲା, ସେ ଜାଣିଥିଲା ଅନ୍ୟ ଦେଶର ଲୋକଙ୍କ ବେଦନା, ଆଶା ଓ ଆକାଂକ୍ଷା । ସେହିଯୋଗୁଁ ସେ ଠିଆହେଲା ଭାରତବର୍ଷ ପକ୍ଷରେ । ଆମେରିକାର ସପ୍ତମ ନୌବହର ବଙ୍ଗଳାଦେଶର ମୁକ୍ତିସଂଗ୍ରାମୀ ଓ ଭାରତବର୍ଷ ବିରୁଦ୍ଧରେ ଯାତ୍ରା ଆରମ୍ଭ କରିଛି । ସେମାନଙ୍କ ହାତରେ ରହିଛି ଅତ୍ୟାଧୁନିକ ଅସ୍ତ୍ର । ତା'ପରେ କ'ଣ ହେବ ? ଆଶଙ୍କା, ଉଦ୍‌ବେଗ ଘୋଟି ଯାଇଛି ସାରା ପୃଥିବୀରେ । କିଏ ଠିଆହେବ ଏଇ ଦୁର୍ଦ୍ଧର୍ଷ ରକ୍ତମୁଖା ଆକ୍ରମଣ ବିରୁଦ୍ଧରେ ? ଅଭୟ ବାଣୀ ଶୁଭିଛି, ବ୍ରେଜନେଭଙ୍କର କଣ୍ଠରୁ । କିଛି ଚିନ୍ତା ନାହିଁ ରୁଷ କମାଣର ସୀମା ଭିତରକୁ ସେମାନେ ଆସିଗଲେଣି ଏବଂ ତାଙ୍କୁ ତାର ଫଳ ଭୋଗ କରିବାକୁ ପଡିବ । ସପ୍ତମ ନୌବହରକୁ ଫେରିବାକୁ ହେଲା । ବଙ୍ଗଳାଦେଶ ମୁକ୍ତ ହେଲା ।

ବୟସ, ପରିଶ୍ରମ, ଚିନ୍ତା ସବୁ ମିଶି ଦେହକୁ ଖାଇବାକୁ ଲାଗିଥିଲେ । ଯିବାର ବେଳ ହୋଇଆସିଲାଣି । କିନ୍ତୁ ବିଶ୍ରାମ ନାହିଁ । ଶେଷ ବିଶ୍ରାମର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଅବିଚଳ । ବିଦ୍ରୋହୀ, ରଣକ୍ଳାନ୍ତ ସେହିଦିନ କେବଳ ଶାନ୍ତ ହେବ, ଯେଉଁଦିନ ଆଉ ଅସ୍ତ୍ରର ଝନ୍‌ଝନି ଶୁଭିବ ନାହିଁ, କମାଣ ଆଉ ଗର୍ଜିବ ନାହିଁ । ସାବଧାନ । ଆମର ଶାନ୍ତି ନିରୁତା ନୁହେଁ ଦୁର୍ବଳତାର ଲକ୍ଷଣ ନୁହେଁ । ଶାନ୍ତି ହେଉଛି ଆମର କାମନା । କିନ୍ତୁ ମଣିଷ ଜାତି ଉପରେ ଯୁଦ୍ଧ ଲଦିଦେଲେ ଆମେ ଶତ୍ରୁକୁ ଛାଡିବୁ ନାହିଁ । ଶତ୍ରୁକୁ ତା'ର ଫଳ ଭୋଗକରିବାକୁ ପଡ଼ିବ । ଆମ ପାଖରେ ଅଛନ୍ତି ପୃଥିବୀର କୋଟି କୋଟି ଶାନ୍ତିକାମୀ ଜନତା । ବ୍ରେଜନେଭଙ୍କର ଅନ୍ତିମ ବାଣୀ । କାଳର କପାଳରେ ତାଙ୍କର ଶେଷ ସ୍ୱାକ୍ଷର ।

ଆଜି ଇତିହାସର ପୃଷ୍ଠାଏ ଓଲଟିଗଲା କାଳର ପବନରେ । ଦମ୍‌କାଏ ପବନ । କିନ୍ତୁ ସେହି ପୃଷ୍ଠାକୁ ପଢ଼ିବେ ଆମର ଉତ୍ତରାଧିକାରୀମାନେ । ଶାନ୍ତିର ପୃଥିବୀ ମନେରଖିବ ଏହି ମହାରଥୀଙ୍କୁ ଯେ କେବଳ ନିଜ ଦେଶ ପାଇଁ ନୁହେଁ, ସମଗ୍ର ମଣିଷ ଜାତି ପାଇଁ ଆପଣାକୁ ବଳି ଦେଇଗଲେ ।

□□□



ଗିରିଜା ଭୂଷଣ ପଟ୍ଟନାୟକ ଜଣେ ଜଣାଶୁଣା ସାମ୍ୟବାଦୀ ଚିନ୍ତକ । ଛାତ୍ରାବସ୍ଥାରୁ ହିଁ ସେ ସ୍ୱାଧୀନତା ସଂଗ୍ରାମରେ ସଂକ୍ଷିପ୍ତ ଅଂଶ ଗ୍ରହଣ କରି ବୋମା ବିସ୍ଫୋରଣରେ ଆହତ ହୋଇଥିଲେ । ପରବର୍ତ୍ତୀ କାଳରେ ସାମ୍ୟବାଦୀ ଆନ୍ଦୋଳନରେ ଅଂଶ ଗ୍ରହଣ କରି ବହୁବାର କାରାରୁଦ୍ଧ ଏବଂ ପଳାତକ ଘୋଷିତ । ବହୁ ଦେଶ ଭ୍ରମଣ କରି ସେ ବହୁ ବ୍ୟକ୍ତିଙ୍କ ସହିତ ପରିଚିତ । ସକ୍ରିୟ ରାଜନୀତିରୁ ବିଦାୟ ନେଇ ସେ ପ୍ରତିଷ୍ଠା କରିଛନ୍ତି ଦି' ୟୁନିଭର୍ସ । ସେ ଜଣେ ସଫଳ ସଂଗଠକ । କଟକ ସହରରେ ବହୁ ଆନ୍ତର୍ଜାତିକ ସେମିନାର ତାଙ୍କର ଅପୂର୍ବ ସାଂଗଠନିକ ଦକ୍ଷତାର ପରିଚୟ ଦିଏ । ବହୁ ପୁସ୍ତକ ତାଙ୍କର ସମ୍ପାଦନାର ସ୍ୱାକ୍ଷର ବହନ କରେ । ଦିବଂଗତ ବହୁ ବ୍ୟକ୍ତିଙ୍କର ଜୀବନସ୍ମୃତି ତାଙ୍କର ଉଲ୍ଲେଖଯୋଗ୍ୟ ଅବଦାନ । 'ମତାନ୍ତର ହୋଇଛି କିନ୍ତୁ ମନାନ୍ତର ହୋଇନାହିଁ' ଏଇ ନୀତି ଜୀବନର ବହୁ ବିଭାବର ବ୍ୟକ୍ତିଙ୍କ ସମ୍ପର୍କରେ ସ୍ମୃତିଚାରଣର ବୈଶିଷ୍ଟ୍ୟ । ତାଙ୍କର ନିଜର ଜୀବନସ୍ମୃତି 'ଜୀବନର ବାଟେଘାଟେ' ଏବଂ 'ଜୀବନର ଜନପଥରେ' ଶୀର୍ଷକ ଦୁଇଟି ପୁସ୍ତକରେ ପ୍ରକାଶିତ । ରିଲିଫ୍ କାମ କରୁଥିବା ବେଳେ ଦୁଇଟି ଷ୍ଟ୍ରୋକ ଓ ମସ୍ତିଷ୍କରେ ରକ୍ତସ୍ରାବ ଜନିତ ତିନୋଟି ଅସ୍ତ୍ରୋପଚାର ତାଙ୍କୁ ଅଚଳ କରିଦେଇଥିବା ସତ୍ତ୍ୱେ ସେ ଜୀବନସ୍ମୃତି ଲେଖି ଚାଲିଛନ୍ତି । ତାହାର କିୟଦଂଶ ହେଉଛି ଏଇ ପୁସ୍ତକ 'ଜୀବନସ୍ମୃତି' ।